


# ଭାରତ ସରକାର

## ବିଧି, ନ୍ୟାୟ ଓ କମ୍ପାନୀ କାର୍ଯ୍ୟ ମନ୍ତ୍ରାଳୟ




ଭାରତ ସରକାରଙ୍କ ତରଫରୁ ଓଡ଼ିଶା ସରକାରଙ୍କର ମୁଦ୍ରଣ, ଲିଖନ ସାମଗ୍ରୀ
ଓ ପ୍ରକାଶନ ନିର୍ଦ୍ଦେଶକଙ୍କ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ
୧୯୮୧




ଭାରତ ସରକାର
ବିଧି, ନ୍ୟାୟ ଓ କଂପାନୀ କାର୍ଯ୍ୟ ମନ୍ତ୍ରାଳୟ

# ଭାରତର ସଂବିଧାନ

( ୧ ଏପ୍ରିଲ ୧୯୮୧ ପର୍ଯ୍ୟନ୍ତ ସଂଶୋଧିତ )

# THE CONSTITUTION OF INDIA

( AS ON 1ST APRIL 1981 )

ଭାରତ ସରକାରଙ୍କ ତରଫରୁ
ଓଡ଼ିଶା ସରକାରଙ୍କର ମୁଦ୍ରଣ, ଲିଖନ ସାମଗ୍ରୀ ଓ ପ୍ରକାଶନ ନିର୍ଦ୍ଦେଶକଙ୍କ ଦ୍ୱାରା
ମୁଦ୍ରିତ ଓ ପ୍ରକାଶିତ, ୧୯୮୧

# ଭାରତର ସଂବିଧାନ

## ସୂଚୀ


ପୃଷ୍ଠା

ପ୍ରସ୍ତାବନା

ଅନୁଚ୍ଛେଦ

ଭାଗ ୧

ସଂଘ ଓ ତାହାର ରାଜ୍ୟକ୍ଷେତ୍ର

୧ । ସଂଘର ନାମ ଓ ରାଜ୍ୟକ୍ଷେତ୍ର ... ୧

୨ । ନୂତନ ରାଜ୍ୟମାନଙ୍କର ଗ୍ରହଣ ବା ସ୍ଥାପନ ... ୧

୨ କ ନିରସିତ

୩ । ନୂତନ ରାଜ୍ୟ ଗଠନ ଓ ବିଦ୍ୟମାନ ରାଜ୍ୟମାନଙ୍କର କ୍ଷେତ୍ର, ସୀମା ବା ନାମ ପରିବର୍ତ୍ତନ ... ୧

୪ । ପ୍ରଥମ ଓ ଚତୁର୍ଥ ଅନୁସୂଚୀର ସଂଶୋଧନ ନିମିତ୍ତ ଅନୁଚ୍ଛେଦ ୨ ଓ ୩ ଅଧୀନରେ ପ୍ରଣୀତ ବିଧି ଏବଂ ଅନୁପୂରକ, ଆନୁଷଙ୍ଗିକ ଓ ପାରିଣାମିକ ବିଷୟ । ... ୨

ଭାଗ ୨

ନାଗରିକତା

୫ । ଏହି ସଂବିଧାନର ପ୍ରାରମ୍ଭରେ ନାଗରିକତା ... ୩

୬ । ପାକିସ୍ଥାନରୁ ଭାରତକୁ ପ୍ରବ୍ରଜନ କରିଥିବା କେତେକ ବ୍ୟକ୍ତିଙ୍କର ନାଗରିକତା ଅଧିକାର ... ୩

୭ । ପାକିସ୍ଥାନକୁ ପ୍ରବ୍ରଜନ କରିଥିବା କେତେକ ବ୍ୟକ୍ତିଙ୍କର ନାଗରିକତା ଅଧିକାର ... ୩

୮ । ଭାରତ ବାହାରେ ବାସକରୁଥିବା ଭାରତୀୟ ଉଦ୍‌ଭବ କେତେକ ବ୍ୟକ୍ତିଙ୍କର ନାଗରିକତା ଅଧିକାର ... ୪

୯ । ସ୍ୱେଚ୍ଛାରେ ବିଦେଶୀ ରାଜ୍ୟର ନାଗରିକତା ଅର୍ଜନ କରିବା ବ୍ୟକ୍ତି ନାଗରିକ ହେବେ ନାହିଁ ... ୪

୧୦ । ନାଗରିକତା ଅଧିକାର ବଳବତ୍ ରହିବ ... ୪

୧୧ । ସଂସଦ ବିଧିଦ୍ୱାରା ନାଗରିକତା ଅଧିକାରକୁ ବିନିୟମିତ କରିବ ... ୪

ଭାଗ ୩

ମୌଳିକ ଅଧିକାର

ସାଧାରଣ

୧୨ । ସଂଜ୍ଞା ... ୫

୧୩ । ମୌଳିକ ଅଧିକାର ସହ ଅସଂଗତ ବା ତହିଁର ଅଳ୍ପୀକରଣକାରୀ ବିଧି ସମୂହ ... ୫

ପୃଷ୍ଠା

ସମତା ଅଧିକାର


୧୪ । ବିଧି ସମକ୍ଷରେ ସମତା ୫

୧୫ । ଧର୍ମ, ମୂଳବଂଶ, ଜାତି, ଲିଙ୍ଗ ବା ଜନ୍ମସ୍ଥାନର ଆଧାର ହେତୁ ବିଭେଦର ନିଷେଧ ୫

୧୬ । ଲୋକ ନିୟୋଜନ ବିଷୟରେ ସୁଯୋଗର ସମତା ୬

୧୭ । ଅସ୍ପୃଶ୍ୟତାର ଉତ୍ସାଦନ ୬

୧୮ । ଉପାଧିର ଉତ୍ସାଦନ ୬


ସ୍ୱାତନ୍ତ୍ର୍ୟ ଅଧିକାର


୧୯ । ବାକ୍-ସ୍ୱାତନ୍ତ୍ର୍ୟ ଇତ୍ୟାଦି ବିଷୟକ କେତେକ ଅଧିକାରର ସଂରକ୍ଷଣ ୭

୨୦ । ଅପରାଧ ଜନିତ ଦୋଷ ସାବ୍ୟସ୍ତି ବିଷୟରେ ସଂରକ୍ଷଣ ୮

୨୧ । ଜୀବନର ଓ ଦୈହିକ ସ୍ୱାଧୀନତାର ସଂରକ୍ଷଣ ୮

୨୨ । କେତେକ ସ୍ଥଳରେ ବନ୍ଦୀକରଣ ଓ ନିରୋଧ ବିରୋଧରେ ସଂରକ୍ଷଣ ୮


ଶୋଷଣ ବିରୁଦ୍ଧରେ ଅଧିକାର


୨୩ । ମନୁଷ୍ୟଙ୍କୁ ପଣ୍ୟରୂପେ ବ୍ୟବହାର ଓ ବଳାତ୍ଶ୍ରମର ନିଷେଧ ୯

୨୪ । ପିଲାମାନଙ୍କୁ କାରଖାନା ପ୍ରଭୃତିରେ ନିୟୋଜନର ନିଷେଧ ୧୦


ଧର୍ମ ସ୍ୱାତନ୍ତ୍ର୍ୟ ଅଧିକାର


୨୫ । ବିବେକର ସ୍ୱାତନ୍ତ୍ର୍ୟ ଏବଂ ଧର୍ମର ଅବାଧ ଅବଲମ୍ବନ, ଆଚରଣ ଏବଂ ପ୍ରଚାର ୧୦

୨୬ । ଧର୍ମ କାର୍ଯ୍ୟ ପରିଚାଳନା କରିବାର ସ୍ୱାତନ୍ତ୍ର୍ୟ ୧୦

୨୭ । କୌଣସି ଧର୍ମ ବିଶେଷର ଉନ୍ନତି ସାଧନ ନିମିତ୍ତ କର ଦେବା ସଂପର୍କରେ ସ୍ୱାତନ୍ତ୍ର୍ୟ ୧୦

୨୮ । କେତେକ ଶିକ୍ଷା ଅନୁଷ୍ଠାନରେ ଧର୍ମ ଶିକ୍ଷା ଅଥବା ଧର୍ମ ଉପାସନାରେ ଉପସ୍ଥାନ ସଂପର୍କରେ ସ୍ୱାତନ୍ତ୍ର୍ୟ .. ୧୧


ସଂସ୍କୃତି ଓ ଶିକ୍ଷା ବିଷୟକ ଅଧିକାର


୨୯ । ସଂଖ୍ୟାଲଘୁଙ୍କର ହିତ ସଂରକ୍ଷଣ ୧୧

୩୦ । ଶିକ୍ଷା ଅନୁଷ୍ଠାନ ସ୍ଥାପନ ଓ ପ୍ରଶାସନ ନିମିତ୍ତ ସଂଖ୍ୟାଲଘୁଙ୍କର ଅଧିକାର ୧୧

୩୧ । ନିରସିତ


କେତେକ ବିଧିର ବ୍ୟାବୃତ୍ତି


୩୧ କ । ସଂପଦାର ଅର୍ଜନ ଇତ୍ୟାଦି ନିମିତ୍ତ ଉପବନ୍ଧ କରୁଥିବା ବିଧାନମାନଙ୍କର ବ୍ୟାବୃତ୍ତି .. ୧୧

୩୧ ଖ । କେତେକ ଅଧିନିୟମ ଓ ବିନିୟମର ବୈଧୀକରଣ .. ୧୩

୩୧ ଗ । କେତେକ ନିର୍ଦ୍ଦେଶକ ତତ୍ତ୍ୱକୁ କାର୍ଯ୍ୟାନ୍ୱିତ କରୁଥିବା ବିଧିମାନଙ୍କର ବ୍ୟାବୃତ୍ତି .. ୧୩

୩୧ ଘ । ନିରସିତ

ପୃଷ୍ଠା

ସାଂବିଧାନିକ ପ୍ରତିକାର ଉପରେ ଅଧିକାର


| | | |
|---|---|---|
| ୩୨ । | ଏହି ଭାଗଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କର ପ୍ରବର୍ତ୍ତନ ପାଇଁ ପ୍ରତିକାର | ୧୩ |
| ୩୨ କ । | ନିରସିତ | |
| ୩୩ । | ଏହି ଭାଗଦ୍ୱାରା ପ୍ରଦତ୍ତ ଅଧିକାରମାନ ବାହିନୀମାନଙ୍କ ପ୍ରତି ଲାଗୁ ହେବାରେ ରୂପ ଭେଦ କରିବା ପାଇଁ ସଂସଦର କ୍ଷମତା । | ୧୩ |
| ୩୪ । | କୌଣସି କ୍ଷେତ୍ରରେ ସେନା ବିଧି ପ୍ରବୃତ୍ତ ଥିବା ସମୟରେ ଏହି ଭାଗ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କ ଉପରେ ନିର୍ବନ୍ଧନ । | ୧୪ |
| ୩୫ । | ଏହି ଭାଗର ଉପବନ୍ଧମାନଙ୍କୁ ପ୍ରଭାବୀ କରିବା ନିମିତ୍ତ ବିଧାନ | ୧୪ |


## ଭାଗ ୪

### ରାଜ୍ୟନୀତିର ନିର୍ଦ୍ଦେଶକ ତତ୍ତ୍ୱ


| | | |
|---|---|---|
| ୩୬ । | ସଂଜ୍ଞା | ୧୫ |
| ୩୭ । | ଏହି ଭାଗରେ ଅନ୍ତର୍ବିଷ୍ଟ ତତ୍ତ୍ୱମାନ ଲାଗୁ କରାଯିବା | ୧୫ |
| ୩୮ । | ଲୋକ କଲ୍ୟାଣର ଉନ୍ନତି ନିମିତ୍ତ ରାଜ୍ୟ ସାମାଜିକ ବ୍ୟବସ୍ଥା ସ୍ଥାପନା କରିବ | ୧୫ |
| ୩୯ । | ରାଜ୍ୟ ଦ୍ୱାରା ଅନୁସରଣୀୟ କେତେକ ନୀତିତତ୍ତ୍ୱ | ୧୫ |
| ୩୯ କ । | ସମାନ ନ୍ୟାୟ ଓ ମାଗଣା ବିଧିକ ସହାୟତା | ୧୫ |
| ୪୦ । | ଗ୍ରାମ ପଞ୍ଚାୟତମାନଙ୍କର ସଂଗଠନ | ୧୫ |
| ୪୧ । | କେତେକ ସ୍ଥଳରେ କାମ, ଶିକ୍ଷା ଓ ସରକାରୀ ସାହାଯ୍ୟ ପାଇବାର ଅଧିକାର | ୧୬ |
| ୪୨ । | କାର୍ଯ୍ୟର ନ୍ୟାଯ୍ୟ ଓ ମାନବୋଚିତ ଅବସ୍ଥା ନିମିତ୍ତ ତଥା ପ୍ରସୂତି ସହାୟତା ନିମିତ୍ତ ଉପବନ୍ଧ | ୧୬ |
| ୪୩ । | ଶ୍ରମିକମାନଙ୍କ ପାଇଁ ନିର୍ବାହ ମଜୁରୀ ପ୍ରଭୃତି | ୧୬ |
| ୪୩ କ । | ଉଦ୍ୟୋଗମାନଙ୍କର ପରିଚାଳନାରେ ଶ୍ରମିକ ଭାଗ ନେବା | ୧୬ |
| ୪୪ । | ନାଗରିକମାନଙ୍କ ନିମିତ୍ତ ଏକ ସମାନ ସିଭିଲ ସଂହିତା | ୧୬ |
| ୪୫ । | ପିଲାମାନଙ୍କ ପାଇଁ ଅବୈତନିକ ଓ ବାଧ୍ୟତାମୂଳକ ଶିକ୍ଷାର ଉପବଂଧ | ୧୬ |
| ୪୬ । | ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତିଙ୍କର ଓ ଅନ୍ୟ ଦୁର୍ବଳ ଶ୍ରେଣୀର ଶିକ୍ଷାଗତ ଓ ଆର୍ଥିକ ହିତର ଉନ୍ନତି ସାଧନ । | ୧୬ |
| ୪୭ । | ଆହାର ପୁଷ୍ଟିର ସ୍ତର ଓ ଜୀବନ ସ୍ତରର ତଥା ସାର୍ବଜନିକ ସ୍ୱାସ୍ଥ୍ୟର ଉନ୍ନତି କରିବା ନିମିତ୍ତ ରାଜ୍ୟର କର୍ତ୍ତବ୍ୟ । | ୧୬ |

ପୃଷ୍ଠା

୪୮ । କୃଷି ଓ ପଶୁପାଳନର ସଂଗଠନ ୧୭

୪୮ କ । ବାତାବରଣର ରକ୍ଷା ଓ ଉନ୍ନତି ତଥା ବନ ଓ ବନ୍ୟଜନ୍ତୁଙ୍କର ସୁରକ୍ଷା ୧୭

୪୯ । ସ୍ମାରକ ଓ ରାଷ୍ଟ୍ରୀୟ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଏବଂ ପଦାର୍ଥମାନଙ୍କର ସଂରକ୍ଷଣ ୧୭

୫୦ । କାର୍ଯ୍ୟପାଳିକାରୁ ନ୍ୟାୟପାଳିକାର ପୃଥକ୍‌କରଣ ୧୭

୫୧ । ଅନ୍ତର୍ରାଷ୍ଟ୍ରୀୟ ଶାନ୍ତି ଓ ସୁରକ୍ଷାର ଉନ୍ନତି ୧୭

## ଭାଗ ୪ କ

### ମୌଳିକ କର୍ତ୍ତବ୍ୟ

୫୧ କ । ମୌଳିକ କର୍ତ୍ତବ୍ୟ ୧୮

## ଭାଗ ୫

### ସଂଘ

### ଅଧ୍ୟାୟ ୧—କାର୍ଯ୍ୟପାଳିକା

### ରାଷ୍ଟ୍ରପତି ଏବଂ ଉପରାଷ୍ଟ୍ରପତି

୫୨ । ଭାରତର ରାଷ୍ଟ୍ରପତି ୧୯

୫୩ । ସଂଘର କାର୍ଯ୍ୟପାଳିକା କ୍ଷମତା ୧୯

୫୪ । ରାଷ୍ଟ୍ରପତି ନିର୍ବାଚନ ୧୯

୫୫ । ରାଷ୍ଟ୍ରପତି ନିର୍ବାଚନର ରୀତି ୧୯

୫୬ । ରାଷ୍ଟ୍ରପତିଙ୍କ ପଦାବଧି ୨୦

୫୭ । ପୁନର୍ନିର୍ବାଚନ ନିମିତ୍ତ ପାତ୍ରତା ୨୦

୫୮ । ରାଷ୍ଟ୍ରପତି ରୂପେ ନିର୍ବାଚିତ ହେବା ନିମିତ୍ତ ଯୋଗ୍ୟତା ୨୦

୫୯ । ରାଷ୍ଟ୍ରପତି ପଦର ସର୍ତ୍ତାବଳୀ ୨୧

୬୦ । ରାଷ୍ଟ୍ରପତିଙ୍କ ଦ୍ୱାରା ଶପଥ ବା ପ୍ରତିଜ୍ଞାନ ୨୧

୬୧ । ରାଷ୍ଟ୍ରପତିଙ୍କ ଉପରେ ମହାଭିଯୋଗ ନିମିତ୍ତ ପ୍ରକ୍ରିୟା ୨୧

୬୨ । ରାଷ୍ଟ୍ରପତି ପଦର ରିକ୍ତତା ପୂରଣ କରିବା ନିମିତ୍ତ ନିର୍ବାଚନ ସମୟ ଏବଂ ଆକସ୍ମିକ ରିକ୍ତତା ପୂରଣ ନିମିତ୍ତ ନିର୍ବାଚିତ ବ୍ୟକ୍ତିଙ୍କ ପଦାବଧି । ୨୨

ପୃଷ୍ଠା

୬୩ । ଭାରତର ଉପରାଷ୍ଟ୍ରପତି ୨୨

୬୪ । ଉପରାଷ୍ଟ୍ରପତି ପଦ ବଳରେ ରାଜ୍ୟ ସଭାର ସଭାପତି ହେବେ ୨୨

୬୫ । ରାଷ୍ଟ୍ରପତିଙ୍କ ପଦର ସାମୟିକ ରିକ୍ତତା ବା ତାଙ୍କର ଅନୁପସ୍ଥିତିରେ ଉପରାଷ୍ଟ୍ରପତିଙ୍କର ରାଷ୍ଟ୍ରପତି ରୂପେ କାର୍ଯ୍ୟ ସଂପାଦନ ବା ତାଙ୍କର କୃତ୍ୟ ନିର୍ବହନ । ୨୨

୬୬ । ଉପରାଷ୍ଟ୍ରପତି ନିର୍ବାଚନ ୨୩

୬୭ । ଉପରାଷ୍ଟ୍ରପତିଙ୍କ ପଦାବଧି ୨୩

୬୮ । ଉପରାଷ୍ଟ୍ରପତି ପଦର ରିକ୍ତତା ପୂରଣ କରିବା ନିମିତ୍ତ ନିର୍ବାଚନ ସମୟ ତଥା ଆକସ୍ମିକ ରିକ୍ତତା ପୂରଣ ନିମିତ୍ତ ନିର୍ବାଚିତ ବ୍ୟକ୍ତିଙ୍କ ପଦାବଧି । ୨୩

୬୯ । ଉପରାଷ୍ଟ୍ରପତିଙ୍କ ଦ୍ୱାରା ଶପଥ ବା ପ୍ରତିଜ୍ଞାନ ୨୪

୭୦ । ଅନ୍ୟାନ୍ୟ ଆକସ୍ମିକତାରେ ରାଷ୍ଟ୍ରପତିଙ୍କ କୃତ୍ୟ ନିର୍ବହନ ୨୪

୭୧ । ରାଷ୍ଟ୍ରପତି ଓ ଉପରାଷ୍ଟ୍ରପତିଙ୍କ ନିର୍ବାଚନ ସହିତ ସଂବଂଧିତ ବା ସଂପୃକ୍ତ ବିଷୟମାନ ୨୪

୭୨ । ରାଷ୍ଟ୍ରପତିଙ୍କର କ୍ଷମା ପ୍ରଦାନ ଆଦି ଏବଂ କେତେକ ସ୍ଥଳରେ ଦଣ୍ଡାଦେଶର ନିଲଂବନ ପରିହାର ବା ହ୍ରାସ କରିବା କ୍ଷମତା । ୨୪

୭୩ । ସଂଘର କାର୍ଯ୍ୟ ପାଳିକା କ୍ଷମତା ବିସ୍ତାର ୨୫

ମନ୍ତ୍ରୀ ପରିଷଦ

୭୪ । ରାଷ୍ଟ୍ରପତିଙ୍କୁ ସହାୟତା ଓ ମନ୍ତ୍ରଣା ଦେବା ନିମିତ୍ତ ମନ୍ତ୍ରୀ ପରିଷଦ ୨୫

୭୫ । ମନ୍ତ୍ରୀମାନଙ୍କ ସଂପର୍କରେ ଅନ୍ୟାନ୍ୟ ଉପବଂଧ ୨୫

ଭାରତର ଆଟର୍ଣ୍ଣୀ ଜେନେରାଲ

୭୬ । ଭାରତର ଆଟର୍ଣ୍ଣୀ ଜେନେରାଲ ୨୬

ସରକାରୀ କାର୍ଯ୍ୟର ସଂଚାଳନ

୭୭ । ଭାରତ ସରକାରଙ୍କ କାର୍ଯ୍ୟର ସଂଚାଳନ ୨୬

୭୮ । ରାଷ୍ଟ୍ରପତିଙ୍କୁ ସମ୍ବାଦ ଯୋଗାଇବା ପ୍ରଭୃତି ବିଷୟରେ ପ୍ରଧାନ ମନ୍ତ୍ରୀଙ୍କ କର୍ତ୍ତବ୍ୟ ୨୬

ପୃଷ୍ଠା

## ଅଧ୍ୟାୟ ୨—ସଂସଦ

### ସାଧାରଣ


୭୯ । ସଂସଦର ଗଠନ ୨୬

୮୦ । ରାଜ୍ୟସଭାର ରଚନା ୨୬

୮୧ । ଲୋକସଭାର ରଚନା ୨୭

୮୨ । ପ୍ରତ୍ୟେକ ଜନଗଣନାପରେ ପୁନଃସମାଯୋଜନ ୨୭

୮୩ । ସଂସଦର ସଦନମାନଙ୍କର କାଳାବଧି ୨୮

୮୪ । ସଂସଦର ସଦସ୍ୟହେବା ନିମିତ୍ତ ଯୋଗ୍ୟତା ୨୮

୮୫ । ସଂସଦର ସତ୍ର, ସତ୍ରାବସାନ ଓ ବିଘଟନ ୨୮

୮୬ । ସଦନମାନଙ୍କୁ ଅଭିଭାଷଣ ଦେବା ଓ ବାର୍ତ୍ତା ପ୍ରେରଣ କରିବାରେ ରାଷ୍ଟ୍ରପତିଙ୍କ ଅଧିକାର ୨୯

୮୭ । ରାଷ୍ଟ୍ରପତିଙ୍କ ବିଶେଷ ଅଭିଭାଷଣ ୨୯

୮୮ । ସଦନମାନଙ୍କ ସଂପର୍କରେ ମନ୍ତ୍ରୀ ଓ ଆଟର୍ଣ୍ଣୀ ଜେନେରାଲଙ୍କର ଅଧିକାର ୨୯


### ସଂସଦର ଅଫିସର


୮୯ । ରାଜ୍ୟ ସଭାର ସଭାପତି ଓ ଉପସଭାପତି ୨୯

୯୦ । ଉପସଭାପତି ପଦର ରିକ୍ତତା, ପଦତ୍ୟାଗ ଓ ପଦରୁ ଦୂରୀକରଣ ୨୯

୯୧ । ଉପସଭାପତି ବା ଅନ୍ୟ କୌଣସି ବ୍ୟକ୍ତି ସଭାପତି ପଦର କର୍ତ୍ତବ୍ୟ ପାଳନ କରିବା ବା ସଭାପତି ରୂପେ କାର୍ଯ୍ୟ କରିବାର କ୍ଷମତା । ୨୯

୯୨ । ସଭାପତି ବା ଉପସଭାପତିଙ୍କୁ ପଦରୁ ଦୂରୀକୃତ କରିବାର ସଂକଳ୍ପ ବିଚାରାଧୀନ ଥିବାବେଳେ ସେ ପୀଠାସୀନ ନ ହେବା । ୩୦

୯୩ । ଲୋକସଭାର ଅଧ୍ୟକ୍ଷ ଏବଂ ଉପାଧ୍ୟକ୍ଷ ୩୦

୯୪ । ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କର ପଦର ରିକ୍ତତା, ପଦତ୍ୟାଗ ଓ ପଦରୁ ଦୂରୀକରଣ ୩୦

୯୫ । ଅଧ୍ୟକ୍ଷ ପଦର କର୍ତ୍ତବ୍ୟ ପାଳନ କରିବା ବା ଅଧ୍ୟକ୍ଷ ରୂପେ କାର୍ଯ୍ୟ କରିବା ପାଇଁ ଉପାଧ୍ୟକ୍ଷ ବା ଅନ୍ୟ ବ୍ୟକ୍ତିଙ୍କର କ୍ଷମତା । ୩୦

୯୬ । ଅଧ୍ୟକ୍ଷ ବା ଉପାଧ୍ୟକ୍ଷଙ୍କୁ ପଦରୁ ଦୂରୀକୃତ କରିବାର ସଂକଳ୍ପ ବିଚାରାଧୀନ ଥିବାବେଳେ ସେ ପୀଠାସୀନ ନ ହେବା । ୩୦

ପୃଷ୍ଠା

୯୭ । ସଭାପତି ଓ ଉପସଭାପତି ଏବଂ ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କର ବେତନ ଓ ଭତ୍ତା — ୩୧

୯୮ । ସଂସଦର ସଚିବାଳୟ — ୩୧

କାର୍ଯ୍ୟ ସଞ୍ଚାଳନ

୯୯ । ସଦସ୍ୟଙ୍କ ଦ୍ୱାରା ଶପଥ ବା ପ୍ରତିଜ୍ଞାନ — ୩୧

୧୦୦ । ସଦନମାନଙ୍କରେ ଭୋଟଦାନ, ରିକ୍ତତା ଥିବା ସତ୍ତ୍ୱେ ସଦନମାନଙ୍କର କାର୍ଯ୍ୟ କରିବାର କ୍ଷମତା ଏବଂ କୋରମ । — ୩୧

ସଦସ୍ୟମାନଙ୍କର ଅଯୋଗ୍ୟତା

୧୦୧ । ସ୍ଥାନମାନଙ୍କର ରିକ୍ତତା — ୩୨

୧୦୨ । ସଦସ୍ୟତା ନିମିତ୍ତ ଅଯୋଗ୍ୟତା — ୩୨

୧୦୩ । ସଦସ୍ୟମାନଙ୍କ ଅଯୋଗ୍ୟତା ବିଷୟକ ପ୍ରଶ୍ନର ନିଷ୍ପତ୍ତି — ୩୩

୧୦୪ । ଅନୁଚ୍ଛେଦ ୯୯ ଅଧୀନରେ ଶପଥ ବା ପ୍ରତିଜ୍ଞାନ କରିବା ପୂର୍ବରୁ ଅଥବା ଯୋଗ୍ୟ ନ ଥାଇ ବା ଅଯୋଗ୍ୟ ହୋଇଥାଇ ବସିବା ଓ ଭୋଟ ଦେବା ନିମିତ୍ତ ଦଣ୍ଡ । — ୩୩

ସଂସଦ ଓ ତହିଁର ସଦସ୍ୟମାନଙ୍କର କ୍ଷମତା, ବିଶେଷାଧିକାର ଓ ଉନ୍ମୁକ୍ତି

୧୦୫ । ସଂସଦର ସଦନମାନଙ୍କର ତଥା ତହିଁର ସଦସ୍ୟମାନଙ୍କର ଏବଂ ସମିତିମାନଙ୍କର କ୍ଷମତା, ବିଶେଷାଧିକାର ଇତ୍ୟାଦି । — ୩୩

୧୦୬ । ସଦସ୍ୟମାନଙ୍କର ବେତନ ଓ ଭତ୍ତା .. — ୩୩

ବିଧାନ ପ୍ରକ୍ରିୟା

୧୦୭ । ବିଧେୟକମାନଙ୍କର ପୁରଃସ୍ଥାପନ ଏବଂ ପାରଣ ବିଷୟକ ଉପବନ୍ଧ — ୩୪

୧୦୮ । କେତେକ ସ୍ଥଳରେ ଉଭୟ ସଦନର ସଂଯୁକ୍ତ ବୈଠକ — ୩୪

୧୦୯ । ଧନ ବିଧେୟକ ସମ୍ପର୍କରେ ବିଶେଷ ପ୍ରକ୍ରିୟା .. — ୩୫

୧୧୦ । "ଧନ ବିଧେୟକ"ର ସଂଜ୍ଞା .. — ୩୬

୧୧୧ । ବିଧେୟକମାନଙ୍କୁ ସ୍ୱୀକୃତି ଦାନ — ୩୬

ବିତ୍ତୀୟ ବିଷୟରେ ପ୍ରକ୍ରିୟା

୧୧୨ । ବାର୍ଷିକ ବିତ୍ତୀୟ ବିବରଣୀ — ୩୭

୧୧୩ । ପ୍ରାକ୍‌କଳନ ସମ୍ପର୍କରେ ସଂସଦରେ ପ୍ରକ୍ରିୟା — ୩୮

୧୧୪ । ବିନିଯୋଗ ବିଧେୟକ — ୩୮

ପୃଷ୍ଠା

୧୧୫ । ଅନୁପୂରକ, ଅତିରିକ୍ତ ବା ଅଧିକ ଅନୁଦାନ ୩୯

୧୧୬ । ଲେଖାନୁଦାନ, ପ୍ରତ୍ୟାୟାନୁଦାନ ବା ବ୍ୟତିରିକ୍ତ ଅନୁଦାନ ୩୯

୧୧୭ । ବିତ୍ତୀୟ ବିଧେୟକ ସମ୍ବନ୍ଧରେ ବିଶେଷ ଉପବନ୍ଧ ୪୦

ପ୍ରକ୍ରିୟା ସାଧାରଣତଃ

୧୧୮ । ପ୍ରକ୍ରିୟାର ନିୟମ ୪୦

୧୧୯ । ସଂସଦରେ ବିତ୍ତୀୟ କାର୍ଯ୍ୟ ସମ୍ବନ୍ଧୀ ପ୍ରକ୍ରିୟାର ବିଧି ଦ୍ୱାରା ବିନିୟମନ ୪୦

୧୨୦ । ସଂସଦରେ ପ୍ରୟୋଗ କରାଯିବା ଭାଷା ୪୧

୧୨୧ । ସଂସଦରେ ଆଲୋଚନା ଉପରେ ନିର୍ବନ୍ଧନ ୪୧

୧୨୨ । ନ୍ୟାୟାଳୟ ସଂସଦର କାର୍ଯ୍ୟବାହୀର ଯାଞ୍ଚ କରିବ ନାହିଁ ୪୧

ଅଧ୍ୟାୟ ୩—ରାଷ୍ଟ୍ରପତିଙ୍କ ବିଧାୟିନୀ କ୍ଷମତା

୧୨୩ । ସଂସଦର ବିଶ୍ରାନ୍ତି କାଳରେ ରାଷ୍ଟ୍ରପତିଙ୍କର ଅର୍ଡିନାନ୍ସ ପ୍ରଖ୍ୟାପନ କ୍ଷମତା ୪୧

ଅଧ୍ୟାୟ ୪—ସଂଘର ନ୍ୟାୟପାଳିକା

୧୨୪ । ଉଚ୍ଚତମ ନ୍ୟାୟାଳୟର ସ୍ଥାପନା ଓ ଗଠନ ୪୨

୧୨୫ । ନ୍ୟାୟାଧୀଶଙ୍କର ବେତନ ଆଦି ୪୩

୧୨୬ । କାର୍ଯ୍ୟକାରୀ ମୁଖ୍ୟ ନ୍ୟାୟାଧିପତିଙ୍କ ନିଯୁକ୍ତି ୪୩

୧୨୭ । ଆଡ୍‌ହକ ନ୍ୟାୟାଧୀଶଙ୍କର ନିଯୁକ୍ତି ୪୩

୧୨୮ । ସେବା ନିବୃତ୍ତ ନ୍ୟାୟାଧୀଶମାନଙ୍କର ଉଚ୍ଚତମ ନ୍ୟାୟାଳୟର ବୈଠକରେ ଉପସ୍ଥିତି ୪୪

୧୨୯ । ଉଚ୍ଚତମ ନ୍ୟାୟାଳୟ ଅଭିଲେଖ ନ୍ୟାୟାଳୟ ହେବ ୪୪

୧୩୦ । ଉଚ୍ଚତମ ନ୍ୟାୟାଳୟର ସ୍ଥାନ ୪୪

୧୩୧ । ଉଚ୍ଚତମ ନ୍ୟାୟାଳୟର ଆରମ୍ଭିକ ଅଧିକାରିତା ୪୪

୧୩୧କ । ନିରସିତ

୧୩୨ । କେତେକ ସ୍ଥଳରେ ଉଚ୍ଚ ନ୍ୟାୟାଳୟରୁ ହେବା ଅପିଲରେ ଉଚ୍ଚତମ ନ୍ୟାୟାଳୟର ଅପିଲୀୟ ଅଧିକାରିତା.. ୪୪

ପୃଷ୍ଠା

୧୩୩ । ଉଚ୍ଚ ନ୍ୟାୟାଳୟମାନଙ୍କଠୁ ସିଭିଲ ବିଷୟକ ଅପିଲରେ ଉଚ୍ଚତମ ନ୍ୟାୟାଳୟର ଅପିଲୀୟ ଅଧିକାରିତା ୪୫

୧୩୪ । କ୍ରିମିନାଲ ବିଷୟ ସମ୍ବନ୍ଧରେ ଉଚ୍ଚତମ ନ୍ୟାୟାଳୟର ଅପିଲୀୟ ଅଧିକାରିତା ୪୫

୧୩୪ କ । ଉଚ୍ଚତମ ନ୍ୟାୟାଳୟକୁ ଅପିଲ ପାଇଁ ପ୍ରମାଣପତ୍ର ୪୫

୧୩୫ । ବିଦ୍ୟମାନ ବିଧି ଅଧୀନରେ ଫେଡ଼େରଲ ନ୍ୟାୟାଳୟର ଅଧିକାରିତା ଓ କ୍ଷମତା ଉଚ୍ଚତମ ନ୍ୟାୟାଳୟ ଦ୍ୱାରା ପ୍ରୟୋଗ କରାଯାଇ ପାରିବା । ୪୬

୧୩୬ । ଅପିଲ କରିବା ନିମିତ୍ତ ଉଚ୍ଚତମ ନ୍ୟାୟାଳୟର ବିଶେଷ ଅନୁମତି ୪୬

୧୩୭ । ଉଚ୍ଚତମ ନ୍ୟାୟାଳୟ ଦ୍ୱାରା ନିର୍ଣ୍ଣୟ ବା ଆଦେଶର ପୁନର୍ବିଲୋକନ ୪୬

୧୩୮ । ଉଚ୍ଚତମ ନ୍ୟାୟାଳୟର ଅଧିକାରିତାର ପରିବର୍ଦ୍ଧନ ୪୬

୧୩୯ । ଉଚ୍ଚତମ ନ୍ୟାୟାଳୟକୁ କେତେକ ରୀଟ୍ ବାହାର କରିବାର କ୍ଷମତା ପ୍ରଦାନ ୪୬

୧୩୯ କ । କେତେକ ମାମଲାର ଅନ୍ତରଣ ୪୬

୧୪୦ । ଉଚ୍ଚତମ ନ୍ୟାୟାଳୟର ଆନୁଷଙ୍ଗିକ କ୍ଷମତାମାନ ୪୭

୧୪୧ । ଉଚ୍ଚତମ ନ୍ୟାୟାଳୟ ଦ୍ୱାରା ଘୋଷିତ ବିଧି ସମସ୍ତ ନ୍ୟାୟାଳୟ ଉପରେ ବାଧ୍ୟକର ହେବ ୪୭

୧୪୨ । ଉଚ୍ଚତମ ନ୍ୟାୟାଳୟର ଡ଼ିକ୍ରୀ ଓ ଆଦେଶମାନଙ୍କର ପ୍ରବର୍ତ୍ତନ ତଥା ପ୍ରକଟନ ଆଦି ନିମିତ୍ତ ଆଦେଶ.. ୪୭

୧୪୩ । ରାଷ୍ଟ୍ରପତିଙ୍କର ଉଚ୍ଚତମ ନ୍ୟାୟାଳୟ ସହିତ ପରାମର୍ଶ କରିବାର କ୍ଷମତା ୪୭

୧୪୪ । ସିଭିଲ ଓ ନ୍ୟାୟିକ ପ୍ରାଧିକାରୀ ଉଚ୍ଚତମ ନ୍ୟାୟାଳୟର ସାହାଯ୍ୟକାରୀ ଭାବେ କାର୍ଯ୍ୟ କରିବେ ୪୮

୧୪୪ ! ନିରସିତ

୧୪୫ । ନ୍ୟାୟାଳୟର ନିୟମ ଆଦି ୪୮

୧୪୬ । ଉଚ୍ଚତମ ନ୍ୟାୟାଳୟର ଅଫିସର ଓ ସେବକ ଏବଂ ବ୍ୟୟ ୪୯

୧୪୭ । ନିର୍ବଚନ ୪୯

## ଅଧ୍ୟାୟ ୫—ଭାରତର କମ୍ପ୍ଟ୍ରୋଲର ଅଡ଼ିଟର ଜେନେରାଲ

୧୪୮ । ଭାରତର କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲ ୫୦

୧୪୯ । କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କର କର୍ତ୍ତବ୍ୟ ଓ କ୍ଷମତା ୫୦

୧୫୦ । ସଂଘ ଓ ରାଜ୍ୟମାନଙ୍କର ହିସାବର ପ୍ରପତ୍ର ୫୦

୧୫୧ । ଅଡ଼ିଟ ରିପୋର୍ଟ ୫୦

ପୃଷ୍ଠା

## ଭାଗ ୬

### ରାଜ୍ୟ

#### ଅଧ୍ୟାୟ ୧—ସାଧାରଣ

୧୫୨ । ସଂଜ୍ଞା ୫୧

#### ଅଧ୍ୟାୟ ୨—କାର୍ଯ୍ୟପାଳିକା

ରାଜ୍ୟପାଳ

୧୫୩ । ରାଜ୍ୟମାନଙ୍କର ରାଜ୍ୟପାଳ ୫୧

୧୫୪ । ରାଜ୍ୟର କାର୍ଯ୍ୟପାଳିକା କ୍ଷମତା ୫୧

୧୫୫ । ରାଜ୍ୟପାଳଙ୍କ ନିଯୁକ୍ତି ୫୧

୧୫୬ । ରାଜ୍ୟପାଳଙ୍କ ପଦାବଧି ୫୧

୧୫୭ । ରାଜ୍ୟପାଳ ରୂପେ ନିଯୁକ୍ତ ହେବାର ଯୋଗ୍ୟତା ୫୧

୧୫୮ । ରାଜ୍ୟପାଳଙ୍କ ପଦର ସର୍ତ୍ତାବଳୀ ୫୨

୧୫୯ । ରାଜ୍ୟପାଳଙ୍କ ଦ୍ୱାରା ଶପଥ ବା ପ୍ରତିଜ୍ଞାନ ୫୨

୧୬୦ । କେତେକ ଆକସ୍ମିକତାରେ ରାଜ୍ୟପାଳଙ୍କ କୃତ୍ୟର ନିର୍ବହନ ୫୨

୧୬୧ । କେତେକ ସ୍ଥଳରେ କ୍ଷମା ଦାନ ଆଦି ତଥା ଦଣ୍ଡାଦେଶର ନିଲମ୍ବନ, ପରିହାର ବା ହ୍ରାସକରଣ ନିମିତ୍ତ ରାଜ୍ୟପାଳଙ୍କର କ୍ଷମତା । ୫୨

୧୬୨ । ରାଜ୍ୟର କାର୍ଯ୍ୟପାଳିକା କ୍ଷମତା ବିସ୍ତାର ୫୩

ମନ୍ତ୍ରୀ ପରିଷଦ

୧୬୩ । ରାଜ୍ୟପାଳଙ୍କୁ ସହାୟତା ଓ ମନ୍ତ୍ରଣା ଦେବା ନିମିତ୍ତ ମନ୍ତ୍ରୀ ପରିଷଦ ୫୩

୧୬୪ । ମନ୍ତ୍ରୀମାନଙ୍କ ସମ୍ବନ୍ଧରେ ଅନ୍ୟାନ୍ୟ ଉପବନ୍ଧ ୫୩

ରାଜ୍ୟ ନିମିତ୍ତ ଆଡ୍‌ଭୋକେଟ ଜେନେରାଲ

୧୬୫ । ରାଜ୍ୟ ନିମିତ୍ତ ଆଡ୍‌ଭୋକେଟ ଜେନେରାଲ ୫୩

ସରକାରୀ କାର୍ଯ୍ୟର ସଞ୍ଚାଳନ

୧୬୬ । ରାଜ୍ୟ ସରକାରଙ୍କର କାର୍ଯ୍ୟର ସଞ୍ଚାଳନ ୫୪

୧୬୭ । ରାଜ୍ୟପାଳଙ୍କୁ ସମ୍ବାଦ ଯୋଗାଇବା ପ୍ରଭୃତି ବିଷୟରେ ମୁଖ୍ୟମନ୍ତ୍ରୀଙ୍କ କର୍ତ୍ତବ୍ୟ ୫୪

ପୃଷ୍ଠା

## ଅଧ୍ୟାୟ ୩—ରାଜ୍ୟ ବିଧାନମଣ୍ଡଳ

### ସାଧାରଣ


୧୬୮ । ରାଜ୍ୟମାନଙ୍କରେ ବିଧାନ ମଣ୍ଡଳ ଗଠନ — ୫୪

୧୬୯ । ରାଜ୍ୟମାନଙ୍କରେ ବିଧାନ ପରିଷଦର ଲୋପ ବା ସୃଷ୍ଟି — ୫୫

୧୭୦ । ବିଧାନ ସଭାମାନଙ୍କର ଗଠନ — ୫୫

୧୭୧ । ବିଧାନ ପରିଷଦମାନଙ୍କର ଗଠନ — ୫୬

୧୭୨ । ରାଜ୍ୟ ବିଧାନ ମଣ୍ଡଳମାନଙ୍କର କାଳାବଧି — ୫୭

୧୭୩ । ରାଜ୍ୟ ବିଧାନ ମଣ୍ଡଳର ସଦସ୍ୟ ହେବା ନିମିତ୍ତ ଯୋଗ୍ୟତା — ୫୭

୧୭୪ । ରାଜ୍ୟ ବିଧାନ ମଣ୍ଡଳର ସତ୍ର, ସତ୍ରାବସାନ ଓ ବିଘଟନ — ୫୭

୧୭୫ । ସଦନ ବା ସଦନମାନଙ୍କୁ ଅଭିଭାଷଣ ଦେବା ଏବଂ ବାର୍ତ୍ତା ପ୍ରେରଣ କରିବାରେ ରାଜ୍ୟପାଳଙ୍କ ଅଧିକାର । — ୫୭

୧୭୬ । ରାଜ୍ୟପାଳଙ୍କ ବିଶେଷ ଅଭିଭାଷଣ — ୫୮

୧୭୭ । ସଦନମାନଙ୍କ ସଂପର୍କରେ ମନ୍ତ୍ରୀ ଏବଂ ଆଡ୍‌ଭୋକେଟ୍ ଜେନେରାଲଙ୍କର ଅଧିକାର — ୫୮


### ରାଜ୍ୟ ବିଧାନମଣ୍ଡଳର ଅଫିସର


୧୭୮ । ବିଧାନ ସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ — ୫୮

୧୭୯ । ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ପଦର ରିକ୍ତତା, ପଦତ୍ୟାଗ ଓ ପଦରୁ ଦୂରୀକରଣ — ୫୮

୧୮୦ । ଅଧ୍ୟକ୍ଷ ପଦର କର୍ତ୍ତବ୍ୟ ପାଳନ କରିବା ବା ଅଧ୍ୟକ୍ଷ ରୂପେ କାର୍ଯ୍ୟ କରିବା ପାଇଁ ଉପାଧ୍ୟକ୍ଷ ବା ଅନ୍ୟ ବ୍ୟକ୍ତିଙ୍କର କ୍ଷମତା । — ୫୮

୧୮୧ । ଅଧ୍ୟକ୍ଷ ବା ଉପାଧ୍ୟକ୍ଷଙ୍କୁ ଦୂରୀକୃତ କରିବାର ସଂକଳ୍ପ ବିଚାରାଧୀନ ଥିବା ବେଳେ ସେ ପୀଠାସୀନ ନହେବା । — ୫୯

୧୮୨ । ବିଧାନ ପରିଷଦର ସଭାପତି ଓ ଉପସଭାପତି — ୫୯

୧୮୩ । ସଭାପତି ଓ ଉପସଭାପତି ପଦ ରିକ୍ତ କରିବା, ପଦତ୍ୟାଗ ଓ ପଦରୁ ଦୂରୀକରଣ — ୫୯

୧୮୪ । ଉପସଭାପତି ବା ଅନ୍ୟ ବ୍ୟକ୍ତିଙ୍କର ସଭାପତି ପଦର କର୍ତ୍ତବ୍ୟ ପାଳନ କରିବା ଅଥବା ସଭାପତି ରୂପେ କାର୍ଯ୍ୟ କରିବାର କ୍ଷମତା । — ୫୯

ପୃଷ୍ଠା

୧୮୫ । ସଭାପତି ବା ଉପସଭାପତିଙ୍କୁ ପଦରୁ ଦୂରୀକୃତ କରିବାର ସଂକଳ୍ପ ବିଗ୍ଭରାଧୀନ ଥିବା ବେଳେ ସେ ପୀଠାସୀନ ନ ହେବା । ୫୯

୧୮୬ । ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ଏବଂ ସଭାପତି ଓ ଉପସଭାପତିଙ୍କର ବେତନ ଓ ଭତ୍ତା ୬୦

୧୮୭ । ରାଜ୍ୟ ବିଧାନ ମଣ୍ଡଳର ସଚିବାଳୟ ୬୦

କାର୍ଯ୍ୟ ସଂଚାଳନ

୧୮୮ । ସଦସ୍ୟଙ୍କ ଦ୍ୱାରା ଶପଥ ବା ପ୍ରତିଜ୍ଞାନ ୬୦

୧୮୯ । ସଦନମାନଙ୍କରେ ଭୋଟ ଦାନ, ରିକ୍ତତା ସତ୍ତ୍ୱେ ସଦନମାନଙ୍କର କାର୍ଯ୍ୟ କରିବାର କ୍ଷମତା ୬୦

ସଦସ୍ୟମାନଙ୍କର ଅଯୋଗ୍ୟତା

୧୯୦ । ସ୍ଥାନମାନଙ୍କର ରିକ୍ତତା ୬୧

୧୯୧ । ସଦସ୍ୟତା ନିମିତ୍ତ ଅଯୋଗ୍ୟତା ୬୧

୧୯୨ । ସଦସ୍ୟମାନଙ୍କର ଅଯୋଗ୍ୟତା ବିଷୟକ ପ୍ରଶ୍ନ ଉପରେ ବିନିଶ୍ଚୟ ୬୨

୧୯୩ । ଅନୁଚ୍ଛେଦ ୧୮୮ ଅଧୀନରେ ଶପଥ ବା ପ୍ରତିଜ୍ଞାନ କରିବା ପୂର୍ବରୁ ଅଥବା ଯୋଗ୍ୟ ନ ଥାଇ ବା ଅଯୋଗ୍ୟ ହୋଇଥାଇ ବସିବା ଏବଂ ଭୋଟ ଦେବା ନିମିତ୍ତ ଦଣ୍ଡ । ୬୨

ରାଜ୍ୟ ବିଧାନ ମଣ୍ଡଳ ଏବଂ ତହିଁର ସଦସ୍ୟମାନଙ୍କର କ୍ଷମତା, ବିଶେଷାଧିକାର ଏବଂ ଉନ୍ମୁକ୍ତି

୧୯୪ । ବିଧାନ ମଣ୍ଡଳର ସଦନମାନଙ୍କର ଏବଂ ତହିଁର ସଦସ୍ୟମାନଙ୍କର ଓ ସମିତିମାନଙ୍କର କ୍ଷମତା, ବିଶେଷାଧିକାର ଇତ୍ୟାଦି । ୬୨

୧୯୫ । ସଦସ୍ୟମାନଙ୍କର ବେତନ ଓ ଭତ୍ତା ୬୩

ବିଧାନ ପ୍ରକ୍ରିୟା

୧୯୬ । ବିଧେୟକମାନଙ୍କର ପୁରଃସ୍ଥାପନ ଓ ପାରଣ ବିଷୟରେ ଉପବନ୍ଧ ୬୩

୧୯୭ । ଧନ ବିଧେୟକ ଭିନ୍ନ ଅନ୍ୟ ବିଧେୟକମାନଙ୍କ ବିଷୟରେ ବିଧାନ ପରିଷଦର କ୍ଷମତା ଉପରେ ନିର୍ବନ୍ଧନ । ୬୩

୧୯୮ । ଧନ ବିଧେୟକ ସଂପର୍କରେ ବିଶେଷ ପ୍ରକ୍ରିୟା ୬୪

୧୯୯ । ଧନ ବିଧେୟକର ସଂଜ୍ଞା ୬୪

୨୦୦ । ବିଧେୟକମାନଙ୍କୁ ସ୍ୱୀକୃତି ୬୫

୨୦୧ । ବିଗ୍ଭରାର୍ଥ ଆରକ୍ଷିତ ବିଧେୟକ ୬୫

ପୃଷ୍ଠା

ବିତ୍ତୀୟ ବିଷୟରେ କାର୍ଯ୍ୟବିଧି

୨୦୨ । ବାର୍ଷିକ ବିତ୍ତୀୟ ବିବରଣୀ ୬୬

୨୦୩ । ପ୍ରାକ୍‌କଳନ ସଂପର୍କରେ ବିଧାନ ମଣ୍ଡଳରେ କାର୍ଯ୍ୟବିଧି ୬୬

୨୦୪ । ବିନିଯୋଗ ବିଧେୟକ ୬୬

୨୦୫ । ଅନୁପୂରକ, ଅତିରିକ୍ତ ବା ଅଧିକ ଅନୁଦାନ ୬୭

୨୦୬ । ହିସାବ ଅନୁଦାନ ପ୍ରତ୍ୟୟାନୁଦାନ ଓ ବ୍ୟତିରିକ୍ତ ଅନୁଦାନ ପାଇଁ ଭୋଟ ଦାନ ୬୭

୨୦୭ । ବିତ୍ତୀୟ ବିଧେୟକ ସମ୍ବନ୍ଧରେ ବିଶେଷ ଉପବଂଧ ୬୮

ପ୍ରକ୍ରିୟା ସାଧାରଣତଃ

୨୦୮ । ପ୍ରକ୍ରିୟାର ନିୟମ ୬୮

୨୦୯ । ରାଜ୍ୟ ବିଧାନ ମଣ୍ଡଳରେ ବିଧି ଦ୍ୱାରା ବିତ୍ତୀୟ କାର୍ଯ୍ୟ ସମ୍ବନ୍ଧୀ ପ୍ରକ୍ରିୟାର ବିନିୟମନ ୬୯

୨୧୦ । ବିଧାନ ମଣ୍ଡଳରେ ପ୍ରୟୋଗ କରାଯିବା ଭାଷା ୬୯

୨୧୧ । ବିଧାନ ମଣ୍ଡଳରେ ଆଲୋଚନା ଉପରେ ନିର୍ବନ୍ଧନ ୬୯

୨୧୨ । ନ୍ୟାୟାଳୟ ବିଧାନ ମଣ୍ଡଳର କାର୍ଯ୍ୟବାହୀର କାର୍ଯ୍ୟ ଯାଞ୍ଚ କରିବ ନାହିଁ ୬୯

ଅଧ୍ୟାୟ ୪—ରାଜ୍ୟପାଳଙ୍କ ବିଧାୟିନୀ କ୍ଷମତା

୨୧୩ । ବିଧାନ ମଣ୍ଡଳର ବିଶ୍ରାନ୍ତିକାଳରେ ରାଜ୍ୟପାଳଙ୍କର ଅର୍ଡିନାନ୍‌ସ ପ୍ରଖ୍ୟାପନ କ୍ଷମତା ୬୯

ଅଧ୍ୟାୟ ୫—ରାଜ୍ୟମାନଙ୍କରେ ଉଚ୍ଚ ନ୍ୟାୟାଳୟ

୨୧୪ । ରାଜ୍ୟମାନଙ୍କ ନିମିତ୍ତ ଉଚ୍ଚ ନ୍ୟାୟାଳୟ ୭୦

୨୧୫ । ଉଚ୍ଚ ନ୍ୟାୟାଳୟ ଅଭିଲେଖ ନ୍ୟାୟାଳୟ ହେବ ୭୦

୨୧୬ । ଉଚ୍ଚନ୍ୟାୟାଳୟର ଗଠନ ୭୧

୨୧୭ । ଉଚ୍ଚନ୍ୟାୟାଳୟର ନ୍ୟାୟାଧୀଶଙ୍କର ନିଯୁକ୍ତି ଓ ତାହାଙ୍କ ପଦର ସର୍ତ୍ତ ୭୧

୨୧୮ । **ଉଚ୍ଚତମ** ନ୍ୟାୟାଳୟ ସମ୍ବନ୍ଧୀୟ କୌଣସି ଉପବନ୍ଧ ଉଚ୍ଚ ନ୍ୟାୟାଳୟ ସମ୍ବନ୍ଧରେ ଲଗୁହେବ। ୭୨

ପୃଷ୍ଠା

୨୧୯ । ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶଙ୍କ ଶପଥ ବା ପ୍ରତିଜ୍ଞାନ ୭୨

୨୨୦ । ସ୍ଥାୟୀ ନ୍ୟାୟାଧୀଶ ହେବା ପରେ ବିଧି ବୃତ୍ତି ଉପରେ ନିର୍ବନ୍ଧନ ୭୨

୨୨୧ । ନ୍ୟାୟାଧୀଶଙ୍କର ବେତନ ୭୨

୨୨୨ । ଏକ ନ୍ୟାୟାଳୟରୁ ଅନ୍ୟ ନ୍ୟାୟାଳୟକୁ କୌଣସି ନ୍ୟାୟାଧୀଶଙ୍କର ସ୍ଥାନାନ୍ତରଣ ୭୩

୨୨୩ । କାର୍ଯ୍ୟକାରୀ ମୁଖ୍ୟନ୍ୟାୟାଧିପତିଙ୍କର ନିଯୁକ୍ତି ୭୩

୨୨୪ । ଅତିରିକ୍ତ ଓ କାର୍ଯ୍ୟକାରୀ ନ୍ୟାୟାଧୀଶମାନଙ୍କ ନିଯୁକ୍ତି ୭୩

୨୨୪କ । ଉଚ୍ଚ ନ୍ୟାୟାଳୟମାନଙ୍କର ବୈଠକମାନଙ୍କରେ ଅବସରପ୍ରାପ୍ତ ନ୍ୟାୟାଧୀଶମାନଙ୍କର ନିଯୁକ୍ତି ୭୩

୨୨୫ । ବିଦ୍ୟମାନ ଉଚ୍ଚ ନ୍ୟାୟାଳୟମାନଙ୍କର ଅଧିକାରିତା ୭୪

୨୨୬ । କୌଣସି ରିଟ୍ ବାହାର କରିବା ନିମିତ୍ତ ଉଚ୍ଚ ନ୍ୟାୟାଳୟର କ୍ଷମତା ୭୪

୨୨୬କ । ନିରସିତ

୨୨୭ । ନ୍ୟାୟାଳୟ ଉପରେ ଅଧୀକ୍ଷଣ ନିମିତ୍ତ ଉଚ୍ଚ ନ୍ୟାୟାଳୟର କ୍ଷମତା ୭୫

୨୨୮ । ଉଚ୍ଚନ୍ୟାୟାଳୟକୁ କେତେକ ମାମଲାର ଅନ୍ତରଣ ୭୫

୨୨୮କ ।ନିରସିତ

୨୨୯ । ଉଚ୍ଚ ନ୍ୟାୟାଳୟର ଅଫିସର ଓ ସେବକ ଏବଂ ବ୍ୟୟ ୭୫

୨୩୦ । ସଂଘ ରାଜ୍ୟକ୍ଷେତ୍ର ଉପରେ ଉଚ୍ଚ ନ୍ୟାୟାଳୟମାନଙ୍କର ଅଧିକାରିତାର ବିସ୍ତାର ୭୬

୨୩୧ । ଦୁଇ ବା ଅଧିକ ରାଜ୍ୟ ନିମିତ୍ତ ଗୋଟିଏ ସାଧାରଣ ଉଚ୍ଚ ନ୍ୟାୟାଳୟ ସ୍ଥାପନା ୭୬

୨୩୨ । ନିରସିତ

## ଅଧ୍ୟାୟ ୬—ଅଧୀନସ୍ଥ ନ୍ୟାୟାଳୟ

୨୩୩ । ଜିଲ୍ଲା ନ୍ୟାୟାଳୟରେ ନ୍ୟାୟାଧୀଶଙ୍କର ନିଯୁକ୍ତି ୭୭

୨୩୩କ । କେତେକ ଜିଲ୍ଲା ନ୍ୟାୟାଧୀଶଙ୍କ ନିଯୁକ୍ତିର ଏବଂ ସେମାନଙ୍କ ଦ୍ୱାରା ପ୍ରଦତ୍ତ ନିର୍ଣ୍ଣୟର ବିଧିମାନ୍ୟକରଣ । ୭୭

୨୩୪ । ଜିଲ୍ଲା ନ୍ୟାୟାଧୀଶ ଭିନ୍ନ ଅନ୍ୟ ବ୍ୟକ୍ତିଙ୍କର ନ୍ୟାୟିକ ସେବାରେ ଭର୍ତ୍ତି ୭୮

୨୩୫ । ଅଧୀନସ୍ଥ ନ୍ୟାୟାଳୟମାନଙ୍କର ନିୟନ୍ତ୍ରଣ ୭୮

୨୩୬ । ନିର୍ବଚନ ୭୮

୨୩୭ । କୌଣସି ଶ୍ରେଣୀର ବା ଶ୍ରେଣୀମାନଙ୍କର ମାଜିଷ୍ଟ୍ରେଟମାନଙ୍କ ପ୍ରତି ଏହି ଅଧ୍ୟାୟର ଉପବନ୍ଧମାନଙ୍କର ପ୍ରୟୋଗ । ୭୮

ପୃଷ୍ଠା

## ଭାଗ ୭

୨୩୮ । ନିରସିତ

## ଭାଗ ୮

### ସଂଘ ରାଜ୍ୟକ୍ଷେତ୍ର

୨୩୯ । ସଂଘ ରାଜ୍ୟକ୍ଷେତ୍ରମାନଙ୍କର ପ୍ରଶାସନ ୮୦

୨୩୯କ । କେତେକ ସଂଘ ରାଜ୍ୟକ୍ଷେତ୍ର ପାଇଁ ସ୍ଥାନୀୟ ବିଧାନ ମଣ୍ଡଳ ବା ମନ୍ତ୍ରୀ ପରିଷଦ ବା ଉଭୟର ସୃଷ୍ଟି ୮୦

୨୩୯ଖ । ବିଧାନମଣ୍ଡଳର ବିରତି ସମୟରେ ଅର୍ଡିନାନ୍ସ ପ୍ରଖ୍ୟାପିତ କରିବା ପାଇଁ ପ୍ରଶାସକଙ୍କ କ୍ଷମତା ୮୦

୨୪୦ । କେତେକ ସଂଘ ରାଜ୍ୟକ୍ଷେତ୍ର ପାଇଁ ରାଷ୍ଟ୍ରପତିଙ୍କର ବିନିୟମ ପ୍ରଣୟନ କ୍ଷମତା ୮୧

୨୪୧ । ସଂଘ ରାଜ୍ୟକ୍ଷେତ୍ରମାନଙ୍କ ନିମିତ୍ତ ଉଚ୍ଚ ନ୍ୟାୟାଳୟ ୮୧

୨୪୨ । ନିରସିତ

## ଭାଗ ୯

୨୪୩ । ନିରସିତ ।

## ଭାଗ ୧୦

### ଅନୁସୂଚିତ ଏବଂ ଜନଜାତି କ୍ଷେତ୍ର

୨୪୪ । ଅନୁସୂଚିତ କ୍ଷେତ୍ର ଏବଂ ଜନଜାତି କ୍ଷେତ୍ରମାନଙ୍କର ପ୍ରଶାସନ ୮୪

୨୪୪କ । ଆସାମର କେତେକ ଜନଜାତି କ୍ଷେତ୍ରକୁ ନେଇ ଗୋଟିଏ ସ୍ୱାୟତ୍ତଶାସୀ ରାଜ୍ୟରଗଠନ ଓ ସେଥି ନିମିତ୍ତ ଉଭୟ ସ୍ଥାନୀୟ ବିଧାନ ମଣ୍ଡଳ ବା ମନ୍ତ୍ରୀ ପରିଷଦର ସୃଷ୍ଟି । ୮୪

## ଭାଗ ୧୧

### ସଂଘ ଏବଂ ରାଜ୍ୟମାନଙ୍କ ମଧ୍ୟରେ ସମ୍ବନ୍ଧ

### ଅଧ୍ୟାୟ ୧—ବିଧାୟୀ ସମ୍ବନ୍ଧ

#### ବିଧାୟିନୀ କ୍ଷମତା ସମୂହର ବିତରଣ

୨୪୫ । ସଂସଦ ଦ୍ୱାରା ଓ ରାଜ୍ୟମାନଙ୍କର ବିଧାନ ମଣ୍ଡଳମାନଙ୍କ ଦ୍ୱାରା ପ୍ରଣୀତ ବିଧିମାନଙ୍କର ବିସ୍ତାର ୮୫

୨୪୬ । ସଂସଦ ଦ୍ୱାରା ଓ ରାଜ୍ୟମାନଙ୍କର ବିଧାନମଣ୍ଡଳମାନଙ୍କ ଦ୍ୱାରା ପ୍ରଣୀତ ବିଧିମାନଙ୍କର ବିଷୟ ବସ୍ତୁ .. ୮୫

୨୪୭ । କେତେକ ଅତିରିକ୍ତ ନ୍ୟାୟାଳୟ ସ୍ଥାପନ ନିମିତ୍ତ ଉପବନ୍ଧ କରିବା ପାଇଁ ସଂସଦର କ୍ଷମତା ୮୫

୨୪୮ । ଅବଶିଷ୍ଟ ବିଧାନ କ୍ଷମତା ୮୫

ପୃଷ୍ଠା

୨୪୯ । ରାଷ୍ଟ୍ରୀୟ ହିତ ନିମିତ୍ତ ରାଜ୍ୟସୂଚୀର ବିଷୟ ସଂପର୍କରେ ବିଧି ପ୍ରଣୟନ କରିବା ପାଇଁ ସଂସଦର କ୍ଷମତା.. ୮୬

୨୫୦ । ଜରୁରୀ କାଳୀନ ଉଦ୍‌ଘୋଷଣା ପ୍ରବର୍ତ୍ତନ ଥିବାବେଳେ ରାଜ୍ୟସୂଚୀର ବିଷୟ ସଂପର୍କରେ ବିଧି ପ୍ରଣୟନ କରିବା ନିମିତ୍ତ ସଂସଦର କ୍ଷମତା । ୮୬

୨୫୧ । ଅନୁଚ୍ଛେଦ ୨୪୯ ଓ ୨୫୦ ଅଧୀନରେ ସଂସଦ ଦ୍ୱାରା ପ୍ରଣୀତ ବିଧି ଏବଂ ରାଜ୍ୟ ବିଧାନମଣ୍ଡଳମାନଙ୍କ ଦ୍ୱାରା ପ୍ରଣୀତ ବିଧି ମଧ୍ୟରେ ଅସଙ୍ଗତି । ୮୬

୨୫୨ । ଦୁଇ ବା ଅଧିକ ରାଜ୍ୟର ସମ୍ମତିରେ ସେମାନଙ୍କ ପାଇଁ ବିଧାନ ପ୍ରଣୟନ ନିମିତ୍ତ ସଂସଦର କ୍ଷମତା ଏବଂ ଅନ୍ୟ କୌଣସି ରାଜ୍ୟ ଦ୍ୱାରା ସେପରି ବିଧାନର ପରିଗ୍ରହଣ । ୮୭

୨୫୩ । ଅନ୍ତର୍ରାଷ୍ଟ୍ରୀୟ କରାରମାନଙ୍କୁ ପ୍ରଭାବୀ କରିବା ନିମିତ୍ତ ବିଧାନ ୮୭

୨୫୪ । ସଂସଦ ପ୍ରଣୀତ ବିଧି ଏବଂ ରାଜ୍ୟ ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ ବିଧି ମଧ୍ୟରେ ଅସଙ୍ଗତି ୮୭

୨୫୫ । ସୁପାରିଶ ଏବଂ ପୂର୍ବ ମଞ୍ଜୁରୀର ଆବଶ୍ୟକତାମାନ ପ୍ରକ୍ରିୟାଗତ ବିଷୟରୂପେ ହିଁ ବିବେଚିତ ହେବ ୮୭

ଅଧ୍ୟାୟ ୨-ପ୍ରଶାସନିକ ସମ୍ବନ୍ଧ

ସାଧାରଣ

୨୫୬ । ସଂଘ ଏବଂ ରାଜ୍ୟମାନଙ୍କ ନିମିତ୍ତ ବାଧ୍ୟତା ୮୮

୨୫୭ । କେତେକ ସ୍ଥଳରେ ସଂଘ ଦ୍ୱାରା ରାଜ୍ୟମାନଙ୍କର ନିୟନ୍ତ୍ରଣ ୮୮

୨୫୭କ । ନିରସିତ

୨୫୮ । କେତେକସ୍ଥଳରେ ରାଜ୍ୟମାନଙ୍କୁ କ୍ଷମତା ପ୍ରଦାନ ଆଦି ନିମିତ୍ତ ସଂଘର କ୍ଷମତା ୮୮

୨୫୮କ । ସଂଘଠାରେ କୃତ୍ୟମାନ ନ୍ୟସ୍ତ କରିବା ନିମିତ୍ତ ରାଜ୍ୟମାନଙ୍କର କ୍ଷମତା ୮୯

୨୫୯ । ନିରସିତ

୨୬୦ । ଭାରତ ବାହାରେ ଥିବା ରାଜ୍ୟକ୍ଷେତ୍ର ସମ୍ବନ୍ଧରେ ସଂଘର ଅଧିକାରିତା ୮୯

୨୬୧ । ସାର୍ବଜନିକ କାର୍ଯ୍ୟ, ଅଭିଲେଖ ଏବଂ ନ୍ୟାୟିକ କାର୍ଯ୍ୟବାହୀ ୮୯

ଜଳ ସମ୍ବନ୍ଧୀୟ ବିବାଦ

୨୬୨ । ଅନ୍ତର୍ରାଜ୍ୟସ୍ଥ ନଦୀ ବା ନଦୀ ଉପତ୍ୟକାର ଜଳ ସମ୍ବନ୍ଧୀୟ ବିବାଦମାନଙ୍କର ନ୍ୟାୟ ନିର୍ଣ୍ଣୟନ ୮୯

ରାଜ୍ୟମାନଙ୍କର ମଧ୍ୟରେ ସମନ୍ୱୟ

୨୬୩ । ଏକ ଅନ୍ତର୍ରାଜ୍ୟ ପରିଷଦ ସମ୍ବନ୍ଧରେ ଉପବନ୍ଧ ୮୯

ପୃଷ୍ଠା

## ଭାଗ ୧୨

## ବିତ୍ତ, ସମ୍ପତ୍ତି, ସମ୍ବିଦା ଓ ବାଦ

### ଅଧ୍ୟାୟ ୧—ବିତ୍ତ

ସାଧାରଣ


୨୬୪ । ନିର୍ବଚନ ୯୧

୨୬୫ । ବିଧିର ପ୍ରାଧିକାର ବିନା କର ଆରୋପିତ ନ ହେବା ୯୧

୨୬୬ । ଭାରତ ଓ ରାଜ୍ୟମାନଙ୍କର ସଞ୍ଚିତ ନିଧି ଓ ସାର୍ବଜନିକ ହିସାବ ୯୧

୨୬୭ । ଆକସ୍ମିକତା ନିଧି ୯୧

ସଂଘ ଓ ରାଜ୍ୟମାନଙ୍କ ମଧ୍ୟରେ ରାଜସ୍ୱ ବିତରଣ

୨୬୮ । ସଂଘ ଦ୍ୱାରା ଆରୋପିତ ହେବା, ମାତ୍ର ରାଜ୍ୟମାନଙ୍କ ଦ୍ୱାରା ସଂଗୃହୀତ ଏବଂ ବିନିଯୋଗ କରାଯିବା.. ଶୁଳ୍କମାନ । ୯୨

୨୬୯ । ସଂଘ ଦ୍ୱାରା ଆରୋପିତ ଓ ସଂଗୃହୀତ ହେବା, ମାତ୍ର ରାଜ୍ୟମାନଙ୍କୁ ସମର୍ପିତ ହେବା କର ୯୨

୨୭୦ । ସଂଘ ଦ୍ୱାରା ଆରୋପିତ ଓ ସଂଗୃହୀତ ହେବା ଏବଂ ସଂଘ ଓ ରାଜ୍ୟମାନଙ୍କ ମଧ୍ୟରେ ବିତରଣ କରାଯିବା କରମାନ । ୯୨

୨୭୧ । ସଂଘର ପ୍ରୟୋଜନାର୍ଥ କେତେକ ଶୁଳ୍କ ଏବଂ କର ଉପରେ ଅଧିଭାର ୯୩

୨୭୨ । ସଂଘ ଦ୍ୱାରା ଆରୋପିତ ଓ ସଂଗୃହୀତ ହେବା ଏବଂ ସଂଘ ଓ ରାଜ୍ୟମାନଙ୍କ ମଧ୍ୟରେ ବିତରିତ ହୋଇ ପାରିବା କରମାନ । ୯୩

୨୭୩ । ଝୋଟ ଏବଂ ଝୋଟ ପ୍ରସ୍ତୁତ ଦ୍ରବ୍ୟ ଉପରେ ରପ୍ତାନୀ ଶୁଳ୍କ ବଦଳରେ ଅନୁଦାନ ୯୩

୨୭୪ । ରାଜ୍ୟମାନେ ହିତବଦ୍ଧ ଥିବା କରକୁ ପ୍ରଭାବିତ କରୁଥିବା ବିଧେୟକ ନିମିତ୍ତ ରାଷ୍ଟ୍ରପତିଙ୍କ ପୂର୍ବ ସୁପାରିଶର ଆବଶ୍ୟକତା । ୯୪

୨୭୫ । କେତେକ ରାଜ୍ୟକୁ ସଂଘରୁ ଅନୁଦାନ ୯୪

୨୭୬ । ବୃତ୍ତି, ବ୍ୟାପାର, ଆଜୀବିକା ଓ ନିୟୋଜନ ଉପରେ କର ୯୫

୨୭୭ । ବ୍ୟାବୃତ୍ତି ୯୫

୨୭୮ । ନିରସିତ

ପୃଷ୍ଠା

୨୭୯ । ନୀଟଆଗମର ଗଣନା ଇତ୍ୟାଦି । ୯୬

୨୮୦ । ବିତ୍ତ କମିଶନ ୯୬

୨୮୧ । ବିତ୍ତ କମିଶନର ସୁପାରିଶ । ୯୬

ବିବିଧ ବିତ୍ତୀୟ ଉପବନ୍ଧ

୨୮୨ । ସଂଘ ବା ରାଜ୍ୟ ଦ୍ୱାରା ସ୍ୱରାଜସ୍ୱରୁ କରାଯିବା ବ୍ୟୟ ୯୬

୨୮୩ । ସଞ୍ଚିତ ନିଧି, ଆକସ୍ମିକତା ନିଧି ଓ ସାର୍ବଜନିକ ହିସାବରେ ଜମାଥିବା ଧନର ଅଭିରକ୍ଷା ଇତ୍ୟାଦି ୯୭

୨୮୪ । ଲୋକସେବକ ଓ ନ୍ୟାୟାଳୟ ଦ୍ୱାରା ପ୍ରାପ୍ତ ବାଦୀମାନଙ୍କ ଦ୍ୱାରା ଜମା କରାଯିବା ଧନ ଓ ଅନ୍ୟ ଧନର ଅଭିରକ୍ଷା । ୯୭

୨୮୫ । ସଂଘର ସଂପତ୍ତିରୁ ରାଜ୍ୟ କର ଛାଡ଼ ୯୭

୨୮୬ । ମାଲ କ୍ରୟ ବା ବିକ୍ରୟ ଉପରେ କର ଆରୋପଣ ସଂପର୍କରେ ନିର୍ବନ୍ଧନ ୯୭

୨୮୭ । ବିଦ୍ୟୁତ ଶକ୍ତି ଉପରୁ କର ଛାଡ଼ ୯୮

୨୮୮ । କେତେକ ସ୍ଥଳରେ ଜଳ ଏବଂ ବିଦ୍ୟୁତ ଶକ୍ତି ସଂପର୍କରେ ରାଜ୍ୟ ମାନଙ୍କ ଦ୍ୱାରା ଧାର୍ଯ୍ୟ କର ଛାଡ଼ ୯୮

୨୮୯ । ସଂଘର କର ଆରୋପଣରୁ ରାଜ୍ୟର ସଂପତ୍ତି ଏବଂ ଆୟର ଛାଡ଼ ୯୮

୨୯୦ । କେତେକ ବ୍ୟୟ ଓ ପେନସନ ସଂପର୍କରେ ସମାଯୋଜନ ୯୯

୨୯୦କ । କେତେକ ଦେବସ୍ୱ ନିଧିକୁ ବାର୍ଷିକ ଦେୟ ୯୯

୨୯୧ । ନିରସିତ

ଅଧ୍ୟାୟ ୨—ଉଧାର ଗ୍ରହଣ

୨୯୨ । ଭାରତ ସରକାରଙ୍କ ଦ୍ୱାରା ଉଧାର ଗ୍ରହଣ ୯୯

୨୯୩ । ରାଜ୍ୟମାନଙ୍କ ଦ୍ୱାରା ଉଧାର ଗ୍ରହଣ ୯୯

ଅଧ୍ୟାୟ ୩—ସମ୍ପତ୍ତି, ଚୁକ୍ତି, ଅଧିକାର, ଦାୟିତ୍ୱ, ବାଧ୍ୟତା ଏବଂ ବାଦ

୨୯୪ । କେତେକ ସ୍ଥଳରେ ସଂପତ୍ତି, ଆସ୍ତି, ଅଧିକାର, ଦାୟିତ୍ୱ ଏବଂ ବାଧ୍ୟତାର ଉତ୍ତରାଧିକାର ୧୦୦

୨୯୫ । ଅନ୍ୟାନ୍ୟ ସ୍ଥଳରେ ସଂପତ୍ତି, ଆସ୍ତି, ଅଧିକାର ଓ ଦାୟିତ୍ୱ, ବାଧ୍ୟତାର ଉତ୍ତରାଧିକାର ୧୦୦

ପୃଷ୍ଠା

୨୯୬ । ରାଜଗାମୀ, ବ୍ୟପଗତ ବା ସ୍ୱାମୀ ହୀନତ୍ୱ ହେବାରେ ପ୍ରୋଦଭୂତ ସଂପତ୍ତି ... ୧୦୧

୨୯୭ । ରାଜ୍ୟ କ୍ଷେତ୍ରୀୟ ଜଳପ୍ରାଙ୍ଗଣ ବା ମହାଦ୍ୱୀପୀୟ ମଗ୍ନତଟଭୂମିସ୍ଥିତ ମୂଲ୍ୟବାନ ପଦାର୍ଥମାନ ଏବଂ ଅନନ୍ୟ ଆର୍ଥିକ କ୍ଷେତ୍ରର ବିଭବମାନ ସଂଘଠାରେ ନିହିତ ହେବ । ... ୧୦୧

୨୯୮ । ବ୍ୟାପାର ଆଦି ଚଳାଇବାର କ୍ଷମତା ... ୧୦୧

୨୯୯ । ଚୁକ୍ତି ... ୧୦୨

୩୦୦ । ବାଦ ଏବଂ କାର୍ଯ୍ୟବାହୀ ... ୧୦୨

ଅଧ୍ୟାୟ ୪—ସମ୍ପତ୍ତି ପ୍ରତି ଅଧିକାର

୩୦୦କ । ବିଧିର ପ୍ରାଧିକାର ବିନା ବ୍ୟକ୍ତିମାନେ ସଂପତ୍ତିରୁ ବଞ୍ଚିତ ନ ହେବା ... ୧୦୨

ଭାଗ ୧୩

ଭାରତର ରାଜ୍ୟକ୍ଷେତ୍ର ମଧ୍ୟରେ ବ୍ୟାପାର, ବାଣିଜ୍ୟ ଏବଂ ସମାଗମ

୩୦୧ । ବ୍ୟାପାର, ବାଣିଜ୍ୟ ଓ ସମାଗମର ସ୍ୱତନ୍ତ୍ରତା ... ୧୦୩

୩୦୨ । ବ୍ୟାପାର, ବାଣିଜ୍ୟ ଓ ସମାଗମ ଉପରେ ନିର୍ବନ୍ଧନ ଆରୋପଣ ଲାଗି ସଂସଦର କ୍ଷମତା ... ୧୦୩

୩୦୩ । ବ୍ୟାପାର ଏବଂ ବାଣିଜ୍ୟ ବିଷୟରେ ସଂଘ ଏବଂ ରାଜ୍ୟମାନଙ୍କର ବିଧାୟିନୀ କ୍ଷମତା ଉପରେ ନିର୍ବନ୍ଧନ । ... ୧୦୩

୩୦୪ । ରାଜ୍ୟମାନଙ୍କ ମଧ୍ୟରେ ବ୍ୟାପାର, ବାଣିଜ୍ୟ ଓ ସମାଗମ ଉପରେ ନିର୍ବନ୍ଧନ ... ୧୦୩

୩୦୫ । ବିଦ୍ୟମାନ ବିଧିମାନଙ୍କର ଏବଂ ରାଜ୍ୟ ଏକାଧିପତ୍ୟ ନିମିତ୍ତ ଉପବନ୍ଧ କରୁଥିବା ବିଧିମାନଙ୍କର ରକ୍ଷଣ .. ୧୦୩

୩୦୬ । ନିରସିତ

୩୦୭ । ୩୦୧ ଠାରୁ ୩୦୪ ପର୍ଯ୍ୟନ୍ତ ଅନୁଚ୍ଛେଦମାନଙ୍କର ପ୍ରୟୋଜନ ସଂପାଦନ ପାଇଁ ପ୍ରାଧିକାରୀଙ୍କର ନିଯୁକ୍ତି ... ୧୦୪

ଭାଗ ୧୪

ସଂଘ ଓ ରାଜ୍ୟମାନଙ୍କ ଅଧୀନରେ ସେବା

ଅଧ୍ୟାୟ ୧—ସେବା

୩୦୮ । ନିର୍ବଚନ ... ୧୦୫

୩୦୯ । ସଂଘ ବା ରାଜ୍ୟର ସେବା କରୁଥିବା ବ୍ୟକ୍ତିମାନଙ୍କର ଭର୍ତ୍ତି ଓ ସେବାର ସର୍ତ୍ତ ... ୧୦୫

୩୧୦ । ସଂଘ ବା ରାଜ୍ୟର ସେବା କରୁଥିବା ବ୍ୟକ୍ତିମାନଙ୍କର ପଦାବଧି ... ୧୦୫

ପୃଷ୍ଠା

୩୧୧ । ସଂଘ ବା ରାଜ୍ୟ ଅଧୀନରେ ସିଭିଲ ପଦବୀରେ ନିଯୁକ୍ତ ବ୍ୟକ୍ତିମାନଙ୍କର ପଦଚ୍ୟୁତି, ଦୂରୀକରଣ ବା ପଦହ୍ରାସ । — ୧୦୫

୩୧୨ । ଅଖିଳ ଭାରତୀୟ ସେବା — ୧୦୬

୩୧୨କ । କେତେକ ସେବାର ଅଫିସରମାନଙ୍କର ସେବା ସର୍ତ୍ତାବଳୀର ପରିବର୍ତ୍ତନ ବା ପ୍ରତି ସଂହରଣ ନିମିତ୍ତ ସଂସଦର କ୍ଷମତା । — ୧୦୭

୩୧୩ । ଅନ୍ତର୍ବର୍ତ୍ତୀ ଉପବନ୍ଧ — ୧୦୮

୩୧୪ । ନିରସିତ

ଅଧ୍ୟାୟ ୨-ପବ୍ଲିକ ସର୍ଭିସ କମିଶନ

୩୧୫ । ସଂଘ ଏବଂ ରାଜ୍ୟମାନଙ୍କ ଲାଗି ପବ୍ଲିକ ସର୍ଭିସ କମିଶନ — ୧୦୮

୩୧୬ । ସଦସ୍ୟମାନଙ୍କର ନିଯୁକ୍ତି ଓ ପଦାବଧି — ୧୦୮

୩୧୭ । ପବ୍ଲିକ ସର୍ଭିସ କମିଶନର କୌଣସି ସଦସ୍ୟଙ୍କର ଦୂରୀକରଣ ଓ ସାମୟିକ କର୍ମଚ୍ୟୁତି — ୧୦୯

୩୧୮ । କମିଶନର ସଦସ୍ୟ ଓ କର୍ମଚାରୀମାନଙ୍କ ସେବାର ସର୍ତ୍ତ ସମ୍ବନ୍ଧରେ ବିନିୟମ ପ୍ରଣୟନ ଲାଗି କ୍ଷମତା — ୧୧୦

୩୧୯ । କମିଶନର ସଦସ୍ୟମାନେ ସେପରି ସଦସ୍ୟ ହେବାରୁ ବିରତ ହେବା ପରେ ସେମାନଙ୍କର ପଦ ଧାରଣ ସମ୍ବନ୍ଧରେ ବାରଣ । — ୧୧୦

୩୨୦ । ପବ୍ଲିକ ସର୍ଭିସ କମିଶନମାନଙ୍କର କୃତ୍ୟ — ୧୧୦

୩୨୧ । ପବ୍ଲିକ ସର୍ଭିସ କମିଶନର କୃତ୍ୟମାନ ବିସ୍ତାର କରିବାର କ୍ଷମତା — ୧୧୨

୩୨୨ । ପବ୍ଲିକ ସର୍ଭିସ କମିଶନର ବ୍ୟୟ — ୧୧୨

୩୨୩ । ପବ୍ଲିକ ସର୍ଭିସ କମିଶନମାନଙ୍କର ରିପୋର୍ଟ — ୧୧୨

ଭାଗ ୧୪କ

ଟ୍ରିବୁନାଲ

୩୨୩କ । ପ୍ରଶାସନିକ ଟ୍ରିବୁନାଲ — ୧୧୩

୩୨୩ଖ । ଅନ୍ୟ ବିଷୟ ନିମିତ୍ତ ଟ୍ରିବୁନାଲ — ୧୧୩

ଭାଗ ୧୫

ନିର୍ବାଚନ

୩୨୪ । ନିର୍ବାଚନ କମିଶନଠାରେ ନିର୍ବାଚନମାନଙ୍କର ଅଧୀକ୍ଷଣ, ନିଦେଶନ ଓ ନିୟନ୍ତ୍ରଣର ନିଧାନ — ୧୧୬

୩୨୫ । ଧର୍ମ, ମୂଳବଂଶ, ଜାତି ବା ଲିଙ୍ଗର ଆଧାର ଉପରେ କୌଣସି ବ୍ୟକ୍ତି ନିର୍ବାଚକ ନାମାବଳୀର ଅନ୍ତର୍ଭୁକ୍ତ ହେବା ବିଷୟରେ ଅପାତ୍ର ନ ହେବା ଏବଂ କୌଣସି ବିଶେଷ ନିର୍ବାଚନ ନାମାବଳୀରେ ଅନ୍ତର୍ଭୁକ୍ତ ହେବା ସକାଶେ ଦାବୀ ନ କରିବା । — ୧୧୭

ପୃଷ୍ଠା

୩୨୬ । ଲୋକସଭା ଓ ରାଜ୍ୟର ବିଧାନମଣ୍ଡଳ ଲାଗି ବୟସ୍କ ଭୋଟାଧିକାର ଭିତ୍ତିରେ ନିର୍ବାଚନ ହେବା — ୧୧୭
୩୨୭ । ବିଧାନମଣ୍ଡଳମାନଙ୍କ ସକାଶେ ନିର୍ବାଚନ ବିଷୟରେ ଉପବନ୍ଧ ପ୍ରଣୟନ ଲାଗି ସଂସଦର କ୍ଷମତା — ୧୧୭
୩୨୮ । କୌଣସି ରାଜ୍ୟର ବିଧାନ ମଣ୍ଡଳ ସେପରି ବିଧାନ ମଣ୍ଡଳ ସକାଶେ ନିର୍ବାଚନ ସମ୍ବନ୍ଧରେ ଉପବନ୍ଧ ପ୍ରଣୟନ କରିବା ଲାଗି କ୍ଷମତା । — ୧୧୭
୩୨୯ । ନିର୍ବାଚନ ବିଷୟରେ ନ୍ୟାୟାଳୟର ହସ୍ତକ୍ଷେପକୁ ବାରଣ କରିବା — ୧୧୮
୩୨୯କ । ନିରସିତ

## ଭାଗ ୧୬

### କେତେକ ଶ୍ରେଣୀ ସମ୍ପର୍କରେ ବିଶେଷ ଉପବନ୍ଧ

୩୩୦ । ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତିଙ୍କ ନିମିତ୍ତ ଲୋକ ସଭାରେ ସ୍ଥାନ ସଂରକ୍ଷଣ — ୧୧୯
୩୩୧ । ଲୋକ ସଭାରେ ଆଙ୍ଗ୍ଲୋ-ଭାରତୀୟ ସମାଜର ପ୍ରତିନିଧିତ୍ୱ । — ୧୧୯
୩୩୨ । ରାଜ୍ୟମାନଙ୍କର ବିଧାନସଭାମାନଙ୍କରେ ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତିଙ୍କ ସକାଶେ ସ୍ଥାନ ସଂରକ୍ଷଣ । — ୧୧୯
୩୩୩ । ରାଜ୍ୟମାନଙ୍କର ବିଧାନସଭାମାନଙ୍କରେ ଆଙ୍ଗ୍ଲୋ-ଭାରତୀୟ ସମାଜର ପ୍ରତିନିଧିତ୍ୱ — ୧୨୦
୩୩୪ । ସ୍ଥାନ ସଂରକ୍ଷଣ ଓ ବିଶେଷ ପ୍ରତିନିଧିତ୍ୱ ଚାଳିଶ ବର୍ଷ ପରେ ରହିତ ହେବା — ୧୨୦
୩୩୫ । ସେବା ଓ ପଦମାନଙ୍କ ସକାଶେ ଅନୁସୂଚିତ ଜାତି ଏବଂ ଅନୁସୂଚିତ ଜନ ଜାତିଙ୍କର ଦାବୀ — ୧୨୦
୩୩୬ । କେତେକ ସେବାରେ ଆଙ୍ଗ୍ଲୋ-ଭାରତୀୟ ସମାଜ ସକାଶେ ବିଶେଷ ଉପବନ୍ଧ — ୧୨୦
୩୩୭ । ଆଙ୍ଗ୍ଲୋ-ଭାରତୀୟ ସମାଜର ମଙ୍ଗଳ ସକାଶେ ଶିକ୍ଷା ଅନୁଦାନ ଲାଗି ବିଶେଷ ଉପବନ୍ଧ — ୧୨୧
୩୩୮ । ଅନୁସୂଚିତ ଜାତି, ଅନୁସୂଚିତ ଜନଜାତି ପ୍ରଭୃତିଙ୍କ ସକାଶେ ସ୍ୱତନ୍ତ୍ର ଅଫିସର — ୧୨୧
୩୩୯ । ଅନୁସୂଚିତ କ୍ଷେତ୍ରର ପ୍ରଶାସନ ଏବଂ ଅନୁସୂଚିତ ଜନଜାତିଙ୍କ କଲ୍ୟାଣ ଉପରେ ସଂଘର ନିୟନ୍ତ୍ରଣ — ୧୨୧
୩୪୦ । ଅନୁନ୍ନତ ଜାତିଙ୍କ ଅବସ୍ଥାର ଅନୁସନ୍ଧାନ ସକାଶେ କମିଶନ ନିଯୁକ୍ତି — ୧୨୨
୩୪୧ । ଅନୁସୂଚିତ ଜାତି — ୧୨୨
୩୪୨ । ଅନୁସୂଚିତ ଜନଜାତି — ୧୨୨

## ଭାଗ ୧୭

### ରାଜଭାଷା

#### ଅଧ୍ୟାୟ ୧—ସଂଘର ଭାଷା

୩୪୩ । ସଂଘର ରାଜଭାଷା — ୧୨୩
୩୪୪ । ରାଜଭାଷା ସକାଶେ ସଂସଦର କମିଶନ ଓ ସମିତି — ୧୨୩

ପୃଷ୍ଠା



## ଅଧ୍ୟାୟ ୨—ଆଞ୍ଚଳିକ ଭାଷା

୩୪୫ । ରାଜ୍ୟର ରାଜଭାଷା ବା ରାଜଭାଷାମାନ ୧୨୪

୩୪୬ । ଗୋଟିଏ ରାଜ୍ୟ ଓ ଅନ୍ୟ ରାଜ୍ୟ ମଧ୍ୟରେ କିମ୍ବା ରାଜ୍ୟ ଓ ସଂଘ ମଧ୍ୟରେ ସଞ୍ଚାର ନିମିତ୍ତ ରାଜଭାଷା ୧୨୪

୩୪୭ । କୌଣସି ରାଜ୍ୟର ଜନ ସଂଖ୍ୟାର କୌଣସି ଭାଗ ଦ୍ୱାରା କଥିତ ହେଉଥିବା ଭାଷା ସମ୍ବନ୍ଧରେ ବିଶେଷ ଉପବନ୍ଧ । ୧୨୪

## ଅଧ୍ୟାୟ ୩—ଉଚ୍ଚତମ ନ୍ୟାୟାଳୟ, ଉଚ୍ଚତମ ନ୍ୟାୟାଳୟ ପ୍ରଭୃତିର ଭାଷା

୩୪୮ । ଉଚ୍ଚତମ ନ୍ୟାୟାଳୟ ଓ ଉଚ୍ଚ ନ୍ୟାୟାଳୟ ଏବଂ ଅଧିନିୟମ, ବିଧେୟକ ପ୍ରଭୃତିରେ ବ୍ୟବହାର କରାଯିବା ଭାଷା । ୧୨୪

୩୪୯ । ଭାଷା ସମ୍ବନ୍ଧୀୟ କେତେକ ବିଧିକୁ ଅଧିନିୟମିତ କରିବା ସକାଶେ ବିଶେଷ ପ୍ରକ୍ରିୟା ୧୨୫

## ଅଧ୍ୟାୟ ୪—ବିଶେଷ ନିର୍ଦ୍ଦେଶ

୩୫୦ । ଅସନ୍ତୋଷ ଦୂରୀକରଣ ସକାଶେ ଅଭ୍ୟାବେଦନରେ ବ୍ୟବହାର କରାଯିବା ଭାଷା ୧୨୫

୩୫୦କ । ପ୍ରାଥମିକ ପ୍ରକ୍ରମରେ ମାତୃଭାଷାରେ ଶିକ୍ଷା ଦେବା ନିମିତ୍ତ ସୁବିଧା ୧୨୫

୩୫୦ଖ । ଭାଷାଗତ ସଂଖ୍ୟାଲଘୁମାନଙ୍କ ନିମିତ୍ତ ସ୍ୱତନ୍ତ୍ର ଅଫିସର ୧୨୬

୩୫୧ । ହିନ୍ଦୀ ଭାଷାର ବିକାଶ ସକାଶେ ନିର୍ଦ୍ଦେଶ ୧୨୬

## ଭାଗ ୧୮

## ଆପାତ ଉପବନ୍ଧ

୩୫୨ । ଆପାତ ଉଦ୍‌ଘୋଷଣା ୧୨୭

୩୫୩ । ଆପାତ ଉଦ୍‌ଘୋଷଣାର ପ୍ରଭାବ ୧୨୮

୩୫୪ । ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତମାନ ଥିବା ବେଳେ ରାଜସ୍ୱ ବିତରଣ ସମ୍ବନ୍ଧୀୟ ଉପବନ୍ଧମାନଙ୍କର ପ୍ରୟୋଗ । ୧୨୯

୩୫୫ । ବାହ୍ୟଆକ୍ରମଣ ଓ ଆଭ୍ୟନ୍ତରୀଣ ଅଶାନ୍ତିରୁ ରାଜ୍ୟକୁ ରକ୍ଷା କରିବା ଲାଗି ସଂଘର କର୍ତ୍ତବ୍ୟ ୧୨୯

୩୫୬ । ରାଜ୍ୟମାନଙ୍କର ସାଂବିଧାନିକ ତନ୍ତ୍ର ବିଫଳ ହେବା ଅବସ୍ଥାରେ ଉପବନ୍ଧ ୧୨୯

୩୫୭ । ଅନୁଚ୍ଛେଦ ୩୫୬ ଅଧୀନରେ କରାଯାଇଥିବା ଉଦ୍‌ଘୋଷଣା ଅଧୀନରେ ବିଧାୟିନୀ କ୍ଷମତାର ପ୍ରୟୋଗ । ୧୩୧

ପୃଷ୍ଠା

୩୫୮ । ଆପାତ ପରିସ୍ଥିତିରେ ଅନୁଚ୍ଛେଦ ୧୯ ର ଉପବନ୍ଧମାନଙ୍କର ନିଲମ୍ବନ ୧୩୧

୩୫୯ । ଆପାତ ପରିସ୍ଥିତିରେ ଭାଗ ୩ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କ ପ୍ରବର୍ତ୍ତନର ନିଲମ୍ବନ ୧୩୨

୩୬୦ । ବିତ୍ତୀୟ ଆପାତ ବିଷୟରେ ଉପବନ୍ଧ । ୧୩୩

## ଭାଗ ୧୯

### ପ୍ରକୀର୍ଣ୍ଣ

୩୬୧ । ରାଷ୍ଟ୍ରପତିଙ୍କର ତଥା ରାଜ୍ୟପାଳ ଓ ରାଜ ପ୍ରମୁଖଙ୍କର ରକ୍ଷଣ ୧୩୫

୩୬୧କ । ସଂସଦ ଓ ରାଜ୍ୟ ବିଧାନମଣ୍ଡଳଗୁଡ଼ିକର କାର୍ଯ୍ୟବାହୀର ପ୍ରକାଶନ ସଂପର୍କିତ ସଂରକ୍ଷଣ ୧୩୫

୩୬୨ । ନିରସିତ

୩୬୩ । କେତେକ ସଂଧି, କରାର ପ୍ରଭୃତିର ଉଦ୍‌ଭୂତ ବିବାଦରେ ନ୍ୟାୟାଳୟର ହସ୍ତକ୍ଷେପର ବର୍ଜନ ୧୩୬

୩୬୩କ । ଦେଶୀୟ ରାଜ୍ୟମାନଙ୍କର ଶାସକମାନଙ୍କୁ ଅନୁଦତ୍ତ ସ୍ୱୀକୃତି ବଂଦ ହେବା ଓ ହାତ ପାଣ୍ଠି .. ଲୋପ ହେବା । ୧୩୬

୩୬୪ । ବୃହତ ପୋତାଶ୍ରୟ ଓ ବିମାନ କ୍ଷେତ୍ର ଲାଗି ବିଶେଷ ଉପବନ୍ଧ ୧୩୬

୩୬୫ । ସଂଘ ଦ୍ୱାରା ପ୍ରଦତ୍ତ ନିର୍ଦ୍ଦେଶମାନ ପାଳନ କରିବାରେ ବା ସେ ସବୁ ପ୍ରଭାବୀ କରିବାରେ ଅକୃତକାର୍ଯ୍ୟ ହେବାର ପ୍ରଭାବ । ୧୩୭

୩୬୬ । ସଂଜ୍ଞାବଳୀ ୧୩୭

୩୬୭ । ନିର୍ବଚନ ୧୪୦

## ଭାଗ ୨୦

### ସଂବିଧାନର ସଂଶୋଧନ

୩୬୮ । ସଂବିଧାନ ସଂଶୋଧନ ନିମିତ୍ତ ସଂସଦର କ୍ଷମତା ଓ ତହିଁର କାର୍ଯ୍ୟ ବିଧି ୧୪୧

## ଭାଗ ୨୧

### ଅସ୍ଥାୟୀ, ଅନ୍ତଃକାଳୀନ ତଥା ବିଶେଷ ଉପବନ୍ଧ

୩୬୯ । ରାଜ୍ୟ ସୂଚୀର କେତେକ ବିଷୟ ସମ୍ବନ୍ଧରେ ସେ ସବୁ ବିଷୟ ସମବର୍ତ୍ତୀ ସୂଚୀର ଅନ୍ତର୍ଗତ ହୋଇଥିବା ଭଳି ବିଧି ପ୍ରଣୟନ କରିବା ଲାଗି ସଂସଦର ଅସ୍ଥାୟୀ କ୍ଷମତା । ୧୪୨

୩୭୦ । ଜାମ୍ମୁ ଓ କାଶ୍ମୀର ରାଜ୍ୟ ସଂମ୍ବନ୍ଧରେ ଅସ୍ଥାୟୀ ଉପବନ୍ଧ ୧୪୨

ପୃଷ୍ଠା

୩୭୧ । ମହାରାଷ୍ଟ୍ର ଓ ଗୁଜୁରାଟ ରାଜ୍ୟମାନଙ୍କ ସମ୍ବନ୍ଧରେ ବିଶେଷ ଉପବଂଧ ୧୪୩

୩୭୧କ । ନାଗାଲ୍ୟାଣ୍ଡ ରାଜ୍ୟ ସଂକ୍ରାନ୍ତରେ ବିଶେଷ ଉପବନ୍ଧ ୧୪୩

୩୭୧ଖ । ଆସାମ ରାଜ୍ୟ ସଂକ୍ରାନ୍ତରେ ବିଶେଷ ଉପବନ୍ଧ ୧୪୬

୩୭୧ଗ । ମଣିପୁର ରାଜ୍ୟ ସଂକ୍ରାନ୍ତରେ ବିଶେଷ ଉପବନ୍ଧ ୧୪୭

୩୭୧ଘ । ଆନ୍ଧ୍ର ପ୍ରଦେଶ ରାଜ୍ୟ ସଂକ୍ରାନ୍ତରେ ବିଶେଷ ଉପବନ୍ଧ ୧୪୭

୩୭୧ଙ । ଆନ୍ଧ୍ର ପ୍ରଦେଶରେ ଏକ କେନ୍ଦ୍ରୀୟ ବିଶ୍ୱ ବିଦ୍ୟାଳୟର ସ୍ଥାପନା ୧୪୯

୩୭୧ଚ । ସିକିମ୍ ରାଜ୍ୟ ସଂପର୍କରେ ବିଶେଷ ଉପବନ୍ଧ ୧୪୯

୩୭୨ । ବିଦ୍ୟମାନ ବିଧିମାନ ପ୍ରବୃତ୍ତ ରହିବା ଏବଂ ସେମାନଙ୍କର ଅନୁକୂଳନ ୧୫୧

୩୭୨କ । ବିଧିମାନଙ୍କର ଅନୁକୂଳନ ପାଇଁ ରାଷ୍ଟ୍ରପତିଙ୍କର କ୍ଷମତା ୧୫୨

୩୭୩ । ନିବାରକ ନିରୋଧରେ ରଖାଯାଇଥିବା ବ୍ୟକ୍ତିମାନଙ୍କ ବିଷୟରେ କେତେକ ସ୍ଥଳରେ ଆଦେଶ ଦେବା ଲାଗି ରାଷ୍ଟ୍ରପତିଙ୍କର କ୍ଷମତା । ୧୫୩

୩୭୪ । ଫେଡ଼େରାଲ ନ୍ୟାୟାଳୟର ନ୍ୟାୟାଧୀଶମାନଙ୍କ ସମ୍ବନ୍ଧରେ ଏବଂ ଫେଡ଼େରାଲ ନ୍ୟାୟାଳୟରେ ବା ସପରିଷଦ ସମ୍ରାଟଙ୍କ ସମକ୍ଷରେ ଲଂବିତ କାର୍ଯ୍ୟବାହୀମାନଙ୍କ ସମ୍ବନ୍ଧରେ ଉପବନ୍ଧ । ୧୫୩

୩୭୫ । ସଂବିଧାନର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ନ୍ୟାୟାଳୟ, ପ୍ରାଧୀକାରୀ ଓ ଅଫିସରଙ୍କର କୃତ୍ୟ ସଂପାଦନ ଚାଲୁ ରହିବା । ୧୫୪

୩୭୬ । ଉଚ୍ଚ ନ୍ୟାୟାଳୟମାନଙ୍କର ନ୍ୟାୟାଧୀଶମାନଙ୍କ ସମ୍ବନ୍ଧରେ ଉପବନ୍ଧ ୧୫୪

୩୭୭ । ଭାରତର କମ୍ପଟ୍ରୋଲର ଓ ଅଡ଼ିଟର ଜେନେରାଲ ସମ୍ବନ୍ଧରେ ଉପବନ୍ଧ ୧୫୪

୩୭୮ । ପବ୍ଲିକ ସର୍ଭିସ କମିଶନ ସମ୍ବନ୍ଧରେ ଉପବନ୍ଧ ୧୫୪

୩୭୮କ । ଆନ୍ଧ୍ର ପ୍ରଦେଶ ବିଧାନସଭାର ଅସ୍ତିତ୍ୱାବଧି ସଂପର୍କରେ ବିଶେଷ ଉପବନ୍ଧ ୧୫୫

୩୭୯ । ଠାରୁ ୩୯୧ । ନିରସିତ

୩୯୨ । ଅସୁବିଧା ଦୂର କରିବା ଲଗି ରାଷ୍ଟ୍ରପତିଙ୍କର କ୍ଷମତା ୧୫୫

## ଭାଗ ୨୨

### ସଂକ୍ଷିପ୍ତ ନାମ, ପ୍ରାରମ୍ଭ ଓ ନିରସନ

୩୯୩ । ସଂକ୍ଷିପ୍ତ ନାମ ୧୫୬

୩୯୪ । ପ୍ରାରମ୍ଭ ୧୫୬

୩୯୫ । ନିରସନ ୧୫୬

# ଅନୁସୂଚୀ

ପୃଷ୍ଠା

ପ୍ରଥମ ଅନୁସୂଚୀ—

୧ । ରାଜ୍ୟସମୂହ ୧୫୬

୨ । ସଂଘରାଜ୍ୟକ୍ଷେତ୍ର ୧୬୦

ଦ୍ୱିତୀୟ ଅନୁସୂଚୀ—

ଭାଗ କ—ରାଷ୍ଟ୍ରପତି ଏବଂ ରାଜ୍ୟମାନଙ୍କର ରାଜ୍ୟପାଳମାନଙ୍କ ସଂପର୍କରେ ଉପବନ୍ଧ ୧୬୨

ଭାଗ ଖ—ନିରସିତ

ଭାଗ ଗ—ଲୋକସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ଏବଂ ରାଜ୍ୟ ସଭାର ସଭାପତି ଓ ଉପସଭାପତି ଏବଂ କୌଣସି ରାଜ୍ୟର ବିଧାନ ସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ଏବଂ ବିଧାନ ପରିଷଦର ସଭାପତି ଓ ଉପସଭାପତିଙ୍କ ସଂପର୍କରେ ଉପବନ୍ଧ ୧୬୨

ଭାଗ ଘ—ଉଚ୍ଚତମ ନ୍ୟାୟାଳୟ ଓ ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶମାନଙ୍କ ସଂପର୍କରେ ଉପବନ୍ଧ ୧୬୩

ଭାଗ ଙ—ଭାରତର କଂପ୍‌ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କ ସଂପର୍କରେ ଉପବନ୍ଧ ୧୬୫

ତୃତୀୟ ଅନୁସୂଚୀ—ଶପଥ ବା ପ୍ରତିଜ୍ଞାନର ପ୍ରପତ୍ର ୧୬୬

ଚତୁର୍ଥ ଅନୁସୂଚୀ—ରାଜ୍ୟସଭାରେ ସ୍ଥାନ ଆବଂଟନ ୧୬୯

ପଞ୍ଚମ ଅନୁସୂଚୀ—ଅନୁସୂଚିତ କ୍ଷେତ୍ର ଏବଂ ଅନୁସୂଚିତ ଜନଜାତିମାନଙ୍କର ପ୍ରଶାସନ ଓ ନିୟନ୍ତ୍ରଣ ସଂପର୍କରେ ଉପବନ୍ଧ

ଭାଗ କ—ସାଧାରଣ ୧୭୧

ଭାଗ ଖ-ଅନୁସୂଚିତ କ୍ଷେତ୍ର ଓ ଅନୁସୂଚିତ ଜନଜାତିମାନଙ୍କର ପ୍ରଶାସନ ଓ ନିୟନ୍ତ୍ରଣ ୧୭୧

ଭାଗ ଗ—ଅନୁସୂଚିତ କ୍ଷେତ୍ର ୧୭୨

ଭାଗ ଘ—ଅନୁସୂଚୀର ସଂଶୋଧନ ୧୭୩

ଷଷ୍ଠ ଅନୁସୂଚୀ—ଆସାମ ଓ ମେଘାଳୟ ରାଜ୍ୟମାନଙ୍କରେ ଏବଂ ମିଜୋରାମ ସଂଘରାଜ୍ୟ କ୍ଷେତ୍ରରେ ଥିବା ଜନଜାତି କ୍ଷେତ୍ର ସମୂହର ପ୍ରଶାସନ ସଂପର୍କରେ ଉପବନ୍ଧ ୧୭୪

ସପ୍ତମ ଅନୁସୂଚୀ—

ସୂଚୀ ୧—ସଂଘ ସୂଚୀ ୧୯୦

ସୂଚୀ ୨—ରାଜ୍ୟ ସୂଚୀ ୧୯୭

ସୂଚୀ ୩—ସମବର୍ତ୍ତୀ ସୂଚୀ ୨୦୧

ଅଷ୍ଟମ ଅନୁସୂଚୀ—ଭାଷା ୨୦୪

ନବମ ଅନୁସୂଚୀ—କେତେକ ଅଧିନିୟମ ଓ ବିନିୟମର ବୈଧୀ କରଣ ୨୦୫

ଦଶମ ଅନୁସୂଚୀ—ନିରସିତ

# ଭାରତର ସଂବିଧାନ

## ପ୍ରସ୍ତାବନା

ଆମେ ଭାରତର ଲୋକେ ଭାରତକୁ ଏକ ସଂପୂର୍ଣ୍ଣ
ପ୍ରଭୁତାସଂପନ୍ନ ସମାଜବାଦୀ, ଧର୍ମନିରପେକ୍ଷ
ଲୋକତନ୍ତ୍ରାତ୍ମକ ଗଣରାଜ୍ୟ ଗଠନ କରିବା ନିମିତ୍ତ
ଏବଂ ଏହାର ସମସ୍ତ ନାଗରିକଙ୍କୁ ସାମାଜିକ,
ଆର୍ଥିକ ଓ ରାଜନୈତିକ ନ୍ୟାୟ, ତଥା ବିଚାର,
ଅଭିବ୍ୟକ୍ତି, ବିଶ୍ୱାସ, ଧର୍ମ ଓ ଉପାସନାର
ସ୍ୱାଧୀନତା ଏବଂ ପ୍ରତିଷ୍ଠା ଓ ସୁଯୋଗର ସମତା
ପ୍ରାପ୍ତ କରାଇବା ନିମିତ୍ତ, ତଥା ସେମାନଙ୍କ ମଧ୍ୟରେ
ବ୍ୟକ୍ତିର ଗରିମା ଓ ରାଷ୍ଟ୍ରର ଏକତା ଓ ଅଖଣ୍ଡତାକୁ
ସୁନିଶ୍ଚିତ କରୁଥିବା ଭ୍ରାତୃତ୍ୱ ବର୍ଦ୍ଧନ କରାଇବା
ନିମିତ୍ତ ଦୃଢ଼ ସଂକଳ୍ପ ହୋଇ ଆମ୍ଭମାନଙ୍କର ଏହି
ସଂବିଧାନ ସଭାରେ ଅଦ୍ୟ ୧୯୪୯ ମସିହା
ନଭେମ୍ବର ମାସ ଷଡ଼ବିଂଶ ଦିବସରେ ଏହି
ସଂବିଧାନକୁ ଏତଦ୍ୱାରା ଅଙ୍ଗୀକୃତ,
ଅଧିନିୟମିତ ଏବଂ ଆତ୍ମାର୍ପିତ କରୁଅଛୁ।

ପ୍ରଥମ ଓ ଚତୁର୍ଥ ଅନୁସୂଚୀର ସଂଶୋଧନ ନିମିତ୍ତ ଅନୁଚ୍ଛେଦ ୨ ଓ ୩ ଅଧୀନରେ ପ୍ରଣୀତ ବିଧି ଏବଂ ଅନୁପୂରକ, ଆନୁଷଙ୍ଗିକ ଓ ପାରିଣାମିକ ବିଷୟ ।

୪ । (୧) ଅନୁଚ୍ଛେଦ ୨ ବା ଅନୁଚ୍ଛେଦ ୩ ରେ ନିର୍ଦ୍ଦିଷ୍ଟ ବିଧିରେ ସେହି ବିଧିର ଉପବନ୍ଧମାନଙ୍କୁ ପ୍ରଭାବୀ କରିବା ପାଇଁ ପ୍ରଥମ ଅନୁସୂଚୀ ଓ ଚତୁର୍ଥ ଅନୁସୂଚୀର ସଂଶୋଧନ ନିମିତ୍ତ ଯେପରି ଆବଶ୍ୟକ ସେପରି ଉପବନ୍ଧମାନ ଅନ୍ତର୍ଭୁକ୍ତହେବ ଏବଂ ସଂସଦ ଯେପରି ଆବଶ୍ୟକ ବୋଲି ବିବେଚନା କରେ (ସଂସଦରେ, ତଥା ଯେଉଁ ରାଜ୍ୟ ବା ରାଜ୍ୟମାନଙ୍କ ଉପରେ ଏପରି ବିଧି ପ୍ରଭାବ ପକାଉ ଥାଏ ସେପରି ରାଜ୍ୟ ବା ରାଜ୍ୟମାନଙ୍କର ବିଧାନ ମଣ୍ଡଳମାନଙ୍କରେ, ପ୍ରତିନିଧିତ୍ୱ ସଂପର୍କୀୟ ଉପବନ୍ଧ ସମେତ) ସେପରି ଅନୁପୂରକ, ଆନୁଷଙ୍ଗିକ ଓ ପାରିଣାମିକ ଉପବନ୍ଧମାନ ମଧ୍ୟ ଅନ୍ତର୍ଭୁକ୍ତ ହେବ ।

(୨) ଉପରୋକ୍ତ ପ୍ରକାରର ଏପରି କୌଣସି ବିଧି ଅନୁଚ୍ଛେଦ ୩୬୮ର ପ୍ରୟୋଜନାର୍ଥେ ଏହି ସଂବିଧାନର ସଂଶୋଧନ ବୋଲି ବିବେଚିତ ହେବ ନାହିଁ ।

# ଭାଗ ୨

## ନାଗରକତା

ଏହି ସଂବିଧାନର ପ୍ରାରମ୍ଭରେ ନାଗରିକତା ।

୫ । ଏହି ସଂବିଧାନର ପ୍ରାରମ୍ଭବେଳେ ଏପରି ପ୍ରତ୍ୟେକ ବ୍ୟକ୍ତି ଯାହାଙ୍କର ଭାରତର ରାଜ୍ୟ କ୍ଷେତ୍ରରେ ଅଧିବାସ ଅଛି, ଏବଂ—

(କ) ଯେ ଭାରତର ରାଜ୍ୟକ୍ଷେତ୍ରରେ ଜାତ ହୋଇଥିଲେ , ଅଥବା

(ଖ) ଯାହାର ପିତାମାତାଙ୍କ ମଧ୍ୟରୁ କେହି ଭାରତର ରାଜ୍ୟକ୍ଷେତ୍ରରେ ଜାତ ହୋଇଥିଲେ , ଅଥବା

(ଗ) ଏପରି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେ ଅନ୍ୟୂନ ପାଞ୍ଚବର୍ଷ ଧରି ଭାରତର ରାଜ୍ୟକ୍ଷେତ୍ରରେ ସାଧାରଣତଃ ନିବାସୀ ହୋଇଅଛନ୍ତି,

ଭାରତର ନାଗରିକ ହେବେ ।

ପାକିସ୍ଥାନରୁ ଭାରତକୁ ପ୍ରବ୍ରଜନ କରିଥିବା କେତେକ ବ୍ୟକ୍ତିଙ୍କର ନାଗରିକତା ଅଧିକାର ।

୬ । ଅନୁଚ୍ଛେଦ ୫ରେ ଯାହାକିଛି ଥିବା ସତ୍ତ୍ୱେ, ପାକିସ୍ଥାନରେ ବର୍ତ୍ତମାନ ଅନ୍ତର୍ଗତ ରାଜ୍ୟକ୍ଷେତ୍ରରୁ ଭାରତର ରାଜ୍ୟକ୍ଷେତ୍ରକୁ ପ୍ରବ୍ରଜନ କରିଥିବା କୌଣସି ବ୍ୟକ୍ତି ଏହି ସଂବିଧାନର ପ୍ରାରମ୍ଭରେ ଭାରତର ନାଗରିକ ବୋଲି ବିବେଚିତ ହେବେ -

(କ) ଯଦି ସେ ବା ତାଙ୍କ ପିତାମାତାଙ୍କ ମଧ୍ୟରୁ କେହି ବା ପିତାମହ ଓ ପିତାମହୀଙ୍କ ମଧ୍ୟରୁ କେହି, ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ, ୧୯୩୫ (ଯଥା ମୂଳତଃ ଅଧିନିୟମିତ) ରେ ଯଥା ସଂଜ୍ଞାକୃତ ଭାରତରେ ଜାତ ହୋଇଥିଲେ; ଏବଂ

(ଖ) (୧) ଯେବେ ସେପରି ବ୍ୟକ୍ତି ୧୯୪୮ ମସିହା ଜୁଲାଇ ମାସ ଉନବିଂଶ ଦିବସ ପୂର୍ବରୁ ପ୍ରବ୍ରଜନ କରିଥାଆନ୍ତି ତେବେ, ଯଦି ତାଙ୍କର ସେପରି ପ୍ରବ୍ରଜନ କରିବା ତାରିଖଠାରୁ ସେ ସାଧାରଣତଃ ଭାରତର ରାଜ୍ୟକ୍ଷେତ୍ରରେ ନିବାସୀ ହୋଇଥାନ୍ତି ; ଅଥବା

(୨) ଯେବେ ସେପରି ବ୍ୟକ୍ତି ୧୯୪୮ ମସିହା ଜୁଲାଇମାସ ଉନବିଂଶ ଦିବସରେ ବା ତାହାପରେ ସେପରି ପ୍ରବ୍ରଜନ କରିଥାନ୍ତି ତେବେ ଯଦି ସେ ଭାରତ ଡ଼ୋମିନିୟନ ସରକାରଙ୍କ ଦ୍ୱାରା ସେଥି ନିମିତ୍ତ ନିଯୁକ୍ତ ଅଫିସରଙ୍କୁ ସେହି ସରକାରଙ୍କ ଦ୍ୱାରା ବିହିତ ପ୍ରପତ୍ରରେ ଏବଂ ରୀତିରେ ନାଗରିକତା ପ୍ରାପ୍ତି ନିମିତ୍ତ ଆବେଦନ ପତ୍ର ଦେଇ ସେହି ଅଫିସରଙ୍କ ଦ୍ୱାରା ଭାରତର ନାଗରିକ ରୂପେ ରେଜେଷ୍ଟ୍ରୀକୃତ ହୋଇଥାନ୍ତି :

ପରନ୍ତୁ କୌଣସି ବ୍ୟକ୍ତି ତାଙ୍କର ଆବେଦନ ତାରିଖର ଅବ୍ୟବହିତ ପୂର୍ବରୁ ଅନ୍ୟୂନ ଛଅମାସ ଧରି ଭାରତର ରାଜ୍ୟକ୍ଷେତ୍ରରେ ନିବାସୀ ହୋଇ ନଥିଲେ ତାହାଙ୍କୁ ଏପରି ରେଜେଷ୍ଟ୍ରୀକୃତ କରାଯିବ ନାହିଁ ।

ପାକିସ୍ଥାନକୁ ପ୍ରବ୍ରଜନ କରିଥିବା କେତେକ ବ୍ୟକ୍ତିଙ୍କର ନାଗରିକତା ଅଧିକାର ।

୭ । ଅନୁଚ୍ଛେଦ ୫ ଓ ୬ ରେ ଯାହା କିଛି ଥିବା ସତ୍ତ୍ୱେ, ଯେଉଁ ବ୍ୟକ୍ତି ୧୯୪୭ ମସିହା ମାର୍ଚ୍ଚମାସ ପ୍ରଥମ ଦିବସ ପରେ ଭାରତର ରାଜ୍ୟକ୍ଷେତ୍ରରୁ ପାକିସ୍ଥାନରେ ବର୍ତ୍ତମାନ ଅନ୍ତର୍ଭୁକ୍ତ ରାଜ୍ୟକ୍ଷେତ୍ରକୁ ପ୍ରବ୍ରଜନ କରିଥାନ୍ତି ସେହି ବ୍ୟକ୍ତି ଭାରତର ନାଗରିକ ବୋଲି ବିବେଚିତ ହେବେନାହିଁ :

ପରନ୍ତୁ ଯେଉଁ ବ୍ୟକ୍ତି ପାକିସ୍ଥାନରେ ବର୍ତ୍ତମାନ ଅନ୍ତର୍ଭୁକ୍ତ ରାଜ୍ୟକ୍ଷେତ୍ରକୁ ସେପରି ପ୍ରବ୍ରଜନ କରିବା ପରେ କୌଣସି ବିଧିର ପ୍ରାଧିକାର ଦ୍ୱାରା ବା ପ୍ରାଧିକାର ବଳରେ ପୁନର୍ବସତି ବା ସ୍ଥାୟୀ ପ୍ରତ୍ୟାଗମନ ନିମିତ୍ତ ଅନୁଜ୍ଞା ଅଧୀନରେ ଭାରତର ରାଜ୍ୟକ୍ଷେତ୍ରକୁ ପ୍ରତ୍ୟାଗମନ କରିଥାନ୍ତି ସେହିବ୍ୟକ୍ତିଙ୍କ ପ୍ରତି ଏହି ଅନୁଚ୍ଛେଦର କୌଣସି ବିଷୟ ଲାଗୁ ହେବନାହିଁ, ଏବଂ ଏପରି ପ୍ରତ୍ୟେକ ବ୍ୟକ୍ତି ଅନୁଚ୍ଛେଦ ୬ ର ଖଣ୍ଡ (ଖ) ର ପ୍ରୟୋଜନ ନିମିତ୍ତ, ୧୯୪୮ ମସିହା ଜୁଲାଇ ମାସ ଉନବିଂଶ ଦିବସ ପରେ ଭାରତର ରାଜ୍ୟକ୍ଷେତ୍ରକୁ ପ୍ରବ୍ରଜନ କରିଛନ୍ତି ବୋଲି ବିବେଚିତ ହେବେ ।

ଭାରତ ବାହାରେ ବାସ କରୁଥିବା ଭାରତୀୟ ଉଦ୍‌ଭବ କେତେକ ବ୍ୟକ୍ତିଙ୍କର ନାଗରିକତା ଅଧିକାର ।

୮ । ଅନୁଚ୍ଛେଦ ୫ ରେ ଯାହା କିଛି ଥିବା ସତ୍ତ୍ୱେ, ଯଦି କୌଣସି ବ୍ୟକ୍ତି ନିଜେ ବା ତାଙ୍କ ପିତା ମାତାଙ୍କ ମଧ୍ୟରୁ କେହି ବା ତାଙ୍କ ପିତାମହ ପିତାମହୀଙ୍କ ମଧ୍ୟରୁ କେହି (ଯଥା ମୂଳତଃ ଅଧିନିୟମିତ) ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ, ୧୯୩୫ ରେ ଯଥା ସଂଜ୍ଞାକୃତ ଭାରତରେ ଜନ୍ମଗ୍ରହଣ କରିଥିଲେ ତଥା ସେ ଏହି ପ୍ରକାରେ ସଂଜ୍ଞାକୃତ ଭାରତ ବାହାରେ କୌଣସି ଦେଶରେ ସାଧାରଣତଃ ବାସ କରୁଥାନ୍ତି ଏବଂ ତତ୍‌ସମୟ ବାସ କରୁଥିବା ଦେଶରେ ଥିବା ଭାରତର ରାଜନୈତିକ ବା ବାଣିଜ୍ୟିକ ପ୍ରତିନିଧି ନିକଟରେ ଭାରତର ଡୋମିନିୟନ ସରକାର ବା ଭାରତ ସରକାରଙ୍କ ଦ୍ୱାରା ବିହିତ ପ୍ରପତ୍ରରେ ଓ ରୀତିରେ ଏହି ସଂବିଧାନର ପ୍ରାରମ୍ଭର ପୂର୍ବରୁ ବା ପରେ ନାଗରିକତା ପ୍ରାପ୍ତି ନିମିତ୍ତ ଆବେଦନ କରିଥାନ୍ତି ୍‌ସେପରି ରାଜନୈତିକ ବା ବାଣିଜ୍ୟିକ ପ୍ରତିନିଧି ଦ୍ୱାରା ଭାରତର ନାଗରିକ ରୂପେ ରେଜେଷ୍ଟ୍ରୀକୃତ ହୋଇଥାନ୍ତି ସେହି ବ୍ୟକ୍ତି ଭାରତର ନାଗରିକ ରୂପେ ବିବେଚିତ ହେବେ ।

ସ୍ୱେଚ୍ଛାରେ ବିଦେଶୀ ରାଜ୍ୟର ନାଗରିକତା ଅର୍ଜନ କରିବା ବ୍ୟକ୍ତି ନାଗରିକ ହେବେ ନାହିଁ

୯ । ଯଦି କୌଣସି ବ୍ୟକ୍ତି ସ୍ୱେଚ୍ଛାରେ କୌଣସି ବିଦେଶୀ ରାଜ୍ୟର ନାଗରିକତା ଅର୍ଜନ କରିଥାନ୍ତି, ତେବେ ସେ ଅନୁଚ୍ଛେଦ ୫ ବଳରେ ଭାରତର ନାଗରିକ ହେବେ ନାହିଁ ବା ଅନୁଚ୍ଛେଦ ୬ ବା ଅନୁଚ୍ଛେଦ ୮ ବଳରେ ଭାରତର ନାଗରିକ ବୋଲି ବିବେଚିତ ହେବେ ନାହିଁ ।

ନାଗରିକତା ଅଧିକାର ଚାଲୁ ରହିବ ।

୧୦ । ଏହି ଭାଗରେ ପୂର୍ବବର୍ତ୍ତୀ ଉପବଂଧମାନଙ୍କ ମଧ୍ୟରୁ କୌଣସିଟିର ଅଧୀନରେ ଭାରତର ନାଗରିକ ଥିବା ବା ନାଗରିକ ବୋଲି ବିବେଚିତ ହେଉଥିବା ପ୍ରତ୍ୟେକ ବ୍ୟକ୍ତି ସଂସଦ ଦ୍ୱାରା ଯେଉଁ ବିଧି-ପ୍ରଣୟନ କରାଯିବ ତହିଁର ଉପବଂଧମାନଙ୍କର ବଶବର୍ତ୍ତୀ ରହି, ସେହିପରି ନାଗରିକ ହୋଇ ରହିବେ ।

ସଂସଦ ବିଧି-ଦ୍ୱାରା ନାଗରିକତା ଅଧିକାରକୁ ବିନିୟମିତ କରିବ ।

୧୧ । ଏହି ଭାଗରେ ପୂର୍ବବର୍ତ୍ତୀ ଉପବଂଧମାନଙ୍କରେ ଥିବା କୌଣସି ବିଷୟ ନାଗରିକତାର ଅର୍ଜନ ଓ ପର୍ଯ୍ୟବସାନ ଏବଂ ନାଗରିକତା ସଂବନ୍ଧୀୟ ଅନ୍ୟ ସମସ୍ତ ବିଷୟ ସମ୍ବନ୍ଧରେ ଉପବଂଧ ପ୍ରଣୟନ କରିବା ନିମିତ୍ତ ସଂସଦର କ୍ଷମତାର ଅଳ୍ପୀକରଣ କରିବ ନାହିଁ ।

# ଭାଗ ୩

## ମୌଳିକ ଅଧିକାର

### ସାଧାରଣ

ସଂଜ୍ଞା

୧୨ । ପ୍ରସଂଗ ଅନ୍ୟଥା ଆବଶ୍ୟକ କରୁନଥିଲେ, ଏହି ଭାଗରେ, ଭାରତର ସରକାର ଓ ସଂସଦ ଏବଂ ରାଜ୍ୟମାନଙ୍କ ମଧ୍ୟରୁ ପ୍ରତ୍ୟେକର ସରକାର ଓ ବିଧାନ ମଣ୍ଡଳ ଏବଂ ଭାରତ ରାଜ୍ୟକ୍ଷେତ୍ର ମଧ୍ୟରେ ଅଥବା ଭାରତ ସରକାରଙ୍କ ନିୟନ୍ତ୍ରଣ ଅଧୀନରେ ଥିବା ସମସ୍ତ ସ୍ଥାନୀୟ ବା ଅନ୍ୟ ପ୍ରାଧିକରଣ "ରାଜ୍ୟ" ର ଅନ୍ତର୍ଗତ ଅଟନ୍ତି ।

ମୌଳିକ ଅଧିକାର ସହ ଅସଙ୍ଗତ ବା ତହିଁର ଅଳ୍ପୀକରଣକାରୀ ବିଧିସମୂହ ।

୧୩ । (୧) ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତ ରାଜ୍ୟକ୍ଷେତ୍ରରେ ପ୍ରବୃତ୍ତ ସମସ୍ତ ବିଧି ଏହି ଭାଗର ଉପବଂଧମାନଙ୍କ ସହ ଯେଉଁ ପର୍ଯ୍ୟନ୍ତ ଅସଙ୍ଗତ ହୋଇଥାଏ ଅସଙ୍ଗତିର ସେତିକି ମାତ୍ରାପର୍ଯ୍ୟନ୍ତ ଶୂନ୍ୟହେବ ।

(୨) ରାଜ୍ୟ ଏପରି କୌଣସି ବିଧି ପ୍ରଣୟନ କରିବ ନାହିଁ ଯାହାକି ଏହି ଭାଗଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କୁ କାଢି ନେଉଥିବ ବା ସଂକୀର୍ଣ୍ଣ କରୁଥିବ ଏବଂ ଏହି ଖଣ୍ଡର ଉଲଂଘନରେ ପ୍ରଣୀତ କୌଣସି ବିଧି ସେହି ଉଲଂଘନର ମାତ୍ରା ପର୍ଯ୍ୟନ୍ତ ଶୂନ୍ୟ ହେବ ।

(୩) ପ୍ରସଂଗ ଅନ୍ୟଥା ଆବଶ୍ୟକ କରୁ ନ ଥିଲେ, ଏହି ଅନୁଚ୍ଛେଦରେ,—

(କ) ଭାରତର ରାଜ୍ୟକ୍ଷେତ୍ରରେ ବିଧିବତ୍ ପ୍ରଭାବୀ କୌଣସି ଅଧ୍ୟାଦେଶ, ଆଦେଶ, ଉପବିଧି, ନିୟମ, ବିନିୟମ, ଅଧିସୂଚନା, ରୂଢ଼ି ଅଥବା ପ୍ରଥା "ବିଧି" ର ଅନ୍ତର୍ଗତ ଅଟେ ;

(ଖ) ପ୍ରବୃତ୍ତ ବିଧି କହିଲେ ତହିଁରେ ଏପରି ବିଧିମାନ ଅନ୍ତର୍ଗତ ହେବ ଯାହାକି ଭାରତ ରାଜ୍ୟକ୍ଷେତ୍ରର କୌଣସି ବିଧାନମଣ୍ଡଳ ଦ୍ୱାରା ପାରିତ ବା ପ୍ରଣୀତ ହୋଇଥାଏ ଏବଂ ପୂର୍ବରୁ ନିରସିତ ହୋଇ ନଥାଏ, ଯଦ୍ୟପି ସେପରି କୌଣସି ବିଧି ବା ତାହାର କୌଣସି ଭାଗ ସେହି ସମୟରେ ଆଦୌ ପ୍ରବର୍ତ୍ତିତ ହୋଇ ନଥାଏ ବା କୌଣସି ବିଶେଷ କ୍ଷେତ୍ରମାନଙ୍କରେ ପ୍ରବର୍ତ୍ତିତ ହୋଇ ନ ଥାଏ ।

(୪) ଏହି ଅନୁଚ୍ଛେଦର କୌଣସି ବିଷୟ ଅନୁଚ୍ଛେଦ ୩୬୮ ଅନୁଯାୟୀ ଏହି ସଂବିଧାନର କୌଣସି ସଂଶୋଧନ ପ୍ରତି ଲାଗୁହେବନାହିଁ ।

### ସମତା ଅଧିକାର

ବିଧି ସମକ୍ଷରେ ସମତା ।

୧୪ । ରାଜ୍ୟ, ଭାରତ ରାଜ୍ୟକ୍ଷେତ୍ର ମଧ୍ୟରେ କୌଣସି ବ୍ୟକ୍ତିଙ୍କୁ ବିଧି ସମକ୍ଷରେ ସମତା ବା ବିଧିମାନଙ୍କ ଦ୍ୱାରା ସମସଂରକ୍ଷଣରୁ ବଂଚିତ କରିବ ନାହିଁ ।

ଧର୍ମ, ମୂଳବଂଶ, ଜାତି, ଲିଙ୍ଗ ବା ଜନ୍ମସ୍ଥାନର ଆଧାର ହେତୁ ବିଭେଦର ନିଷେଧ ।

୧୫ । (୧) ରାଜ୍ୟ କୌଣସି ନାଗରିକ ପ୍ରତି କେବଳ ଧର୍ମ, ମୂଳବଂଶ, ଜାତି, ଲିଙ୍ଗ, ଜନ୍ମସ୍ଥାନ ବା ଏଥି ମଧ୍ୟରୁ କୌଣସିଟି ହେତୁ କୌଣସି ଭେଦ ଭାବ ଆଚରଣ କରିବ ନାହିଁ ।

(୨) କେବଳ ଧର୍ମ, ମୂଳବଂଶ, ଜାତି, ଲିଙ୍ଗ, ଜନ୍ମସ୍ଥାନ ବା ଏଥି ମଧ୍ୟରୁ କୌଣସିଟି ହେତୁ କୌଣସି ନାଗରିକ—

(କ) ଦୋକାନ, ସାର୍ବଜନିକ ଭୋଜନାଳୟ, ହୋଟେଲ ତଥା ସାର୍ବଜନିକ ମନୋରଂଜନ ସ୍ଥାନରେ ପ୍ରବେଶ, ଅଥବା

(ଖ) ପୂର୍ଣ୍ଣତଃ ବା ଆଂଶିକ ଭାବେ ରାଜ୍ୟ ନିଧି ଦ୍ୱାରା ଅନୁରକ୍ଷିତ ବା ଜନସାଧାରଣଙ୍କ ବ୍ୟବହାର ନିମିତ୍ତ ଉତ୍ସର୍ଗୀକୃତ କୂପ, ପୁଷ୍କରିଣୀ, ସ୍ନାନଘାଟ, ପଥ ତଥା ଜନ ସମାଗମ ସ୍ଥାନର ବ୍ୟବହାର,

ସଂପର୍କରେ କୌଣସି ନିର୍ଯୋଗ୍ୟତା, ଦାୟିତ୍ୱ, ନିର୍ବଂଧନ ବା ସର୍ତ୍ତର ବଶବର୍ତ୍ତୀ ହେବ ନାହିଁ ।

(୩) ଏହି ଅନୁଚ୍ଛେଦର କୌଣସି ବିଷୟ ସ୍ତ୍ରୀ ଏବଂ ପିଲମାନଙ୍କ ନିମିତ୍ତ କୌଣସି ବିଶେଷ ଉପବଂଧ ପ୍ରଣୟନ କରିବାରେ ରାଜ୍ୟକୁ ବାଧା ଦେବ ନାହିଁ ।

(୪) ଏହି ଅନୁଚ୍ଛେଦର ବା ଅନୁଚ୍ଛେଦ ୨୯ ର ଖଣ୍ଡ (୨) ର କୌଣସି ବିଷୟ, ସାମାଜିକ ଓ ଶିକ୍ଷାତ୍ମକ ଦୃଷ୍ଟିରୁ ଅନୁନ୍ନତ ରହିଥିବା କୌଣସି ନାଗରିକ ବର୍ଗର ଉନ୍ନତି ନିମିତ୍ତ ବା ଅନୁସୂଚିତ ଜାତି ବା ଅନୁସୂଚିତ ଜନଜାତିଙ୍କ ନିମିତ୍ତ କୌଣସି ବିଶେଷ ଉପବଂଧ କରିବାରେ ରାଜ୍ୟକୁ ବାଧା ଦେବ ନାହିଁ ।

ଲୋକ ନିୟୋଜନ ବିଷୟରେ ସୁଯୋଗର ସମତା ।

୧୬ । (୧) ରାଜ୍ୟ ଅଧୀନରେ କୌଣସି ପଦରେ ନିୟୋଜନ ବା ନିଯୁକ୍ତି ବିଷୟରେ ସମସ୍ତ ନାଗରିକଙ୍କ ପାଇଁ ସୁଯୋଗର ସମତା ରହିବ ।

(୨) କେବଳ ଧର୍ମ, ମୂଳବଂଶ, ଜାତି, ଲିଙ୍ଗ, ଉଦ୍‌ଭବ, ଜନ୍ମସ୍ଥାନ, ନିବାସ ବା ଏଥିମଧ୍ୟରୁ କୌଣସିଟି ହେତୁ କୌଣସି ନାଗରିକ ରାଜ୍ୟ ଅଧୀନରେ କୌଣସି ନିୟୋଜନ ବା ପଦପାଇଁ ଅପାତ୍ର ହେବେ ନାହିଁ କିମ୍ବା ତାହାଙ୍କ ପ୍ରତି ଭେଦଭାବ ଆଚରଣ କରାଯିବ ନାହିଁ ।

(୩) ଏହି ଅନୁଚ୍ଛେଦର କୌଣସି ବିଷୟ, କୌଣସି ରାଜ୍ୟ ବା ସଂଘରାଜ୍ୟକ୍ଷେତ୍ରର ସରକାରଙ୍କର ବା ତହିଁରେ କୌଣସି ସ୍ଥାନୀୟ ବା ଅନ୍ୟ ପ୍ରାଧିକରଣ ଅଧୀନରେ କୌଣସି ଏକ ବା ଏକାଧିକ ବର୍ଗର ନିୟୋଜନ ବା ପଦ ନିଯୁକ୍ତି ସଂପର୍କରେ ଏପରି ନିୟୋଜନ ବା ନିଯୁକ୍ତି ପୂର୍ବରୁ ସେହି ରାଜ୍ୟ ବା ସଂଘରାଜ୍ୟକ୍ଷେତ୍ର ମଧ୍ୟରେ ନିବାସ ସଂପର୍କରେ ଆବଶ୍ୟକତା ବିହିତ କରୁଥିବା କୌଣସି ବିଧି ପ୍ରଣୟନ କରିବାରେ ସଂସଦକୁ ବାଧା ଦେବ ନାହିଁ ।

(୪) ରାଜ୍ୟର ମତରେ କୌଣସି ଅନୁନ୍ନତ ବର୍ଗର ନାଗରିକମାନେ ରାଜ୍ୟାଧୀନ ସେବାମାନଙ୍କରେ ଯଥା ଯୋଗ୍ୟ ପ୍ରତିନିଧିତ୍ୱ ଲାଭ କରି ନଥିଲେ ସେମାନଙ୍କର ପକ୍ଷରେ ନିଯୁକ୍ତି ବା ପଦର ଆରକ୍ଷଣ ନିମିତ୍ତ କୌଣସି ଉପବଂଧ କରିବାରେ ଏହି ଅନୁଚ୍ଛେଦର କୌଣସି ବିଷୟ ରାଜ୍ୟକୁ ବାଧା ଦେବ ନାହିଁ ।

(୫) ଏହି ଅନୁଚ୍ଛେଦର କୌଣସି ବିଷୟ, କୌଣସି ଧାର୍ମିକ ବା ସାମ୍ପ୍ରଦାୟିକ ସଂସ୍ଥାର କାର୍ଯ୍ୟ ସମ୍ପର୍କୀୟ କୌଣସି ପଦଧାରୀ ବା ତହିଁର ଶାସନ ନିକାୟର କୌଣସି ସଦସ୍ୟ କୌଣସି ବିଶେଷ ଧର୍ମର ବା କୌଣସି ବିଶେଷ ସଂପୃକ୍ତ ସମ୍ପ୍ରଦାୟର ଅନୁଗାମୀ ହେବା ନିମିତ୍ତ ଉପବଂଧ କରୁଥିବା କୌଣସି ବିଧିର ପ୍ରବର୍ତ୍ତନ ଉପରେ ପ୍ରଭାବ ପକାଇବ ନାହିଁ ।

ଅସ୍ପୃଶ୍ୟତାର ଉଚ୍ଛେଦନ ।

୧୭ । "ଅସ୍ପୃଶ୍ୟତା" ଉଚ୍ଛେଦନ କରାଗଲା ଏବଂ କୌଣସି ରୂପରେ ଏଥିର ଆଚରଣ ନିଷିଦ୍ଧ କରାଗଲା । "ଅସ୍ପୃଶ୍ୟତା" ଜନିତ କୌଣସି ନିର୍ଯୋଗ୍ୟତା ପ୍ରବର୍ତ୍ତନ କରିବା ବିଧି ଅନୁସାରେ ଦଣ୍ଡନୀୟ ଏକ ଅପରାଧ ହେବ ।

ଉପାଧିର ଉଚ୍ଛେଦନ ।

୧୮ । (୧) କୌଣସି ଉପାଧି, ଯଦି ତାହା ସେନା ବା ବିଦ୍ୟାଗତ କୃତିତ୍ୱ ନିମିତ୍ତ ନ ହୋଇଥାଏ, ରାଜ୍ୟଦ୍ୱାରା ପ୍ରଦତ୍ତ ହେବ ନାହିଁ ।

(୨) ଭାରତର କୌଣସି ନାଗରିକ କୌଣସି ବିଦେଶୀ ରାଜ୍ୟରୁ କୌଣସି ଉପାଧି ଗ୍ରହଣ କରିବେ ନାହିଁ ।

(୩) ଭାରତର କୌଣସି ନାଗରିକ କୌଣସି ବିଦେଶୀ ରାଜ୍ୟ ଅଧୀନରେ କୌଣସି ଲାଭପ୍ରଦ ବା ଆସ୍ଥାପଦ ପଦ ଧାରଣ କରୁଥିବା ବେଳେ ରାଷ୍ଟ୍ରପତିଙ୍କ ସମ୍ମତି ବିନା କୌଣସି ବିଦେଶୀ ରାଜ୍ୟରୁ କୌଣସି ଉପାଧି ଗ୍ରହଣ କରିବେ ନାହିଁ ।

(୪) ରାଜ୍ୟର ଅଧୀନରେ କୌଣସି ଲାଭପ୍ରଦ ବା ଆସ୍ଥାପ୍ରଦ ପଦଧାରଣ କରୁଥିବା କୌଣସିବ୍ୟକ୍ତି ରାଷ୍ଟ୍ରପତିଙ୍କ ସମ୍ମତି ବିନା କୌଣସି ବିଦେଶୀ ରାଜ୍ୟରୁ ବା ବିଦେଶୀ ରାଜ୍ୟର ଅଧୀନରେ କୌଣସି ପ୍ରକାରର ଉପହାର, ଉପଲବ୍ଧି ବା ପଦ ଗ୍ରହଣ କରିବେ ନାହିଁ ।

## ସ୍ୱାତନ୍ତ୍ର୍ୟ ଅଧିକାର

ବାକ୍-ସ୍ୱାତନ୍ତ୍ର୍ୟ ଇତ୍ୟାଦି ବିଷୟକ କେତେକ ଅଧିକାରର ସଂରକ୍ଷଣ ।

୧୯ । (୧) ସମସ୍ତ ନାଗରିକଙ୍କର—

(କ) ବାକ୍ ସ୍ୱାତନ୍ତ୍ର୍ୟ ଓ ଅଭିବ୍ୟକ୍ତିର ସ୍ୱାତନ୍ତ୍ର୍ୟ ନିମିତ୍ତ,

(ଖ) ଶାନ୍ତିପୂର୍ବକ ଓ ନିରାୟୁଧ ଭାବେ ସମ୍ମିଳିତ ହେବା ନିମିତ୍ତ,

(ଗ) ସଂସ୍ଥା ବା ସଂଘମାନ ଗଠନ କରିବା ନିମିତ୍ତ,

(ଘ) ଭାରତର ରାଜ୍ୟ କ୍ଷେତ୍ରରେ ସର୍ବତ୍ର ଅବାଧ ସଂଚରଣ ନିମିତ୍ତ,

(ଙ) ଭାରତର ରାଜ୍ୟକ୍ଷେତ୍ରର ଯେ କୌଣସି ଭାଗରେ ନିବାସ କରିବା ଓ ସ୍ଥାୟୀଭାବେ ବାସ କରିବା ନିମିତ୍ତ, ତଥା

(ଚ)

(ଛ) ଯେ କୌଣସି ବୃତ୍ତି ଅଭ୍ୟାସ କରିବା କିମ୍ବା ଉପଜୀବିକା, ବ୍ୟାପାର ବା କାରବାର କରିବା ନିମିତ୍ତ,

ଅଧିକାର ରହିବ ।

(୨) ଖଣ୍ଡ (୧) ର ଉପଖଣ୍ଡ (କ) ର କୌଣସି ବିଷୟ ଏପରି କୌଣସି ବିଦ୍ୟମାନ ବିଧିର ପ୍ରବର୍ତ୍ତନ ଉପରେ ପ୍ରଭବ ପକାଇବ ନାହିଁ ବା ଏପରି କୌଣସି ବିଧି ପ୍ରଣୟନ କରିବାରେ ରାଜ୍ୟକୁ ବାଧାଦେବ ନାହିଁ ଯେତେଦୂର ପର୍ଯ୍ୟନ୍ତ ସେପରି ବିଧି ଉକ୍ତ ଉପଖଣ୍ଡ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କର ପ୍ରୟୋଗ ଉପରେ ଭାରତର ପ୍ରଭୁତା ଓ ଅଖଣ୍ଡତା, ରାଜ୍ୟର ସୁରକ୍ଷା, ବିଦେଶୀ ରାଜ୍ୟମାନଙ୍କ ସହ ମୈତ୍ରୀପୂର୍ଣ୍ଣ ସଂବଧ, ସାର୍ବଜନିକ ବ୍ୟବସ୍ଥା, ଶିଷ୍ଟାଚାର ବା ସଦାଚାରର ହିତ ଦୃଷ୍ଟେ, ଅଥବା ନ୍ୟାୟାଳୟ ଅବମାନ, ମାନହାନି ବା ଅପରାଧ ଉଦ୍ଦୀପନା ସଂବଧରେ ଯୁକ୍ତିଯୁକ୍ତ ନିର୍ବଂଧନ ଆରୋପ କରୁଥାଏ ।

(୩) ଉକ୍ତ ଖଣ୍ଡର ଉପଖଣ୍ଡ (ଖ) ର କୌଣସି ବିଷୟ ଏପରି କୌଣସି ବିଦ୍ୟମାନ ବିଧିର ପ୍ରବର୍ତ୍ତନ ଉପରେ ପ୍ରଭାବ ପକାଇବ ନାହିଁ ବା ଏପରି କୌଣସି ବିଧି ପ୍ରଣୟନ କରିବାରେ ରାଜ୍ୟକୁ ବାଧା ଦେବ ନାହିଁ ଯେତେଦୂର ପର୍ଯ୍ୟନ୍ତ ତାହା ଉକ୍ତ ଉପଖଣ୍ଡ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କର ପ୍ରୟୋଗ ଉପରେ ଭାରତର ପ୍ରଭୁତା ଓ ଅଖଣ୍ଡତା ବା ସାର୍ବଜନିକ ବ୍ୟବସ୍ଥାର ହିତ ଦୃଷ୍ଟେ ଯୁକ୍ତିଯୁକ୍ତ ନିର୍ବଂଧନ ଆରୋପ କରୁଥାଏ ।

(୪) ଉକ୍ତ ଖଣ୍ଡର ଉପଖଣ୍ଡ(ଗ) ର କୌଣସି ବିଷୟ ଏପରି କୌଣସି ବିଦ୍ୟମାନ ବିଧିର ପ୍ରବର୍ତ୍ତନ ଉପରେ ପ୍ରଭାବ ପକାଇବ ନାହିଁ ବା ଏପରି କୌଣସି ବିଧି ପ୍ରଣୟନ କରିବାରେ ରାଜ୍ୟକୁ ବାଧା ଦେବନାହିଁ ଯେତେଦୂର ପର୍ଯ୍ୟନ୍ତ ସେପରି ବିଧି ଉକ୍ତ ଉପଖଣ୍ଡ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କର ପ୍ରୟୋଗ ଉପରେ ଭାରତର ପ୍ରଭୁତା ଓ ଅଖଣ୍ଡତା ବା ସାର୍ବଜନିକ ବ୍ୟବସ୍ଥା ବା ସଦାଚାରର ହିତ ଦୃଷ୍ଟେ ଯୁକ୍ତିଯୁକ୍ତ ନିର୍ବନ୍ଧନ ଆରୋପ କରୁଥାଏ ।

(୫) ଉକ୍ତ ଖଣ୍ଡର ଉପଖଣ୍ଡ (ଘ) ଓ (ଙ) ର କୌଣସି ବିଷୟ ଏପରି କୌଣସି ବିଦ୍ୟମାନ ବିଧିର ପ୍ରବର୍ତ୍ତନ ଉପରେ ପ୍ରଭାବ ପକାଇବ ନାହିଁ ବା ଏପରି କୌଣସି ବିଧି ପ୍ରଣୟନ କରିବାରେ ରାଜ୍ୟକୁ ବାଧା ଦେବନାହିଁ ଯେତେଦୂର ପର୍ଯ୍ୟନ୍ତ ସେପରି ବିଧି ଉକ୍ତ ଉପଖଣ୍ଡମାନଙ୍କ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କର ପ୍ରୟୋଗ ଉପରେ ଜନସାଧାରଣଙ୍କର ହିତ ଦୃଷ୍ଟେ ଅଥବା କୌଣସି ଅନୁସୂଚିତ ଜନଜାତିଙ୍କର ହିତ ସଂରକ୍ଷଣ ନିମିତ୍ତ ଯୁକ୍ତିଯୁକ୍ତ ନିର୍ବନ୍ଧନ ଆରୋପ କରୁଥାଏ ।

(୬) ଉକ୍ତ ଖଣ୍ଡର ଉପଖଣ୍ଡ (ଛ) ର କୌଣସି ବିଷୟ ଏପରି କୌଣସି ବିଦ୍ୟମାନ ବିଧିର ପ୍ରବର୍ତ୍ତନ ଉପରେ ପ୍ରଭାବ ପକାଇବ ନାହିଁ ବା ଏପରି କୌଣସି ବିଧି ପ୍ରଣୟନ କରିବାରେ ରାଜ୍ୟକୁ ବାଧା ଦେବନାହିଁ ଯେତେଦୂର ପର୍ଯ୍ୟନ୍ତ ସେପରି ବିଧି ଉକ୍ତ ଉପଖଣ୍ଡ ଦ୍ୱାରା ପ୍ରଦତ୍ତ ଅଧିକାରର ପ୍ରୟୋଗ ଉପରେ ଜନ ସାଧାରଣଙ୍କ ହିତ ଦୃଷ୍ଟେ

ଯୁକ୍ତିଯୁକ୍ତ ନିର୍ବନ୍ଧନ ଆରୋପ କରୁଥାଏ, ଏବଂ ବିଶେଷତଃ ଉକ୍ତ ଉପଖଣ୍ଡର କୌଣସି ବିଷୟ ଏପରି କୌଣସି ବିଦ୍ୟମାନ ବିଧିର ପ୍ରବର୍ତ୍ତନ ଉପରେ ପ୍ରଭାବ ପକାଇବ ନାହିଁ ବା ଏପରି କୌଣସି ବିଧି ପ୍ରଣୟନ କରିବାରେ ରାଜ୍ୟକୁ ବାଧା ଦେବ ନାହିଁ ଯେତେଦୂର ପର୍ଯ୍ୟନ୍ତ ତାହା–

(/) କୌଣସି ବୃତ୍ତି ଅଭ୍ୟାସ କରିବା କିମ୍ବା ଉପଜୀବିକା, ବ୍ୟାପାର ବା କାରବାର କରିବା ନିମିତ୍ତ ଆବଶ୍ୟକ ବୃତ୍ତିଗତ ବା ଶିଳ୍ପଗତ ଯୋଗ୍ୟତା ସହ, ଅଥବା

(୵) ରାଜ୍ୟଦ୍ୱାରା ବା ରାଜ୍ୟର ସ୍ୱାମିତ୍ୱାଧୀନ ବା ନିୟନ୍ତ୍ରଣାଧୀନ କୌଣସି ନିଗମ ଦ୍ୱାରା ନାଗରିକମାନଙ୍କର ପୂର୍ଣ୍ଣ ବା ଆଂଶିକ ଅପବର୍ଜନରେ ବା ଅନ୍ୟଥା କୌଣସି ବ୍ୟାପାର, କାରବାର, ଉଦ୍ୟୋଗ ବା ସେବା କରାଯିବା ସହ,

ସମ୍ବନ୍ଧିତ ହୋଇଥାଏ ।

**ଅପରାଧ ଜନିତ ଦୋଷ ସାବ୍ୟସ୍ତି ବିଷୟରେ ସଂରକ୍ଷଣ ।**

୨୦ । (୧) ଅପରାଧ ରୂପେ ଆରୋପିତ କାର୍ଯ୍ୟ କରାଯିବା ସମୟରେ ପ୍ରବୃତ୍ତଥିବା କୌଣସି ବିଧିର ଅତିକ୍ରମଣ ହୋଇନଥିଲେ କୌଣସି ବ୍ୟକ୍ତିଙ୍କୁ କୌଣସି ଅପରାଧ ନିମିତ୍ତ ଦୋଷୀ ସାବ୍ୟସ୍ତ କରାଯିବ ନାହିଁ ବା ଅପରାଧ କରିବା ସମୟରେ ପ୍ରବୃତ୍ତ ଥିବା ବିଧିର ଅଧୀନରେ ଯେତିକି ଦଣ୍ଡ ଦିଆଯାଇପାରିଥାନ୍ତା ତହିଁରୁ ଅଧିକ ଦଣ୍ଡରେ ଦଣ୍ଡିତ କରାଯିବ ନାହିଁ ।

(୨) କୌଣସି ବ୍ୟକ୍ତି ଏକ ଅପରାଧ ନିମିତ୍ତ ଏକାଧିକ ବାର ଅଭିଯୋଜିତ ଓ ଦଣ୍ଡିତ ହେବେ ନାହିଁ ।

(୩) କୌଣସି ଅପରାଧରେ ଅଭିଯୁକ୍ତ କୌଣସି ବ୍ୟକ୍ତିଙ୍କୁ ତାହାଙ୍କ ନିଜ ବିରୁଦ୍ଧରେ ସାକ୍ଷ୍ୟଦେବା ନିମିତ୍ତ ବାଧ୍ୟ କରାଯିବ ନାହିଁ ।

**ଜୀବନର ଓ ଦୈହିକ ସ୍ୱାଧୀନତାର ସଂରକ୍ଷଣ ।**

୨୧ । ବିଧିଦ୍ୱାରା ସ୍ଥାପିତ ପ୍ରକ୍ରିୟା ବ୍ୟତିରେକେ କୌଣସି ବ୍ୟକ୍ତିଙ୍କୁ ନିଜର ଜୀବନ ଓ ଦୈହିକ ସ୍ୱାଧୀନତାରୁ ବଞ୍ଚିତ କରାଯିବ ନାହିଁ ।

**କେତେକ ସ୍ଥଳରେ ବନ୍ଦୀ କରଣ ଓ ନିରୋଧ ବିରୋଧରେ ସଂରକ୍ଷଣ ।**

୨୨ । (୧) ବନ୍ଦୀ କରାଯାଇଥିବା କୌଣସି ବ୍ୟକ୍ତିଙ୍କୁ ଏପରି ବନ୍ଦୀ କରିବାର କାରଣ ଯଥାଶୀଘ୍ର ଅବଗତ କରାନଯାଇ ଅଭିରକ୍ଷାରେ ନିରୁଦ୍ଧ କରାଯିବ ନାହିଁ ବା ତାହାଙ୍କୁ ନିଜର ଅଭିପ୍ରେତ ବିଧିବ୍ୟବସାୟୀଙ୍କ ସହ ପରାମର୍ଶ କରିବା ତଥା ସେପରି ବିଧିବ୍ୟବସାୟୀ ଦ୍ୱାରା ନିଜର ପ୍ରତିରକ୍ଷା କରାଇବା ଅଧିକାରରୁ ବଞ୍ଚିତ କରାଯିବ ନାହିଁ ।

(୨) ବନ୍ଦୀ କରାଯାଇଥିବା ଓ ଅଭିରକ୍ଷାରେ ନିରୁଦ୍ଧ କରାଯାଇଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ବନ୍ଦୀ କରାଯିବା ସ୍ଥାନରୁ ନିକଟତମ ମାଜିଷ୍ଟ୍ରେଟ୍‌ଙ୍କ ନ୍ୟାୟାଳୟକୁ ଯିବା ପାଇଁ ଆବଶ୍ୟକ ହେବା ସମୟକୁ ଛାଡ଼ି, ଏପରି ବନ୍ଦୀ କରାଯିବା ସମୟଠୁ ଚବିଶ ଘଣ୍ଟାର କାଳାବଧି ମଧ୍ୟରେ ସେହି ମାଜିଷ୍ଟ୍ରେଟ୍‌ଙ୍କ ସମକ୍ଷରେ ହାଜର କରାଯିବ ଏବଂ ସେପରି କୌଣସି ବ୍ୟକ୍ତିଙ୍କୁ ମାଜିଷ୍ଟ୍ରେଟ୍‌ଙ୍କ ପ୍ରାଧିକାର ବିନା ଉକ୍ତ କାଳାବଧିରୁ ଅଧିକ ସମୟ ଅଭିରକ୍ଷାରେ ନିରୁଦ୍ଧ କରାଯିବ ନାହିଁ ।

(୩) ଖଣ୍ଡ (୧) ଓ ଖଣ୍ଡ (୨)ର କୌଣସି ବିଷୟ–

(କ) ଯେଉଁ ବ୍ୟକ୍ତି ତତ୍‌ସମୟ ଶତ୍ରୁଦେଶୀୟ ହୋଇଥାନ୍ତି ତାହାଙ୍କ ପ୍ରତି, ଅଥବା

(ଖ) ଯେଉଁ ବ୍ୟକ୍ତିଙ୍କୁ ନିବାରକ ନିରୋଧ ନିମିତ୍ତ ଉପବନ୍ଧକାରୀ କୌଣସି ବିଧିର ଅଧୀନରେ ବନ୍ଦୀ ବା ନିରୁଦ୍ଧ କରାଯାଇଥାଏ, ତାହାଙ୍କପ୍ରତି,

ଲାଗୁହେବ ନାହିଁ ।

(୪) ନିବାରକ ନିରୋଧ ନିମିତ୍ତ ଉପବଂଧ କରୁଥିବା କୌଣସି ବିଧି କୌଣସି ବ୍ୟକ୍ତିଙ୍କୁ ତିନିମାସରୁ ଅଧିକ କାଳ ପାଇଁ ନିରୁଦ୍ଧ କରିବା ନିମିତ୍ତ ପ୍ରାଧିକୃତ କରିବ ନାହିଁ, ଯଦି–

(କ) ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ ହୋଇଥିବା ବା ନ୍ୟାୟାଧୀଶ ରୂପେ ପୂର୍ବେ କାର୍ଯ୍ୟ କରିଥିବା ଅଥବା ନ୍ୟାୟାଧୀଶ ରୂପେ ନିଯୁକ୍ତ ହେବାକୁ ଯୋଗ୍ୟ ହୋଇଥିବା ବ୍ୟକ୍ତିମାନଙ୍କୁ ନେଇ ଗଠିତ ଏକ ଉପଦେଷ୍ଟା ମଣ୍ଡଳୀ ଉକ୍ତ ତିନିମାସ କାଳର ଅବସାନ ପୂର୍ବରୁ ତାହା ମତରେ ଏପରି ନିରୁଦ୍ଧ ରଖାଯିବା ପାଇଁ ପର୍ଯ୍ୟାପ୍ତ କାରଣ ଅଛି ବୋଲି ରିପୋର୍ଟ ଦେଇ ନଥାଏ :

ପରନ୍ତୁ ଏହି ଉପଖଣ୍ଡର କୌଣସି ବିଷୟ କୌଣସି ବ୍ୟକ୍ତିଙ୍କୁ ଖଣ୍ଡ (୭)ର ଉପଖଣ୍ଡ (ଖ) ଅଧୀନରେ ସଂସଦ ଦ୍ୱାରା ପ୍ରଣୀତ କୌଣସି ବିଧିଦ୍ୱାରା ବିହିତ ଅଧିକତମ କାଳାବଧିର ସମୟୋତ୍ତର ନିରୁଦ୍ଧ କରିବା ନିମିତ୍ତ ପ୍ରାଧିକୃତ କରିବ ନାହିଁ ।

(ଖ) ସେହି ବ୍ୟକ୍ତି ଖଣ୍ଡ (୭) ର ଉପଖଣ୍ଡ (କ) ଓ (ଖ) ଅଧୀନରେ ସଂସଦ ଦ୍ୱାରା ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କ ଅନୁସାରେ ନିରୁଦ୍ଧ ହୋଇ ନ ଥାଏ ।

(୫) ଯେବେ କୌଣସି ବ୍ୟକ୍ତିଙ୍କୁ ନିବାରକ ନିରୋଧ ନିମିତ୍ତ ବ୍ୟବସ୍ଥା ଥିବା କୌଣସି ବିଧି ଅଧୀନରେ ପ୍ରଦତ୍ତ ଆଦେଶ ଅନୁସାରେ ନିରୁଦ୍ଧ କରାଯାଇଥାଏ ତେବେ ଆଦେଶ ପ୍ରଦାନକାରୀ ପ୍ରାଧିକାରୀ ଯଥାଶୀଘ୍ର, ଯେଉଁ କାରଣରୁ ସେହି ଆଦେଶ ଦିଆଯାଇଅଛି ତାହା ସେହି ବ୍ୟକ୍ତିଙ୍କୁ ଜଣାଇବେ ଏବଂ ସେହି ଆଦେଶ ବିରୁଦ୍ଧରେ ଅଭ୍ୟାବେଦନ କରିବାପାଇଁ ତାଙ୍କୁ ଶୀଘ୍ରତମ ସୁଯୋଗ ଦେବେ ।

(୬) ଖଣ୍ଡ (୫)ର କୌଣସି ବିଷୟ ଦ୍ୱାରା ସେହି ଖଣ୍ଡରେ ନିର୍ଦ୍ଦିଷ୍ଟ ହୋଇଥିବା ମତେ କୌଣସି ଆଦେଶ ପ୍ରଦାନକାରୀ ପ୍ରାଧୀକାରୀଙ୍କ ପକ୍ଷେ ଏପରି ତଥ୍ୟ ପ୍ରକଟ କରିବା ଆବଶ୍ୟକ ହେବ ନାହିଁ ଯାହା ପ୍ରକଟ କରିବା ଲୋକହିତର ବିରୁଦ୍ଧ ଅଟେ ବୋଲି ସେପରି ପ୍ରାଧିକାରୀ ବିଚାର କରିବେ ।

(୭) ସଂସଦ ବିଧିଦ୍ୱାରା—

(କ) କେଉଁ ପରିସ୍ଥିତିରେ ତଥା କେଉଁ ପ୍ରକାରର ବା କେଉଁ କେଉଁ ପ୍ରକାରର ମାମଲାମାନଙ୍କରେ କୌଣସି ବ୍ୟକ୍ତିଙ୍କୁ ନିବାପକ ନିରୋଧ ଉପବନ୍ଧକାରୀ ବିଧିରେ ଅଧୀନରେ ତିନିମାସରୁ ଅଧିକ କାଳବଧି ନିମିତ୍ତି ଖଣ୍ଡ (୪) ର ଉପଖଣ୍ଡ (କ) ର ଉପବନ୍ଧମାନଙ୍କ ଅନୁସାରେ ଉପଦେଷ୍ଟା ମଣ୍ଡଳୀର ମତ ପ୍ରାପ୍ତ ନ କରି ନରୁଦ୍ଧ କରାଯାଇପାରେ ।

(ଖ) କେଉଁ ପ୍ରକାରର ବା କେଉଁ କେଉଁ ପ୍ରକାରର ମାମଲାମାନଙ୍କରେ କେତେ ଅଧିକତମ କାଳାବଧି ନିମିତ୍ତ କୌଣସି ବ୍ୟକ୍ତିଙ୍କୁ ନିବାରକ ନିରୋଧ ଉପବଂଧକାରୀ କୌଣସି ବିଧି ଅଧୀନରେ ନିରୁଦ୍ଧ କରାଯାଇପାରେ, ଏବଂ

(ଗ) ଖଣ୍ଡ (୪) ର ଉପଖଣ୍ଡ (କ) ର ଅଧୀନରେ କରାଯିବା ଜାଞ୍ଚରେ ଉପଦେଷ୍ଟା ମଣ୍ଡଳୀ ଦ୍ୱାରା କି ପ୍ରକ୍ରିୟା ଅନୁସରଣ କରାଯିବ,

ତାହା ବିହିତ କରିପାରିବ ।

## ଶୋଷଣ ବିରୁଦ୍ଧରେ ଅଧିକାର

ମନୁଷ୍ୟଙ୍କୁ ପଣ୍ୟ ରୂପେ ବ୍ୟବହାର ଓ ବଳାତ୍‌ଶ୍ରମର ନିଷେଧ ।

୨୩ । (୧) ପଣ୍ୟରୂପେ ମନୁଷ୍ୟଙ୍କୁ ବ୍ୟବହାର କରିବା ଏବଂ ବେଠି ବେଗାର ତଥା ଏହି ପ୍ରକାରର ଅନ୍ୟ ବଳାତ୍‌ଶ୍ରମ ନିଷିଦ୍ଧ କରାଗଲା ଏବଂ ଏହି ଉପବଂଧର କୌଣସି ପ୍ରକାର ଉଲ୍ଲଂଘନ ବିଧିଅନୁସାରେ ଏକ ଦଣ୍ଡନୀୟ ଅପରାଧ ହେବ ।

(୨) ଏହି ଅନୁଚ୍ଛେଦର କୌଣସି ବିଷୟ, ସାର୍ବଜନିକ ପ୍ରୟୋଜନ ନିମିତ୍ତ ବାଧ୍ୟତାମୂଳକ ସେବା ଆରୋପ କରିବାରେ ରାଜ୍ୟକୁ ବାଧା ଦେବ ନାହିଁ, ଏବଂ ଏପରି ସେବା ଆରୋପ କରିବାରେ ରାଜ୍ୟ କେବଳ ଧର୍ମ, ମୂଳବଂଶ, ଜାତି ବା ବର୍ଗ ବା ଏଥିମଧ୍ୟରୁ କୌଣସିଟି ହେତୁ ବିଭେଦ ଆଚରଣ କରିବ ନାହିଁ।

ପିଲମାନଙ୍କୁ କାରଖାନା ପ୍ରଭୃତିରେ ନିୟୋଜନର ନିଷେଧ ।

୨୪ । ଚଉଦ ବର୍ଷରୁ ଊଣା ବୟସର କୌଣସି ପିଲାକୁ କୌଣସି କାରଖାନା ବା ଖଣିରେ କାମ କରିବାପାଇଁ ନିୟୋଜିତ କରାଯିବ ନାହିଁ ବା କୌଣସି ସଙ୍କଟମୟ ନିୟୋଜନରେ ନିଯୁକ୍ତ କରାଯିବ ନାହିଁ ।

## ଧର୍ମ ସ୍ୱାତନ୍ତ୍ର୍ୟ ଅଧିକାର

ବିବେକର ସ୍ୱାତନ୍ତ୍ର୍ୟ ଏବଂ ଧର୍ମର ଅବାଧ ଅବଲମ୍ବନ, ଆଚରଣ ଏବଂ ପ୍ରଚାର ।

୨୫ । (୧) ସାର୍ବଜନିକ ବ୍ୟବସ୍ଥା, ସଦାଚାର ଓ ସ୍ୱାସ୍ଥ୍ୟ ଏବଂ ଏହି ଭାଗର ଅନ୍ୟ ଉପବଂଧମାନଙ୍କର ବଶବର୍ତ୍ତୀ ରହି, ସମସ୍ତ ବ୍ୟକ୍ତି ବିବେକର ସ୍ୱାତନ୍ତ୍ର୍ୟ ନିମିତ୍ତ ଏବଂ ଧର୍ମର ଅବାଧ ଅବଲମ୍ବନ ଆଚରଣ ଏବଂ ପ୍ରଚାର କରିବାର ଅଧିକାର ନିମିତ୍ତ ସମାନ ଭାବେ ହକ୍‌ଦାର ଅଟନ୍ତି ।

(୨) ଏହି ଅନୁଚ୍ଛେଦର କୌଣସି ବିଷୟ ଏପରି କୌଣସି ବିଧିର ପ୍ରବର୍ତ୍ତନ ଉପରେ ପ୍ରଭାବ ପକାଇବ ନାହିଁ ବା ଏପରି କୌଣସି ବିଧି ପ୍ରଣୟନ କରିବାରେ ରାଜ୍ୟକୁ ବାଧା ଦେବ ନାହିଁ, ଯାହାକି—

(କ) ଧର୍ମ ଆଚରଣ ସହିତ ସଂବଂଧ ଥିବା କୌଣସି ଆର୍ଥିକ, ବିତ୍ତୀୟ, ରାଜନୈତିକ ଅଥବା ଅନ୍ୟ କୌଣସି ଲୌକିକ କ୍ରିୟା କଳାପକୁ ବିନିୟମିତ ବା ନିର୍ବଂଧିତ କରୁଥାଏ;

(ଖ) ସମାଜ କଲ୍ୟାଣ ଓ ସଂସ୍କାର ଉପବନ୍ଧିତ କରୁଥାଏ ବା ସକଳ ବର୍ଗ ଓ ବିଭାଗର ହିନ୍ଦୁମାନଙ୍କ ପାଇଁ ସାର୍ବଜନିକ ହିନ୍ଦୁ ଧର୍ମ ଅନୁଷ୍ଠାନମାନଙ୍କର ଅବାଧ ଉନ୍ମୋଚନ ଉପବନ୍ଧିତ କରୁଥାଏ ।

ସ୍ପଷ୍ଟୀକରଣ—୧-କୃପାଣର ଧାରଣ ଓ ବହନ ଶିଖ ଧର୍ମ ଅବଲମ୍ବନର ଅନ୍ତର୍ଗତ ବୋଲି ବିବେଚିତ ହେବ ।

ସ୍ପଷ୍ଟୀ .କରଣ—୨—ଖଣ୍ଡ (୨) ର ଉପଖଣ୍ଡ (ଖ) ରେ ହିନ୍ଦୁମାନଙ୍କ ପ୍ରତି ନିର୍ଦ୍ଦେଶ ମଧ୍ୟରେ ଶିଖ, ଜୈନ ବା ବୌଦ୍ଧ ଧର୍ମ ଅବଲମ୍ବନ କରୁଥିବା ବ୍ୟକ୍ତିମାନଙ୍କ ପ୍ରତି ନିର୍ଦ୍ଦେଶ ଅନ୍ତର୍ଗତ ବୋଲି ଅର୍ଥ କରାଯିବ ଏବଂ ହିନ୍ଦୁ ଧର୍ମ ଅନୁଷ୍ଠାନମାନଙ୍କ ପ୍ରତି ନିର୍ଦ୍ଦେଶମାନଙ୍କର ଅର୍ଥ ତଦନୁସାରେ କରାଯିବ ।

ଧର୍ମ କାର୍ଯ୍ୟ ପରିଚାଳନା କରିବାର ସ୍ୱାତନ୍ତ୍ର୍ୟ ।

୨୬ । ସାର୍ବଜନିକ ବ୍ୟବସ୍ଥା, ସଦାଚାର ଓ ସ୍ୱାସ୍ଥ୍ୟର ବଶବର୍ତ୍ତୀ ରହି, ପ୍ରତ୍ୟେକ ଧର୍ମ—ସଂପ୍ରଦାୟର ବା ତାହାର କୌଣସି ବିଭାଗର —

(କ) ଧାର୍ମିକ ଏବଂ ଦାତବ୍ୟ ପ୍ରୟୋଜନ ନିମିତ୍ତ ଅନୁଷ୍ଠାନମାନଙ୍କର ସ୍ଥାପନ ଓ ଅନୁରକ୍ଷଣ କରିବାର,

(ଖ) ନିଜର ଧର୍ମ ବିଷୟକ କାର୍ଯ୍ୟମାନଙ୍କର ପରିଚାଳନା କରିବାର,

(ଗ) ଅସ୍ଥାବର ଓ ସ୍ଥାବର ସଂପତ୍ତିର ସ୍ୱାମିତ୍ୱ ଅର୍ଜନ କରିବାର, ଏବଂ

(ଘ) ବିଧି ଅନୁସାରେ ଏପରି ସଂପତ୍ତିର ପ୍ରଶାସନ କରିବାର,

ଅଧିକାର ରହିବ ।

କୌଣସି ଧର୍ମ ବିଶେଷର ଉନ୍ନତି ସାଧନ ନିମିତ୍ତ କର ଦେବା ସଂପର୍କରେ ସ୍ୱାତନ୍ତ୍ର୍ୟ ।

୨୭ । ଯେଉଁ କରର ଆଗମ କୌଣସି ଧର୍ମ ବିଶେଷର ବା ଧର୍ମ ସଂପ୍ରଦାୟ ବିଶେଷର ଉନ୍ନତି ସାଧନ ବା ଅନୁରକ୍ଷଣ ପାଇଁ ବିନିର୍ଦ୍ଦିଷ୍ଟ ରୂପେ ବିନିଯୋଗ କରାଯାଏ ସେହି କର ଦେବା ନିମିତ୍ତ କୌଣସି ବ୍ୟକ୍ତିଙ୍କୁ ବାଧ୍ୟ କରାଯିବ ନାହିଁ

କେତେକ ଶିକ୍ଷା ଅନୁଷ୍ଠାନରେ ଧର୍ମଶିକ୍ଷା ଅଥବା ଧର୍ମ ଉପାସନାରେ ଉପସ୍ଥାନ ସଂପର୍କରେ ସ୍ୱାତନ୍ତ୍ର୍ୟ ।

୨୮ । (୧) ରାଜ୍ୟର ନିଧିରେ ପୂର୍ଣ୍ଣରୂପେ ଅନୁରକ୍ଷିତ କରାଯାଉଥିବା କୌଣସି ଶିକ୍ଷା ଅନୁଷ୍ଠାନରେ କୌଣସି ଧର୍ମ ଶିକ୍ଷା ଦିଆଯିବ ନାହିଁ ।

(୨) ଯେଉଁ ଶିକ୍ଷା ଆନୁଷ୍ଠାନ ରାଜ୍ୟଦ୍ୱାରା ପ୍ରଶାସିତ ହେଉଥାଏ ଅଥଚ ଏପରି କୌଣସି ଧର୍ମସ୍ୱ ବା ନ୍ୟାସ ଅଧୀନରେ ସ୍ଥାପିତ ହୋଇଥାଏ ଯାହାକି ସେହି ଅନୁଷ୍ଠାନରେ ଧର୍ମଶିକ୍ଷା ଦେବା ଆବଶ୍ୟକ କରିଥାଏ, ସେହି ଅନୁଷ୍ଠାନ ପ୍ରତି ଖଣ୍ଡ (୧)ର କୌଣସି ବିଷୟ ଲାଗୁ ହେବ ନାହିଁ ।

(୩) ରାଜ୍ୟଦ୍ୱାରା ସ୍ୱୀକୃତି ପ୍ରାପ୍ତ ବା ରାଜ୍ୟ ନିଧିରୁ ସାହାଯ୍ୟପ୍ରାପ୍ତ କୌଣସି ଶିକ୍ଷା ଅନୁଷ୍ଠାନରେ ଯୋଗ ଦେଇଥିବା କୌଣସି ବ୍ୟକ୍ତିଙ୍କୁ, ସେ ନିଜେ, ବା ସେ ଅପ୍ରାପ୍ତ ବୟସ୍କ ହୋଇଥିଲେ ତାହାଙ୍କ ଅଭି-ଭାବକ, ସମ୍ମତି ଦେଇନଥିଲେ, ସେପରି ଅନୁଷ୍ଠାନରେ ପ୍ରଦତ୍ତ ହେଉଥିବା କୌଣସି ଧର୍ମ ଶିକ୍ଷାରେ ଭାଗ ନେବା ନିମିତ୍ତ ବା ସେପରି ଅନୁଷ୍ଠାନରେ ବା ତତ୍‌ସଂଲଗ୍ନ ସ୍ଥାନରେ କରାଯାଉଥିବା କୌଣସି ଧର୍ମ ଉପାସନାରେ ଯୋଗଦେବା ନିମିତ୍ତ ଆବଶ୍ୟକ କରାଯିବ ନାହିଁ ।

## ସଂସ୍କୃତି ଓ ଶିକ୍ଷା ବିଷୟକ ଅଧିକାର

ସଂଖ୍ୟାଲଘୁଙ୍କର ହିତ ସଂରକ୍ଷଣ ।

୨୯ । (୧) ଭାରତର ରାଜ୍ୟକ୍ଷେତ୍ର ବା ତହିଁର କୌଣସି ଭାଗର ନିବାସୀ ନାଗରିକମାନଙ୍କର କୌଣସି ବିଭାଗର ସ୍ୱତନ୍ତ୍ର ଭାଷା, ଲିପି ବା ସଂସ୍କୃତି ଥିଲେ ତାହା ବଜାୟ ରଖିବା ପାଇଁ ସେମାନଙ୍କର ଅଧିକାର ରହିବ ।

(୨) କୌଣସି ନାଗରିକ କେବଳ ଧର୍ମ, ମୂଳବଂଶ, ଜାତି, ଭାଷା ଅଥବା ଏଥି ମଧ୍ୟରୁ କୌଣସି ଆଧାର ଉପରେ ରାଜ୍ୟ ଦ୍ୱାରା ଅନୁରକ୍ଷିତ ବା ରାଜ୍ୟ ନିଧିରୁ ସାହାଯ୍ୟପ୍ରାପ୍ତ କୌଣସି ଶିକ୍ଷା ଅନୁଷ୍ଠାନରେ ଗୃହୀତ ହେବାରୁ ବଞ୍ଚିତ ହେବନାହିଁ ।

ଶିକ୍ଷା ଅନୁଷ୍ଠାନ ସ୍ଥାପନ ଓ ପ୍ରଶାସନ ନିମିତ୍ତ ସଂଖ୍ୟାଲଘୁଙ୍କର ଅଧିକାର ।

୩୦ । (୧) ଧର୍ମ ବା ଭାଷା ଉପରେ ପ୍ରତିଷ୍ଠିତ ସମସ୍ତ ସଂଖ୍ୟାଲଘୁଙ୍କର ନିଜ ରୁଚି ଅନୁସାରେ ଶିକ୍ଷା ଅନୁଷ୍ଠାନର ସ୍ଥାପନ ଓ ପ୍ରଶାସନ କରିବାର ଅଧିକାର ରହିବ ।

(୧ କ) ଖଣ୍ଡ (୧) ରେ ଉଲ୍ଲିଖିତ କୌଣସି ସଂଖ୍ୟାଲଘୁଙ୍କ ଦ୍ୱାରା ସ୍ଥାପିତ ଓ ପରିଚାଳିତ ଶିକ୍ଷା-ନୁଷ୍ଠାନର କୌଣସି ସଂପତ୍ତିର ବାଧ୍ୟତାମୂଳକ ଅର୍ଜନ ନିମିତ୍ତ ବ୍ୟବସ୍ଥା କରି କୌଣସି ବିଧି ପ୍ରଣୟନ କଲେ ତହିଁରେ ରାଜ୍ୟ ଏହା ସୁନିଶ୍ଚିତ କରିବ ଯେ ଏପରି ସଂପତ୍ତିର ଅର୍ଜନ ନିମିତ୍ତ ଯେଉଁ ପରିମାଣ ବିଧି ଦ୍ୱାରା ନିୟତ ହେବ ବା ତଦନୁଯାୟୀ ନିର୍ଣ୍ଣିତ ହେବ ତାହା ଏପରି ହୋଇଥିବ ଯେପରିକି ସେହି ଖଣ୍ଡ ଅଧୀନରେ ପ୍ରତ୍ୟାଭୂତ ଅଧିକାର ଦ୍ୱାରା ନିର୍ବନ୍ଧିତ ବା ନିରାକୃତ ହେଉ ନ ଥିବ ।

(୨) ଶିକ୍ଷା ଅନୁଷ୍ଠାନମାନଙ୍କୁ ସାହାଯ୍ୟ ଦେବାରେ ରାଜ୍ୟ ହୁଏତ ଧର୍ମ ଉପରେ ବା ଭାଷା ଉପରେ ପ୍ରତିଷ୍ଠିତ ସଂଖ୍ୟାଲଘୁଙ୍କର ପରିଚାଳନାରେ ଥିବା ଆଧାର ଉପରେ କୌଣସି ଶିକ୍ଷା ଅନୁଷ୍ଠାନ ସଂପର୍କରେ ଭେଦଭାବ ଆଚରଣ କରିବ ନାହିଁ ।

୩୧ । * * * *

## କେତେକ ବିଧିର ବ୍ୟାବୃତ୍ତି

ସଂପଦାର ଅର୍ଜନ ଇତ୍ୟାଦି ନିମିତ୍ତ ଉପବନ୍ଧ କରୁଥିବା ବିଧାନମାନଙ୍କର ବ୍ୟାବୃତ୍ତି ।

୩୧କ । (୧) ଅନୁଚ୍ଛେଦ ୧୩ରେ ଥିବା ଯେ କୌଣସି ବିଷୟ ସତ୍ତ୍ୱେ, :—

(କ) ରାଜ୍ୟଦ୍ୱାରା କୌଣସି ସଂପଦାର ବା ତହିଁରେ କୌଣସି ଅଧିକାରର ଅର୍ଜନ ନିମିତ୍ତ ବା ଏପରି କୌଣସି ଅଧିକାରର ନିର୍ବାପନ ବା ତହିଁରେ ପରିବର୍ତ୍ତନ ନିମିତ୍ତ, ଅଥବା

(ଖ) ସାର୍ବଜନିକ ହିତ ଦୃଷ୍ଟିରୁ ବା ସେହି ସଂପତ୍ତିର ଉଚିତ ପରିଚାଳନା ସୁନିଶ୍ଚିତ କରିବା ଉଦ୍ଦେଶ୍ୟରେ କୌଣସି ସଂପତ୍ତିର ପରିଚାଳନା ରାଜ୍ୟଦ୍ୱାରା ପରିସୀମିତ କାଳାବଧି ପାଇଁ ନିଆଯିବା ନିମିତ୍ତ, ଅଥବା

(ଗ) ଦୁଇ ବା ଅଧିକ ନିଗମକୁ ହୁଏତ ସାର୍ବଜନିକ ହିତ ଦୃଷ୍ଟିରୁ ବା ସେହି ନିଗମମାନଙ୍କ ମଧ୍ୟରୁ କାହାରି ଉଚିତ ପରିଚାଳନା ସୁନିଶ୍ଚିତ କରିବା ଦୃଷ୍ଟିରୁ ସମାମେଳିତ କରିବା ନିମିତ୍ତ, ଅଥବା

(ଘ) ନିଗମମାନଙ୍କର ପରିଚାଳନା ଅଭିକର୍ତ୍ତା, ସଚୀବ ଓ କୋଷାଧ୍ୟକ୍ଷ, ପରିଚାଳନା ନିଦେଶକ, ନିଦେଶକମାନଙ୍କର କୌଣସି ଅଧିକାରର ବା ତହିଁର ଅଂଶୀଦାରମାନଙ୍କର ଭୋଟ ଦାନର କୌଣସି ଅଧିକାରର ନିର୍ବାପନ ବା ତହିଁରେ ପରିବର୍ତ୍ତନ ନିମିତ୍ତ, ଅଥବା

(ଙ) କୌଣସି ଖଣିଜ ଦ୍ରବ୍ୟ ବା ଖଣିଜ ତୈଳ ଅନ୍ୱେଷଣ ବା ଲବ୍ଧ କରିବାର ପ୍ରୟୋଜନରେ କୌଣସି କରାର, ପଟ୍ଟା ବା ଅନୁଜ୍ଞପ୍ତି ବଳରେ ପ୍ରୋଦ୍ଭୂତ କୌଣସି ଅଧିକାରର ନିର୍ବାପନ ବା ତହିଁରେ ପରିବର୍ତ୍ତନ ବା ଏପରି କୌଣସି କରାର, ପଟ୍ଟା ବା ଅନୁଜ୍ଞପ୍ତିକୁ ଯଥାକାଳ ପୂର୍ବରୁ ପର୍ଯ୍ୟବସିତ କରିବା ବା ରଦ୍ଦ କରିବା ନିମିତ୍ତ,

ଉପବନ୍ଧ କରୁଥିବା ବିଧି ଅନୁଚ୍ଛେଦ ୧୪ ବା ଅନୁଚ୍ଛେଦ ୧୯ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କ ମଧ୍ୟରୁ କାହାରି ସହ ଅସଙ୍ଗତ ହୋଇଥିବା ବା ତାହାକୁ କାଢି ନେଉଥିବା ବା ସଂକୀର୍ଣ୍ଣ କରୁଥିବା ହେତୁ ଶୂନ୍ୟ ଅଟେ ବୋଲି ବିବେଚିତ ହେବ ନାହିଁ :

ପରନ୍ତୁ ଯେଉଁଠାରେ ଏପରି ବିଧି କୌଣସି ରାଜ୍ୟର ବିଧାନ ମଣ୍ଡଳ ଦ୍ୱାରା ପ୍ରଣୀତ ହୋଇଥାଏ ସେଠାରେ ସେହି ବିଧି ରାଷ୍ଟ୍ରପତିଙ୍କ ବିଚାରନିମିତ୍ତ ଆରକ୍ଷିତ ହୋଇ ରାଷ୍ଟ୍ରପତିଙ୍କ ସ୍ୱୀକୃତି ନପାଇବା ପର୍ଯ୍ୟନ୍ତ ଏହି ଅନୁଚ୍ଛେଦର ଉପବନ୍ଧ ସେହି ବିଧିପ୍ରତି ଲାଗୁ ହେବନାହିଁ :

ଅଧିକନ୍ତୁ ଯେଉଁଠାରେ କୌଣସି ବିଧିରେ ରାଜ୍ୟଦ୍ୱାରା କୌଣସି ସଂପଦାର ଅର୍ଜନ ନିମିତ୍ତ ଉପବନ୍ଧ କରାଯାଇ ଥାଏ ଏବଂ ତହିଁରେ ସମାବିଷ୍ଟ କୌଣସି ଭୂମି କୌଣସି ବ୍ୟକ୍ତି ଦ୍ୱାରା ତାହାର ନିଜ ଚାଷ ଅଧୀନରେ ଧାରଣ କରାଯାଇଥାଏ ସେଠାରେ ତତ୍‌ସମୟ ପ୍ରବୃତ୍ତ କୌଣସି ବିଧି ଅଧୀନରେ ସେହି ବ୍ୟକ୍ତି ପ୍ରତି ଲାଗୁ ହେଉଥିବା ସିଲିଂ ସୀମା ମଧ୍ୟରେ ପଡୁଥିବା ଭୂମିର କୌଣସି ପ୍ରଭାଗ ବା ତହିଁ ଉପରେ ସ୍ଥିତ ବା ତତ୍‌ସଂଲଗ୍ନ କୌଣସି ନିର୍ମାଣ ବା ଗଢ଼ଣର ଅର୍ଜନ ରାଜ୍ୟ ପକ୍ଷେ ବିଧିସଂଗତ ହେବନାହିଁ, ଯଦି ସେପରି ଭୂମି, ନିର୍ମାଣ ବା ଗଢ଼ଣର ଅର୍ଜନ ସମ୍ବନ୍ଧୀ ବିଧିରେ ତହିଁର ବଜାର ମୂଲ୍ୟଠାରୁ ଊଣା ନ ହୋଇଥିବା ହାରରେ କ୍ଷତିପୂରଣ ଦେବା ନିମିତ୍ତ ଉପବନ୍ଧ କରାଯାଇ ନ ଥାଏ ।

(୨) ଏହି ଅନୁଚ୍ଛେଦରେ—

(କ) "ସଂପଦା" ପଦର କୌଣସି ସ୍ଥାନୀୟ କ୍ଷେତ୍ର ସମ୍ବନ୍ଧରେ ଅର୍ଥ ତାହାହିଁ ହେବ ଯାହାକି ସେହି ପଦର ବା ତହିଁର ସ୍ଥାନୀୟ ସମତୁଲ୍ୟ ପଦର ସେହି କ୍ଷେତ୍ରରେ ପ୍ରବୃତ୍ତ ରହିଥିବା ଭୂଧୃତିମାନଙ୍କ ସହ ସମ୍ବନ୍ଧିତ ବିଦ୍ୟମାନ ବିଧିରେ ରହିଥାଏ ଏବଂ ନିମ୍ନୋକ୍ତ ବିଷୟ ତହିଁର ଅନ୍ତର୍ଗତ ଅଟେ;—

(i) କୌଣସି ଜାଗିର, ଇନାମ ବା ମାଫି ଅଥବା ଅନ୍ୟ ସମରୂପ ଅନୁଦାନ ଏବଂ ତାମିଲନାଡ଼ୁ ଓ କେରଳ ରାଜ୍ୟରେ କୌଣସି ଜନ୍ମମ୍ ଅଧିକାର;

(ii) ରୟତଓ୍ୱାରୀ ବନ୍ଦୋବସ୍ତ ଅଧୀନରେ ଧାରଣ କରାଯାଇଥିବା କୌଣସି ଭୂମି;

(iii) କୃଷି ପ୍ରୟୋଜନ ନିମିତ୍ତ ବା ତହିଁର ସହାୟକ ପ୍ରୟୋଜନ ନିମିତ୍ତ ଧାରଣ କରାଯାଇଥିବା ବା ପଟ୍ଟାରେ ଦିଆଯାଇଥିବା କୌଣସି ଭୂମି ଯହିଁରେ କି ଅନାବାଦୀ ଭୂମି, ଗୋଚର ବା କୃଷିଜୀବୀ, କୃଷି ଶ୍ରମିକ ଓ ଗ୍ରାମ୍ୟ ଶିଳ୍ପୀମାନଙ୍କର ଅଧିଭୋଗରେ ଥିବା ନିର୍ମାଣ ଓ ଅନ୍ୟ ଗଢ଼ଣର ଆସ୍ଥାନ ନିମିତ୍ତ ଭୂମି;

(ଖ) କୌଣସି ସ୍ୱତ୍ତ୍ୱାଧିକାରୀ, ଉପସ୍ୱତ୍ତ୍ୱାଧିକାରୀ, ଅନୁସ୍ୱତ୍ତ୍ୱାଧିକାରୀ, ରୟତି ସ୍ୱତ୍ତ୍ୱାଧିଧାରୀ, ରୟତ, ଅନୁରୟତ ବା ଅନ୍ୟ ମଧ୍ୟସ୍ୱତ୍ତ୍ୱାଧିକାରୀ ଠାରେ ନିହିତ ଯେ କୌଣସି ଅଧିକାର ତଥା ଭୂରାଜସ୍ୱ ସମ୍ବନ୍ଧରେ ଯେକୌଣସି ଅଧିକାର ବା ବିଶେଷ ଅଧିକାର ମଧ୍ୟ କୌଣସି ସଂପଦା ସଂପର୍କୀୟ "ଅଧିକାର" ପଦର ଅନ୍ତର୍ଗତ ହେବ ।

କେତେକ ଅଧିନିୟମ ଓ ବିନିୟମର ବୈଧୀକରଣ ।

୩୧ଖ । ଅନୁଚ୍ଛେଦ ୩୧କ ରେ ଅନ୍ତର୍ବିଷ୍ଟ ଉପବନ୍ଧମାନଙ୍କର ବ୍ୟାପକତା ଉପରେ ପ୍ରତିକୂଳ ପ୍ରଭାବ ନ ପକାଇ ନବମ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ଅଧିନିୟମ ଓ ବିନିୟମମାନ ବା ତହିଁର କୌଣସି ଉପବନ୍ଧ ଏହି ଭାଗର କୌଣସି ଉପବନ୍ଧ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କ ମଧ୍ୟରୁ କାହାରି ସହ ଅସଙ୍ଗତ ହୋଇଥିବା ଆଧାର ଉପରେ ଶୂନ୍ୟ ଅଟେ ବୋଲି ବା କେବେ ଶୂନ୍ୟ ହୋଇଅଛି ବୋଲି ବିବେଚିତ ହେବ ନାହିଁ ଏବଂ କୌଣସି ନ୍ୟାୟାଳୟ ବା ଟ୍ରାଇବ୍ୟୁନାଲର ତହିଁର ପ୍ରତିକୂଳ କୌଣସି ନିର୍ଣ୍ଣୟ, ଡ଼ିକ୍ରୀ ବା ଆଦେଶ ଥିବା ସତ୍ତ୍ୱେ, ସେହି ଅଧିନିୟମ ବା ବିନିୟମମାନଙ୍କ ମଧ୍ୟରୁ ପ୍ରତ୍ୟେକ, କୌଣସି ସକ୍ଷମ ବିଧାନ ମଣ୍ଡଳର ତାହାକୁ ନିରସିତ ବା ସଂଶୋଧିତ କରିବା କ୍ଷମତାର ବଶବର୍ତ୍ତୀ ରହି, ପ୍ରବୃତ୍ତ ହେବା ଚାଲୁ ରହିବ ।

କେତେକ ନିର୍ଦ୍ଦେଶକ ତତ୍ତ୍ୱକୁ କାର୍ଯ୍ୟାନ୍ୱିତ କରୁଥିବା ବିଧିମାନଙ୍କର ବ୍ୟାବର୍ତ୍ତି ।

୩୧ଗ । ଅନୁଚ୍ଛେଦ ୧୩ ରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ଭାଗ ୪ରେ ବର୍ଣ୍ଣିତ ସମସ୍ତ ବା କୌଣସି ତତ୍ତ୍ୱ ଅଭିପ୍ରାପ୍ତ କରିବା ଦିଗରେ ରାଜ୍ୟର ନୀତିକୁ କାର୍ଯ୍ୟାନ୍ୱିତ କରୁଥିବା କୌଣସି ବିଧି ଏହି ଆଧାର ଉପରେ ଶୂନ୍ୟ ହେବ ନାହିଁ ଯେ ତାହା ଅନୁଚ୍ଛେଦ ୧୪ ବା ଅନୁଚ୍ଛେଦ ୧୯ ଦ୍ୱାରା ପ୍ରଦତ୍ତ କୌଣସି ଅଧିକାର ସହିତ ଅସଙ୍ଗତ ହେଉଅଛି ବା ସେପରି ଅଧିକାରକୁ କାଢି ନେଉଅଛି ବା ସଂକୀର୍ଣ୍ଣ କରୁଅଛି ଏବଂ ଯେଉଁ ବିଧିରେ ଏପରି ଘୋଷଣା ଥିବ ଯେ ଏହା ଏପରି ନୀତିକୁ କାର୍ଯ୍ୟାନ୍ୱିତ କରିବା ନିମିତ୍ତ ପ୍ରଣୀତ ହୋଇଅଛି ସେହି ବିଧି ବିରୁଦ୍ଧରେ କୌଣସି ନ୍ୟାୟାଳୟରେ ଏହି ଆଧାର ଉପରେ ଆପତ୍ତି କରାଯିବ ନାହିଁ ଯେ ଏହା ଏପରି ନୀତିକୁ କାର୍ଯ୍ୟାନ୍ୱିତ କରୁନାହିଁ :

ପରନ୍ତୁ ଯେଉଁଠାରେ ଏପରି ବିଧି କୌଣସି ରାଜ୍ୟର ବିଧାନ ମଣ୍ଡଳଦ୍ୱାରା ପ୍ରଣୀତ ହୋଇଥାଏ ସେଠାରେ ସେହି ବିଧି ରାଷ୍ଟ୍ରପତିଙ୍କ ବିଚାର ନିମିତ୍ତ ଆରକ୍ଷିତ ହୋଇ ରାଷ୍ଟ୍ରପତିଙ୍କ ସ୍ୱୀକୃତି ନପାଇବା ପର୍ଯ୍ୟନ୍ତ ଏହି ଅନୁଚ୍ଛେଦର ଉପବନ୍ଧମାନ ସେହି ବିଧି ପ୍ରତି ଲାଗୁ ହେବ ନାହିଁ ।

୩୧ଘ । * * * *

## ସାଂବିଧାନିକ ପ୍ରତିକାର ଉପରେ ଅଧିକାର

ଏହି ଭାଗଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କର ପ୍ରବର୍ତ୍ତନ ପାଇଁ ପ୍ରତିକାର ।

୩୨ । (୧) ଏହି ଭାଗ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କର ପ୍ରବର୍ତ୍ତନ ନିମିତ୍ତ ସମୁଚିତ କାର୍ଯ୍ୟବାହୀ ଦ୍ୱାରା ଉଚ୍ଚତମ ନ୍ୟାୟାଳୟକୁ ଆବେଦନ କରିବାର ଅଧିକାରକୁ ପ୍ରତ୍ୟାଭୂତ କରାଗଲା ।

(୨) ଏହି ଭାଗ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କ ମଧ୍ୟରୁ କୌଣସିଟିର ପ୍ରବର୍ତ୍ତନ ନିମିତ୍ତ ନିର୍ଦ୍ଦେଶ ବା ଆଦେଶ ଅଥବା ହେବିୟସ କର୍ପସ, ମାଣ୍ଡାମସ, ପ୍ରୋହିବିସନ, କ୍ୱୋଓ୍ୱାରଣ୍ଟୋ ଓ ସର୍ସି ଓ ରେରାଇ ପ୍ରକାରର ରିଟ ସମେତ ରିଟ ମଧ୍ୟରୁ ଯାହା ସମୁଚିତ ଅଟେ ତାହା ବାହାର କରିବାର କ୍ଷମତା ଉଚ୍ଚତମ ନ୍ୟାୟାଳୟର ରହିବ ।

(୩) ଖଣ୍ଡ (୧) ଓ (୨) ଦ୍ୱାରା ଉଚ୍ଚତମ ନ୍ୟାୟାଳୟକୁ ପ୍ରଦତ୍ତ କ୍ଷମତାମାନଙ୍କ ଉପରେ ପ୍ରତିକୂଳ ପ୍ରଭାବ ନ ପକାଇ ସଂସଦ ବିଧି ଦ୍ୱାରା ଅନ୍ୟ କୌଣସି ନ୍ୟାୟାଳୟକୁ ତାହାର ଅଧିକାରିତାର ସ୍ଥାନୀୟ ସୀମା ମଧ୍ୟରେ ଖଣ୍ଡ (୨) ଅଧୀନରେ ଉଚ୍ଚତମ ନ୍ୟାୟାଳୟ ଦ୍ୱାରା ପ୍ରୟୋକ୍ତବ୍ୟ ସମସ୍ତ ବା କୌଣସି କ୍ଷମତାକୁ ପ୍ରୟୋଗ କରିବା ପାଇଁ ସକ୍ଷମ କରି ପାରିବ ।

(୪) ଏହି ସଂବିଧାନ ଦ୍ୱାରା ଅନ୍ୟଥା ଉପବନ୍ଧିତ ହୋଇଥିବା ବ୍ୟତିରେକେ ଏହି ଅନୁଚ୍ଛେଦ ଦ୍ୱାରା ପ୍ରତ୍ୟାଭୂତ ଅଧିକାରକୁ ନିଲମ୍ବିତ କରାଯିବ ନାହିଁ ।

୩୨କ । * * * *

ଏହି ଭାଗ ଦ୍ୱାରା ପ୍ରଦତ୍ତ ଅଧିକାରମାନ ବାହିନୀମାନଙ୍କ ପ୍ରତି ଲାଗୁ ହେବାରେ ରୂପଭେଦ କରିବା ପାଇଁ ସଂସଦର କ୍ଷମତା ।

୩୩ । ଏହି ଭାଗ ଦ୍ୱାରା ପ୍ରଦତ୍ତ ଅଧିକାରମାନ ସଶସ୍ତ୍ର ବାହିନୀର ବା ସାର୍ବଜନିକ ବ୍ୟବସ୍ଥା ଅନୁରକ୍ଷଣାର୍ଥ ଭାରପ୍ରାପ୍ତ ବାହିନୀର ସଦସ୍ୟମାନଙ୍କ ପ୍ରତି ଲାଗୁ ହେବାରେ ସେମାନଙ୍କ କର୍ତ୍ତବ୍ୟର ଉଚିତ ପାଳନ ତଥା ସେମାନଙ୍କ ମଧ୍ୟରେ ଶୃଂଖଳାରକ୍ଷା ସୁନିଶ୍ଚିତ କରିବା ନିମିତ୍ତ କେଉଁ ଅଧିକାରକୁ କେତେ ମାତ୍ରାରେ ନିର୍ବନ୍ଧିତ ବା ନିରାକୃତ କରାଯିବ ତାହା ସଂସଦ ବିଧି ଦ୍ୱାରା ନିର୍ଦ୍ଧାରଣ କରିପାରିବ ।

କୌଣସି କ୍ଷେତ୍ରରେ ସେନାବିଧି ପ୍ରବୃତ୍ତ ଥିବା ସମୟରେ ଏହି ଭାଗଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କ ଉପରେ ନିର୍ବନ୍ଧନ ।

୩୪ । ଏହି ଭାଗର ପୂର୍ବଗାମୀ ଉପବନ୍ଧମାନଙ୍କରେ ଯାହା କିଛି ଥିବା ସତ୍ତ୍ୱେ, ସଂଘର ବା କୌଣସି ରାଜ୍ୟର ସେବାରେ ନିଯୁକ୍ତ ଥିବା କୌଣସି ବ୍ୟକ୍ତିଙ୍କୁ ବା ଅନ୍ୟ କୌଣସି ବ୍ୟକ୍ତିଙ୍କୁ ଭାରତର ରାଜ୍ୟ କ୍ଷେତ୍ର ମଧ୍ୟରେ ସେନା ବିଧି ପ୍ରବୃତ୍ତ ଥିବା କୌଣସି କ୍ଷେତ୍ରରେ ବ୍ୟବସ୍ଥାର ଅନୁରକ୍ଷଣ ବା ପୁନଃସ୍ଥାପନ ସମ୍ବନ୍ଧରେ ତାହା ଦ୍ୱାରା କରାଯାଇଥିବା କୌଣସି କାର୍ଯ୍ୟ ସଂପର୍କରେ ସଂସଦ ବିଧି ଦ୍ୱାରା ପରିତ୍ରାଣ ଦେଇ ପାରିବ ବା ସେପରି କ୍ଷେତ୍ରରେ ସେନା ବିଧି ଅଧୀନରେ ଦିଆଯାଇଥିବା କୌଣସି ଦଣ୍ଡାଦେଶ, ଆରୋପିତ ଦଣ୍ଡ, ଆଦିଷ୍ଟ ସମପହରଣ ବା କରାଯାଇଥିବା ଅନ୍ୟ କାର୍ଯ୍ୟକୁ ବିଧିମାନ୍ୟତା ଦେଇ ପାରିବ ।

ଏହି ଭାଗର ଉପବନ୍ଧମାନଙ୍କୁ ପ୍ରଭାବୀ କରିବା ନିମିତ୍ତ ବିଧାନ ।

୩୫ । ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ,—

(କ) (୧) ଅନୁଚ୍ଛେଦ ୧୬ ର ଖଣ୍ଡ (୩), ଅନୁଚ୍ଛେଦ ୩୨ର ଖଣ୍ଡ (୩), ଅନୁଚ୍ଛେଦ ୩୩ ଓ ଅନୁଚ୍ଛେଦ ୩୪ ଅଧୀନରେ ସଂସଦ ବିଧି ଦ୍ୱାରା ଯେଉଁ ବିଷୟ ସଂପର୍କରେ ଉପବନ୍ଧ କରିପାରେ ତହିଁ ମଧ୍ୟରୁ କାହାରି ନିମିତ୍ତ, ତଥା

(୨) ଏହି ଭାଗରେ ଅପରାଧ ରୂପେ ଘୋଷିତ କାର୍ଯ୍ୟମାନଙ୍କ ପାଇଁ ଦଣ୍ଡ ବିହିତ କରିବା ନିମିତ୍ତ,

ବିଧି ପ୍ରଣୟନ କରିବାର କ୍ଷମତା ସଂସଦର ରହିବ ଏବଂ କୌଣସି ରାଜ୍ୟ ବିଧାନ ମଣ୍ଡଳର ରହିବ ନାହିଁ ଏବଂ ସଂସଦ ଏହି ସଂବିଧାନର ପ୍ରାରମ୍ଭର ପରେ ଯଥା ଶୀଘ୍ର ଉପଖଣ୍ଡ (୨) ରେ ନିର୍ଦ୍ଦିଷ୍ଟ ହୋଇଥିବା କାର୍ଯ୍ୟମାନଙ୍କ ପାଇଁ ଦଣ୍ଡ ବିହିତ କରିବା ନିମିତ୍ତ ବିଧି ପ୍ରଣୟନ କରିବ ।

(ଖ) ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତର ରାଜ୍ୟ କ୍ଷେତ୍ରରେ ପ୍ରବୃତ୍ତ ଥିବା କୌଣସି ବିଧି, ଯାହାକି ଖଣ୍ଡ (କ) ର ଉପଖଣ୍ଡ (୧) ରେ ବିନିର୍ଦ୍ଦିଷ୍ଟ ହୋଇଥିବା ବିଷୟମାନଙ୍କ ମଧ୍ୟରୁ କାହାରି ସଂପର୍କରେ ହୋଇଥାଏ ବା ସେହି ଖଣ୍ଡର ଉପଖଣ୍ଡ (୨) ରେ ନିର୍ଦ୍ଦିଷ୍ଟ ହୋଇଥିବା କୌଣସି କାର୍ଯ୍ୟ ନିମିତ୍ତ ଦଣ୍ଡ ପାଇଁ ଉପବନ୍ଧ କରିଥାଏ, ତାହା ତହିଁରେ ଥିବା ନିବନ୍ଧନ ତଥା ଅନୁଚ୍ଛେଦ ୩୭୨ ଅଧୀନରେ ତହିଁରେ କରାଯିବା କୌଣସି ଅନୁକୂଳନ ଓ ରୂପ ଭେଦର ବଶବର୍ତ୍ତୀ ରହି, ଯେଉଁ ପର୍ଯ୍ୟନ୍ତ ସଂସଦ ଦ୍ୱାରା ପରିବର୍ତ୍ତିତ ବା ନିରସିତ ବା ସଂଶୋଧିତ କରା ନ ଯାଇଛି ସେ ପର୍ଯ୍ୟନ୍ତ ପ୍ରବୃତ୍ତ ରହିବ ।

**ସ୍ପଷ୍ଟୀକରଣ:**—"ପ୍ରବୃତ୍ତ ବିଧି" ପଦର ଅନୁଚ୍ଛେଦ ୩୭୨ରେ ଯେଉଁ ଅର୍ଥ ରହିଅଛି ଏହି ଅନୁଚ୍ଛେଦରେ ସେହି ଅର୍ଥ ଅଟେ ।

# ଭାଗ ୪

## ରାଜ୍ୟ ନୀତିର ନିର୍ଦ୍ଦେଶକ ତତ୍ତ୍ୱ

ସଂଜ୍ଞା

୩୬ । ପ୍ରସଙ୍ଗ ଅନ୍ୟଥା ଆବଶ୍ୟକ କରୁ ନ ଥିଲେ "ରାଜ୍ୟ"ର ଭାଗ ୩ ରେ ଯେଉଁ ଅର୍ଥ ରହିଅଛି ଏହି ଭାଗରେ ସେହି ଅର୍ଥ ଅଟେ ।

ଏହି ଭାଗରେ ଅନ୍ତର୍ବିଷ୍ଟ ତତ୍ତ୍ୱମାନ ଲାଗୁ କରାଯିବା ।

୩୭ । ଏହି ଭାଗରେ ଅନ୍ତର୍ବିଷ୍ଟ ଉପବନ୍ଧମାନ କୌଣସି ନ୍ୟାୟାଳୟଦ୍ୱାରା ପ୍ରବର୍ତ୍ତନୀୟ ହେବ ନାହିଁ, କିନ୍ତୁ ଏଥିରେ ବର୍ଣ୍ଣିତ ତତ୍ତ୍ୱମାନ ଦେଶର ଶାସନ ନିମିତ୍ତ ମୌଳିକ ଅଟେ ଏବଂ ବିଧି ପ୍ରଣୟନ କରିବାରେ ଏହି ତତ୍ତ୍ୱମାନ ଲାଗୁ କରିବା ରାଜ୍ୟର କର୍ତ୍ତବ୍ୟ ହେବ ।

ଲୋକ କଲ୍ୟାଣର ଉନ୍ନତି ନିମିତ୍ତ ରାଜ୍ୟ ସାମାଜିକ ବ୍ୟବସ୍ଥା ସ୍ଥାପନା କରିବ ।

୩୮ । (୧) ଯେଉଁ ସାମାଜିକ ବ୍ୟବସ୍ଥାରେ ସାମାଜିକ, ଆର୍ଥିକ ଓ ରାଜନିତିକ ନ୍ୟାୟ ରାଷ୍ଟ୍ରୀୟ ଜୀବନର ସମସ୍ତ ସଂସ୍ଥାକୁ ଅନୁପ୍ରାଣିତ କରିବ, ରାଜ୍ୟ ସେପରି ସାମାଜିକ ବ୍ୟବସ୍ଥାକୁ ଯଥା ସଂଭବ ଫଳପ୍ରଦ-ରୂପେ ସ୍ଥାପନା ଓ ସଂରକ୍ଷଣ କରି ଲୋକ କଲ୍ୟାଣର ଉନ୍ନତି ସାଧନ ପାଇଁ ପ୍ରଯତ୍ନ କରିବ ।

(୨) ରାଜ୍ୟ, ବିଶେଷତଃ, ବିଭିନ୍ନ ଅଞ୍ଚଳରେ ବାସ କରୁଥିବା ବା ବିଭିନ୍ନ ବ୍ୟବସାୟ କରୁଥିବା ବ୍ୟକ୍ତି-ମାନଙ୍କ ମଧ୍ୟରେ, ତଥା ବ୍ୟକ୍ତିବର୍ଗଙ୍କ ମଧ୍ୟରେ ଆୟର ଅସମାନତାକୁ ନ୍ୟୂନତମ ସ୍ତରରେ ରଖିବା ପାଇଁ ପ୍ରଯତ୍ନ କରିବ, ଏବଂ ପ୍ରାସ୍ଥିତି, ସୁବିଧା ଓ ସୁଯୋଗରେ ଅସମାନତା ଦୂର କରିବା ପାଇଁ ପ୍ରୟାସ କରିବ ।

ରାଜ୍ୟଦ୍ୱାରା ଅନୁସରଣୀୟ କେତେକ ନୀତିତତ୍ତ୍ୱ ।

୩୯ । ରାଜ୍ୟ ବିଶେଷତଃ ନିଜର ନୀତିକୁ ନିମ୍ନୋକ୍ତ ବିଷୟମାନଙ୍କର ଅଭିପ୍ରାପ୍ତି ଦିଗରେ ଚାଳିତ କରିବ—

(କ) ନର ଓ ନାରୀ ସମସ୍ତ ନାଗରିକଙ୍କ ଜୀବିକାର ପର୍ଯ୍ୟାପ୍ତ ସାଧନ ନିମିତ୍ତ ସମାନ ଭାବେ ଅଧିକାର ରହିବ ;

(ଖ) ସମାଜର ଭୌତିକ ବିଭବର ସ୍ୱାମିତ୍ୱ ଓ ନିୟନ୍ତ୍ରଣ ଏପରି ଭାବେ ବର୍ଣ୍ଣିତ ହେବ ଯାହାଦ୍ୱାରାକି ସର୍ବୋତ୍ତମ ଭାବେ, ସମୂହଭାବେ ସମୂହ ହିତ ସାଧିତ ହେବ ;

(ଗ) ଅର୍ଥନୀତିକ ବ୍ୟବସ୍ଥାର ଚାଳନାର ପରିଣାମରେ ଯେପରି ଧନ ଓ ଉତ୍ପାଦନର ସାଧନମାନ ସର୍ବସାଧାରଣଙ୍କ ନିମିତ୍ତ ଅହିତକର ହେବାଭଳି କେନ୍ଦ୍ରୀଭୂତ ହେବ ନାହିଁ ;

(ଘ) ନର ଓ ନାରୀ ଉଭୟଙ୍କର ସମାନ କାର୍ଯ୍ୟ ଲାଗି ସମାନ ବେତନ ରହିବ ;

(ଙ) ନର ଓ ନାରୀ ଶ୍ରମିକଙ୍କର ସ୍ୱାସ୍ଥ୍ୟ ଓ ସାମର୍ଥ୍ୟ ତଥା ପିଲାମାନଙ୍କର ସୁକୁମାର ବୟସର ଦୁରୁପଯୋଗ ହେବ ନାହିଁ ଏବଂ ଆର୍ଥିକ ଆବଶ୍ୟକତା ହେତୁ ବାଧ୍ୟ ହୋଇ ନାଗରିକମାନେ ବୟସ ବା ସାମର୍ଥ୍ୟର ଅନୁପଯୋଗୀ ବୃତ୍ତିରେ ପ୍ରବେଶ କରିବେ ନାହିଁ ;

(ଚ) ପିଲାମାନେ ସୁସ୍ଥ ଭାବରେ ଏବଂ ସ୍ୱାଧୀନ ଓ ଗରିମାମୟ ବାତାବରଣରେ ଗଢି ଉଠିବାକୁ ସୁଯୋଗ ଓ ସୁବିଧା ଦିଆଯିବ ଏବଂ ପିଲାମାନଙ୍କୁ ଓ ଯୁବକମାନଙ୍କୁ ଶୋଷଣରୁ ଓ ନୈତିକ ତଥା ଭୌତିକ ପରିତ୍ୟଜନରୁ ରକ୍ଷା କରାଯିବ ।

ସମାନ ନ୍ୟାୟ ଓ ମାଗଣା ବିଧିକ ସହାୟତା ।

୩୯ କ । ରାଜ୍ୟ ଏହା ସୁନିଶ୍ଚିତ କରିବ ଯେ ବିଧି ବ୍ୟବସ୍ଥା ଏପରି କାର୍ଯ୍ୟକାରୀ ହେବ ଯେପରିକି ନ୍ୟାୟ ସମାନ ସୁଯୋଗର ଭିତ୍ତିରେ ସୁଲଭ ହେବ ଏବଂ ବିଶେଷ କରି କୌଣସି ନାଗରିକ ଆର୍ଥିକ ବା ଅନ୍ୟ ଅସାମର୍ଥ୍ୟ ହେତୁ ନ୍ୟାୟ ପାଇବାର ସୁଯୋଗରୁ ଯେପରି ବଂଚିତ ନ ହୁଅନ୍ତି ତାହା ସୁନିଶ୍ଚିତ କରାଇବା ନିମିତ୍ତ ଉପଯୁକ୍ତ ବିଧାନ ବା ପରିକଳ୍ପନା ଦ୍ୱାରା ବା ଅନ୍ୟ ଭାବରେ ମାଗଣା ବିଧିକ ସହାୟତାର ବ୍ୟବସ୍ଥା କରିବ ।

ଗ୍ରାମ ପଞ୍ଚାୟତ ମାନଙ୍କର ସଙ୍ଗଠନ ।

୪୦ । ରାଜ୍ୟ ଗ୍ରାମ ପଞ୍ଚାୟତମାନ ଗଠନ କରିବା ତଥା ସେମାନଙ୍କୁ ସ୍ୱାୟତ୍ତ ଶାସନର ଏକକ ରୂପେ କାର୍ଯ୍ୟ କରିବା ଲାଗି ସମର୍ଥ କରାଇବା ନିମିତ୍ତ ଯଥା ଆବଶ୍ୟକ କ୍ଷମତା ଓ ପ୍ରାଧିକାର ଅର୍ପଣ କରିବା ପାଇଁ ପଦକ୍ଷେପ ନେବ ।

କେତେକ ସ୍ଥଳରେ କାମ, ଶିକ୍ଷା ଓ ସରକାରୀ ସାହାଯ୍ୟ ପାଇବାର ଅଧିକାର ।

୪୧ । ରାଜ୍ୟ ନିଜର ଆର୍ଥିକ ସାମର୍ଥ୍ୟ ଓ ବିକାଶର ସୀମା ମଧ୍ୟରେ କାମ ପାଇବାର ଅଧିକାର, ଶିକ୍ଷା ପାଇବାର ଅଧିକାର ତଥା ବେକାରୀ, ବୃଦ୍ଧାବସ୍ଥା, ରୁଗ୍ଣାବସ୍ଥା, ଅସାମର୍ଥ୍ୟ ତଥା ଅଯଥାର୍ଥ ଅଭାବର ଅନ୍ୟାନ୍ୟ ଅବସ୍ଥାରେ ସରକାରୀ ସାହାଯ୍ୟ ପାଇଁ ଅଧିକାର ପ୍ରାପ୍ତ କରାଇବା ନିମିତ୍ତ ଫଳପ୍ରଦ ଉପବଂଧ କରିବ ।

କାର୍ଯ୍ୟର ନ୍ୟାଯ୍ୟ ଓ ମାନବୋଚିତ ଅବସ୍ଥା ନିମିତ୍ତ ତଥା ପ୍ରସୂତି ସହାୟତା ନିମିତ୍ତ ଉପବନ୍ଧ ।

୪୨ । କାର୍ଯ୍ୟ କରିବାର ଯଥୋଚିତ ଓ ମାନବୋଚିତ ଅବସ୍ଥା ପ୍ରାପ୍ତ କରାଇବା ନିମିତ୍ତ ତଥା ପ୍ରସୂତି ସହାୟତା ନିମିତ୍ତ ରାଜ୍ୟ ଉପବଂଧ କରିବ ।

ଶ୍ରମିକମାନଙ୍କ ପାଇଁ ନିର୍ବାହ ମଜୁରୀ ପ୍ରଭୃତି ।

୪୩ । ରାଜ୍ୟ, ଉପଯୁକ୍ତ ବିଧାନ ବା ଆର୍ଥିକ ସଂଗଠନ ଦ୍ୱାରା ବା ଅନ୍ୟ କୌଣସି ଉପାୟରେ କୃଷି, ଉଦ୍ୟୋଗ ବା ଅନ୍ୟ ସମସ୍ତ ପ୍ରକାରର ଶ୍ରମିକଙ୍କୁ କାର୍ଯ୍ୟ ନିର୍ବାହ ମଜୁରୀ, ସ୍ୱଚ୍ଛଳ ଜୀବନଯାତ୍ରାର ମାନ ଏବଂ ଅବସରର ପୂର୍ଣ୍ଣ ଉପଭୋଗ ସୁନିଶ୍ଚିତ କରୁଥିବା କାର୍ଯ୍ୟ, ପରିସ୍ଥିତି ତଥା ସାମାଜିକ ଓ ସାଂସ୍କୃତିକ ସୁଯୋଗଃ ପ୍ରାପ୍ତ କରାଇବା ପାଇଁ ପ୍ରୟାସ କରିବ, ଏବଂ ବିଶେଷତଃ ଗ୍ରାମାଞ୍ଚଳମାନଙ୍କରେ ବ୍ୟକ୍ତିଗତ ବା ସମବାୟ ଭିତ୍ତିରେ କୁଟୀର ଶିଳ୍ପର ପ୍ରସାର ନିମିତ୍ତ ପ୍ରୟାସ କରିବ ।

ଉଦ୍ୟୋଗ-ମାନଙ୍କର ପରିଚାଳନାରେ ଶ୍ରମିକ ଭାଗ ନେବା ।

୪୩ କ । ରାଜ୍ୟ ଉପଯୁକ୍ତ ବିଧାନ ବା ଅନ୍ୟ କୌଣସି ପ୍ରକାରରେ କୌଣସି ଉଦ୍ୟୋଗରେ ବ୍ୟାପୃତ ଉପକ୍ରମ, ସଂସ୍ଥା ବା ଅନ୍ୟ ପ୍ରତିଷ୍ଠାନରେ ପରିଚାଳନାରେ ଶ୍ରମିକମାନେ ଯେପରି ଭାଗ ନେଇ ପାରିବେ ତାହା ସୁନିଶ୍ଚିତ କରିବା ନିମିତ୍ତ ପଦକ୍ଷେପ ନେବ ।

ନାଗରିକ-ମାନଙ୍କ ନିମିତ୍ତ ଏକ ସମାନ ସିଭିଲ ସଂହିତା ।

୪୪ । ଭାରତର ସମସ୍ତ ରାଜ୍ୟକ୍ଷେତ୍ରପାଇଁ ଏକ ସମାନ ସିଭିଲ ସଂହିତା ନାଗରିକମାନଙ୍କୁ ପ୍ରାପ୍ତ କରାଇବା ନିମିତ୍ତ ରାଜ୍ୟ ପ୍ରୟାସ କରିବ

ପିଲାମାନଙ୍କ ପାଇଁ ଅବୈତନିକ ଓ ବାଧ୍ୟତାମୂଳକ ଶିକ୍ଷାର ଉପବନ୍ଧ ।

୪୫ । ଏହି ସଂବିଧାନର ପ୍ରାରମ୍ଭଠାରୁ ଦଶବର୍ଷ କାଳାବଧି ମଧ୍ୟରେ ରାଜ୍ୟ ସମସ୍ତ ପିଲାଙ୍କୁ ସେମାନଙ୍କର ଚଉଦବର୍ଷ ବୟସ ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ଅବୈତନିକ ଓ ବାଧ୍ୟତାମୂଳକ ଶିକ୍ଷା ଦିଆଯିବା ନିମିତ୍ତ ଉପବଂଧ କରିବାର ପ୍ରୟାସ କରିବ ।

ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତିଙ୍କର ଓ ଅନ୍ୟ ଦୁର୍ବଳ ଶ୍ରେଣୀର ଶିକ୍ଷାଗତ ଓ ଆର୍ଥିକ ହିତର ଉନ୍ନତି ସାଧନ ।

୪୬ । ରାଜ୍ୟ ଲୋକମାନଙ୍କ ମଧ୍ୟରେ ଥିବା ଦୁର୍ବଳତର ଶ୍ରେଣୀର ବିଶେଷତଃ ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତିଙ୍କର ଶିକ୍ଷାଗତ ତଥା ଆର୍ଥିକ ହିତର ଉନ୍ନତି ସାଧନ କରିବ ଏବଂ ସେମାନଙ୍କୁ ସାମାଜିକ ଅନ୍ୟାୟ ତଥା ସର୍ବପ୍ରକାର ଶୋଷଣରୁ ସଂରକ୍ଷଣ କରିବ ।

ଆହାର ପୁଷ୍ଟିର ସ୍ତର ଓ ଜୀବନ-ସ୍ତରର ତଥା ସାର୍ବଜନିକ ସ୍ୱାସ୍ଥ୍ୟର ଉନ୍ନତି କରିବା ନିମିତ୍ତ ରାଜ୍ୟର କର୍ତ୍ତବ୍ୟ ।

୪୭ । ରାଜ୍ୟ ନିଜର ଲୋକଙ୍କର ଆହାର ପୁଷ୍ଟିର ସ୍ତର ଓ ଜୀବନଯାତ୍ରାର ମାନର ଉନ୍ନୟନ **ତଥା ସାର୍ବ-ଜନିକ** ସ୍ୱାସ୍ଥ୍ୟର ଉନ୍ନତି ନିଜର ପ୍ରାଥମିକ କର୍ତ୍ତବ୍ୟମାନଙ୍କର ଅନ୍ତର୍ଗତ ବୋଲି ମନେ କରିବ ଏବଂ **ବିଶେଷତଃ** ମାଦକ, ପେୟ ଓ ସ୍ୱାସ୍ଥ୍ୟ ହାନିକର ଓ୍ୟଷଧମାନଙ୍କର ଔଷଧ ସଂବନ୍ଧୀୟ ବ୍ୟବହାର ବ୍ୟତୀତ ଅନ୍ୟ ପ୍ରକାର ସେବନକୁ ନିବାରଣ କରିବାର ପ୍ରୟାସ କରିବ ।

କୃଷି ଓ ପଶୁପାଳନର ସଂଗଠନ ।

୪୮ । ରାଜ୍ୟ କୃଷି ଓ ପଶୁପାଳନକୁ ଆଧୁନିକ ଓ ବୈଜ୍ଞାନିକ ପ୍ରଣାଳୀରେ ସଂଗଠିତ କରିବାର ପ୍ରୟାସ କରିବ ଏବଂ ବିଶେଷତଃ ଗାଈ, ବାଛୁରୀ ଏବଂ ଅନ୍ୟ ଦୁହାଁଳୀ ବା ବାହକ ପଶୁ ପ୍ରଜନନର ସଂରକ୍ଷଣ ଓ ଉନ୍ନୟନ କରିବା ଏବଂ ସେମାନଙ୍କର ହତ୍ୟା ନିବାରଣ କରିବା ନିମିତ୍ତ ପଦକ୍ଷେପ ନେବ ।

ବାତାବରଣର ରକ୍ଷା ଓ ଉନ୍ନତି ତଥା ବନ ଓ ବନ୍ୟଜନ୍ତୁଙ୍କର ସୁରକ୍ଷା ।

୪୮କ । ରାଜ୍ୟ ଦେଶର ବାତାବରଣର ରକ୍ଷା କରିବା ଓ ତହିଁରେ ଉନ୍ନତି ଘଟାଇବା ନିମିତ୍ତ ତଥା ବନ ଓ ବନ୍ୟ ଜନ୍ତୁଙ୍କର ସୁରକ୍ଷା ନିମିତ୍ତ ପ୍ରୟାସ କରିବ ।

ସ୍ମାରକ ଓ ରାଷ୍ଟ୍ରୀୟ ମହତ୍ତ୍ୱ-ପୂର୍ଣ୍ଣ ସ୍ଥାନ ଏବଂ ପଦାର୍ଥମାନଙ୍କର ସଂରକ୍ଷଣ ।

୪୯ । ସଂସଦ କର୍ତ୍ତୃକ ବିଧି ଦ୍ୱାରା ବା ଅଧୀନରେ ରାଷ୍ଟ୍ରୀୟ ମହତ୍ତ୍ୱପୂର୍ଣ୍ଣ ବୋଲି ଘୋଷିତ କଳାତ୍ମକ ବା ଐତିହାସିକ ମହତ୍ତ୍ୱ ବିଶିଷ୍ଟ ପ୍ରତ୍ୟେକ ସ୍ମାରକ ବା ସ୍ଥାନ ବା ପଦାର୍ଥକୁ, ଯଥାସ୍ଥିତି, ଲୁଣ୍ଠନ, ବିରୂପୀକରଣ, ବିନାଶ, ସ୍ଥାନାନ୍ତରଣ, ବ୍ୟୟନ ବା ରପ୍ତାନୀରୁ ରକ୍ଷା କରିବା ରାଜ୍ୟ ପକ୍ଷେ ବାଧ୍ୟକର ହେବ ।

କାର୍ଯ୍ୟପାଳିକାରୁ ନ୍ୟାୟପାଳିକାର ପୃଥକ୍ କରଣ ।

୫୦ । ରାଜ୍ୟର ଲୋକସେବାରେ ନ୍ୟାୟ ପାଳିକାକୁ କାର୍ଯ୍ୟ ପାଳିକାରୁ ପଥକ କରିବା ନିମିତ୍ତ ରାଜ୍ୟ ପଦକ୍ଷେପ ନେବ ।

ଅନ୍ତର୍ଜାତୀୟ ଶାନ୍ତି ଓ ସୁରକ୍ଷାର ଉନ୍ନତି ।

୫୧ । ରାଜ୍ୟ —

(କ) ଅନ୍ତର୍ଜାତୀୟ ଶାନ୍ତି ଓ ସୁରକ୍ଷାର ଉନ୍ନତି ସାଧନ ନିମିତ୍ତ,

(ଖ) ରାଷ୍ଟ୍ରମାନଙ୍କ ମଧ୍ୟରେ ନ୍ୟାୟ ଓ ସମ୍ମାନପୂର୍ଣ୍ଣ ସମ୍ବନ୍ଧ ରକ୍ଷା କରିବା ନିମିତ୍ତ,

(ଗ) ସଂଗଠିତ ଜନ ଗୋଷ୍ଠୀମାନଙ୍କର ପରସ୍ପର ମଧ୍ୟରେ ବ୍ୟବହାରରେ ଅନ୍ତର୍ଜାତୀୟ ବିଧି ଓ ସଂଧି ବଂଧନ ପ୍ରତି ସମ୍ମାନ ବୃଦ୍ଧି କରିବା ନିମିତ୍ତ, ତଥା

(ଘ) ଅନ୍ତର୍ଜାତୀୟ ବିବାଦମାନଙ୍କର ମଧ୍ୟସ୍ଥତା ଦ୍ୱାରା ସମାଧାନ ପ୍ରୋତ୍ସାହନ କରିବା ନିମିତ, ପ୍ରୟାସ କରିବ ।

# ଭାଗ ୪ କ

## ମୌଳିକ କର୍ତ୍ତବ୍ୟ

ମୌଳିକ କର୍ତ୍ତବ୍ୟ ।

୫୧ କ । ଭାରତର ପ୍ରତ୍ୟେକ ନାଗରିକଙ୍କର ଏହା କର୍ତ୍ତବ୍ୟ ହେବ ଯେ, ସେ—

(କ) ସଂବିଧାନକୁ ମାନି ଚଳିବେ ଓ ତାହାର ଆଦର୍ଶ ଓ ଅନୁଷ୍ଠାନମାନଙ୍କ ପତି, ରାଷ୍ଟ୍ରୀୟ ପତାକା ଓ ରାଷ୍ଟ୍ରୀୟ ସଂଗୀତ ପ୍ରତି, ସମ୍ମାନ ପ୍ରଦର୍ଶନ କରିବେ ;

(ଖ) ସ୍ୱାଧୀନତା ପାଇଁ ରାଷ୍ଟ୍ରୀୟ ଆନ୍ଦୋଳନକୁ ଯେଉଁ ସବୁ ମହତ ଆଦର୍ଶ ପ୍ରେରଣା ଦେଇଥିଲା ତାହାକୁ ମନରେ ପୋଷଣ କରିବେ ଓ ତାହା ପାଳନ କରିବେ;

(ଗ) ଭାରତର ପ୍ରଭୁତା, ଏକତା ଓ ଅଖଣ୍ଡତାକୁ ବଜାୟ ରଖିବେ ଓ ତାହାକୁ ରକ୍ଷା କରିବେ ;

(ଘ) ଦେଶକୁ ରକ୍ଷା କରିବେ ଏବଂ ଆବଶ୍ୟକ କରାଗଲେ ରାଷ୍ଟ୍ରର ସେବା କରିବେ ;

(ଙ) ଧର୍ମଗତ, ଭାଷାଗତ ଓ ଆଞ୍ଚଳିକ ବା ଗୋଷ୍ଠିଗତ ଭେଦଭାବରୁ ଊର୍ଦ୍ଧ୍ୱରେ ରହି ଭାରତର ସମସ୍ତ ବ୍ୟକ୍ତିଙ୍କ ମଧ୍ୟରେ ଐକ୍ୟ ଓ ସମାନ ଭ୍ରାତୃତ୍ୱ ଭାବର ବିକାଶ ଘଟାଇବେ ଏବଂ ସ୍ତ୍ରୀ ଲୋକଙ୍କର ସମ୍ମାନ କ୍ଷୁର୍ଣ୍ଣ କଲଭଳି କାର୍ଯ୍ୟରୁ ନିବୃତ୍ତ ରହିବେ ;

(ଚ) ଆମର ସଂଯୁକ୍ତ ସଂସ୍କୃତିର ଗୌରବଶାଳୀ ପରଂପରାର ମହତ୍ୱ ବୁଝିବେ ଓ ତାହାର ପରିରକ୍ଷଣ କରିବେ ;

(ଛ) ବନ, ହ୍ରଦ, ନଦୀ ଓ ବନ୍ୟଜନ୍ତୁ ସମେତ ପ୍ରାକୃତିକ ବାତାବରଣର ରକ୍ଷା କରିବେ ଓ ଉନ୍ନତି ଘଟାଇବେ ଏବଂ ପ୍ରାଣୀ ପ୍ରତି ଦୟାଭାବ ପୋଷଣ କରିବେ ;

(ଜ) ବୈଜ୍ଞାନିକ ଦୃଷ୍ଟିକୋଣ, ମାନବ ଭାବ ତଥା ଜ୍ଞାନାର୍ଜନ ଓ ସଂସ୍କରର ଭାବନାର ବିକାଶ କରିବେ ;

(ଝ) ସାର୍ବଜନିକ ସଂପତ୍ତିକୁ ସୁରକ୍ଷିତ ରଖିବେ ଓ ହିଂସା ତ୍ୟାଗ କରିବେ ;

(ଞ) ବ୍ୟକ୍ତିଗତ ଓ ସାମୂହିକ କାର୍ଯ୍ୟକଳାପର ସମସ୍ତ କ୍ଷେତ୍ରରେ ଉତ୍କର୍ଷ ସାଧନ ପାଇଁ ଉଦ୍ୟମ କରିବେ, ଯଦ୍ୱାରାକି ରାଷ୍ଟ୍ର ପ୍ରଯତ୍ନ ଓ ଉପଲବ୍ଧିର ମାନ ବଢ଼ି କରିବାରେ ଅବିରତ ଆଗେଇ ଚ୍ଚଲେ ।

# ଭାଗ ୫

## ସଂଘ

### ଅଧ୍ୟାୟ ୧-କାର୍ଯ୍ୟପାଳିକା

### ରାଷ୍ଟ୍ରପତି ଏବଂ ଉପରାଷ୍ଟ୍ରପତି

ଭାରତର ରାଷ୍ଟ୍ରପତି ।

୫୨ । ଭାରତର ଜଣେ ରାଷ୍ଟ୍ରପତି ରହିବେ ।

ସଂଘର କାର୍ଯ୍ୟପାଳିକା କ୍ଷମତା

୫୩ । (୧) ସଂଘର କାର୍ଯ୍ୟପାଳିକା କ୍ଷମତା ରାଷ୍ଟ୍ରପତିଙ୍କଠାରେ ନିହିତ ହେବ ଏବଂ ସ୍ୱୟଂ ତାଙ୍କ ଦ୍ୱାରା ବା ତାଙ୍କର ଅଧୀନସ୍ଥ ଅଫିସରଙ୍କ ଦ୍ୱାରା ଏହି ସଂବିଧାନ ଅନୁସାରେ ତହିଁର ପ୍ରୟୋଗ କରାଯିବ ।

(୨) ପୂର୍ବଗାମୀ ଉପବନ୍ଧର ବ୍ୟାପକତା ଉପରେ ପ୍ରତିକୂଳ ପ୍ରଭାବ ନ ପକାଇ, ପ୍ରତିରକ୍ଷା ବଳର ସର୍ବୋଚ୍ଚ ସମାଦେଶ ରାଷ୍ଟ୍ରପତିଙ୍କଠାରେ ନିହିତ ହେବ ଏବଂ ତହିଁର ପ୍ରୟୋଗ ବିଧିଦ୍ୱାରା ବିନିୟମିତ ହେବ ।

(୩) ଏହି ଅନୁଚ୍ଛେଦର କୌଣସି ବିଷୟ—

(କ) କୌଣସି ବିଦ୍ୟମାନ ବିଧିଦ୍ୱାରା କୌଣସି ରାଜ୍ୟର ସରକାର ଅଥବା ଅନ୍ୟ ପ୍ରାଧିକାରୀଙ୍କଠାରେ ନ୍ୟସ୍ତ କୌଣସି କୃତ୍ୟ ରାଷ୍ଟ୍ରପତିଙ୍କଠାକୁ ଅନ୍ତରିତ କରୁଛି ବୋଲି ବିବେଚିତ ହେବ ନାହିଁ; ଅଥବା

(ଖ) ରାଷ୍ଟ୍ରପତିଙ୍କ ଭିନ୍ନ ଅନ୍ୟ ପ୍ରାଧିକାରୀଙ୍କଠାରେ ବିଧି ଦ୍ୱାରା କୌଣସି କୃତ୍ୟ ନ୍ୟସ୍ତ କରିବାରେ ସଂସଦକୁ ବାଧା ଦେବ ନାହିଁ ।

ରାଷ୍ଟ୍ରପତି ନିର୍ବାଚନ ।

୫୪ । ରାଷ୍ଟ୍ରପତି—

(କ) ସଂସଦର ଉଭୟ ସଦନର ନିର୍ବାଚିତ ସଦସ୍ୟଙ୍କୁ, ଏବଂ

(ଖ) ରାଜ୍ୟ ବିଧାନ ସଭାମାନଙ୍କର ନିର୍ବାଚିତ ସଦସ୍ୟଙ୍କୁ,

ନେଇ ଗଠିତ ଏକ ନିର୍ବାଚକଗଣର ସଦସ୍ୟମାନଙ୍କ ଦ୍ୱାରା ନିର୍ବାଚିତ ହେବେ ।

ରାଷ୍ଟ୍ରପତି ନିର୍ବାଚନର ରୀତି ।

୫୫ । (୧) ଯେତେଦୂର ସାଧ୍ୟ, ରାଷ୍ଟ୍ରପତିଙ୍କ ନିର୍ବାଚନରେ ଭିନ୍ନ ଭିନ୍ନ ରାଜ୍ୟମାନଙ୍କର ପ୍ରତିନିଧିତ୍ୱ ପରିମାଣରେ ଐକ୍ୟ ରହିବ ।

(୨) ରାଜ୍ୟମାନଙ୍କ ପରସ୍ପର ମଧ୍ୟରେ ଏପରି ଐକ୍ୟ ତଥା ସମସ୍ତ ରାଜ୍ୟ ଓ ସଂଘ ମଧ୍ୟରେ ସମତୁଲ୍ୟତା ପ୍ରାପ୍ତ କରାଇବା ନିମିତ୍ତ ସଂସଦ ତଥା ପ୍ରତ୍ୟେକ ରାଜ୍ୟର ବିଧାନ ସଭାର ପ୍ରତ୍ୟେକ ନିର୍ବାଚିତ ସଦସ୍ୟ ଏହି ନିର୍ବାଚନରେ ଯେତିକି ଭୋଟ ଦେବାପାଇଁ ହକଦାର ତହିଁର ସଂଖ୍ୟା ନିମ୍ନଲିଖିତ ପ୍ରକାରରେ ନିର୍ଦ୍ଧାରିତ କରାଯିବ—

(କ) କୌଣସି ରାଜ୍ୟର ଲୋକ ସଂଖ୍ୟାକୁ ତହିଁର ବିଧାନ ସଭାର ନିର୍ବାଚିତ ସଦସ୍ୟମାନଙ୍କର ମୋଟ ସଂଖ୍ୟା ଦ୍ୱାରା ଭାଗ କଲେ ଯେଉଁ ଭାଗଫଳ ମିଳିବ, ତାହା ଏକ ହଜାରର ଯେତିକି ଗୁଣ ଅଟେ, ସେତିକି ଭୋଟ ସେହି ରାଜ୍ୟର ବିଧାନ ସଭାର ପ୍ରତ୍ୟେକ ନିର୍ବାଚିତ ସଦସ୍ୟଙ୍କର ରହିବ ;

(ଖ) ଏକ ହଜାରର ଉକ୍ତ ଗୁଣିତକମାନଙ୍କୁ ନେବା ପରେ ଯଦି ଭାଗଶେଷ ପାଞ୍ଚଶହରୁ କମ୍ ନହୁଏ ତେବେ ଉପଖଣ୍ଡ (କ) ରେ ଉଲ୍ଲିଖିତ ପ୍ରତ୍ୟେକ ସଦସ୍ୟଙ୍କର ଭୋଟରେ ପୁଣି ଗୋଟିଏ ବୃଦ୍ଧି କରାଯିବ ;

(ଗ) ଉପଖଣ୍ଡ (କ) ଓ (ଖ) ଅନୁସାରେ ରାଜ୍ୟମାନଙ୍କ ବିଧାନ ସଭାମାନଙ୍କର ସଦସ୍ୟମାନଙ୍କ ପାଇଁ ନିରୂପିତ ସମସ୍ତ ଭୋଟ ସଂଖ୍ୟାକୁ ସଂସଦର ଉଭୟ ସଦନର ନିର୍ବାଚିତ ସଦସ୍ୟମାନଙ୍କର ମୋଟ ସଂଖ୍ୟା ଦ୍ୱାରା ଭାଗ କଲେ ଯାହା ମିଳିବ, ସଂସଦର ପ୍ରତ୍ୟେକ ସଦନର ପ୍ରତ୍ୟେକ ନିର୍ବାଚିତ ସଦସ୍ୟଙ୍କର ଭୋଟ ସଂଖ୍ୟା ସେତିକି ହେବ ଏବଂ ତହିଁରେ ଅର୍ଦ୍ଧାଧିକ ଭଗ୍ନାଂଶକୁ ଏକ ବୋଲି ଗଣାଯିବ ଏବଂ ଅନ୍ୟ ଭଗ୍ନାଂଶମାନ ଛାଡ଼ି ଦିଆଯିବ ।

(୩) ରାଷ୍ଟ୍ରପତିଙ୍କ ନିବାଚନ ଏକକ ସଂକ୍ରମଣୀୟ ଭୋଟ ଦ୍ୱାରା ଆନୁପାତିକ ପ୍ରତିନିଧିତ୍ୱ ପଦ୍ଧତି ଅନୁସାରେ ଅନୁଷ୍ଠିତ ହେବ ଏବଂ ଏପରି ନିର୍ବାଚନରେ ଭୋଟଦାନ ଗୁପ୍ତ ବାଲଟ ଦ୍ୱାରା ସମ୍ପାଦିତ ହେବ ।

ସ୍ପଷ୍ଟୀକରଣ : ଏହି ଅନୁଚ୍ଛେଦରେ "ଜନସଂଖ୍ୟା" ପଦ ଦ୍ୱାରା ଅନ୍ତିମ ପୂର୍ବଗାମୀ ଜନଗଣନାରେ ନିଶ୍ଚିତ ହୋଇଥିବା ଜନସଂଖ୍ୟା ଯହିଁରକି ସୁସଙ୍ଗତ ସଂଖ୍ୟା ପ୍ରକାଶିତ ହୋଇଥାଏ, ତାହା ଅଭିପ୍ରେତ ଅଟେ

ପରନ୍ତୁ ଏହି ସ୍ପଷ୍ଟୀକରଣରେ ଅନ୍ତିମ ପୂର୍ବଗାମୀ ଜନଗଣନା ପ୍ରତି ନିର୍ଦ୍ଦେଶ ଯହିଁରକି ସୁସଙ୍ଗତ ସଂଖ୍ୟା ପ୍ରକାଶିତ ହୋଇଥାଏ, ସନ ୨୦୦୦ ପରେ କରାଯିବା ପ୍ରଥମ ଜନଗଣନାରେ ସୁସଙ୍ଗତ ସଂଖ୍ୟା ପ୍ରକାଶିତ ହେବା ପର୍ଯ୍ୟନ୍ତ, ସନ ୧୯୭୧ର ଜନଗଣନା ପ୍ରତି ନିର୍ଦ୍ଦେଶ ବୋଲି ଅର୍ଥ କରାଯିବ ।

**ରାଷ୍ଟ୍ରପତିଙ୍କ ପଦାବଧି ।**

୫୬ । (୧) ରାଷ୍ଟ୍ରପତି ନିଜର ପଦ ଗ୍ରହଣ କରିବା ତାରିଖଠାରୁ ପାଞ୍ଚ ବର୍ଷ ଅବଧି ପଦ ଧାରଣ କରିବେ :

ପରନ୍ତୁ—

(କ) ରାଷ୍ଟ୍ରପତି ଉପରାଷ୍ଟ୍ରପତିଙ୍କୁ ସମ୍ବୋଧିତ ସ୍ୱହସ୍ତାଙ୍କିତ ଲେଖା ଦ୍ୱାରା ନିଜ ପଦତ୍ୟାଗ କରି ପାରିବେ ;

(ଖ) ସଂବିଧାନର ଅତିକ୍ରମଣ ହେତୁ ଅନୁଚ୍ଛେଦ ୬୧ରେ ଉପବନ୍ଧିତ ରୀତି ଅନୁସାରେ ମହାଭି-ଯୋଗ ଦ୍ୱାରା ରାଷ୍ଟ୍ରପତି ପଦରୁ ଦୂରୀକୃତ ହୋଇ ପାରିବେ;

(ଗ) ରାଷ୍ଟ୍ରପତି ତାଙ୍କର ପଦାବଧି ସମାପ୍ତ ହେବା ସତ୍ତ୍ୱେ, ତାଙ୍କର ଉତ୍ତରାଧିକାରୀ ତାଙ୍କ ପଦ ଗ୍ରହଣ କରିବା ପର୍ଯ୍ୟନ୍ତ ପଦାସୀନ ରହିଥିବେ ।

(୨) ଖଣ୍ଡ(୧)ର ପରନ୍ତୁକରେ ଖଣ୍ଡ (କ) ଅଧୀନରେ ଉପରାଷ୍ଟ୍ରପତିଙ୍କୁ ସଂବୋଧିତ କୌଣସି ପଦ ତ୍ୟାଗପତ୍ର ବିଷୟ ସେ ଅବିଳମ୍ବେ ଲୋକ-ସଭାର ବାଚସ୍ପତିଙ୍କୁ ସଂସୂଚିତ କରାଇବେ ।

**ପୁନର୍ନିର୍ବାଚନ ନିମିତ୍ତ ପାତ୍ରତା ।**

୫୭ । ରାଷ୍ଟ୍ରପତିରୂପେ ପଦ ଧାରଣ କରୁଥିବା ବା କରିଥିବା ବ୍ୟକ୍ତି ଏହି ସଂବିଧାନର ଅନ୍ୟ ଉପ-ବନ୍ଧମାନଙ୍କର ବଶବର୍ତ୍ତୀରହି, ସେହି ପଦ ନିମିତ୍ତ ପୁନର୍ନିର୍ବାଚନ ପାଇଁ ପାତ୍ରହେବେ ।

**ରାଷ୍ଟ୍ରପତି ରୂପେ ନିର୍ବାଚିତ ହେବା ନିମିତ୍ତ ଯୋଗ୍ୟତା ।**

୫୮ । (୧) କୌଣସି ବ୍ୟକ୍ତି ରାଷ୍ଟ୍ରପତିରୂପେ ନିର୍ବାଚନପାଇଁ ପାତ୍ର ହେବେନାହିଁ ଯଦି—

(କ) ସେ ଭାରତର ନାଗରିକ ନ ହୋଇଥାନ୍ତି ;

(ଖ) ତାଙ୍କର ପଞ୍ଚତିରିଶ ବର୍ଷ ବୟସ ପୂର୍ଣ୍ଣ ନ ହୋଇଥାଏ; ଏବଂ

(ଗ) ସେ ଲୋକସଭାର ସଦସ୍ୟରୂପେ ନିର୍ବାଚନ ପାଇଁ ଯୋଗ୍ୟ ନ ହୋଇଥାନ୍ତି ।

(୨) ଯଦି କୌଣସି ବ୍ୟକ୍ତି ଭାରତ ସରକାର ବା କୌଣସି ରାଜ୍ୟ ସରକାରଙ୍କ ଅଧୀନରେ ବା ଉକ୍ତ ସରକାରଙ୍କ ମଧ୍ୟରୁ କାହାରି ନିୟନ୍ତ୍ରଣାଧୀନ କୌଣସି ସ୍ଥାନୀୟ ବା ଅନ୍ୟ କୌଣସି ପ୍ରାଧିକାରୀ ଅଧୀନରେ କୌଣସି ଲାଭପ୍ରଦ ପଦ ଧାରଣ କରିଥାନ୍ତି ତେବେ ସେ ରାଷ୍ଟ୍ରପତିରୂପେ ନିର୍ବାଚିତ ହେବାପାଇଁ ପାତ୍ର ହେବେ ନାହିଁ ।

ସ୍ପଷ୍ଟିକରଣ : ଏହି ଅନୁଚ୍ଛେଦର ପ୍ରୟୋଜନ ନିମିତ୍ତ କୌଣସି ବ୍ୟକ୍ତି କେବଳ ସଂଘର ରାଷ୍ଟ୍ରପତି, ଉପରାଷ୍ଟ୍ରପତି ବା କୌଣସି ରାଜ୍ୟର ରାଜ୍ୟପାଳ ଅଥବା ସଂଘର ବା କୌଣସି ରାଜ୍ୟର ମନ୍ତ୍ରୀ ଥିବା କାରଣରୁ କୌଣସି ଲାଭପ୍ରଦ ପଦ ଧାରଣ କରି ଅଛନ୍ତି ବୋଲି ବିବେଚିତ ହେବେ ନାହିଁ ।

ରାଷ୍ଟ୍ରପତି ପଦର ସର୍ତ୍ତାବଳୀ ।

୫୯ । (୧) ରାଷ୍ଟ୍ରପତି ସଂସଦର ଉଭୟ ମଧ୍ୟରୁ କୌଣସି ସଦନର ବା କୌଣସି ରାଜ୍ୟର ବିଧାନ ମଣ୍ଡଳର କୌଣସି ସଦନର ସଦସ୍ୟ ହେବେ ନାହିଁ ଏବଂ ଯଦି ସଂସଦର ଉଭୟ ମଧ୍ୟରୁ କୌଣସି ସଦନର ବା କୌଣସ ରାଜ୍ୟ ବିଧାନ ମଣ୍ଡଳର କୌଣସି ସଦନର ସଦସ୍ୟ ରାଷ୍ଟପତିରୂପେ ନିର୍ବାଚିତ ହୁଅନ୍ତି ତେବେ ଯେଉଁ ତାରିଖରେ ସେ ରାଷ୍ଟ୍ରପତିରୂପେ ପଦ ଗ୍ରହଣ କଲେ ସେହି ତାରିଖରେ ସେହି ସଦନରୁ ସେ ତାଙ୍କର ସ୍ଥାନ ରିକ୍ତ କଲେ ବୋଲି ବିବେଚିତ ହେବ ।

(୨) ରାଷ୍ଟ୍ରପତି ଅନ୍ୟ କୌଣସି ଲାଭପ୍ରଦ ପଦ ଧାରଣ କରିବେ ନାହିଁ ।

(୩) ରାଷ୍ଟପତି ତାଙ୍କର ପଦାବାସ ବିନା ଭଡ଼ାରେ ବ୍ୟବହାର କରିବାପାଇଁ ହକ୍‌ଦାର ହେବେ ଏବଂ ସଂସଦ ବିଧିଦ୍ୱାରା ଯେପରି ନିର୍ଦ୍ଧାରଣ କରେ ସେପରି ଉପଲବ୍ଧି, ଭତ୍ତା ଓ ବିଶେଷାଧିକାର ପାଇଁ ମଧ୍ୟ ହକ୍‌ଦାର ହେବେ ଏବଂ ଯେଉଁ ପର୍ଯ୍ୟନ୍ତ ସେ ବିଷୟରେ ଏପରି ଉପବନ୍ଧ କରା ନ ଯାଇଛି, ସେ ପର୍ଯ୍ୟନ୍ତ ଦ୍ୱିତୀୟ ଅନୁସୂଚୀର ବିନିର୍ଦ୍ଦିଷ୍ଟ ହୋଇଥିବା ଉପଲବ୍ଧି, ଭତ୍ତା ଓ ବିଶେଷାଧିକାର ପାଇଁ ହକ୍‌ଦାର ହେବେ ।

(୪) ରାଷ୍ଟ୍ରପତିଙ୍କ ଉପଲବ୍ଧି ଓ ଭତ୍ତା ତାଙ୍କ ପଦର ଅବଧି ମଧ୍ୟରେ ହ୍ରାସ କରାଯିବ ନାହିଁ ।

ରାଷ୍ଟ୍ରପତିଙ୍କ ଦ୍ୱାରା ଶପଥ ବା ପ୍ରତିଜ୍ଞାନ ।

୬୦ । ପ୍ରତ୍ୟେକ ରାଷ୍ଟ୍ରପତି ତଥା ପ୍ରତ୍ୟେକ ବ୍ୟକ୍ତି ଯେ କି ରାଷ୍ଟ୍ରପତି ରୂପେ କାର୍ଯ୍ୟ କରୁଥାନ୍ତି ବା ତାଙ୍କର କୃତ୍ୟ ନିର୍ବାହ କରୁଥାନ୍ତି ନିଜର ପଦ ଗ୍ରହଣ କରିବା ପୂର୍ବରୁ ଭାରତର ମୁଖ୍ୟ ନ୍ୟାୟାଧିପତିଙ୍କ ସମକ୍ଷରେ ବା ତାଙ୍କ ଅନୁପସ୍ଥିତିରେ ଉଚ୍ଚତମ ନ୍ୟାୟାଳୟର ଉପସ୍ଥିତ ବରିଷ୍ଠତମ ନ୍ୟାୟାଧୀଶଙ୍କ ସମକ୍ଷରେ ନିମ୍ନ ପ୍ରପତ୍ରରେ ଶପଥ ବା ପ୍ରତିଜ୍ଞାନ କରିବେ ତଥା ତହିଁରେ ସ୍ୱାକ୍ଷର କରିବେ, ଅର୍ଥାତ୍—

"ମୁଁ..................................................(ଅମୁକ) $\frac{\text{ଈଶ୍ୱରଙ୍କ ନାମରେ ଶପଥ}}{\text{ସତ୍ୟ ନିଷ୍ଠାସହ ପ୍ରତିଜ୍ଞାନ}}$ କରୁଅଛି ଯେ ମୁଁ ଶ୍ରଦ୍ଧା ପୂର୍ବକ ଭାରତର ରାଷ୍ଟ୍ରପତି ପଦର କାର୍ଯ୍ୟ ପାଳନ କରିବି (ଅଥବା ରାଷ୍ଟ୍ରପତିଙ୍କ କୃତ୍ୟ ନିର୍ବାହ କରିବି) ଏବଂ ନିଜର ପୂର୍ଣ୍ଣ ସାମର୍ଥ୍ୟ ଦେଇ ସଂବିଧାନ ଓ ବିଧିର ପରିରକ୍ଷା, ସଂରକ୍ଷା ଓ ପ୍ରତିରକ୍ଷା କରିବି ଏବଂ ମୁଁ ଭାରତର ଜନତାର ସେବା ଓ କଲ୍ୟାଣ ନିମିତ୍ତ ନିଜକୁ ନିୟୋଜିତ କରିବି ।"

ରାଷ୍ଟ୍ରପତିଙ୍କ ଉପରେ ମହାଭିଯୋଗ ନିମିତ୍ତ ପ୍ରକ୍ରିୟା ।

୬୧ । (୧) ଯେବେ ସଂବିଧାନର ଅତିକ୍ରମଣ ନିମିତ୍ତ ରାଷ୍ଟ୍ରପତିଙ୍କୁ ମହାଭିଯୋଗରେ ଅଭିଯୁକ୍ତ କରିବାକୁ ହେବ ତେବେ ସଂସଦର ଯେ କୌଣସି ସଦନ ଦ୍ୱାରା ଦୋଷାରୋପ ଆଗତ କରାଯିବ ।

(୨) ଏପରି କୌଣସି ଦୋଷାରୋପ ଆଗତ କରାଯିବ ନାହିଁ, ଯେଉଁ ପର୍ଯ୍ୟନ୍ତ କି—

(କ) ଏପରି ସଙ୍କଳ୍ପକୁ ଆଗତ କରିବାର ପ୍ରସ୍ଥାପନା ଏକ ସଂକଳ୍ପରେ ସମାବିଷ୍ଟ କରାଯାଇଥାଇ ତାହା କୌଣସି ସଦନର ମୋଟ ସଦସ୍ୟ ସଂଖ୍ୟାର ଅନ୍ୟୂନ ଏକ ଚତୁର୍ଥାଂଶ ସଦସ୍ୟଙ୍କର ଏପରି ସଂକଳ୍ପକୁ ପ୍ରସ୍ତାବିତ କରିବାର ଆଶୟ ଦର୍ଶାଉଥିବା ସ୍ୱାକ୍ଷରିତ ସୂଚନା ଦିଆଯିବାର ଅନ୍ୟୂନ ଚଉଦ ଦିନ ପରେ ପ୍ରସ୍ତାବିତ କରାଯାଇ ନ ଥିବ; ଏବଂ

(ଖ) ଏପରି ସଂକଳ୍ପ ସଦନର ସଦସ୍ୟଙ୍କର ମୋଟ ସଂଖ୍ୟାର ଅନ୍ୟୂନ ଦୁଇ ତୃତୀୟାଂଶଙ୍କ ବହୁମତରେ ପାରିତ ହୋଇ ନ ଥିବ ।

(୩) ଯେବେ ସଂସଦର କୌଣସି ସଦନ ଦ୍ୱାରା ଏହି ପ୍ରକାରରେ ଦୋଷାରୋପ ଆଗତ କରା ଯାଇଥାଏ ତେବେ ଅନ୍ୟ ସଦନ ସେହି ଦୋଷାରୋପକୁ ଅନୁସନ୍ଧାନ କରିବ ବା କରାଇବ ଏବଂ ଏପରି ଅନୁସନ୍ଧାନରେ ରାଷ୍ଟ୍ରପତିଙ୍କର ନିଜେ ଉପସ୍ଥିତ ହେବା ନିମିତ୍ତ ତଥା ପ୍ରତିନିଧି ଜରିଆରେ ନିଜକୁ ଉପସ୍ଥିତ କରାଇବା ନିମିତ୍ତ ଅଧିକାର ରହିବ ।

(୪) ଯଦି ଅନୁସନ୍ଧାନର ଫଳ ସ୍ୱରୂପ ଦୋଷାରୋପକୁ ଅନୁସନ୍ଧାନ କରିଥିବା ବା କରାଇଥିବା ସଦନର ସଦସ୍ୟଙ୍କର ମୋଟ ସଂଖ୍ୟାର ଅନ୍ୟୂନ ଦୁଇ ତୃତୀୟାଂଶଙ୍କର ବହୁମତରେ ରାଷ୍ଟ୍ରପତିଙ୍କ ବିରୁଦ୍ଧରେ ଆଗତ ଦୋଷାରୋପ ସିଦ୍ଧ ହେଲା ବୋଲି ଘୋଷଣା କରି ଏକ ସଂକଳ୍ପ ପାରିତ ହୁଏ, ତେବେ ଏପରି ସଂକଳ୍ପର ପ୍ରଭାବ ତହିଁର ପାରିତ ହେବା ଦିବସଠାରୁ ରାଷ୍ଟ୍ରପତିଙ୍କୁ ନିଜ ପଦରୁ ଦୂରୀକୃତ କରିବ ।

**ରାଷ୍ଟ୍ରପତି ପଦର ରିକ୍ତତା ପୂରଣ କରିବା ନିମିତ୍ତ ନିର୍ବାଚନ ସମୟ ଏବଂ ଆକସ୍ମିକ ରିକ୍ତତା ପୂରଣ ନିମିତ୍ତ ନିର୍ବାଚିତ ବ୍ୟକ୍ତିଙ୍କ ପଦାବଧି ।**

୬୨ । (୧) ରାଷ୍ଟ୍ରପତିଙ୍କ ପଦାବଧିର ଅବସାନ ଜନିତ ରିକ୍ତତାର ପୂରଣ ନିମିତ୍ତ ନିର୍ବାଚନ ସେହି ଅବଧିର ଅବସାନ ପୂର୍ବରୁ ସଂପୂର୍ଣ୍ଣ କରାଯିବ ।

(୨) ମୃତ୍ୟୁ, ପଦତ୍ୟାଗ, ଦୂରୀକରଣ ବା ଅନ୍ୟ କାରଣ ଜନିତ ରାଷ୍ଟ୍ରପତିଙ୍କ ପଦର ରିକ୍ତତା ପୂରଣ ନିମିତ୍ତ ନିର୍ବାଚନ ରିକ୍ତତା ଘଟିବା ତାରିଖର ପରେ ଯଥା ଶୀଘ୍ର ଏବଂ ଯାହାହେଲେ ମଧ୍ୟ ଛଅମାସ ଅତିକ୍ରାନ୍ତ ହେବା ପୂର୍ବରୁ ଅନୁଷ୍ଠିତ ହେବ, ଏବଂ ରିକ୍ତତା ପୂରଣ ନିମିତ୍ତ ନିର୍ବାଚିତ ବ୍ୟକ୍ତି ଅନୁଚ୍ଛେଦ ୫୬ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ପଦ ଗ୍ରହଣ କରିବା ତାରିଖଠାରୁ ପୂର୍ଣ୍ଣ ପାଞ୍ଚବର୍ଷର ଅବଧି ନିମିତ୍ତ ପଦଧାରଣ କରିବା ପାଇଁ ହକ୍‌ଦାର ହେବେ ।

**ଭାରତର ଉପରାଷ୍ଟ୍ରପତି ।**

୬୩ । ଭାରତର ଜଣେ ଉପରାଷ୍ଟ୍ରପତି ରହିବେ ।

**ଉପରାଷ୍ଟ୍ରପତି ପଦ ବଳରେ ରାଜ୍ୟ ସଭାର ସଭାପତି ହେବେ ।**

୬୪ । ଉପରାଷ୍ଟ୍ରପତି, ପଦବଳରେ ରାଜ୍ୟ ସଭାର ସଭାପତି ହେବେ ଏବଂ ଅନ୍ୟ କୌଣସି ଲାଭପ୍ରଦ ପଦ ଧାରଣ କରିବେନାହିଁ :

ପରନ୍ତୁ ଯେଉଁ କାଳାବଧି ମଧ୍ୟରେ ଉପରାଷ୍ଟ୍ରପତି ଅନୁଚ୍ଛେଦ ୬୫ ଅଧୀନରେ ରାଷ୍ଟ୍ରପତି ରୂପରେ କାର୍ଯ୍ୟ କରୁଥିବେ ବା ରାଷ୍ଟ୍ରପତିଙ୍କ କୃତ୍ୟ ନିର୍ବାହ କରୁଥିବେ ସେହି ସମୟରେ ସେ ରାଜ୍ୟ ସଭାର ସଭାପତି ପଦର କର୍ତ୍ତବ୍ୟ ସଂପାଦନ କରିବେ ନାହିଁ, ଏବଂ ଅନୁଚ୍ଛେଦ ୯୭ ଅଧୀନରେ ରାଜ୍ୟ ସଭାର ସଭାପତିଙ୍କୁ ଦେୟ କୌଣସି ବେତନ ଅଥବା ଭତ୍ତା ପାଇଁ ହକ୍‌ଦାର ହେବେନାହିଁ ।

**ରାଷ୍ଟ୍ରପତିଙ୍କ ପଦର ସାମୟିକ ରିକ୍ତତା ବା ତାଙ୍କର ଅନୁପସ୍ଥିତିରେ ଉପ ରାଷ୍ଟ୍ରପତିଙ୍କର ରାଷ୍ଟ୍ରପତି ରୂପେ କାର୍ଯ୍ୟ ସଂପାଦନ ବା ତାଙ୍କର କୃତ୍ୟ ନିର୍ବହନ ।**

୬୫ । (୧) ମୃତ୍ୟୁ, ପଦତ୍ୟାଗ, ଦୂରୀକରଣ ବା ଅନ୍ୟ କାରଣ ହେତୁ ରାଷ୍ଟ୍ରପତି ପଦ ରିକ୍ତ ହେଲେ ଏହି ଅଧ୍ୟାୟର ଏପରି ରିକ୍ତତା ପୂରଣ ସମ୍ବନ୍ଧୀୟ ଉପବନ୍ଧମାନଙ୍କର ଅନୁସାରେ ନିର୍ବାଚିତ ନୂତନ ରାଷ୍ଟ୍ରପତି ନିଜର ପଦ ଗ୍ରହଣ କରିବା ତାରିଖ ପର୍ଯ୍ୟନ୍ତ ଉପରାଷ୍ଟ୍ରପତି ରାଷ୍ଟ୍ରପତି ରୂପେ କାର୍ଯ୍ୟ ସମ୍ପାଦନ କରିବେ ।

(୨) ଅନୁପସ୍ଥିତି, ରୁଗ୍‌ଣାବସ୍ଥା ବା ଅନ୍ୟ କୌଣସି କାରଣରୁ ଯେବେ ରାଷ୍ଟ୍ରପତି ତାଙ୍କର କୃତ୍ୟମାନ ନିର୍ବହନ କରିବାରେ ଅସମର୍ଥ ହୁଅନ୍ତି ତେବେ ରାଷ୍ଟ୍ରପତି ତାଙ୍କର କର୍ତ୍ତବ୍ୟ ପୁନର୍ଗ୍ରହଣ କରିବା ତାରିଖ ପର୍ଯ୍ୟନ୍ତ ଉପରାଷ୍ଟ୍ରପତି ତାଙ୍କର କୃତ୍ୟମାନ ନିର୍ବହନ କରିବେ ।

(୩) ଉପରାଷ୍ଟ୍ରପତି ଯେଉଁ ସମୟରେ ରାଷ୍ଟ୍ରପତି ରୂପେ ଏପରି କାର୍ଯ୍ୟ କରୁଥାନ୍ତି ଅଥବା ତାଙ୍କ କୃତ୍ୟମାନ ନିର୍ବହନ କରୁଥାନ୍ତି ସେହି କାଳାବଧି ମଧ୍ୟରେ ତଥା ସେହି କାଳାବଧି ସଂପର୍କରେ ରାଷ୍ଟ୍ରପତିଙ୍କର ସମସ୍ତ କ୍ଷମତା ଓ ଉନ୍ମୁକ୍ତିମାନ ପ୍ରାପ୍ତ ହେବେ, ଏବଂ ସଂସଦ ବିଧିଦ୍ୱାରା ଯେପରି ନିର୍ଦ୍ଧାରଣ କରେ ସେପରି ଉପଲବ୍ଧି, ଭତ୍ତା ଓ ବିଶେଷାଧିକାର ପାଇଁ ହକ୍‌ଦାର ହେବେ ଏବଂ ଯେଉଁ ପର୍ଯ୍ୟନ୍ତ ସେହି ବିଷୟରେ ଏପରି ଉପବନ୍ଧ କରା ନଯାଇଛି ସେ ପର୍ଯ୍ୟନ୍ତ ଦ୍ୱିତୀୟ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହୋଇଥିବା ଉପଲବ୍ଧି, ଭତ୍ତା ଓ ବିଶେଷାଧିକାର ପାଇଁ ହକ୍‌ଦାର ହେବେ ।

ଉପରାଷ୍ଟ୍ରପତି ନିର୍ବାଚନ ।

୬୬ । (୧) ଉପରାଷ୍ଟ୍ରପତି ସଂସଦର ଉଭୟ ସଦନର ସଦସ୍ୟମାନଙ୍କୁ ନେଇ ଗଠିତ ନିର୍ବାଚକଗଣର ସଦସ୍ୟମାନଙ୍କ ଦ୍ୱାରା ଆନୁପାତିକ ପ୍ରତିନିଧିତ୍ୱ ପଦ୍ଧତି ଅନୁସାରେ ଏକକ ସଂକ୍ରମଣୀୟ ଭୋଟ ଦ୍ୱାରା ନିର୍ବାଚିତ ହେବେ ଏବଂ ଏପରି ନିର୍ବାଚନରେ ଗୁପ୍ତ ବାଲଟ ଦ୍ୱାରା ଭୋଟଦାନ କରାଯିବ ।

(୨) ଉପରାଷ୍ଟ୍ରପତି ସଂସଦର କୌଣସ ସଦନର ବା କୌଣସି ରାଜ୍ୟ ବିଧାନ ମଣ୍ଡଳର କୌଣସି ସଦନର ସଦସ୍ୟ ହେବେନାହିଁ, ଏବଂ ଯଦି ସଂସଦର କୌଣସି ସଦନର ଅଥବା କୌଣସି ରାଜ୍ୟ ବିଧାନ ମଣ୍ଡଳର କୌଣସି ସଦନର ସଦସ୍ୟ ଉପରାଷ୍ଟ୍ରପତି ରୂପେ ନିର୍ବାଚିତ ହୁଅନ୍ତି, ତେବେ ଯେଉଁ ତାରିଖରେ ସେ ଉପରାଷ୍ଟ୍ରପତି ରୂପେ ପଦ ଗ୍ରହଣ କଲେ ସେହି ତାରିଖରେ ସେହି ସଦନରୁ ସେ ତାଙ୍କର ସ୍ଥାନ ରିକ୍ତ କଲେ ବୋଲି ବିବେଚିତ ହେବେ ।

(୩) କୌଣସି ବ୍ୟକ୍ତି ଉପରାଷ୍ଟ୍ରପତି ରୂପେ ନିର୍ବାଚନ ପାଇଁ ପାତ୍ର ହେବେ ନାହିଁ ଯଦି—

(କ) ସେ ଭାରତର ନାଗରିକ ନ ହୋଇଥାନ୍ତି ;

(ଖ) ତାଙ୍କର ପଞ୍ଚତିରିଶ ବର୍ଷ ବୟସ ପୂର୍ଣ୍ଣ ନ ହୋଇଥାଏ ; ଏବଂ

(ଗ) ସେ ରାଜ୍ୟ ସଭାର ସଦସ୍ୟରୂପେ ନିର୍ବାଚନ ପାଇଁ ଯୋଗ୍ୟ ନ ହୋଇ ଥାନ୍ତି ।

(୪) ଯଦି କୌଣସି ବ୍ୟକ୍ତି ଭାରତ ସରକାର ବା କୌଣସି ରାଜ୍ୟ ସରକାରଙ୍କ ଅଧୀନରେ ବା ଉକ୍ତ ସରକାରମାନଙ୍କ ମଧ୍ୟରୁ କାହାରି ନିୟନ୍ତ୍ରଣାଧୀନ କୌଣସି ସ୍ଥାନୀୟ ବା ଅନ୍ୟ କୌଣସି ପ୍ରାଧିକାରୀ ଅଧୀନରେ କୌଣସି ଲାଭପ୍ରଦ ପଦ ଧାରଣ କରିଥାନ୍ତି ତେବେ ସେ ଉପରାଷ୍ଟ୍ରପତି ରୂପେ ନିର୍ବାଚନ ପାଇଁ ପାତ୍ର ହେବେନାହିଁ ।

ସ୍ପଷ୍ଟୀକରଣ—ଏହି ଅନୁଚ୍ଛେଦର ପ୍ରୟୋଜନ ନିମିତ୍ତ, କୌଣସି ବ୍ୟକ୍ତି କେବଳ ସଂଘର ରାଷ୍ଟ୍ରପତି, ଉପରାଷ୍ଟ୍ରପତି ବା କୌଣସି ରାଜ୍ୟର ରାଜ୍ୟପାଳ ଅଥବା ସଂଘର ବା କୌଣସି ରାଜ୍ୟର ମନ୍ତ୍ରୀ ଥିବା କାରଣରୁ କୌଣସି ଲାଭପ୍ରଦ ପଦ ଧାରଣ କରିଅଛନ୍ତି ବୋଲି ବିବେଚିତ ହେବେନାହିଁ ।

ଉପରାଷ୍ଟ୍ରପତିଙ୍କ ପଦାବଧି

୬୭ । ଉପରାଷ୍ଟ୍ରପତି ନିଜର ପଦ ଗ୍ରହଣ କରିବା ତାରିଖଠାରୁ ପାଞ୍ଚ ବର୍ଷ ଅବଧି ପଦ ଧାରଣ କରିବେ :

ପରନ୍ତୁ—

(କ) ଉପରାଷ୍ଟ୍ରପତି ରାଷ୍ଟ୍ରପତିଙ୍କୁ ସଂବୋଧିତ ସ୍ୱହସ୍ତାଙ୍କିତ ଲେଖ ଦ୍ୱାରା ନିଜ ପଦ ତ୍ୟାଗ କରିପାରିବେ;

(ଖ) ରାଜ୍ୟ ସଭାର ତତ୍କାଳୀନ ସମସ୍ତ ସଦସ୍ୟଙ୍କ ମଧ୍ୟରୁ ବହୁ ମତରେ ପାରିତ ହୋଇଥିବା ତଥା ଲୋକ ସଭାଦ୍ୱାରା ସହମତ ହୋଇ ଥିବା ରାଜ୍ୟ ସଭାର ଏକ ସଂକଳ୍ପ ଦ୍ୱାରା ଉପରାଷ୍ଟ୍ରପତି ସ୍ୱପଦରୁ ଦୂରୀକୃତ ହୋଇପାରିବେ, କିନ୍ତୁ ସଂକଳ୍ପ ପ୍ରସ୍ତାବିତ କରିବାର ଆଶୟର ସୂଚନା ଅନ୍ୟୁନ ଚଉଦ ଦିନ ପୂର୍ବରୁ ଦିଆଯାଇ ନ ଥିଲେ ଏହି ଖଣ୍ଡର ପ୍ରୟୋଜନ ନିମିତ୍ତ କୌଣସି ସଂକଳ୍ପ ପ୍ରସ୍ତାବିତ ହେବନାହିଁ ;

(ଗ) ଉପରାଷ୍ଟ୍ରପତି ତାଙ୍କର ପଦାବଧି ସମାପ୍ତ ହେବା ସତ୍ତ୍ୱେ, ତାଙ୍କର ଉତ୍ତରାଧିକାରୀ ତାଙ୍କର ପଦ ଗ୍ରହଣ କରିବା ପର୍ଯ୍ୟନ୍ତ ପଦାସୀନ ରହିଥିବେ ।

ଉପରାଷ୍ଟ୍ରପତି ପଦର ରିକ୍ତତା ପୂରଣ କରିବା ନିମିତ୍ତ ନିର୍ବାଚନ ସମୟ ତଥା ଆକସ୍ମିକ ରିକ୍ତତା ପୂରଣ ନିମିତ୍ତ ନିର୍ବାଚିତ ବ୍ୟକ୍ତିଙ୍କ ପଦାବଧି ।

୬୮ । (୧) ଉପରାଷ୍ଟ୍ରପତିଙ୍କ ପଦାବଧିର ଅବସାନ ଜନିତ ରିକ୍ତତାର ପୂରଣ ନିମିତ୍ତ ନିର୍ବାଚନ ସେହି ଅବଧିର ଅବସାନ ପୂର୍ବରୁ ସଂପୂର୍ଣ୍ଣ କରାଯିବ ।

(୨) ମୃତ୍ୟୁ, ପଦତ୍ୟାଗ, ଦୂରୀକରଣ ବା ଅନ୍ୟ କାରଣ ଜନିତ ଉପରାଷ୍ଟ୍ରପତିଙ୍କ ପଦର ରିକ୍ତତାର ପୂରଣ ନିମିତ୍ତ ନିର୍ବାଚନ ରିକ୍ତତା ଘଟିବା ପରେ ଯଥା ଶୀଘ୍ର ସମ୍ଭବ ଅନୁଷ୍ଠିତ ହେବ, ଏବଂ ରିକ୍ତତା ପୂରଣ ନିମିତ୍ତ ନିର୍ବାଚିତ ବ୍ୟକ୍ତି ଅନୁଚ୍ଛେଦ ୬୭ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, ନିଜ ପଦ ଗ୍ରହଣ କରିବା ତାରିଖଠାରୁ ପୂର୍ଣ୍ଣ ପାଞ୍ଚବର୍ଷର ଅବଧି ନିମିତ୍ତ ପଦ ଧାରଣ କରିବା ପାଇଁ ହକ୍‌ଦାର ହେବେ ।

ଉପରାଷ୍ଟ୍ରପତିଙ୍କ ଦ୍ୱାରା ଶପଥ ବା ପ୍ରତିଜ୍ଞାନ ।

୬୯ । ପ୍ରତ୍ୟେକ ଉପରାଷ୍ଟ୍ରପତି ନିଜର ପଦ ଗ୍ରହଣ କରିବା ପୂର୍ବରୁ ରାଷ୍ଟ୍ରପତି ବା ତାଙ୍କ ଦ୍ୱାରା ସେଥିନିମିତ୍ତ ନିଯୁକ୍ତ କୌଣସି ବ୍ୟକ୍ତିଙ୍କ ସମକ୍ଷରେ ନିମ୍ନ ପ୍ରପତ୍ରରେ ଶପଥ ବା ପ୍ରତିଜ୍ଞାନ କରିବେ ଏବଂ, ତହିଁରେ ସ୍ୱାକ୍ଷର କରିବେ, ଅର୍ଥାତ—

"ମୁଁ..................................(ଅମୁକ) $\frac{\text{ଈଶ୍ୱରଙ୍କ ନାମରେ ଶପଥ}}{\text{ସତ୍ୟ ନିଷ୍ଠାସହ ପ୍ରତିଜ୍ଞାନ}}$ କରୁଅଛି ଯେ ମୁଁ ବିଧିଦ୍ୱାରା ସ୍ଥାପିତ ଭାରତର ସଂବିଧାନ ପ୍ରତି ଶ୍ରଦ୍ଧା ଓ ନିଷ୍ଠା ରଖିବି ତଥା ମୁଁ ଯେଉଁ ପଦ ଗ୍ରହଣ କରିବାକୁ ଯାଉଅଛି ତହିଁର କର୍ତ୍ତବ୍ୟ ଶ୍ରଦ୍ଧାପୂର୍ବକ ନିର୍ବହନ କରିବି ।"

ଅନ୍ୟାନ୍ୟ ଆକସ୍ମିକତାରେ ରାଷ୍ଟ୍ରପତିଙ୍କ କୃତ୍ୟ ନିର୍ବହନ ।

୭୦ । ଏହି ଅଧ୍ୟାୟରେ ଉପବନ୍ଧିତ କରାଯାଇ ନଥିବା କୌଣସି ଆକସ୍ମିକତାରେ ରାଷ୍ଟ୍ରପତିଙ୍କ କୃତ୍ୟମାନ ନିର୍ବହନ କରିବା ନିମିତ୍ତ ସଂସଦ ଯେପରି ଉଚିତ ମନେକରେ ସେପରି ଉପବନ୍ଧ କରିପାରିବ ।

ରାଷ୍ଟ୍ରପତି ଓ ଉପରାଷ୍ଟ୍ରପତିଙ୍କ ନିର୍ବାଚନ ସହିତ ସଂବର୍ଧିତ ବା ସଂପକ୍ତ ବିଷୟମାନ ।

୭୧ । (୧) ରାଷ୍ଟ୍ରପତି ବା ଉପରାଷ୍ଟ୍ରପତିଙ୍କ ନିର୍ବାଚନରୁ ଉଦ୍‌ଭୂତ ବା ତତ୍‌ସଂପର୍କୀୟ ସମସ୍ତ ସନ୍ଦେହ ବା ବିବାଦ ଉଚ୍ଚତମ ନ୍ୟାୟାଳୟ ଦ୍ୱାରା ଯାଞ୍ଚ କରାଯିବ ଓ ନିଷ୍ପତ୍ତି କରାଯିବ ଏବଂ ସେହି ନିଷ୍ପତ୍ତି ଚୂଡ଼ାନ୍ତ ହେବ ।

(୨) ଯଦି ଉଚ୍ଚତମ ନ୍ୟାୟାଳୟ ଦ୍ୱାରା ରାଷ୍ଟ୍ରପତି ବା ଉପରାଷ୍ଟ୍ରପତି ଭାବେ କୌଣସି ବ୍ୟକ୍ତିଙ୍କର ନିର୍ବାଚନ ଅସିଦ୍ଧ ଘୋଷିତ ହୁଏ, ତେବେ ଉଚ୍ଚତମ ନ୍ୟାୟାଳୟର ନିଷ୍ପତ୍ତି ତାରିଖରେ ବା ତତ୍‌ପୂର୍ବରୁ, ଯଥାସ୍ଥିତି, ରାଷ୍ଟ୍ରପତି ବା ଉପରାଷ୍ଟ୍ରପତିଙ୍କ ପଦର କ୍ଷମତା ପ୍ରୟୋଗ କରି ଓ କର୍ତ୍ତବ୍ୟ ପାଳନ କରି ସେ ଯେଉଁ କାର୍ଯ୍ୟ କରିଥିବେ ସେସବୁ ସେହି ଘୋଷଣା ଯୋଗେ ଅବିଧିମାନ୍ୟ ହେବନାହିଁ ।

(୩) ଏହି ସଂବିଧାନର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, ରାଷ୍ଟ୍ରପତି ବା ଉପରାଷ୍ଟ୍ରପତିଙ୍କ ନିର୍ବାଚନ ସହିତ ସଂବନ୍ଧିତ ଯେ କୌଣସି ବିଷୟ ସଂସଦ ବିଧି ଦ୍ୱାରା ବିନିୟମିତ କରିପାରିବ ।

(୪) ରାଷ୍ଟ୍ରପତି ବା ଉପରାଷ୍ଟ୍ରପତିଙ୍କୁ ନିର୍ବାଚିତ କରୁଥିବା ନିର୍ବାଚକଗଣରେ ସଦସ୍ୟମାନଙ୍କ ମଧ୍ୟରେ କୌଣସି କାରଣରୁ କୌଣସି ରିକ୍ତତା ଥିଲେ ସେହି କାରଣରୁ ରାଷ୍ଟ୍ରପତି ବା ଉପରାଷ୍ଟ୍ରପତି ଭାବେ କୌଣସି ବ୍ୟକ୍ତିଙ୍କ ନିର୍ବାଚନ ବିରୁଦ୍ଧରେ କୌଣସି ଆପତ୍ତି କରାଯିବନାହିଁ ।

ରାଷ୍ଟ୍ରପତିଙ୍କର କ୍ଷମା ପ୍ରଦାନ ଆଦି ଏବଂ କେତେକ ସ୍ଥଳରେ ଦଣ୍ଡାଦେଶର ନିଲମ୍ବନ ପରିହାର ବା ହ୍ରାସ କରିବା କ୍ଷମତା ।

୭୨ । (୧)

(କ) ଯେଉଁସବୁ ସ୍ଥଳରେ ଦଣ୍ଡ ବା ଦଣ୍ଡାଦେଶ ସେନା ନ୍ୟାୟାଳୟ ଦ୍ୱାରା ହୋଇଥାଏ,

(ଖ) ଯେଉଁସବୁ ସ୍ଥଳରେ ଦଣ୍ଡ ବା ଦଣ୍ଡାଦେଶ ଯେଉଁ ବିଷୟ ପ୍ରତି ସଂଘର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ଥାଏ ସେହି ବିଷୟ ସମ୍ବନ୍ଧୀୟ ବିଧି ବିରୁଦ୍ଧରେ ଅପରାଧ ନିମିତ୍ତ ହୋଇ-ହୋଇଥାଏ,

(ଗ) ଯେଉଁସବୁ ସ୍ଥଳରେ ଦଣ୍ଡାଦେଶ ମୃତ୍ୟୁ ଦଣ୍ଡାଦେଶ ହୋଇଥାଏ,

ସେପରି ସମସ୍ତ ସ୍ଥଳରେ ପ୍ରବିଲମ୍ବନ, ବିରାମ ବା ଦଣ୍ଡର ପରିହାର ପ୍ରଦାନ କରିବାର କ୍ଷମତା ବା ସେପରି କୌଣସି ଅପରାଧ ନିମିତ୍ତ ଦୋଷୀ ସାବ୍ୟସ୍ତ ହୋଇଥିବ କୌଣସି ବ୍ୟକ୍ତିର ଦଣ୍ଡାଦେଶର ନିଲମ୍ବନ ପରିହାର ବା ହ୍ରାସକରଣ କରିବାର କ୍ଷମତା ରାଷ୍ଟ୍ରପତିଙ୍କର ରହିବ ।

(୨) ଖଣ୍ଡ (୧)ର ଉପଖଣ୍ଡ (କ)ର କୌଣସି ବିଷୟ ସେନା ନ୍ୟାୟାଳୟ ଦ୍ୱାରା ପ୍ରଦତ୍ତ କୌଣସି ଦଣ୍ଡାଦେଶର ନିଲମ୍ବନ, ପରିହାର ବା ହ୍ରାସକରଣ ନିମିତ୍ତ ସଂଘର ସଶସ୍ତ୍ର ସେନାର କୌଣସି ଅଫିସରଙ୍କୁ ବିଧିଦ୍ୱାରା ପ୍ରଦତ୍ତ କ୍ଷମତା ଉପରେ ପ୍ରଭାବ ପକାଇବ ନାହିଁ ।

(୩) ଖଣ୍ଡ (୧)ର ଉପଖଣ୍ଡ (ଗ)ର କୌଣସି ବିଷୟ, ତତ୍‌ସମୟ ପ୍ରବୃତ୍ତ କୌଣସି ବିଧି ଅଧୀନରେ ରାଜ୍ୟର ରାଜ୍ୟପାଳଙ୍କ ଦ୍ୱାରା ପ୍ରୟୋଗ କରାଯାଇ ପାରିବା ମୃତ୍ୟୁଦଣ୍ଡାଦେଶର ନିଲମ୍ବନ ପରିହାର ବା ହ୍ରାସ-କରଣ କ୍ଷମତା ଉପରେ ପ୍ରଭାବ ପକାଇବ ନାହିଁ ।

ସଂଘର କାର୍ଯ୍ୟପାଳିକା କ୍ଷମତା ବିସ୍ତାର ।

୭୩ । (୧) ଏହି ସଂବିଧାନର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି,—

(କ) ଯେଉଁ ବିଷୟ ସଂପର୍କରେ ସଂସଦର ବିଧି ପ୍ରଣୟନ କରିବାର କ୍ଷମତା ଅଛି, ସେଥିପ୍ରତି, ଏବଂ

(ଖ) କୌଣସି ସନ୍ଧି ବା କରାର ବଳରେ ଭାରତ ସରକାରଙ୍କ ଦ୍ୱାରା ପ୍ରୟୋଗ କରାଯାଇ ପାରିବା ଅଧିକାର, ପ୍ରାଧିକାର ଓ ଅଧିକାରିତା ପ୍ରତି ,

ସଂଘର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ରହିବ ;

ପରନ୍ତୁ ଏହି ସଂବିଧାନରେ ଅଥବା ସଂସଦ ଦ୍ୱାରା ପ୍ରଣୀତ କୌଣସି ବିଧିରେ ସ୍ପଷ୍ଟରୂପେ ଯେପରି ଉପବନ୍ଧିତ ହୋଇଥିବ ତତ୍‌ବ୍ୟତିରେକେ, ଯେଉଁ ସବୁ ବିଷୟରେ ରାଜ୍ୟବିଧାନ ମଣ୍ଡଳର ମଧ୍ୟ ବିଧି ପ୍ରଣୟନ କରିବାର କ୍ଷମତା ଅଛି ସେପରି ବିଷୟ ପ୍ରତି କୌଣସି ରାଜ୍ୟରେ ଉପଖଣ୍ଡ (କ)ରେ ନିର୍ଦ୍ଦିଷ୍ଟ ହୋଇଥିବା କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ରହିବ ନାହିଁ ।

(୨) ଯେଉଁ ପର୍ଯ୍ୟନ୍ତ ସଂସଦ ଦ୍ୱାରା ଅନ୍ୟଥା ଉପବନ୍ଧିତ କରାନଯାଇଛି ସେପର୍ଯ୍ୟନ୍ତ, ଏହି ଅନୁଚ୍ଛେଦରେ ଯାହାକିଛି ଥିବା ସତ୍ତ୍ୱେ, ଯେଉଁ ସବୁ ବିଷୟରେ ସଂସଦର କୌଣସି ରାଜ୍ୟନିମିତ୍ତ ବିଧି ପ୍ରଣୟନ କରିବାର କ୍ଷମତା ଅଛି ସେହି ସବୁ ବିଷୟରେ ସେହି ରାଜ୍ୟ ବା ରାଜ୍ୟର କୌଣସି ଅଫିସର ବା ପ୍ରାଧିକାରୀ ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ କାର୍ଯ୍ୟ ପାଳିକା କ୍ଷମତା ବା କୃତ୍ୟର ପ୍ରୟୋଗ କରୁଥିଲେ ତହିଁର ପ୍ରୟୋଗ କରୁଥିବେ ।

## ମନ୍ତ୍ରୀ ପରିଷଦ

ରାଷ୍ଟ୍ରପତିଙ୍କୁ ସହାୟତା ଓ ମନ୍ତ୍ରଣା ଦେବା ନିମିତ୍ତ ମନ୍ତ୍ରୀ ପରିଷଦ ।

୭୪ । (୧) ରାଷ୍ଟ୍ରପତିଙ୍କୁ ତାଙ୍କର କୃତ୍ୟ ସଂପାଦନରେ ସହାୟତା ଓ ମନ୍ତ୍ରଣା ଦେବା ନିମିତ୍ତ ପ୍ରଧାନମନ୍ତ୍ରୀଙ୍କ ଅଧିନାୟକତ୍ୱରେ ଏକ ମନ୍ତ୍ରୀ ପରିଷଦ ରହିବ ଏବଂ ରାଷ୍ଟ୍ରପତି ଏପରି ମନ୍ତ୍ରଣା ଅନୁସାରେ କାର୍ଯ୍ୟ କରିବେ :

ପରନ୍ତୁ, ମନ୍ତ୍ରୀ ପରିଷଦ ସେହି ମନ୍ତ୍ରଣା ଉପରେ, ହୁଏତ ସାଧାରଣ ଭାବରେ ଅନ୍ୟଥା, ପୁନର୍ବାର ବିଗ୍ରର କରିବା ପାଇଁ ରାଷ୍ଟ୍ରପତି ଆବଶ୍ୟକ କରି ପାରିବେ, ଏବଂ ଏପରି ପୁନର୍ବିଗ୍ରର ପରେ ଯେଉଁ ମନ୍ତ୍ରଣା ଦିଆଯିବ ରାଷ୍ଟ୍ରପତି ତଦନୁଯାୟୀ କାର୍ଯ୍ୟ କରିବେ ।

(୨) ମନ୍ତ୍ରୀମାନେ ରାଷ୍ଟ୍ରପତିଙ୍କୁ କୌଣସି ମନ୍ତ୍ରଣା ଦେଇଥିଲେ କି ନାହିଁ ଏବଂ ଯଦି ଦେଇଥିଲେ ତେବେ କି ମନ୍ତ୍ରଣା ଦେଇଥିଲେ ଏହି ବିଷୟରେ କୌଣସି ନ୍ୟାୟାଳୟରେ ଯାଞ୍ଚ କରାଯିବ ନାହିଁ ।

ମନ୍ତ୍ରୀମାନଙ୍କ ସମ୍ପର୍କରେ ଅନ୍ୟାନ୍ୟ ଉପବନ୍ଧ ।

୭୫ । (୧) ପ୍ରଧାନମନ୍ତ୍ରୀ ରାଷ୍ଟ୍ରପତିଙ୍କ ଦ୍ୱାରା ନିଯୁକ୍ତ ହେବେ, ଏବଂ ଅନ୍ୟ ମନ୍ତ୍ରୀମାନେ ପ୍ରଧାନମନ୍ତ୍ରୀଙ୍କ ମନ୍ତ୍ରଣା ଅନୁସାରେ ରାଷ୍ଟ୍ରପତିଙ୍କ ଦ୍ୱାରା ନିଯୁକ୍ତ ହେବେ ।

(୨) ରାଷ୍ଟ୍ରପତିଙ୍କ ସନ୍ତୋଷାବଧି ମନ୍ତ୍ରୀମାନେ ପଦ ଧାରଣ କରିବେ ।

(୩) ମନ୍ତ୍ରୀ ପରିଷଦ ଲୋକ ସଭା ନିକଟରେ ସମୂହ ଭାବେ ଉତ୍ତର ଦାୟୀ ହେବେ ।

(୪) କୌଣସି ମନ୍ତ୍ରୀ ନିଜର ପଦ ଗ୍ରହଣ କରିବା ପୂର୍ବରୁ ରାଷ୍ଟ୍ରପତି ତାହାଙ୍କୁ ତୃତୀୟ ଅନୁସୂଚୀରେ ଏହି ପ୍ରୟୋଜନାର୍ଥ ପ୍ରଦତ୍ତ ପ୍ରପତ୍ର ଅନୁସାରେ ପଦ ତଥା ଗୋପନୀୟତାର ଶପଥ କରାଇବେ ।

(୫) ଯେଉଁ ମନ୍ତ୍ରୀ ନିରବଛିନ୍ନ ଛଅ ମାସର କୌଣସି କାଳାବଧି ପର୍ଯ୍ୟନ୍ତ ସଂସଦର କୌଣସି ସଦନର ସଦସ୍ୟ ନଥାନ୍ତି ସେ ସେହି କାଳାବଧିର ଅବସାନ ପରେ ମନ୍ତ୍ରୀ ରୂପେ ରହିବେ ନାହିଁ ।

(୬) ମନ୍ତ୍ରୀମାନଙ୍କର ବେତନ ଓ ଭତ୍ତା ସଂସଦ ଥରକୁ ଥର ବିଧିଦ୍ୱାରା ନିର୍ଦ୍ଧାରିତ କରିବା ମତେ ଏବଂ ଯେ ପର୍ଯ୍ୟନ୍ତ ସଂସଦ ସେପରି ନିର୍ଦ୍ଧାରିତ ନ କରିଛି ସେ ପର୍ଯ୍ୟନ୍ତ ଦ୍ୱିତୀୟ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହୋଇଥିବା ମତେ ହେବ ।

## ଭାରତର ଆଟର୍ଣ୍ଣୀ ଜେନେରାଲ

ଭାରତର ଆଟର୍ଣ୍ଣୀ ଜେନେରାଲ ।

୭୬ । (୧) ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶ ରୂପେ ନିଯୁକ୍ତ ହେବାର ଯୋଗ୍ୟତା ଥିବା ଜଣେ ବ୍ୟକ୍ତିଙ୍କୁ ରାଷ୍ଟ୍ରପତି ଭାରତର ଆଟର୍ଣ୍ଣୀ ଜେନେରାଲ ରୂପେ ନିଯୁକ୍ତ କରିବେ ।

(୨) ରାଷ୍ଟ୍ରପତିଙ୍କ ଦ୍ୱାରା ବିଭିନ୍ନ ସମୟରେ ଆଟର୍ଣ୍ଣୀ ଜେନେରାଲଙ୍କୁ ଯେପରି ନିର୍ଦ୍ଦେଶିତ ବା ସମନୁଦେଶିତ ହୁଏ ସେପରି ବିଧିକ ବିଷୟରେ ଭାରତ ସରକାରଂକୁ ମନ୍ତ୍ରଣା ଦେବା ଏବଂ ସେପରି ବିଧିରୂପକ କର୍ତ୍ତବ୍ୟମାନ ପାଳନ କରିବା ଏବଂ ଏହି ସଂବିଧାନ ବା ଅନ୍ୟ କୌଣସି ତତ୍‌ସମୟ ପ୍ରବୃତ୍ତ ବିଧି ଦ୍ୱାରା ବା ଅଧୀନରେ ତାହାଙ୍କୁ ପ୍ରଦତ୍ତ କୃତ୍ୟମାନ ନିର୍ବାହ କରିବା ଆଟର୍ଣ୍ଣୀ ଜେନେରାଲଙ୍କର କର୍ତ୍ତବ୍ୟ ହେବ ।

(୩) ଆଟର୍ଣ୍ଣୀ ଜେନେରାଲଙ୍କର ନିଜର କର୍ତ୍ତବ୍ୟପାଳନ ଦୃଷ୍ଟିରୁ ଭାରତ ରାଜ୍ୟକ୍ଷେତ୍ରର ସମସ୍ତ ନ୍ୟାୟାଳୟରେ ଶୁଣାଣିର ଅଧିକାର ରହିବ ।

(୪) ରାଷ୍ଟ୍ରପତିଙ୍କ ସନ୍ତୋଷାବଧି ଆଟର୍ଣ୍ଣୀ ଜେନେରାଲ ପଦ ଧାରଣ କରିବେ ଓ ରାଷ୍ଟ୍ରପତି ନିର୍ଦ୍ଧାରିତ କରିବା ମତେ ପାରିଶ୍ରମିକ ପାଇବେ ।

## ସରକାରୀ କାର୍ଯ୍ୟର ସଞ୍ଚାଳନ

ଭାରତ ସରକାରଙ୍କ କାର୍ଯ୍ୟର ସଞ୍ଚାଳନ ।

୭୭ । (୧) ଭାରତ ସରକାରଙ୍କ ସମସ୍ତ କାର୍ଯ୍ୟପାଳିକା କାର୍ଯ୍ୟ ରାଷ୍ଟ୍ରପତିଙ୍କ ନାମରେ ହୋଇଅଛି ବୋଲି ଅଭିବ୍ୟକ୍ତ ହେବ ।

(୨) ରାଷ୍ଟ୍ରପତିଙ୍କ ନାମାଙ୍କିତ ଓ ନିଷ୍ପାଦିତ ଆଦେଶ ଏବଂ ଅନ୍ୟ ଲିଖତମାନ ରାଷ୍ଟ୍ରପତିଙ୍କ ଦ୍ୱାରା ପ୍ରଣୟନ କରାଯିବା ନିୟମାବଳୀରେ ଯେପରି ବିନିର୍ଦ୍ଦିଷ୍ଟ ହୋଇଥିବ ସେପରି ରୀତିରେ ଅଧିପ୍ରମାଣିତ ହେବ ଏବଂ ଏହି ପ୍ରକାରେ ଅଧିପ୍ରାଣିତ ଆଦେଶ ବା ଲିଖତର ବୈଧତା ଉପରେ ଏହି କାରଣରୁ ଆପତ୍ତି କରାଯିବ ନାହିଁ ଯେ ତାହା ରାଷ୍ଟ୍ରପତିଙ୍କ ନାମାଙ୍କିତ ବା ନିଷ୍ପାଦିତ ଆଦେଶ ବା ଲିଖତ ନୁହେଁ ।

(୩) ଭାରତ ସରକାରଙ୍କ କାର୍ଯ୍ୟର ଅଧିକ ସୁବିଧା ଜନକ ନିର୍ବହନ ନିମିତ୍ତ ଏବଂ ମନ୍ତ୍ରୀମାନଙ୍କ ମଧ୍ୟରେ ଉକ୍ତ କାର୍ଯ୍ୟର ଆବଣ୍ଟନ ନିମିତ୍ତ ରାଷ୍ଟ୍ରପତି ନିୟମାବଳୀ ପ୍ରଣୟନ କରିବେ ।

(୪) * * * *

ରାଷ୍ଟ୍ରପତିଙ୍କୁ ସମ୍ବାଦ ଯୋଗାଇବା ପ୍ରଭୃତି ବିଷୟରେ ପ୍ରଧାନମନ୍ତ୍ରୀଙ୍କ କର୍ତ୍ତବ୍ୟ ।

୭୮ । ପ୍ରଧାନମନ୍ତ୍ରୀଙ୍କର ଏହା କର୍ତ୍ତବ୍ୟ ହେବ ଯେ, ସେ—

(କ) ସଂଘ କାର୍ଯ୍ୟର ପ୍ରଶାସନ ସମ୍ବନ୍ଧରେ ମନ୍ତ୍ରୀପରିଷଦର ସମସ୍ତ ନିଷ୍ପତ୍ତି ଏବଂ ବିଧାନ ନିମିତ୍ତ ପ୍ରସ୍ତାପନାମାନ ରାଷ୍ଟ୍ରପତିଙ୍କୁ ସଂସୂଚିତ କରିବେ ;

(ଖ) ସଂଘ କାର୍ଯ୍ୟର ପ୍ରଶାସନ ତଥା ବିଧାନ ନିମିତ୍ତ ପ୍ରସ୍ତାପନା ସମ୍ବନ୍ଧରେ ଯେଉଁ ସମ୍ବାଦ ରାଷ୍ଟ୍ରପତି ମଗାଇବେ ତାହା ତାଙ୍କୁ ଯୋଗାଇବେ ;

(ଗ) ଯେଉଁ ବିଷୟ କୌଣସି ମନ୍ତ୍ରୀଙ୍କ ଦ୍ୱାରା ନିଷ୍ପତ୍ତି କରାଯାଇଥାଏ ଅଥଚ ମନ୍ତ୍ରୀ ପରିଷଦ ଦ୍ୱାରା ବିଚାର କରାଯାଇ ନଥାଏ, ରାଷ୍ଟ୍ରପତି ଆବଶ୍ୟକ କଲେ ସେହି ବିଷୟ ମନ୍ତ୍ରୀ ପରିଷଦ ସମକ୍ଷରେ ବିଚାର ନିମିତ୍ତ ଉପସ୍ଥାପିତ କରିବେ ।

# ଅଧ୍ୟାୟ ୨-ସଂସଦ

## ସାଧାରଣ

ସଂସଦର ଗଠନ ।

୭୯ । ସଂଘ ନିମିତ୍ତ ଗୋଟିଏ ସଂସଦ ରହିବ ଯାହାକି ରାଷ୍ଟ୍ରପତି ଏବଂ ଯଥାକ୍ରମେ ରାଜ୍ୟସଭା ଓ ଲୋକସଭା ରୂପେ ବିଦିତ ହେବା ଦୁଇ ସଦନକୁ ନେଇ ଗଠିତ ହେବ ।

ରାଜ୍ୟ ସଭାର ରଚନା ।

୮୦ । (୧) ରାଜ୍ୟସଭା—

(କ) ଖଣ୍ଡ (୩) ର ଉପବନ୍ଧ ଅନୁସାରେ ରାଷ୍ଟ୍ରପତିଙ୍କ ଦ୍ୱାରା ମନୋନୀତ ହେବା ବାରଜଣ ସଦସ୍ୟଙ୍କୁ , ଏବଂ

(ଖ) ରାଜ୍ୟ ଓ ସଂଘରାଜ୍ୟକ୍ଷେତ୍ରମାନଙ୍କର ଦୁଇଶହ ଅଠତିରିଶରୁ ଅନଧିକ ପ୍ରତିନିଧିଙ୍କୁ ନେଇ ଗଠିତ ହେବ ।

(୨) ରାଜ୍ୟସଭାରେ ରାଜ୍ୟ ଓ ସଂଘ ରାଜ୍ୟକ୍ଷେତ୍ରମାନଙ୍କର ପ୍ରତିନିଧିମାନଙ୍କ ଦ୍ୱାରା ପୂର୍ଣ୍ଣ କରାଯିବା ସ୍ଥାନମାନଙ୍କର ଆବଣ୍ଟନ ଚତୁର୍ଥ ଅନୁସୂଚୀରେ ଅନ୍ତର୍ବିଷ୍ଟ ତତବିଷୟକ ଉପବଂଧମାନଙ୍କ ଅନୁସାରେ ହେବ ।

(୩) ରାଷ୍ଟ୍ରପତିଙ୍କ ଦ୍ୱାରା ଖଣ୍ଡ (୧) ର ଉପଖଣ୍ଡ (କ) ଅଧୀନରେ ମନୋନୀତ କରାଯିବା ସଦସ୍ୟମାନେ ଏପରି ବ୍ୟକ୍ତି ହୋଇଥିବେ ଯେଉଁମାନଙ୍କରକି ନିମ୍ନ ପ୍ରକାର ବିଷୟ ସଂପର୍କରେ ବିଶେଷ ଜ୍ଞାନ ବା ବ୍ୟବହାରିକ ଅଭିଜ୍ଞତା ଥିବ, [ଯଥା:—]

ସାହିତ୍ୟ, ବିଜ୍ଞାନ, କଳା ଓ ସମାଜ ସେବା ।

(୪) ରାଜ୍ୟ ସଭାରେ ପ୍ରତ୍ୟେକ ରାଜ୍ୟର ପ୍ରତିନିଧିମାନେ ସେହି ରାଜ୍ୟର ବିଧାନସଭାର ନିର୍ବାଚିତ ସଦସ୍ୟଙ୍କ ଦ୍ୱାରା ଆନୁପାତିକ ପ୍ରତିନିଧିତ୍ୱ ପଦ୍ଧତି ଅନୁସାରେ ଏକକ ସଂକ୍ରମଣୀୟ ଭୋଟ ଦ୍ୱାରା ନିର୍ବାଚିତ ହେବେ ।

(୫) ରାଜ୍ୟ ସଭାରେ ସଂଘ ରାଜ୍ୟକ୍ଷେତ୍ରର ପ୍ରତିନିଧିମାନେ ସଂସଦ ବିଧି ଦ୍ୱାରା ଯେଉଁ ରୀତି ବିହିତ କରେ ସେପରି ରୀତିରେ ବଛାଯିବେ ।

ଲୋକସଭାର ରଚନା ।

୮୧ । (୧) ଅନୁଚ୍ଛେଦ ୩୩୧ ର ବଶବର୍ତ୍ତୀ ରହି,

ଲୋକସଭା—

(କ) ରାଜ୍ୟମାନଙ୍କର ଆଞ୍ଚଳିକ ନିର୍ବାଚନ କ୍ଷେତ୍ରମାନଙ୍କରୁ ପ୍ରତ୍ୟକ୍ଷ ନିର୍ବାଚନ ଦ୍ୱାରା ବଛାଯିବା ପାଞ୍ଚଶହ ପଚିଶରୁ ଅନଧିକ ସଦସ୍ୟଙ୍କୁ, ଏବଂ

(ଖ) ସଂଘ ରାଜ୍ୟକ୍ଷେତ୍ରମାନଙ୍କର ପ୍ରତିନିଧିତ୍ୱ କରିବା ନିମିତ୍ତ, ସଂସଦ ବିଧିଦ୍ୱାରା ଯେଉଁ ରୀତି ଉପବଂଧିତ କରେ ସେହି ରୀତିରେ ବଛାଯିବା କୋଡ଼ିଏରୁ ଅନଧିକ ସଦସ୍ୟଙ୍କୁ,

ନେଇ ଗଠିତ ହେବ ।

(୨) ଖଣ୍ଡ (୧) ର ଉପଖଣ୍ଡ (କ) ର ପ୍ରୟୋଜନ ନିମିତ୍ତ,—

(କ) ପ୍ରତ୍ୟେକ ରାଜ୍ୟ ପାଇଁ ଲୋକସଭାରେ ସ୍ଥାନର ସଂଖ୍ୟାର ଆବଣ୍ଟନ ଏପରି ରୀତିରେ ହେବ ଯେପରିକି ସେହି ସଂଖ୍ୟା ସହ ରାଜ୍ୟର ଜନସଂଖ୍ୟାର ଅନୁପାତ ସବୁ ରାଜ୍ୟମାନଙ୍କ ନିମିତ୍ତ ଯଥାସାଧ୍ୟ ଏକା ହେବ ; ଏବଂ

(ଖ) ପ୍ରତ୍ୟେକ ରାଜ୍ୟକୁ ଏପରି ରୀତିରେ ଆଞ୍ଚଳିକ ନିର୍ବାଚନକ୍ଷେତ୍ରମାନଙ୍କରେ ବିଭକ୍ତ କରାଯିବ ଯେପରି କି ପ୍ରତ୍ୟେକ ନିର୍ବାଚନ କ୍ଷେତ୍ରର ଜନସଂଖ୍ୟା ସଂଗେ ସେହି ରାଜ୍ୟକୁ ଆବଣ୍ଟିତ ସ୍ଥାନସଂଖ୍ୟାର ଅନୁପାତ ଯଥାସାଧ୍ୟ ସାରା ରାଜ୍ୟରେ ଏକା ହେବ :

ପରନ୍ତୁ କୌଣସି ରାଜ୍ୟର ଜନସଂଖ୍ୟା ଷାଠିଏ ଲକ୍ଷରୁ ଅଧିକ ନ ହେବା ପର୍ଯ୍ୟନ୍ତ ଏହି ଖଣ୍ଡର ଉପଖଣ୍ଡ (କ) ର ଉପବଂଧମାନ ସେହି ରାଜ୍ୟ ପ୍ରତି ଲୋକସଭାରେ ସ୍ଥାନ ଆବଣ୍ଟନର ପ୍ରୟୋଜନ ନିମିତ୍ତ ପ୍ରଯୁଜ୍ୟ ହେବ ନାହିଁ ।

(୩) ଏହି ଅନୁଚ୍ଛେଦରେ "ଜନସଂଖ୍ୟା" ପଦର ଅର୍ଥ ଅନ୍ତିମ ପୂର୍ବଗାମୀ ଜନଗଣନାରେ ନିଶ୍ଚିତ ହୋଇଥିବା ଜନ ସଂଖ୍ୟା, ଯହିଁର କି ସୁସଙ୍ଗତ ସଂଖ୍ୟା ପ୍ରକାଶିତ ହୋଇଥାଏ :

ପରନ୍ତୁ ଏହି ଖଣ୍ଡରେ ଅନ୍ତିମ ପୂର୍ବଗାମୀ ଜନଗଣନା ପ୍ରତି ନିର୍ଦ୍ଦେଶ, ଯହିଁର କି ସୁସଙ୍ଗତ ସଂଖ୍ୟା ପ୍ରକାଶିତ ହୋଇଥାଏ ସନ ୨୦୦୦ ପରେ କରାଯିବା ପ୍ରଥମ ଜନଗଣନାର ସୁସଙ୍ଗତ ସଂଖ୍ୟା ପ୍ରକାଶିତ ହେବା ପର୍ଯ୍ୟନ୍ତ ସନ ୧୯୭୧ ର ଜନଗଣନା ପ୍ରତି ନିର୍ଦ୍ଦେଶ ବୋଲି ଅର୍ଥ କରାଯିବ ।

ପ୍ରତ୍ୟେକ ଜନଗଣନା ପରେ ପୁନଃସମାୟୋଜନ ।

୮୨ । ପ୍ରତ୍ୟେକ ଜନଗଣନା ସଂପୂର୍ଣ୍ଣ ହେବା ପରେ ଲୋକସଭାରେ ରାଜ୍ୟମାନଙ୍କ ସ୍ଥାନର ଆବଣ୍ଟନର ଏବଂ ପ୍ରତ୍ୟେକ ରାଜ୍ୟକୁ ଆଞ୍ଚଳିକ ନିର୍ବାଚନ କ୍ଷେତ୍ରମାନଙ୍କରେ ବିଭାଜନର ପୁନଃସମାୟୋଜନ ସଂସଦ ବିଧି ଦ୍ୱାରା ଯେପରି ନିର୍ଦ୍ଧାରିତ କରେ ସେପରି ପ୍ରାଧିକାର ଦ୍ୱାରା ଓ ସେପରି ରୀତିରେ କରାଯିବ

ପରନ୍ତୁ ଯେ ପର୍ଯ୍ୟନ୍ତ ତତ୍‌ସମୟ ବିଦ୍ୟମାନ ସଦନର ବିଘଟନ ନ ହୋଇଛି ସେ ପର୍ଯ୍ୟନ୍ତ ଲୋକସଭାର ପ୍ରତିନିଧିତ୍ୱ ଉପରେ ଏପରି ପୁନଃସମାଯୋଜନର ପ୍ରଭାବ ନାହିଁ :

ଅଧିକନ୍ତୁ ରାଷ୍ଟ୍ରପତି ଆଦେଶ ଦ୍ୱାରା ଯେଉଁ ତାରିଖ ବିନିର୍ଦ୍ଦିଷ୍ଟ କରିବେ ଏପରି ପୁନଃସମାଯୋଜନ ସେହି ତାରିଖରୁ ପ୍ରଭାବୀ ହେବ ଏବଂ ଏପରି ପୁନଃସମାଯୋଜନ ପ୍ରଭାବୀ ହେବା ପର୍ଯ୍ୟନ୍ତ ଏପରି ପୁନଃସମା-ଯୋଜନ ପୂର୍ବରୁ ଥିବା ଆଞ୍ଚଳିକ ନିର୍ବାଚନ କ୍ଷେତ୍ର ଭିତ୍ତିରେ ସଦନ ପାଇଁ ଯେ କୌଣସି ନିର୍ବାଚନ ହୋଇ ପାରିବ:

ପୁନଶ୍ଚ ସନ ୨୦୦୦ ପରେ କରାଯିବା ପ୍ରଥମ ଜନଗଣନାର ସୁସଙ୍ଗତ ସଂଖ୍ୟା ପ୍ରକାଶିତ ହେବା ପର୍ଯ୍ୟନ୍ତ ଏହି ଅନୁଚ୍ଛେଦ ଅଧୀନରେ ଲୋକସଭାରେ ରାଜ୍ୟମାନଙ୍କର ସ୍ଥାନର ଆବଣ୍ଟନର ଏବଂ ପ୍ରତ୍ୟେକ ରାଜ୍ୟକୁ ଆଞ୍ଚଳିକ ନର୍ବାଚନ କ୍ଷେତ୍ରମାନଙ୍କରେ ବିଭାଜନର ପୁନଃସମାଯୋଜନ, ଆବଶ୍ୟକ ହେବନାହିଁ ।

**ସଂସଦର ସଦନମାନଙ୍କର କାଳାବଧି ।**

୮୩ । (୧) ରାଜ୍ୟ ସଭାର ବିଘଟନ ହେବ ନାହିଁ, କିନ୍ତୁ ତହିଁର ସଦସ୍ୟମାନଙ୍କର ଏକ ତୃତୀୟାଂଶର ନିକଟତମ ସଂଭବ ସଂଖ୍ୟା ବିଧି ଦ୍ୱାରା ସଂସଦ କୃତ ତତବିଷୟକ ଉପବଂଧ ଅନୁସାରେ ପ୍ରତ୍ୟେକ ଦ୍ୱିତୀୟ ବର୍ଷର ଅବସାନରେ ଯଥା ଶୀଘ୍ର ନିବୃତ୍ତ ହେବେ ।

(୨) ଲୋକସଭା, ପୂର୍ବରୁ ବିଘଟିତ କରା ନ ଯାଇଥିଲେ ତହିଁର ପ୍ରଥମ ଅଧିବେଶନ ନିମିତ୍ତ ନିର୍ଦ୍ଧାରିତ ତାରିଖଠାରୁ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ଚାଲୁ ରହିବ ଏବଂ ତହିଁରୁ ଅଧିକ ହେବ ନାହିଁ ଏବଂ ଉକ୍ତ ପାଞ୍ଚ ବର୍ଷ କାଳାବଧିର ଅବସାନ ହେଲେ ଲୋକସଭାର ବିଘଟନ ହେବ

ପରନ୍ତୁ ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତିତ ଥିବା ସମୟରେ ସଂସଦ ବିଧିଦ୍ୱାରା ଉକ୍ତ କାଳାବଧିକୁ ଥରକରେ ଏକ ବର୍ଷରୁ ଅନଧିକ ଯେ କୌଣସି କାଳାବଧି ନିମିତ୍ତ ବିସ୍ତାର କରି ପାରେ ଏବଂ କୌଣସି ଅବସ୍ଥାରେ ମଧ୍ୟ ତାହା ଉଦଘୋଷଣା ପ୍ରବର୍ତ୍ତନର ଅନ୍ତ ହୋଇଯିବା ପରେ ଛଅମାସର କାଳାବଧିରୁ ଅଧିକ ବିସ୍ତୃତ ହେବ ନାହିଁ ।

**ସଂସଦର ସଦସ୍ୟ ହେବା ନିମିତ୍ତ ଯୋଗ୍ୟତା ।**

୮୪ । କୌଣସି ବ୍ୟକ୍ତି ସଂସଦର କୌଣସି ସ୍ଥାନ ପୂରଣ କରିବା ପାଇଁ ବଛାଯିବା ନିମିତ୍ତ ଯୋଗ୍ୟ ହେବ ନାହିଁ, ଯଦି ସେ–

(କ) ଭାରତର ନାଗରିକ ହୋଇ ନଥାନ୍ତି, ଏବଂ ନିର୍ବାଚନ ଆୟୋଗଦ୍ୱାରା ଏଥି ନିମିତ୍ତ ପ୍ରାଧିକୃତ କୌଣସି ବ୍ୟକ୍ତି ସମକ୍ଷରେ ତୃତୀୟ ଅନୁସୂଚୀରେ ସେହି ପ୍ରୟୋଜନାର୍ଥ ଦିଆଯାଇ ଥିବା ପ୍ରପତ୍ର ଅନୁସାରେ ଶପଥ ବା ପ୍ରତିଜ୍ଞାନ ନ କରନ୍ତି ଏବଂ ତହିଁ ଉପରେ ସ୍ୱାକ୍ଷର ନ କରନ୍ତି ;

(ଖ) ରାଜ୍ୟ ସଭାର ସ୍ଥାନ ନିମିତ୍ତ ଅନ୍ୟୂନ ତିରିଶ ବର୍ଷ ବୟସ୍କ ଓ ଲୋକ ସଭାର ସ୍ଥାନ ନିମିତ୍ତ ଅନ୍ୟୂନ ପଚିଶବର୍ଷ ବୟସ୍କ ହୋଇ ନଥାନ୍ତି ; ଏବଂ

(ଗ) ସଂସଦ ପ୍ରଣୀତ କୌଣସି ବିଧି ଦ୍ୱାରା ବା ଅଧୀନରେ ଏଥି ନିମିତ୍ତ ଯେପରି ବିହିତ କରାଯାଏ ସେପରି ଅନ୍ୟ ଯୋଗ୍ୟତା ସମ୍ପନ୍ନ ହୋଇ ନ ଥାନ୍ତି ।

**ସଂସଦର ସତ୍ର, ସତ୍ରାବସାନ ଓ ବିଘଟନ ।**

୮୫ । (୧) ରାଷ୍ଟ୍ରପତି ଥରକୁ ଥର ସଂସଦର ପ୍ରତ୍ୟେକ ସଦନକୁ ଯେପରି ଉଚିତ ମନେ କରନ୍ତି ସେପରି ସମୟ ଓ ସ୍ଥାନରେ ଅଧିବେଶନ ନିମିତ୍ତ ଆହ୍ୱାନ କରିବେ, କିନ୍ତୁ ତହିଁର ପତ୍ୟେକ ସତ୍ରର ଶେଷ ବୈଠକ ଏବଂ ଆଗାମୀ ସତ୍ରର ପ୍ରଥମ ବୈଠକ ନିମିତ୍ତ, ଧାର୍ଯ୍ୟ ତାରିଖ ମଧ୍ୟରେ ବ୍ୟବଧାନ ଛଅମାସ ହେବ ନାହିଁ ।

(୨) ରାଷ୍ଟ୍ରପତି ଥରକୁ ଥର–

(କ) ସଦନମାନଙ୍କର ବା କୌଣସି ସଦନର ସତ୍ରାବସାନ କରିପାରିବେ ;

(ଖ) ଲୋକସଭାର ବିଘଟନ କରି ପାରିବେ ।

*ସଦନମାନଙ୍କୁ ଅଭିଭାଷଣ ଦେବା ଓ ବାର୍ତ୍ତା ପ୍ରେରଣ କରିବାରେ ରାଷ୍ଟ୍ରପତିଙ୍କ ଅଧିକାର ।*

୮୬ । (୧) ରାଷ୍ଟ୍ରପତି ସଂସଦର କୌଣସି ଏକ ସଦନକୁ ବା ଏକତ୍ର ସମବେତ ଉଭୟ ସଦନକୁ ଅଭିଭାଷଣ ଦେଇ ପାରିବେ ଏବଂ ଏହି ପ୍ରୟୋଜନ ନିମିତ୍ତ ସଦସ୍ୟମାନଙ୍କ ଉପସ୍ଥିତି ଆବଶ୍ୟକ କରିପାରିବେ ।

(୨) ରାଷ୍ଟ୍ରପତି ସଂସଦରେ ସେହି ସମୟରେ ଲମ୍ବିତ କୌଣସି ବିଧେୟକ ବିଷୟରେ ବା ଅନ୍ୟ ବିଷୟରେ ସଂସଦର କୌଣସି ସଦନକୁ ବାର୍ତ୍ତା ପ୍ରେରଣ କରିପାରିବେ, ଏବଂ ଯେଉଁ ସଦନକୁ ଏହି ପ୍ରକାର କୌଣସି ବାର୍ତ୍ତା ପ୍ରେରିତ ହୁଏ ସେହି ସଦନ ଯେଉଁ ବିଷୟ ବିଚାରକୁ ନିଆଯିବା ନିମିତ୍ତ ସେହି ବାର୍ତ୍ତା ଦ୍ୱାରା ଆବଶ୍ୟକ କରାଯାଇଥାଏ ସେହି ବିଷୟକୁ ସୁବିଧାମତେ ଶୀଘ୍ର ବିଚାର କରିବ ।

*ରାଷ୍ଟ୍ରପତିଙ୍କ ବିଶେଷ ଅଭିଭାଷଣ ।*

୮୭ । (୧) ଲୋକସଭା ନିମିତ୍ତ ପ୍ରତ୍ୟେକ ସାଧାରଣ ନିର୍ବାଚନ ପରେ ପ୍ରଥମ ସତ୍ରର ଆରମ୍ଭରେ ଏବଂ ପ୍ରତ୍ୟେକ ବର୍ଷର ପ୍ରଥମ ସତ୍ରର ଆରମ୍ଭରେ ରାଷ୍ଟ୍ରପତି ସଂସଦର ଏକତ୍ର ସମବେତ ଉଭୟ ସଦନକୁ ଅଭିଭାଷଣ ଦେବେ ଏବଂ ସଂସଦକୁ ଆହ୍ୱାନ କରାଯିବାର କାରଣ ଜଣାଇବେ ।

(୨) ଏପରି ଅଭିଭାଷଣରେ ନିର୍ଦ୍ଦିଷ୍ଟ ହୋଇଥିବା ବିଷୟମାନଙ୍କର ଆଲୋଚନା ପାଇଁ ସମୟ ଆବଣ୍ଟନ କରିବା ନିମିତ୍ତ, ପ୍ରତ୍ୟେକ ସଦନର ପ୍ରକ୍ରିୟାକୁ ବିନିୟମିତ କରୁଥିବା ନିୟମମାନଙ୍କରେ ଉପବନ୍ଧ କରାଯିବ ।

*ସଦନମାନଙ୍କ ସମ୍ପର୍କରେ ମନ୍ତ୍ରୀ ଓ ଆଟର୍ଣ୍ଣୀ-ଜେନେରାଲଙ୍କର ଅଧିକାର ।*

୮୮ । ପ୍ରତ୍ୟେକ ମନ୍ତ୍ରୀଙ୍କର ଏବଂ ଭାରତର ଆଟର୍ଣ୍ଣୀଜେନେରାଲଙ୍କର ପ୍ରତ୍ୟେକ ସଦନରେ, ସଦନମାନଙ୍କର କୌଣସି ସଂଯୁକ୍ତ ବୈଠକରେ ଏବଂ ସଂସଦର କୌଣସି ସମିତିର ସଦସ୍ୟରୂପେ ସେ ନାମିତ ହୋଇଥିଲେ ସେହି ସମିତିରେ, କହିବାର ଏବଂ ଅନ୍ୟଥା ତହିଁର କାର୍ଯ୍ୟବାହୀରେ ଭାଗ ନେବାର ଅଧିକାର ରହିବ, କିନ୍ତୁ ଏହି ଅନୁଚ୍ଛେଦ ବଳରେ ଭୋଟଦେବା ଲାଗି ସେ ହକ୍‌ଦାର ହେବେ ନାହିଁ ।

## ସଂସଦର ଅଫିସର

*ରାଜ୍ୟସଭାର ସଭାପତି ଓ ଉପସଭାପତି ।*

୮୯ । (୧) ଭାରତର ଉପରାଷ୍ଟ୍ରପତି ପଦ ବଳରେ ରାଜ୍ୟସଭାର ସଭାପତି ହେବେ ।

(୨) ରାଜ୍ୟସଭା ଯଥାଶୀଘ୍ର ସଭାର କୌଣସି ସଦସ୍ୟଙ୍କୁ ତହିଁର ଉପସଭାପତି ହେବା ପାଇଁ ବାଛିବ, ଏବଂ ଯେତେଥର ଉପସଭାପତି ପଦ ରିକ୍ତ ହେଉଥିବ ସେତେଥର ସଭା ଅନ୍ୟ ଏକ ସଦସ୍ୟଙ୍କୁ ତହିଁର ଉପସଭାପତି ରୂପେ ବାଛୁଥିବ ।

*ଉପସଭାପତି ପଦର ରିକ୍ତତା, ପଦତ୍ୟାଗ ଓ ପଦରୁ ଦୂରୀକରଣ ।*

୯୦ । ରାଜ୍ୟସଭାର ଉପସଭାପତି ରୂପେ ପଦ ଧାରଣ କରିଥିବା ସଦସ୍ୟ—

(କ) ସଭାର ସଦସ୍ୟ ରହିବାରୁ ବିରତ ହେଲେ ନିଜର ପଦ ରିକ୍ତ କରିବେ ;

(ଖ) ଯେ କୌଣସି ସମୟରେ ସଭାପତିଙ୍କୁ ସମ୍ବୋଧିତ ନିଜର ହସ୍ତାକ୍ଷରିତ ଲେଖଦ୍ୱାରା ନିଜର ପଦତ୍ୟାଗ କରିପାରିବେ, ଏବଂ

(ଗ) ସଭାର ତତ୍‌କାଳୀନ ସମସ୍ତ ସଦସ୍ୟଙ୍କର ବହୁମତରେ ପାରିତ ସଭାର ସଙ୍କଳ୍ପ ଦ୍ୱାରା ତାଙ୍କୁ ପଦରୁ ଦୂରୀକୃତ ହୋଇ ପାରିବେ :

ପରନ୍ତୁ ଏପରି ସଙ୍କଳ୍ପ କରିବାର ଆଶୟର ଅନ୍ୟୂନ ଚଉଦ ଦିନର ସୂଚନା ଦିଆଯାଇ ନ ଥିଲେ ଖଣ୍ଡ (ଗ) ର ପ୍ରୟୋଜନ ନିମିତ୍ତ କୌଣସି ସଙ୍କଳ୍ପ ପ୍ରସ୍ତାବିତ କରାଯିବ ନାହିଁ ।

*ଉପସଭାପତି ବା ଅନ୍ୟ କୌଣସି ବ୍ୟକ୍ତି ସଭାପତି ପଦର କର୍ତ୍ତବ୍ୟ ପାଳନ କରିବା ବା ସଭାପତି ରୂପେ କାର୍ଯ୍ୟ କରିବାର କ୍ଷମତା ।*

୯୧ । (୧) ଯେଉଁ ସମୟରେ ସଭାପତି ପଦ ରିକ୍ତ ଥାଏ, ଅଥବା ଯେଉଁ କାଳାବଧି ମଧ୍ୟରେ ଉପରାଷ୍ଟ୍ରପତି ରାଷ୍ଟ୍ରପତିରୂପେ କାର୍ଯ୍ୟ କରୁଥାନ୍ତି ବା ତାଙ୍କର କୃତ୍ୟ ନିର୍ବହନ କରୁଥାନ୍ତି ସେତେବେଳେ ସେହି ପଦର କର୍ତ୍ତବ୍ୟ ଉପସଭାପତିଙ୍କ ଦ୍ୱାରା ପାଳିତ ହେବ ଅଥବା ଯଦି ଉପସଭାପତି ପଦ ମଧ୍ୟ ରିକ୍ତ ଥାଏ ତେବେ ରାଷ୍ଟ୍ରପତି ସେହି ପ୍ରୟୋଜନ ନିମିତ୍ତ ରାଜ୍ୟସଭାର ଯେଉଁ ସଦସ୍ୟଙ୍କୁ ନିଯୁକ୍ତ କରିବେ ତାଙ୍କ ଦ୍ୱାରା ପାଳିତ ହେବ ।

(୨) ରାଜ୍ୟ ସଭାର କୌଣସି ବୈଠକରେ ସଭାପତିଙ୍କ ଅନୁପସ୍ଥିତିରେ ଉପସଭାପତି ବା ଯଦି ସେ ମଧ୍ୟ ଅନୁପସ୍ଥିତ ଥାନ୍ତି ତେବେ ସଭାର ପ୍ରକ୍ରିୟାର ନିୟମ ଦ୍ୱାରା ଯେପରି ନିର୍ଦ୍ଧାରିତ ହୋଇଥାଏ ସେପରି ବ୍ୟକ୍ତି, ଅଥବା ଯଦି ଏପରି କୌଣସି ବ୍ୟକ୍ତି ଉପସ୍ଥିତ ନଥାନ୍ତି ତେବେ ସଭା ଯେପରି ନିର୍ଦ୍ଧାରିତ କରେ ସେପରି ଅନ୍ୟ ବ୍ୟକ୍ତି ସଭାପତି ରୂପେ କାର୍ଯ୍ୟ କରିବେ ।

**ସଭାପତି ବା ଉପସଭାପତିଙ୍କୁ ପଦରୁ ଦୂରୀକୃତ କରିବାର ସଂକଳ୍ପ ବିଚାରାଧୀନ ଥିବା ବେଳେ ସେ ପୀଠାସୀନ ନ ହେବା ।**

୯୨ । (୧) ରାଜ୍ୟସଭାର କୌଣସି ବୈଠକରେ ଉପରାଷ୍ଟ୍ରପତିଙ୍କୁ ତାଙ୍କ ପଦରୁ ଦୂରୀକୃତ କରିବାର ସଂକଳ୍ପ ବିଚାରାଧୀନ ଥିବା ବେଳେ ସଭାପତି, ବା ଉପସଭାପତିଙ୍କୁ ତାଙ୍କ ପଦରୁ ଦୂରୀକୃତ କରିବାର କୌଣସି ସଂକଳ୍ପ ବିଚାରାଧୀନ ଥିବାବେଳେ ଉପସଭାପତି ଉପସ୍ଥିତ ଥିଲେ ମଧ୍ୟ ପୀଠାସୀନ ହେବେନାହିଁ, ଏବଂ ଅନୁଚ୍ଛେଦ ୯୧ର ଖଣ୍ଡ (୨)ର ଉପବନ୍ଧମାନ, ଯଥାସ୍ଥିତି ସଭାପତି ବା ଉପସଭାପତି ଅନୁପସ୍ଥିତ ଥିବା ବୈଠକ ସମ୍ବନ୍ଧରେ ଯେପରି ଲାଗୁହୁଏ, ଏପରି ପ୍ରତ୍ୟେକ ବୈଠକ ସମ୍ବନ୍ଧରେ ସେହିପରି ଲାଗୁହେବ ।

(୨) ଉପରାଷ୍ଟ୍ରପତିଙ୍କୁ ତାଙ୍କ ପଦରୁ ଦୂରୀକୃତ କରିବାର କୌଣସି ସଂକଳ୍ପ ରାଜ୍ୟସଭାରେ ବିଚାରାଧୀନ ଥିବାବେଳେ ସଭାପତିଙ୍କର ସଭାରେ କହିବା ପାଇଁ ଏବଂ ଅନ୍ୟଥା ତହିଁର କାର୍ଯ୍ୟବାହୀରେ ଭାଗ ନେବାପାଇଁ ଅଧିକାର ରହିବ, କିନ୍ତୁ ଅନୁଚ୍ଛେଦ ୧୦୦ରେ ଯାହାକିଛି ଥିବା ସତ୍ତ୍ୱେ ଏପରି ସଂକଳ୍ପ ଉପରେ ବା ଏପରି କାର୍ଯ୍ୟବାହୀ ମଧ୍ୟରେ ଅନ୍ୟ କୌଣସି ବିଷୟ ଉପରେ ଭୋଟ ଦେବା ପାଇଁ ସେ ଆଦୌ ହକ୍‌ଦାର ହେବେନାହିଁ ।

**ଲୋକସଭାର ଅଧ୍ୟକ୍ଷ ଏବଂ ଉପାଧ୍ୟକ୍ଷ ।**

୯୩ । ଲୋକସଭା, ଯଥାଶୀଘ୍ର, ସଦନର ଦୁଇଜଣ ସଦସ୍ୟଙ୍କୁ ଯଥାକ୍ରମେ ତହିଁର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ହେବାପାଇଁ ବାଛିବ, ଏବଂ ଅଧ୍ୟକ୍ଷ ବା ଉପାଧ୍ୟକ୍ଷ ପଦ ଯେତେଥର ରିକ୍ତ ହେଉଥିବ ସେତେଥର ସଦନ ଯଥାସ୍ଥିତି, ଅଧ୍ୟକ୍ଷ ବା ଉପାଧ୍ୟକ୍ଷ ହେବା ନିମିତ୍ତ ଅନ୍ୟ ଜଣେ ସଦସ୍ୟଙ୍କୁ ବାଛିଥିବ

**ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କର ପଦର ରିକ୍ତତା, ପଦତ୍ୟାଗ ଓ ପଦରୁ ଦୂରୀକରଣ ।**

୯୪ । ଲୋକସଭାର ଅଧ୍ୟକ୍ଷ ବା ଉପାଧ୍ୟକ୍ଷ ରୂପେ ପଦଧାରଣ କରିଥିବା ସଦସ୍ୟ -

(କ) ଲୋକସଭାର ସଦସ୍ୟ ରହିବାକୁ ବିରତ ହେଲେ ତାଙ୍କ ସ୍ଥାନ ରିକ୍ତ କରିବେ

(ଖ) ଯେ କୌଣସି ସମୟରେ, ସେପରି ସଦସ୍ୟ ଅଧ୍ୟକ୍ଷ ହୋଇଥିଲେ ଉପାଧ୍ୟକ୍ଷଙ୍କୁ ଏବଂ ସେପରି ସଦସ୍ୟ ଉପାଧ୍ୟକ୍ଷ ହୋଇଥିଲେ ଅଧ୍ୟକ୍ଷଙ୍କୁ ସମ୍ବୋଧିତ ନିଜର ହସ୍ତାକ୍ଷରିତ ଲେଖଦ୍ୱାରା ତାଙ୍କ ପଦତ୍ୟାଗ କରିପାରିବେ ; ଏବଂ

(ଗ) ଲୋକସଭାର ତତ୍‌କାଳୀନ ସମସ୍ତ ସଦସ୍ୟଙ୍କ ବହୁମତରେ ପାରିତ ସଭାର ସଂକଳ୍ପ ଦ୍ୱାରା ତାଙ୍କ ପଦରୁ ଦୂରୀକୃତ ହୋଇପାରିବେ :

ପରନ୍ତୁ ଏପରି ସଂକଳ୍ପ ପ୍ରସ୍ତାବିତ କରିବାର ଅଭିପ୍ରାୟ ବିଷୟରେ ଅନ୍ୟୂନ ଚଉଦ ଦିନର ସୂଚନା ଦିଆଯାଇ ନ ଥିଲେ ଖଣ୍ଡ (ଗ) ର ପ୍ରୟୋଜନ ନିମିତ୍ତ କୌଣସି ସଂକଳ୍ପ ପ୍ରସ୍ତାବିତ କରାଯିବ ନାହିଁ ;

ଅଧିକନ୍ତୁ ଯଦି କେବେ ଲୋକସଭାର ବିଘଟନ କରାଯାଏ ତେବେ ବିଘଟନର ପରବର୍ତ୍ତୀ ଲୋକସଭାର ପ୍ରଥମ ଅଧିବେଶନର ଅବ୍ୟବହିତ ପୂର୍ବ ପର୍ଯ୍ୟନ୍ତ ଅଧ୍ୟକ୍ଷ ନିଜର ପଦ ରିକ୍ତ କରିବେ ନାହିଁ ।

**ଅଧ୍ୟକ୍ଷ ପଦର କର୍ତ୍ତବ୍ୟ ପାଳନ କରିବା ବା ଅଧ୍ୟକ୍ଷ ରୂପେ କାର୍ଯ୍ୟ କରିବା ପାଇଁ ଉପାଧ୍ୟକ୍ଷ ବା ଅନ୍ୟ ବ୍ୟକ୍ତିଙ୍କର କ୍ଷମତା ।**

୯୫ । (୧) ଅଧ୍ୟକ୍ଷ ପଦ ରିକ୍ତ ଥିବାବେଳେ ଉପାଧ୍ୟକ୍ଷଙ୍କ ଦ୍ୱାରା ବା ଯଦି ଉପାଧ୍ୟକ୍ଷ ପଦ ମଧ୍ୟ ରିକ୍ତ ଥାଏ ତେବେ ସେହି ପ୍ରୟୋଜନ ନିମିତ୍ତ ରାଷ୍ଟ୍ରପତି ଲୋକସଭାର ଯେଉଁ ସଦସ୍ୟଙ୍କୁ ନିଯୁକ୍ତ କରିବେ ତାଙ୍କ ଦ୍ୱାରା ସେହି ପଦର କର୍ତ୍ତବ୍ୟ ପାଳନ କରାଯିବ ।

(୨) ଲୋକସଭାର କୌଣସି ବୈଠକରେ ଅଧ୍ୟକ୍ଷଙ୍କ ଅନୁପସ୍ଥିତିରେ ଉପାଧ୍ୟକ୍ଷ ବା ଯଦି ସେ ମଧ୍ୟ ଅନୁପସ୍ଥିତ ଥାନ୍ତି ତେବେ ସଦନର ପ୍ରକ୍ରିୟାର ନିୟମ ଦ୍ୱାରା ଯେପରି ନିର୍ଦ୍ଧାରିତ ହୋଇଥାଏ ସେପରି ବ୍ୟକ୍ତି, ଅଥବା ଯଦି ସେପରି କୌଣସି ବ୍ୟକ୍ତି ଉପସ୍ଥିତ ନ ଥାନ୍ତି ତେବେ ସଦନ ଯେପରି ନିର୍ଦ୍ଧାରିତ କରେ ସେପରି ଅନ୍ୟ ବ୍ୟକ୍ତି ଅଧ୍ୟକ୍ଷ ରୂପେ କାର୍ଯ୍ୟ କରିବେ ।

**ଅଧ୍ୟକ୍ଷ ବା ଉପାଧ୍ୟକ୍ଷଙ୍କୁ ପଦରୁ ଦୂରୀକୃତ କରିବାର ସଂକଳ୍ପ ବିଚାରାଧୀନ ଥିବା ବେଳେ ସେ ପୀଠାସୀନ ନ ହେବା ।**

୯୬ । (୧) ଲୋକସଭାର କୌଣସି ବୈଠକରେ ଅଧ୍ୟକ୍ଷଙ୍କୁ ତାଙ୍କ ପଦରୁ ଦୂରୀକୃତ କରିବାର କୌଣସି ସଂକଳ୍ପ ବିଚାରାଧୀନ ଥିବାବେଳେ ଅଧ୍ୟକ୍ଷ, ବା ଉପାଧ୍ୟକ୍ଷଙ୍କୁ ତାଙ୍କ ପଦରୁ ଦୂରୀକୃତ କରିବାର କୌଣସି ସଂକଳ୍ପ ବିଚାରାଧୀନ ଥିବାବେଳେ ଉପାଧ୍ୟକ୍ଷ ଉପସ୍ଥିତ ଥିଲେ ମଧ୍ୟ ପୀଠାସୀନ ହେବେ ନାହିଁ, ଏବଂ ଅନୁଚ୍ଛେଦ ୯୫ର ଖଣ୍ଡ (୨)ର ଉପବନ୍ଧମାନ, ଯେଉଁ ବୈଠକରେ ଅଧ୍ୟକ୍ଷ ବା, ଯଥାସ୍ଥିତି ଉପାଧ୍ୟକ୍ଷ ଅନୁପସ୍ଥିତ ଥାନ୍ତି ସେଥିପ୍ରତି ଯେପରି ଲାଗୁ ହୁଏ ଏପରି ପ୍ରତ୍ୟେକ ବୈଠକ ସମ୍ବନ୍ଧରେ ସେହିପରି ଲାଗୁହେବ ।

(୨) ଅଧ୍ୟକ୍ଷଙ୍କୁ ତାଙ୍କ ପଦରୁ ଦୂରୀକୃତ କରିବାର କୌଣସି ସଂକଳ୍ପ ଲୋକସଭାରେ ବିଚାରାଧୀନ ଥିବାବେଳେ ଅଧ୍ୟକ୍ଷଙ୍କର ଲୋକସଭାରେ କହିବାର ଏବଂ ଅନ୍ୟଥା ତହିଁର କାର୍ଯ୍ୟବାହୀରେ ଭାଗ

ନେବାପାଇଁ ଅଧିକାର ରହିବ, ଏବଂ ଅନୁଚ୍ଛେଦ ୧୦୦ ରେ ଯାହାକିଛି ଥିବା ସତ୍ତ୍ୱେ, ସେ ଏପରି ସଂକଳ୍ପ ଉପରେ ବା ଏପରି କାର୍ଯ୍ୟବାହୀ ମଧ୍ୟରେ ଅନ୍ୟ କୌଣସି ବିଷୟ ଉପରେ କେବଳ ପ୍ରଥମବାର ଭୋଟ ଦେବାପାଇଁ ହକ୍‌ଦାର ହେବେ, କିନ୍ତୁ ଭୋଟ ସମାନ ହେଲେ ହକ୍‌ଦାର ହେବେ ନାହିଁ ।

ସଭାପତି ଓ ଉପସଭାପତି ଏବଂ ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କର ବେତନ ଓ ଭତ୍ତା ।

୯୭ । ରାଜ୍ୟସଭାର ସଭାପତି ଓ ଉପସଭାପତିଙ୍କୁ ଏବଂ ଲୋକସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କୁ ଯଥାକ୍ରମେ ସଂସଦ ବିଧିଦ୍ୱାରା ଯେପରି ସ୍ଥିର କରେ ସେପରି ବେତନ ଓ ଭତ୍ତା ଦିଆଯିବ ଏବଂ ଯେଉଁ ପର୍ଯ୍ୟନ୍ତ ସେଥି ନିମିତ୍ତ ଏପରି ଉପବନ୍ଧ କରା ଯାଇ ନ ଥାଏ ସେ ପର୍ଯ୍ୟନ୍ତ ଦ୍ୱିତୀୟ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହୋଇଥିବା ମତେ ବେତନ ଓ ଭତ୍ତା ଦିଆଯିବ ।

ସଂସଦର ସଚିବାଳୟ ।

୯୮ । (୧) ସଂସଦର ପ୍ରତ୍ୟେକ ସଦନର ପୃଥକ୍ ସଚିବୀୟ କର୍ମଚାରୀ ବୃନ୍ଦ ରହିବେ:

ପରନ୍ତୁ ସଂସଦର ଉଭୟ ସଦନ ନିମିତ୍ତ ସାଧାରଣ ପଦମାନ ସୃଷ୍ଟି କରିବାରେ ଏହି ଖଣ୍ଡର କୌଣସି ବିଷୟ ନିବାରିତ କରୁଅଛି ବୋଲି ଅର୍ଥ କରାଯିବ ନାହିଁ ।

(୨) ସଂସଦ ବିଧିଦ୍ୱାରା ସଂସଦର ପ୍ରତ୍ୟେକ ସଦନର ସଚିବୀୟ କର୍ମଚାରୀବୃନ୍ଦଙ୍କର ଭର୍ତ୍ତି ତଥା ନିଯୁକ୍ତ ବ୍ୟକ୍ତିଙ୍କର ସେବାର ସର୍ତ୍ତମାନ ବିନିୟମିତି କରି ପାରିବ ।

(୩) ଯେଉଁ ପର୍ଯ୍ୟନ୍ତ ସଂସଦ ଦ୍ୱାରା ଖଣ୍ଡ (୨) ଅଧୀନରେ ଉପବନ୍ଧ କରା ନ ଯାଇଛି ସେ ପର୍ଯ୍ୟନ୍ତ ରାଷ୍ଟ୍ରପତି, ଯଥାସ୍ଥିତି, ଲୋକସଭାର ଅଧ୍ୟକ୍ଷ ବା ରାଜ୍ୟସଭାର ସଭାପତିଙ୍କ ସଙ୍ଗେ ପରାମର୍ଶ କରିବାପରେ ଲୋକସଭା ବା ରାଜ୍ୟସଭା ପାଇଁ ସଚିବୀୟ କର୍ମଚାରୀବୃନ୍ଦଙ୍କର ଭର୍ତ୍ତି ତଥା ନିଯୁକ୍ତ ବ୍ୟକ୍ତିଙ୍କ ସେବାର ସର୍ତ୍ତମାନ ବିନିୟମିତ କରୁଥିବା ନିୟମ ପ୍ରଣୟନ କରିପାରିବେ ଏବଂ ଏପରି ପ୍ରଣୀତ କୌଣସି ନିୟମ ଉକ୍ତ ଖଣ୍ଡ ଅଧୀନରେ ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ପ୍ରଭାବୀ ହେବ ।

## କାର୍ଯ୍ୟ ସଂଚାଳନ

ସଦସ୍ୟଙ୍କ ଦ୍ୱାରା ଶପଥ ବା ପ୍ରତିଜ୍ଞାନ ।

୯୯ । ସଂସଦର ପ୍ରତ୍ୟେକ ସଦନର ପ୍ରତ୍ୟେକ ସଦସ୍ୟ ନିଜର ସ୍ଥାନ ଗ୍ରହଣ କରିବା ପୂର୍ବରୁ ରାଷ୍ଟ୍ରପତି ବା ରାଷ୍ଟ୍ରପତିଙ୍କ ଦ୍ୱାରା ସେଥିନିମିତ୍ତ ନିଯୁକ୍ତ କୌଣସି ବ୍ୟକ୍ତିଙ୍କ ସମକ୍ଷରେ ତୃତୀୟ ଅନୁସୂଚୀରେ ସେହି ପ୍ରୟୋଜନାର୍ଥେ ଦିଆଯାଇଥିବା ପ୍ରପତ୍ର ଅନୁସାରେ ଏକ ଶପଥ କରିବେ ବା ପ୍ରତିଜ୍ଞାନ କରିବେ ଏବଂ ତହିଁରେ ସ୍ୱାକ୍ଷର କରିବେ ।

ସଦନମାନଙ୍କରେ ଭୋଟ ଦାନ, ରିକ୍ତତା ଥିବା ସତ୍ତ୍ୱେ ସଦନମାନଙ୍କର କାର୍ଯ୍ୟ କରିବାରକ୍ଷମତା ଏବଂ କୋରମ ।

୧୦୦ । (୧) ଏହି ସଂବିଧାନରେ ଅନ୍ୟଥା ଉପବନ୍ଧିତ କରାଯାଇଥିବା ବ୍ୟତିରେକେ, କୌଣସି ସଦନର କୌଣସି ବୈଠକରେ ଅଥବା ସଦନମାନଙ୍କର ସଂଯୁକ୍ତ ବୈଠକରେ ଅଧ୍ୟକ୍ଷଙ୍କୁ ଅଥବା ଯେଉଁ ବ୍ୟକ୍ତି ସଭାପତି ବା ଅଧ୍ୟକ୍ଷ ରୂପେ କାର୍ଯ୍ୟ କରୁଥାନ୍ତି ତାହାଙ୍କୁ ଛାଡ଼ି ଉପସ୍ଥିତ ଏବଂ ଭୋଟ ଦେଉଥିବା ସଦସ୍ୟମାନଙ୍କର ବହୁମତରେ ସମସ୍ତ ପ୍ରଶ୍ନର ନିର୍ଦ୍ଧାରଣ କରାଯିବ ।

ସଭାପତି ବା ଅଧ୍ୟକ୍ଷ ବା ସେହି ରୂପେ କାର୍ଯ୍ୟ କରୁଥିବା ବ୍ୟକ୍ତି ପ୍ରଥମବାର ଭୋଟ ଦେବେନାହିଁ କିନ୍ତୁ ଭୋଟ ସମାନ ହେବା ସ୍ଥଳରେ ତାଙ୍କର ଏକ ନିର୍ଣ୍ଣାୟକ ଭୋଟ ରହିବ ଓ ସେ ତହିଁର ପ୍ରୟୋଗ କରିବେ

(୨) ସଂସଦର କୌଣସି ସଦନର ସଦସ୍ୟତାରେ କୌଣସି ରିକ୍ତତା ଥିବା ସତ୍ତ୍ୱେ, ସେହି ସଦନର କାର୍ଯ୍ୟ କରିବାର କ୍ଷମତା ରହିବ ଏବଂ ଯଦି କାର୍ଯ୍ୟବାହୀରେ ଉପସ୍ଥିତ ହେବା ବା ଭୋଟ ଦେବା ବା ଅନ୍ୟଥା ଭାଗ ନେବାପାଇଁ ହକ୍‌ଦାର ନ ଥିବା କୌଣସି ବ୍ୟକ୍ତି ସେପରି କରିଥିଲା ବୋଲି ପରେ ଜଣାପଡ଼େ ତେବେ ସେପରି ହୋଇଥିବା ସତ୍ତ୍ୱେ ସଂସଦର ଯେ କୌଣସି କାର୍ଯ୍ୟବାହୀ ବୈଧ ହେବ ।

(୩) ଯେଉଁ ପର୍ଯ୍ୟନ୍ତ ସଂସଦ ବିଧି ଦ୍ୱାରା ଅନ୍ୟଥା ଉପବନ୍ଧିତ ନ କରିଛି ସେ ପର୍ଯ୍ୟନ୍ତ ସଂସଦର ପ୍ରତ୍ୟେକ ସଦନର ଅଧିବେଶନକୁ ଗଠିତ କରିବା ନିମିତ୍ତ କୋରମ ସଦନର ମୋଟ ସଦସ୍ୟ ସଂଖ୍ୟାର ଏକ ଦଶମାଂଶ ହେବ ।

(୪) କୌଣସି ସଦନର ଅଧିବେଶନ ହେଉଥିବା ବେଳେ ଯଦି କୌଣସି ସମୟରେ କୋରମ ନ ଥାଏ ତେବେ ଅଧ୍ୟକ୍ଷ ବା ସଭାପତି ବା ସେହିରୂପେ କାର୍ଯ୍ୟ କରୁଥିବା ବ୍ୟକ୍ତିଙ୍କର କର୍ତ୍ତବ୍ୟ ହେବ ଯେ ସେ ସଦନକୁ ସ୍ଥଗିତ ରଖିବେ ବା କୋରମ ହେବା ପର୍ଯ୍ୟନ୍ତ ଅଧିବେଶନକୁ ନିଲମ୍ବିତ କରିବେ ।

## ସଦସ୍ୟମାନଙ୍କର ଅଯୋଗ୍ୟତା

ସ୍ଥାନମାନଙ୍କର ରିକ୍ତତା ।

୧୦୧ । (୧) କୌଣସି ବ୍ୟକ୍ତି ସଂସଦର ଉଭୟ ସଦନର ସଦସ୍ୟ ହେବେ ନାହିଁ ଏବଂ କୌଣସି ବ୍ୟକ୍ତି ସଂସଦର ଉଭୟ ସଦନର ସଦସ୍ୟରୂପେ ବଛା ହେଲେ ସେ ଏକ ବା ଅନ୍ୟ ସଦନରୁ ତାଙ୍କର ସ୍ଥାନ ରିକ୍ତ କରିବା ନିମିତ୍ତ ସଂସଦ ବିଧି ଦ୍ୱାରା ଉପବନ୍ଧିତ କରିବ ।

(୨) କୌଣସି ବ୍ୟକ୍ତି, ସଂସଦ ଏବଂ କୌଣସି ରାଜ୍ୟ ବିଧାନ ମଣ୍ଡଳର ଏକ ସଦନ, ଏହି ଉଭୟର ସଦସ୍ୟ ହେବେ ନାହିଁ ଏବଂ ଯଦି କୌଣସି ବ୍ୟକ୍ତି ସଂସଦ ଏବଂ କୌଣସି ରାଜ୍ୟ ବିଧାନମଣ୍ଡଳର ଏକ ସଦନ, ଏହି ଉଭୟର ସଦସ୍ୟ ରୂପେ ବଛା ହୁଅନ୍ତି ତେବେ ପୂର୍ବରୁ ସେ ରାଜ୍ୟ ବିଧାନମଣ୍ଡଳରୁ ତାଙ୍କର ସ୍ଥାନ ତ୍ୟାଗ କରି ନ ଥିଲେ ରାଷ୍ଟ୍ରପତିଙ୍କ ଦ୍ୱାରା ପ୍ରଣୀତ ନିୟମାବଳୀରେ ବିନିର୍ଦ୍ଦିଷ୍ଟ କାଳାବଧିର ଅବସାନରେ ସଂସଦରେ ତାଙ୍କର ସ୍ଥାନ ରିକ୍ତ ହୋଇଯିବ ।

(୩) ଯଦି ସଂସଦର କୌଣସି ସଦନର ଜଣେ ସଦସ୍ୟ—

(କ) ଅନୁଚ୍ଛେଦ ୧୦୨ର ଖଣ୍ଡ (୧) ରେ ବର୍ଣ୍ଣିତ ଅଯୋଗ୍ୟତା ମାନଙ୍କ ମଧ୍ୟରୁ କୌଣସିଟିର ବଶବର୍ତ୍ତୀ ହୁଅନ୍ତି, ବା

(ଖ) ଯଥାସ୍ଥିତି, ସଭାପତି ବା ଅଧ୍ୟକ୍ଷଙ୍କୁ ସମ୍ବୋଧିତ ସ୍ୱାକ୍ଷରିତ ଲେଖ ଦ୍ୱାରା ନିଜର ସ୍ଥାନ ତ୍ୟାଗ କରନ୍ତି ଏବଂ ତାଙ୍କର ତ୍ୟାଗପତ୍ର, ଯଥାସ୍ଥିତି, ସଭାପତି ବା ଅଧ୍ୟକ୍ଷଙ୍କ ଦ୍ୱାରା ଗୃହୀତ ହୁଏ, ତାହାହେଲେ ତାଙ୍କର ସ୍ଥାନ ରିକ୍ତ ହୋଇଯିବ :

ପରନ୍ତୁ ଉପଖଣ୍ଡ (ଖ) ରେ ନିର୍ଦ୍ଦେଶିତ କୌଣସି ତ୍ୟାଗପତ୍ର ସ୍ଥଳେ, ଯଦି କୌଣସି ସମ୍ବାଦ ପାଇ ବା ଅନ୍ୟଥା, ଯଥାସ୍ଥିତି, ସଭାପତି ବା ଅଧ୍ୟକ୍ଷ ଉଚିତ ମନେ କରିବା ମତେ ଅନୁସନ୍ଧାନ କରିବା ପରେ ସନ୍ତୁଷ୍ଟ ହୁଅନ୍ତି ଯେ ସେହି ତ୍ୟାଗପତ୍ର ସ୍ୱେଚ୍ଛାକୃତ ବା ଯଥାର୍ଥ ନୁହେଁ ତାହାହେଲେ ସେ ଉକ୍ତ ତ୍ୟାଗପତ୍ର ଗ୍ରହଣ କରିବେ ନାହିଁ ।

(୪) ଯଦି ସଂସଦର କୌଣସି ସଦନର କୌଣସି ସଦସ୍ୟ ଷାଠିଏ ଦିନର କାଳାବଧି ପର୍ଯ୍ୟନ୍ତ ସଦନର ବିନାନୁମତିରେ ତହିଁର ସମସ୍ତ ଅଧିବେଶନରୁ ଅନୁପସ୍ଥିତ ରହନ୍ତି ତେବେ ତାଙ୍କର ସ୍ଥାନ ରିକ୍ତ ହେଲା ବୋଲି ସଦନ ଘୋଷଣା କରି ପାରିବ :

ପରନ୍ତୁ ଉକ୍ତ ଷାଠିଏ ଦିନର କାଳାବଧି ସଙ୍ଗଣନା କରିବାବେଳେ ଯେଉଁ କାଳାବଧି ମଧ୍ୟରେ ସଦନ ସତ୍ରାବସିତ ବା କ୍ରମାଗତ ଚାରିରୁ ଅଧିକ ଦିନ ପାଇଁ ସ୍ଥଗିତ ହୋଇଥାଏ ସେହି କାଳାବଧି ହିସାବକୁ ନିଆଯିବ ନାହିଁ ।

ସଦସ୍ୟତା ନିମିତ୍ତ ଅଯୋଗ୍ୟତା ।

୧୦୨ । (୧) କୌଣସି ବ୍ୟକ୍ତି ସଂସଦର କୌଣସି ସଦନର ସଦସ୍ୟ ରୂପେ ବଛାଯିବା ନିମିତ୍ତ ଏବଂ ସଦସ୍ୟ ରହିବା ନିମିତ୍ତ ଅଯୋଗ୍ୟ ହେବେ, ଯଦି ସେ—

(କ) ଯେଉଁ ପଦ ଧାରଣ କଲେ କୌଣସି ବ୍ୟକ୍ତି ଅଯୋଗ୍ୟ ହେବେ ନାହିଁ ବୋଲି ସଂସଦ କର୍ତ୍ତୃକ ବିଧି ଦ୍ୱାରା ଘୋଷିତ ହୋଇଥାଏ ସେହି ପଦ ଭିନ୍ନ ଅନ୍ୟ କୌଣସି ଲାଭପ୍ରଦ ପଦ ଭାରତ ସରକାରଙ୍କ ବା କୌଣସି ରାଜ୍ୟ ସରକାରଙ୍କ ଅଧୀନରେ ଧାରଣ କରିଥାନ୍ତି ;

(ଖ) ବିକୃତ ଚିତ୍ତ ହୋଇଥାନ୍ତି ତଥା କୌଣସି ସକ୍ଷମ ନ୍ୟାୟାଳୟ ଦ୍ୱାରା ଏପରି ଘୋଷଣା କରାଯାଇଥାଏ ;

(ଗ) ଅନୁନ୍ମୁକ୍ତ ଦେବାଳିଆ ହୋଇଥାନ୍ତି ;

(ଘ) ଭାରତର ନାଗରିକ ହୋଇ ନ ଥାନ୍ତି ବା କୌଣସି ବିଦେଶୀ ରାଜ୍ୟର ନାଗରିକତା ସ୍ୱେଚ୍ଛାରେ ଅର୍ଜନ କରିଥାନ୍ତି ବା କୌଣସି ବିଦେଶୀ ରାଜ୍ୟପ୍ରତି ନିଷ୍ଠା ବା ଅନୁରକ୍ତିର ସ୍ୱୀକାରାଧୀନ ନ ହୋଇଥାନ୍ତି ;

(ଙ) ସଂସଦ ପ୍ରଣୀତ କୌଣସି ବିଧି ଦ୍ୱାରା ବା ବିଧି ଅଧୀନରେ ଏହି ପ୍ରକାରେ ଅଯୋଗ୍ୟ ହୋଇଥାନ୍ତି :

(୨) କୌଣସି ବ୍ୟକ୍ତି ସଂଘର ବା କୌଣସି ରାଜ୍ୟର କେବଳ ମନ୍ତ୍ରୀ ହୋଇଥିବା କାରଣରୁ ଏହି ଅନୁଚ୍ଛେଦର ପ୍ରୟୋଜନ ନିମିତ୍ତ ସେ ଭାରତ ସରକାର ଅଥବା ସେହି ରାଜ୍ୟର ସରକାରଙ୍କ ଅଧୀନରେ ଲାଭ ପ୍ରଦ ପଦ ଧାରଣ କରିଅଛନ୍ତି ବୋଲି ବିବେଚିତ ହେବେ ନାହିଁ ।

ସଦସ୍ୟମାନଙ୍କ ଅଯୋଗ୍ୟତା ବିଷୟକ ପ୍ରଶ୍ନର ନିଷ୍ପତ୍ତି ।

୧୦୩ । (୧) ଯଦି ସଂସଦର କୌଣସି ସଦନର କୌଣସି ସଦସ୍ୟ ଅନୁଚ୍ଛେଦ ୧୦୨ର ଖଣ୍ଡ (୧) ରେ ବର୍ଣ୍ଣିତ କୌଣସି ଅଯୋଗ୍ୟତାର ବଶବର୍ତ୍ତୀ ହୋଇଛନ୍ତି କି ନାହିଁ, ଏ ବିଷୟରେ କୌଣସି ପ୍ରଶ୍ନ ଉଠେ ତାହାହେଲେ ସେହି ପ୍ରଶ୍ନ ରାଷ୍ଟ୍ରପତିଙ୍କ ନିଷ୍ପତ୍ତି ନିମିତ୍ତ ନିର୍ଦ୍ଦେଶିତ ହେବ ଏବଂ ତାଙ୍କର ନିଷ୍ପତ୍ତି ଚୂଡ଼ାନ୍ତ ହେବ ।

(୨) ଏପରି କୌଣସି ପ୍ରଶ୍ନ ଉପରେ କୌଣସି ନିଷ୍ପତ୍ତି କରିବା ପୂର୍ବରୁ ରାଷ୍ଟ୍ରପତି ନିର୍ବାଚନ କମିଶନଙ୍କ ମତ ଅଭିପ୍ରାପ୍ତ କରିବେ ଏବଂ ସେହି ମତ ଅନୁସାରେ କାର୍ଯ୍ୟ କରିବେ ।

ଅନୁଚ୍ଛେଦ ୯୯ ଅଧୀନରେ ଶପଥ ବା ପ୍ରତିଜ୍ଞାନ କରିବା ପୂର୍ବରୁ ଅଥବା ଯୋଗ୍ୟ ନ ଥାଇ ବା ଅଯୋଗ୍ୟ ହୋଇଥାଇ ବସିବା ଓ ଭୋଟ ଦେବା ନିମିତ୍ତ ଦଣ୍ଡ ।

୧୦୪ । ଅନୁଚ୍ଛେଦ ୯୯ ଦ୍ୱାରା ଆବଶ୍ୟକ ବିଷୟମାନ ପୂରଣ କରିବା ପୂର୍ବରୁ ଅଥବା ସେ ସଂସଦର ସଦସ୍ୟତା ଲାଗି ଯୋଗ୍ୟ ନୁହନ୍ତି ବା ତାହାଙ୍କୁ ଅଯୋଗ୍ୟ କରାଯାଇଅଛି ବା ସଂସଦ ଦ୍ୱାରା ପ୍ରଣୀତ କୌଣସି ବିଧିର ଉପବଂଧମାନଙ୍କ ଦ୍ୱାରା ଏପରି କରିବା ନିମିତ୍ତ ତାହାଙ୍କୁ ନିଷିଦ୍ଧ କରାଯାଇଅଛି ବୋଲି ଜାଣି ଥାଇ ଯଦି କୌଣସି ବ୍ୟକ୍ତି ସଂସଦର କୌଣସି ସଦନରେ ସଦସ୍ୟ ରୂପେ ଉପସ୍ଥିତ ହୁଅନ୍ତି ବା ଭୋଟ ଦିଅନ୍ତି ତେବେ ସେ ଯେଉଁ ଯେଉଁ ଦିନ ଏପରି ଉପସ୍ଥିତ ହୁଅନ୍ତି ବା ଭୋଟ ଦିଅନ୍ତି ସେହି ପ୍ରତ୍ୟେକ ଦିନ ନିମିତ୍ତ ପାଞ୍ଚଶହ ଟଙ୍କାର ଅର୍ଥ ଦଣ୍ଡରେ ଦଣ୍ଡନୀୟ ହେବେ ଯାହାକି ସଂଘର ପ୍ରାପ୍ୟ ଋଣ ରୂପେ ଅସୁଲ କରାଯିବ ।

## ସଂସଦ ଓ ତହିଁର ସଦସ୍ୟମାନଙ୍କର କ୍ଷମତା, ବିଶେଷାଧିକାର ଓ ଉନ୍ମୁକ୍ତି

ସଂସଦର ସଦନମାନଙ୍କର ତଥା ତହିଁର ସଦସ୍ୟମାନଙ୍କର ଏବଂ ସମିତି ମାନଙ୍କର କ୍ଷମତା, ବିଶେଷାଧିକାର ଇତ୍ୟାଦି ।

୧୦୫ । (୧) ଏହି ସଂବିଧାନର ଉପବଂଧମାନ ଏବଂ ସଂସଦର ପ୍ରକ୍ରିୟା ବିନିୟାମକ ନିୟମାବଳୀ ଓ ସ୍ଥାୟୀ ଆଦେଶମାନଙ୍କର ବଶବର୍ତ୍ତୀ ରହି, ସଂସଦରେ ବାକ୍‌ସ୍ୱାତନ୍ତ୍ର୍ୟ ରହିବ ।

(୨) ସଂସଦରେ ବା ତହିଁର କୌଣସି ସମିତିରେ ରହିଥିବା କୌଣସି ବିଷୟ ବା ଦେଇଥିବା କୌଣସି ଭୋଟ ସଂପର୍କରେ ସଂସଦର କୌଣସି ସଦସ୍ୟ ବିରୁଦ୍ଧରେ କୌଣସି ନ୍ୟାୟାଳୟରେ କୌଣସି କାର୍ଯ୍ୟବାହୀ ଚଳିବ ନାହିଁ ଏବଂ ସଂସଦର କୌଣସି ସଦନର ପ୍ରାଧୀକାରୀ ଦ୍ୱାରା ବା ଅଧୀନରେ କୌଣସି ରିପୋର୍ଟ, ପତ୍ର, ଭୋଟ ବା କାର୍ଯ୍ୟବାହୀର ପ୍ରକାଶନ ନିମିତ୍ତ କୌଣସି ବ୍ୟକ୍ତି ଦାୟୀ ହେବେ ନାହିଁ ।

(୩) ଅନ୍ୟାନ୍ୟ ବିଷୟ ସଂପର୍କରେ ସଂସଦର ପ୍ରତ୍ୟେକ ସଦନର ତଥା ପ୍ରତ୍ୟେକ ସଦନର ପ୍ରତ୍ୟେକ ସଦସ୍ୟ ଓ ସମିତିମାନଙ୍କର କ୍ଷମତା, ବିଶେଷାଧିକାର ଓ ଉନ୍ମୁକ୍ତିମାନ ତାହାହିଁ ରହିବ ଯାହାକି ସଂସଦ କର୍ତ୍ତୃକ ବିଧିଦ୍ୱାରା ଥରକୁଥର ସଂଜ୍ଞାକୃତ କରାଯାଇ ପାରିବ, ଏବଂ, ସେପରି ସଂଜ୍ଞାକୃତ ନ ହେବା ପର୍ଯ୍ୟନ୍ତ ସଂବିଧାନ (୪୪ଶ ସଂଶୋଧନ) ଅଧିନିୟମ, ୧୯୭୮ର ଧାରା ୧୫ ପ୍ରବୃତ୍ତ ହେବାର ଅବ୍ୟବହିତ ପୂର୍ବରୁ ତାହାର ସଦସ୍ୟ ଓ ସମିତିମାନଙ୍କର ଯେଉଁ କ୍ଷମତା, ବିଶେଷାଧିକାର ଓ ଉନ୍ମୁକ୍ତି ଥିଲା ତାହାହିଁ ରହିବ ।

(୪) ଖଣ୍ଡ (୧), (୨), (୩)ର ଉପବଂଧମାନ ସଂସଦର ସଦସ୍ୟମାନଙ୍କ ପ୍ରତି ଯେପରି ଲାଗୁ ଅଟେ ତାହା ଏହି ସଂବିଧାନ ବଳରେ ଯେଉଁ ବ୍ୟକ୍ତିମାନଙ୍କର ସଂସଦର କୌଣସି ସଦନ ଅଥବା ତହିଁର କୌଣସି ସମିତିରେ କହିବା ବା ଅନ୍ୟଥା ତହିଁର କାର୍ଯ୍ୟବାହୀରେ ଭାଗ ନେବାର ଅଧିକାର ଥାଏ ସେମାନଙ୍କ ପ୍ରତି ସେହିପରି ଲାଗୁ ହେବ ।

ସଦସ୍ୟମାନଙ୍କର ବେତନ ଓ ଭତ୍ତା ।

୧୦୬ । ସଂସଦର ପ୍ରତ୍ୟେକ ସଦନର ସଦସ୍ୟମାନେ ସଂସଦ କର୍ତ୍ତୃକ ବିଧିଦ୍ୱାରା ଥରକୁ ଥର ଯେପରି ନିର୍ଦ୍ଧାରିତ ହୁଏ ସେପରି ବେତନ ଓ ଭତ୍ତା ପାଇବା ପାଇଁ ହକ୍‌ଦାର ହେବେ ଏବଂ ଏହି ସଂପର୍କରେ ଉପବଂଧ କରାନଯିବା ପର୍ଯ୍ୟନ୍ତ ଏହି ସଂବିଧାନର ପାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତ ଡୋମିନିୟନର ସଂବିଧାନ ସଭାର ସଦସ୍ୟମାନଙ୍କ ପ୍ରତି ଲାଗୁ ହେଉଥିବା ହାର ଓ ସର୍ତ୍ତରେ ଭତ୍ତା ପାଇବା ପାଇଁ ହକ୍‌ଦାର ହେବେ ।

## ବିଧାନ ପ୍ରକ୍ରିୟା

**ବିଧେୟକ-ମାନଙ୍କର ପୁରଃସ୍ଥାପନ ଏବଂ ପାରଣ ବିଷୟକ ଉପବନ୍ଧ ।**

୧୦୭ । (୧) ଧନ ବିଧେୟକ ତଥା ଅନ୍ୟାନ୍ୟ ବିତ୍ତୀୟ ବିଧେୟକ ସଂପର୍କରେ ଅନୁଚ୍ଛେଦ ୧୦୯ ଏବଂ ୧୧୭ର ଉପବଂଧମାନଙ୍କର ବଶବର୍ତ୍ତୀ ରହି କୌଣସି ବିଧେୟକ ସଂସଦର ଯେକୌଣସି ସଦନରେ ଆରମ୍ଭ ହୋଇପାରିବ ।

(୨) ଅନୁଚ୍ଛେଦ ୧୦୮ ଓ ୧୦୯ର ଉପବଂଧମାନଙ୍କର ବଶବର୍ତ୍ତୀ ରହି ଯଦି କୌଣସି ବିଧେୟକ ହୁଏତ ସଂଶୋଧନ ବିନା ଅଥବା ଉଭୟ ସଦନ ଦ୍ୱାରା ଯଥା ସ୍ୱୀକୃତ ସଂଶୋଧନ ସହ ଉଭୟ ସଦନର ସ୍ୱୀକୃତି ଲାଭ କରିନଥାଏ ତେବେ ତାହା ସଂସଦର ସଦନମାନଙ୍କ ଦ୍ୱାରା ପାରିତ ହୋଇଅଛି ବୋଲି ବିବେଚିତ ହେବ ନାହିଁ ।

(୩) ସଂସଦରେ ଲମ୍ବିତ ଥିବା ବିଧେୟକ ସଦନମାନଙ୍କର ସତ୍ରାବସାନ କାରଣରୁ ବ୍ୟପଗତ ହେବ ନାହିଁ ।

(୪) ରାଜ୍ୟ ସଭାରେ ଲମ୍ବିତ ଥିବା କିନ୍ତୁ ଲୋକସଭା ଦ୍ୱାରା ପାରିତ ହୋଇ ନ ଥିବା ବିଧେୟକ ଲୋକସଭାର ବିଘଟନ ହେଲେ ବ୍ୟପଗତ ହେବ ନାହିଁ ।

(୫) ଲୋକସଭାରେ ଲମ୍ବିତ ଥିବା ଅଥବା ଲୋକସଭା ଦ୍ୱାରା ପାରିତ ହୋଇ ରାଜ୍ୟ ସଭାରେ ଲମ୍ବିତ ଥିବା କୌଣସି ବିଧେୟକ ଅନୁଚ୍ଛେଦ ୧୦୮ର ଉପବଂଧମାନଙ୍କର ବଶବର୍ତ୍ତୀ ରହି ଲୋକସଭାର ବିଘଟନ ହେଲେ ବ୍ୟପଗତ ହୋଇଯିବ ।

**କେତେକ କ୍ଷେତ୍ରରେ ଉଭୟ ସଦନର ସଂଯୁକ୍ତ ବୈଠକ ।**

୧୦୮ । (୧) ଯଦି କୌଣସି ବିଧେୟକ ଏକ ସଦନରେ ପାରିତ ହୋଇ ଅନ୍ୟ ସଦନକୁ ପ୍ରେରିତ ହେବା ପରେ—

(କ) ଅନ୍ୟ ସଦନ ଦ୍ୱାରା ସେହି ବିଧେୟକ ଅସ୍ୱୀକୃତ ହୁଏ, ବା

(ଖ) ସେହି ବିଧେୟକରେ କରାଯିବାକୁ ଥିବା ସଂଶୋଧନ ସଂପର୍କରେ ସଦନମାନେ ଚୂଡ଼ାନ୍ତ ଭାବରେ ଅସହମତ ହୋଇଥାନ୍ତି, ବା

(ଗ) ଅନ୍ୟ ସଦନ ଦ୍ୱାରା ସେହି ବିଧେୟକ ପ୍ରାପ୍ତିର ତାରିଖଠାରୁ ତାହା ପାରିତ ନ ହୋଇ ଛଅ ମାସରୁ ଅଧିକ ସମୟ ଅତିବାହିତ ହୁଏ,

ତେବେ ଲୋକସଭାର ବିଘଟନ କାରଣରୁ ବିଧେୟକ ବ୍ୟପଗତ ହୋଇଯାଇ ନ ଥିଲେ ରାଷ୍ଟ୍ରପତି ସଦନମାନଙ୍କର ବୈଠକ ବସିଥିଲେ ସଂଦେଶ ଦ୍ୱାରା ବା ସଦନମାନଙ୍କର ବୈଠକ ବସି ନଥିଲେ ଲୋକଅଧିସୂଚନା ଦ୍ୱାରା ବିଧେୟକ ଉପରେ ପର୍ଯ୍ୟାଲୋଚନା କରିବା ଓ ଭୋଟ ଦେବା ନିମିତ୍ତ ସଂଯୁକ୍ତ ବୈଠକରେ ମିଳିତ ହେବାଲାଗି ସଦନମାନଙ୍କୁ ଆହ୍ୱାନ କରିବା ପାଇଁ ତାଙ୍କର ଅଭିପ୍ରାୟ ସଦନମାନଙ୍କୁ ଅଧିସୂଚିତ କରିବେ :

ପରନ୍ତୁ ଏହି ଖଣ୍ଡର କୌଣସି ବିଷୟ କୌଣସି ଧନ ବିଧେୟକ ପ୍ରତି ଲାଗୁ ହେବ ନାହିଁ ।

(୨) ଖଣ୍ଡ (୧)ରେ ନିର୍ଦ୍ଦିଷ୍ଟ ଏପରି ଛଅ ମାସର କାଳାବଧିର ଗଣନା କଲାବେଳେ ଯେଉଁ କାଳାବଧି ମଧ୍ୟରେ ସେହି ଖଣ୍ଡର ଉପଖଣ୍ଡ (ଗ) ରେ ନିର୍ଦ୍ଦିଷ୍ଟ ହୋଇଥିବା ମତେ ସଦନ ସତ୍ରାବସିତ ହୋଇ-ଥାଏ ବା କ୍ରମାଗତ ଚାରିରୁ ଅଧିକ ଦିନ ଲାଗି ସ୍ଥଗିତ ହୋଇଥାଏ ତହିଁର ଗଣନା କରାଯିବ ନାହିଁ ।

(୩) ଯେବେ ରାଷ୍ଟ୍ରପତି ସଦନମାନଙ୍କୁ ଏକ ସଂଯୁକ୍ତ ବୈଠକରେ ମିଳିତ ହେବା ନିମିତ୍ତ ଆହ୍ୱାନ କରିବା ପାଇଁ ତାଙ୍କର ଅଭିପ୍ରାୟ ଖଣ୍ଡ (୧) ଅଧୀନରେ ଅଧିସୂଚିତ କରିଥାନ୍ତି ତେବେ କୌଣସି ସଦନ ସେହି ବିଧେୟକ ବିଷୟରେ ଆଉ ଅଧିକ ଅଗ୍ରସର ହେବ ନାହିଁ, କିନ୍ତୁ ରାଷ୍ଟ୍ରପତି ତାଙ୍କର ଅଧିସୂଚନା ତାରିଖ ପରେ ଯେକୌଣସି ସମୟରେ ସେହି ଅଧିସୂଚନାରେ ବିନିର୍ଦ୍ଦିଷ୍ଟ ପ୍ରୟୋଜନ ନିମିତ୍ତ ସଂଯୁକ୍ତ ବୈଠକରେ ମିଳିତ ହେବା ପାଇଁ ସଦନମାନଙ୍କୁ ଆହ୍ୱାନ କରି ପାରିବେ ଏବଂ ସେ ସେପରି କଲେ ସଦନମାନେ ତଦନୁସାରେ ମିଳିତ ହେବେ ।

(୪) ଯଦି ସେହି ବିଧେୟକ ସଂଯୁକ୍ତ ବୈଠକରେ କୌଣସି ସଂଶୋଧନ ସ୍ୱୀକୃତ ହୋଇଥିଲେ ସେହି ସଂଶୋଧନ ସହିତ ଉଭୟ ସଦନର ସଂଯୁକ୍ତ ବୈଠକରେ ଉପସ୍ଥିତ ଥିବା ତଥା ଭୋଟ ଦେଉଥିବା ଉଭୟ ସଦନର ସମସ୍ତ ସଦସ୍ୟଙ୍କର ବହୁମତରେ ପାରିତ ହୁଏ ତେବେ ଏହି ସଂବିଧାନର ପ୍ରୟୋଜନ ନିମିତ୍ତ ତାହା ଉଭୟ ସଦନରେ ପାରିତ ହୋଇ ଅଛି ବୋଲି ବିବେଚିତ ହେବ

ମାତ୍ର ଏକ ସଂଯୁକ୍ତ ବୈଠକରେ—

(କ) ଯଦି ବିଧେୟକ ଏକ ସଦନରେ ପାରିତ ହେବା ପରେ ଅନ୍ୟ ସଦନ ଦ୍ୱାରା ସଂଶୋଧନ ସହ ପାରିତ କରାଯାଇ ନ ଥାଏ ତଥା ଯେଉଁ ସଦନରେ ତାହା ଆରମ୍ଭ ହୋଇଥିଲା ସେହି ସଦନକୁ ଫେରାଇ ଦିଆଯାଇ ନଥାଏ ତେବେ ବିଧେୟକର ପାରଣରେ ବିଳମ୍ବ ହେବା କାରଣରୁ ଯେଉଁ ସଂଶୋଧନ (ଯଦି କିଛି ଥାଏ) ଆବଶ୍ୟକ ହେଉଥାଏ ତାହା ବ୍ୟତିରେକେ ବିଧେୟକ ଉପରେ ଅନ୍ୟ କୌଣସି ସଂଶୋଧନ ପ୍ରସ୍ତାପିତ ହେବ ନାହିଁ ।

(ଖ) ଯଦି ବିଧେୟକ ଏପରି ପାରିତ ହୋଇଥାଏ ଏବଂ ଫେରାଇ ଦିଆଯାଇଥାଏ ତେବେ କେବଳ ବେଳ ପୂର୍ବ କଥିତ ସଂଶୋଧନମାନ ତଥା ଯେଉଁ ବିଷୟ ସଂପର୍କରେ ସଦନମାନେ ସ୍ୱୀକୃତ ହୋଇନଥାନ୍ତି ସେହି ବିଷୟ ସହ ସୁସଂଗତ ଅନ୍ୟ ସଂଶୋଧନମାନ ବିଧେୟକ ଉପରେ ପ୍ରସ୍ତାପିତ କରାଯିବ, ;

ଏବଂ ଏହି ଖଣ୍ଡ ଅନୁସାରେ କେଉଁ ସଂଶୋଧନମାନ ଗ୍ରାହ୍ୟ ଅଟେ ସେ ସଂବନ୍ଧରେ ସଭାର ପୀଠାସୀନ ବ୍ୟକ୍ତିଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ହେବ ।

(୫) ସଦନମାନଙ୍କୁ ସଂଯୁକ୍ତ ବୈଠକରେ ମିଳିତ ହେବା ନିମିତ୍ତ ରାଷ୍ଟ୍ରପତିଙ୍କ ଅଭିପ୍ରାୟର ଅଧିସୂଚନା-ପରେ ଲୋକସଭାର ବିଘଟନ ହୋଇ ଯାଇଥିବା ସତ୍ତ୍ୱେ, ଏହି ଅନୁଚ୍ଛେଦ ଅନୁସାରେ ସଂଯୁକ୍ତ ବୈଠକ ବସି ପାରିବ ଏବଂ ତହିଁରେ ବିଧେୟକ ପାରିତ କରାଯାଇପାରିବ ।

**ଧନ ବିଧେୟକ ସଂପର୍କରେ ବିଶେଷ ପ୍ରକ୍ରିୟା ।**

୧୦୯ । (୧) ଧନ ବିଧେୟକ ରାଜ୍ୟସଭାରେ ପୁରଃସ୍ଥାପିତ କରାଯିବ ନାହିଁ ।

(୨) ଧନ ବିଧେୟକ ଲୋକସଭାରେ ପାରିତ ହେବାପରେ ତାହା ରାଜ୍ୟସଭାକୁ ତାହାର ସୁପାରିଶ ନିମିତ୍ତ ପ୍ରେରିତ ହେବ ଏବଂ ରାଜ୍ୟସଭା ବିଧେୟକକୁ ପାଇବା ତାରିଖଠାରୁ ଚଉଦ ଦିନର କାଳାବଧି ମଧ୍ୟରେ ତାହାର ସୁପାରିଶ ସହ ଲୋକସଭାକୁ ଫେରାଇଦେବ ଏବଂ ତତ୍‌ପରେ ଲୋକସଭା ରାଜ୍ୟସଭାର ସୁପାରିଶମାନଙ୍କ ମଧ୍ୟରୁ ସମସ୍ତ ବା କେତେକ ଗ୍ରହଣ ବା ଅଗ୍ରାହ୍ୟ କରି ପାରିବ ।

(୩) ଯଦି ଲୋକସଭା ରାଜ୍ୟ ସଭାର ସୁପାରିଶମାନଙ୍କ ମଧ୍ୟରୁ କୌଣସି ସୁପାରିଶ ଗ୍ରହଣ କରିନିଏ ତେବେ ସେହି ଧନ ବିଧେୟକ ରାଜ୍ୟ ସଭାଦ୍ୱାରା ସୁପାରିଶ କରାଯାଇଥିବା ତଥା ଲୋକସଭାଦ୍ୱାରା ଗୃହୀତ ହୋଇଥିବା ସଂଶୋଧନମାନଙ୍କ ସହିତ ଉଭୟ ସଦନ ଦ୍ୱାରା ପାରିତ ହୋଇଅଛି ବୋଲି ବିବେଚିତ ହେବ ।

(୪) ଯଦି ଲୋକସଭା ରାଜ୍ୟସଭାର କୌଣସି ସୁପାରିଶ ଗ୍ରହଣ ନ କରେ ତେବେ ଧନ ବିଧେୟକ ରାଜ୍ୟସଭା ଦ୍ୱାରା ସୁପାରିଶ କରାଯାଇଥିବା କୌଣସି ସଂଶୋଧନ ବିନା ଯେଉଁ ରୂପରେ ତାହା ଲୋକସଭା ଦ୍ୱାରା ପାରିତ ହୋଇଥିଲା ସେହି ରୂପରେ ଉଭୟ ସଦନଦ୍ୱାରା ପାରିତ ହୋଇଅଛି ବୋଲି ବିବେଚିତ ହେବ ।

(୫) ଯଦି ଲୋକସଭା ଦ୍ୱାରା ପାରିତ ତଥା ରାଜ୍ୟ ସଭାକୁ ତାହାର ସୁପାରିଶ ନିମିତ୍ତ ପ୍ରେରିତ ହୋଇଥିବା ଧନ ବିଧେୟକ ଉକ୍ତ ଚଉଦ ଦିନ କାଳାବଧି ମଧ୍ୟରେ ଲୋକସଭାକୁ ଫେରାଇ ଦିଆ ନଯାଏ ତେବେ ତାହା ଯେଉଁ ରୂପରେ ଲୋକ ସଭା ଦ୍ୱାରା ପାରିତ ହୋଇଥିଲା ଉକ୍ତ କାଳାବଧିର ଅବସାନ ପରେ ଉଭୟ ସଦନଦ୍ୱାରା ସେହି ରୂପରେ ପାରିତ ହୋଇଅଛି ବୋଲି ବିବେଚିତ ହେବ ।

"ଧନ ବିଧେୟକର ସଂଜ୍ଞା ।"

୧୧୦ । (୧) ଏହି ଅଧ୍ୟାୟର ପ୍ରୟୋଜନ ନିମିତ୍ତ ଯଦି କୌଣସି ବିଧେୟକରେ କେବଳ ନିମ୍ନଲିଖିତ ବିଷୟମାନଙ୍କ ମଧ୍ୟରୁ ସମସ୍ତ ବା କାହାରି ସଂବଂଧରେ ଉପବଂଧମାନ ଅନ୍ତର୍ବିଷ୍ଟ ହୋଇଥାଏ ତେବେ ସେହି ବିଧେୟକ ଧନ ବିଧେୟକ ବୋଲି ବିବେଚିତ ହେବ, ଅର୍ଥାତ୍,—

(କ) କୌଣସି କରର ଆରୋପଣ, ଉତ୍ସାଦନ, ପରିହାର, ପରିବର୍ତ୍ତନ ବା ବିନିୟମନ;

(ଖ) ଭାରତ ସରକାରଙ୍କ ଦ୍ୱାରା ଧନ ଋଣ କରାଯିବାର ବା କୌଣସି ପ୍ରତ୍ୟାଭୂତି ଦିଆଯିବାର ବିନୟମନ ବା ଭାରତ ସରକାରଙ୍କ ଦ୍ୱାରା ନିଆଯାଇଥିବା ବା ନିଆଯିବାକୁ ଥିବା କୌଣସି ବିତ୍ତୀୟ ବାଧ୍ୟତା ସଂପର୍କୀୟ ବିଧିର ସଂଶୋଧନ ;

(ଗ) ଭାରତର ସଞ୍ଚିତ ନିଧିର ଅଥବା ଆକସ୍ମିକତା ନିଧିର ଅଭିରକ୍ଷା, ଏପରି କୌଣସି ନିଧିକୁ ଧନ ସଂଦାୟ ବା ଏପରି ନିଧିରୁ ଧନର ପ୍ରତ୍ୟାହରଣ ;

(ଘ) ଭାରତର ସଞ୍ଚିତ ନିଧିରୁ ଧନର ବିନିଯୋଗ ;

(ଙ) କୌଣସି ବ୍ୟୟକୁ ଭାରତର ସଞ୍ଚିତ ନିଧି ଉପରେ ଭାରିତ ବ୍ୟୟ ବୋଲି ଘୋଷଣା କରିବା ବା ଏପରି କୌଣସି ବ୍ୟୟର ପରିମାଣ ବୃଦ୍ଧି କରିବା ;

(ଚ) ଭାରତର ସଞ୍ଚିତ ନିଧି ବା ଭାରତର ଲୋକ ଲେଖା ବାବଦକୁ ଧନ ପ୍ରାପ୍ତି ବା ଏପରି ଧନର ଅଭିରକ୍ଷା ବା ନିକାଶି ଅଥବା ସଂଘ ବା ରାଜ୍ୟର ହିସାବ ପରୀକ୍ଷା ; ଅଥବା

(ଛ) (କ) ଠାରୁ (ଚ) ପର୍ଯ୍ୟନ୍ତ ଉପଖଣ୍ଡମାନଙ୍କରେ ବିନିର୍ଦ୍ଦିଷ୍ଟ ବିଷୟମାନଙ୍କ ମଧ୍ୟରୁ କୌଣସିଟିର ଆନୁସଂଗିକ କୌଣସି ବିଷୟ ।

(୨) ଜୋରିମାନା ବା ଅନ୍ୟ ଅର୍ଥ ଦଣ୍ଡର ଆରୋପଣ ନିମିତ୍ତ ଅଥବା ଲାଇସେନ୍ସ୍ ପାଇଁ ଫିସ୍‌ର ଅଥବା କରାଯାଇଥିବା ସେବା ପାଇଁ ଫିସ୍‌ର ଅଭିଯାଚନା ବା ପ୍ରଦାନ ନିମିତ୍ତ ଉପବଂଧ କରିଥିବା କାରଣରୁ ହିଁ ବା କୌଣସି ସ୍ଥାନୀୟ ପ୍ରାଧିକାରୀ ବା ନିକାୟ ଦ୍ୱାରା ସ୍ଥାନୀୟ ପ୍ରୟୋଜନ ନିମିତ୍ତ କୌଣସି କରର ଆରୋପଣ, ଉତ୍ସାଦନ, ପରିହାର, ପରିବର୍ତ୍ତନ ବା ବିନିୟମନ ନିମିତ୍ତ ଉପବଂଧ କରିଥିବା କାରଣରୁ ହିଁ କୌଣସି ବିଧେୟକ ଧନ ବିଧେୟକ ବୋଲି ବିବେଚିତ ହେବ ନାହିଁ ।

(୩) କୌଣସି ବିଧେୟକ ଧନ ବିଧେୟକ କି ନୁହେଁ ଏପରି କୌଣସି ପ୍ରଶ୍ନ ଉଠିଲେ ସେ ବିଷୟରେ ଲୋକସଭାର ଅଧ୍ୟକ୍ଷଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ହେବ ।

(୪) ପ୍ରତ୍ୟେକ ଧନ ବିଧେୟକ ଅନୁଚ୍ଛେଦ ୧୦୯ ଅଧୀନରେ ରାଜ୍ୟ ସଭାକୁ ପ୍ରେରିତ ହେବା ସମୟରେ ତଥା ଅନୁଚ୍ଛେଦ ୧୧୧ ଅଧୀନରେ ସ୍ୱୀକୃତି ନିମିତ୍ତ ରାଷ୍ଟ୍ରପତିଙ୍କ ସମକ୍ଷରେ ଉପସ୍ଥାପିତ କରାଯିବା ସମୟରେ ତାହା ଯେ ଧନ ବିଧେୟକ ଅଟେ ଏହି ପ୍ରମାଣ ପତ୍ର ତହିଁ ଉପରେ ଲୋକସଭାର ଅଧ୍ୟକ୍ଷଙ୍କର ସ୍ୱାକ୍ଷର ସହ ପୃଷ୍ଠାଙ୍କିତ ହେବ ।

ବିଧେୟକମାନଙ୍କୁ ସ୍ୱୀକୃତି ଦାନ ।

୧୧୧ । କୌଣସି ବିଧେୟକ ସଂସଦର ସଦନମାନଙ୍କ ଦ୍ୱାରା ପାରିତ ହୋଇଗଲାପରେ ତାହା ରାଷ୍ଟ୍ରପତିଙ୍କ ସମକ୍ଷରେ ଉପସ୍ଥାପିତ କରାଯିବ ଏବଂ ରାଷ୍ଟ୍ରପତି ସେହି ବିଧେୟକକୁ ସ୍ୱୀକୃତି ଦେଲେ, କି ତାଙ୍କର ସ୍ୱୀକୃତି ଅଟକ ରଖିଲେ, ତାହା ଘୋଷଣା କରିବେ :

ପରନ୍ତୁ ସ୍ୱୀକୃତି ନିମିତ୍ତ ରାଷ୍ଟ୍ରପତିଙ୍କ ସମକ୍ଷରେ ବିଧେୟକ ଉପସ୍ଥାପିତ ହେବାପରେ ତାହା ଧନ ବିଧେୟକ ହୋଇ ନଥିଲେ ସେ ସେହି ବିଧେୟକକୁ ଯଥା ଶୀଘ୍ର ସମ୍ଭବ ସଦନମାନଙ୍କୁ ଏପରି ସଂଦେଶ ସହ ଫେରାଇ ଦେବେ ଯହିଁରେ କି ସେ ଅନୁରୋଧ କରିଥିବେ ଯେ ସେମାନେ ବିଧେୟକର ବା ତହିଁର କୌଣସି ବିନିର୍ଦ୍ଦିଷ୍ଟ ଉପବଂଧମାନଙ୍କର ପୁନର୍ବିଚାର କରନ୍ତୁ ଏବଂ ବିଶେଷଭାବେ ତାଙ୍କର ସଂଦେଶରେ ସେ ଯେପରି ସୁପାରିଶ କରିଥିବେ ସେପରି ସଂଶୋଧନମାନଙ୍କୁ ପୁରଃସ୍ଥାପିତ କରିବାର ବାଞ୍ଛନୀୟତା ବିଷୟରେ ବିଚାର କରନ୍ତୁ ଏବଂ ବିଧେୟକ ଏପରି ଫେରାଇ ଦିଆଗଲେ ସଦନମାନେ ତଦନୁସାରେ ବିଧେୟକର ପୁନର୍ବିଚାର କରିବେ ଏବଂ ଯଦି ବିଧେୟକ ସଦନମାନଙ୍କଦ୍ୱାରା ସଂଶୋଧନ ସହ ବା ବିନା ସଂଶୋଧନରେ ପୁନର୍ବାର ପାରିତ ହୁଏ ତଥା ସ୍ୱୀକୃତି ନିମିତ୍ତ ରାଷ୍ଟ୍ରପତିଙ୍କ ସମକ୍ଷରେ ଉପସ୍ଥାପିତ ହୁଏ ତେବେ ରାଷ୍ଟ୍ରପତି ତହିଁ ଉପରେ ତାଙ୍କର ସ୍ୱୀକୃତିକୁ ଅଟକ ରଖିବେ ନାହିଁ ।

## ବିତ୍ତୀୟ ବିଷୟରେ ପ୍ରକ୍ରିୟା

ବାର୍ଷିକ ବିତ୍ତୀୟ ବିବରଣୀ ।

୧୧୨ । (୧) ରାଷ୍ଟ୍ରପତି ପ୍ରତ୍ୟେକ ବିତ୍ତୀୟବର୍ଷ ସଂପର୍କରେ ସେହି ବର୍ଷ ନିମିତ୍ତ ଭାରତ ସରକାରଙ୍କର ପ୍ରାକ୍କଳିତ ପ୍ରାପ୍ତି ଓ ବ୍ୟୟର ବିବରଣୀ ଯାହାକି ଏହି ଭାଗରେ "ବାର୍ଷିକ ବିତ୍ତୀୟ ବିବରଣୀ" ନାମରେ ନିର୍ଦ୍ଦେଶିତ ଅଟେ, ସଂସଦର ଉଭୟ ସଦନ ସମକ୍ଷରେ ଉପସ୍ଥାପିତ କରାଇବେ ।

(୨) ବାର୍ଷିକ ବିତ୍ତୀୟ ବିବରଣୀରେ ସନ୍ନିବିଷ୍ଟ ବ୍ୟୟର ପ୍ରାକ୍‌କଳନରେ—

(କ) ଭାରତର ସଞ୍ଚିତ ନିଧି ଉପରେ ଭାରିତ ବ୍ୟୟ ରୂପେ ଏହି ସଂବିଧାନରେ ବର୍ଣ୍ଣିତ ବ୍ୟୟର ପୂରଣ ନିମିତ୍ତ ଆବଶ୍ୟକ ଧନରାଶି, ଏବଂ

(ଖ) ଭାରତର ସଞ୍ଚିତ ନିଧିରୁ ବ୍ୟୟିତ ହେବାଲାଗି ପ୍ରସ୍ତାପିତ ଅନ୍ୟାନ୍ୟ ବ୍ୟୟର ପୂରଣ ନିମିତ୍ତ ଆବଶ୍ୟକ ଧନରାଶି,

ପୃଥକ୍ ପୃଥକ୍ ଭାବେ ଦର୍ଶିତ କରାଯିବ ଏବଂ ରାଜସ୍ୱ ହିସାବ ସଂପର୍କୀୟ ବ୍ୟୟ ଅନ୍ୟ ବ୍ୟୟଠାରୁ ପୃଥକ ଭାବେ ରଖାଯିବ ।

(୩) ନିମ୍ନଲିଖିତ ବ୍ୟୟ ଭାରତର ସଞ୍ଚିତ ନିଧି ଉପରେ ଭାରିତ ବ୍ୟୟ ହେବ—

(କ) ରାଷ୍ଟ୍ରପତିଙ୍କ ଉପଲବ୍ଧି ଓ ଭତ୍ତା ତଥା ତାଙ୍କ ପଦ ସହ ସଂବଂଧିତ ଅନ୍ୟାନ୍ୟ ବ୍ୟୟ,

(ଖ) ରାଜ୍ୟସଭାର ସଭାପତି ଓ ଉପସଭାପତି, ତଥା ଲୋକସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କର ବେତନ ଓ ଭତ୍ତା,

(ଗ) ଏପରି ଋଣ ଭାର ଯାହାର ଦାୟିତ୍ୱ ଭାରତ ସରକାରଙ୍କ ଉପରେ ଥାଏ ଏବଂ ଯହିଁରେ ସୁଧ, ନିକ୍ଷେପ ନିଧି ଭାର ଓ ମୋଚନ ଭାର ତଥା ଋଣ ଗ୍ରହଣ ଓ ଋଣ ସେବା ଏବଂ ଋଣ ମୋଚନ ସଂବଧୀୟ ଅନ୍ୟ ବ୍ୟୟ ଅନ୍ତର୍ଗତ ଅଟେ,

(ଘ) (୲) ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶମାନଙ୍କୁ ବା ସେମାନଙ୍କ ସଂପର୍କରେ ଦେୟ ବେତନ, ଭତ୍ତା ଓ ପେନ୍‌ସନ,

(୰) ଫେଡ଼େରାଲ ନ୍ୟାୟାଳୟର ନ୍ୟାୟାଧୀଶମାନଙ୍କୁ ବା ସେମାନଙ୍କ ସଂପର୍କରେ ଦେୟ ପେନ୍‌ସନ ,

(ୱ) ଯେଉଁ ଉଚ୍ଚ ନ୍ୟାୟାଳୟ ଭାରତ ରାଜ୍ୟ କ୍ଷେତ୍ରର ଅନ୍ତର୍ଗତ କୌଣସି କ୍ଷେତ୍ର ସମ୍ବନ୍ଧରେ ଅଧିକାରିତା ପ୍ରୟୋଗ କରେ ଅଥବା ଯାହା ଏହି ସମ୍ବିଧାନର ପ୍ରାରମ୍ଭ ପୂର୍ବରୁ କୌଣସି ସମୟରେ ଭାରତ ଡ଼ୋମିନିୟନର ରାଜ୍ୟପାଳଙ୍କ ପ୍ରଦେଶର ଅନ୍ତର୍ଗତ କୌଣସି କ୍ଷେତ୍ର ସମ୍ବନ୍ଧରେ ଅଧିକାରିତା ପ୍ରୟୋଗ କରୁଥିଲା ତହିଁର ନ୍ୟାୟାଧୀଶମାନଙ୍କୁ ବା ସେମାନଙ୍କ ସଂପର୍କରେ ଦେୟ ପେନସନ୍,

(ଙ) ଭାରତର କମ୍ପ୍‌ଟ୍ରୋଲର ଓ ଅଡ଼ିଟର ଜେନେରାଲ ବା ତାଙ୍କ ସଂପର୍କରେ ଦେୟ ବେତନ, ଭତ୍ତା ଓ ପେନସନ,

(ଚ) କୌଣସି ନ୍ୟାୟାଳୟ ବା ମଧ୍ୟସ୍ଥ ନ୍ୟାୟାଧିକରଣର ନିର୍ଣ୍ଣୟ, ଡ଼ିକ୍ରୀ ବା ଆଓ୍ୱାର୍ଡ ପୂରଣ କରିବା ନିମିତ୍ତ ଆବଶ୍ୟକ ଧନରାଶି ,

(ଛ) ଏହି ସଂବିଧାନ ଦ୍ୱାରା ଅଥବା ସଂସଦ କର୍ତ୍ତୃକ ବିଧି ଦ୍ୱାରା ଏପରି ଭାରିତ ଅଟେ ବୋଲି ଘୋଷିତ ଅନ୍ୟ ଯେ କୌଣସି ବ୍ୟୟ ।

ପ୍ରାକ୍‌କଳନ ସଂପର୍କରେ ସଂସଦରେ ପ୍ରକ୍ରିୟା ।

୧୧୩ । (୧) ପ୍ରାକ୍‌କଳନ ମଧ୍ୟରୁ ଯେତିକି ଭାରତର ସଞ୍ଚିତ ନିଧି ଉପରେ ଭାରିତ ବ୍ୟୟ ସହିତ ସଂବଂଧିତ ଅଟେ ସେତିକି ସଂସଦର ଭୋଟ ଦାନ ନିମିତ୍ତ ଉପସ୍ଥାପିତ କରାଯିବ ନାହିଁ, କିନ୍ତୁ ଏହି ଖଣ୍ଡର କୌଣସି ବିଷୟ ସଂସଦର କୌଣସି ସଦନରେ ସେହି ପ୍ରାକ୍‌କଳନ ମଧ୍ୟରୁ କୌଣସିଟି ଉପରେ ଆଲୋଚନା କରାଯିବାକୁ ବାଧା ଦେଉଅଛି ବୋଲି ଅର୍ଥ କରାଯିବ ନାହିଁ ।

(୨) ଉକ୍ତ ପ୍ରାକ୍‌କଳନ ମଧ୍ୟରୁ ଯେତିକି ଅନ୍ୟ ବ୍ୟୟ ସଙ୍ଗେ ସଂବଂଧିତ ଅଟେ ସେତିକି ଲୋକସଭାର ସମକ୍ଷରେ ଅନୁଦାନାର୍ଥ ଅଭିଯାଚନ ରୂପେ ଉପସ୍ଥାପିତ କରାଯିବ ତଥା କୌଣସି ଅଭିଯାଚନକୁ ସ୍ୱୀକୃତି ଦେବା ବା ସ୍ୱୀକୃତି ପ୍ରତ୍ୟାଖ୍ୟାନ କରିବା ବା କୌଣସି ଅଭିଯାଚନରେ ବିନିର୍ଦ୍ଦିଷ୍ଟ ପରିମାଣକୁ ହ୍ରାସ କରି ତାହାକୁ ସ୍ୱୀକୃତି ଦେବା ପାଇଁ ଲୋକସଭାର କ୍ଷମତା ରହିବ ।

(୩) ରାଷ୍ଟ୍ରପତିଙ୍କ ସୁପାରିଶ ବିନା କୌଣସି ଅନୁଦାନାର୍ଥ ଅଭିଯାଚନା କରାଯିବ ନାହିଁ ।

ବିନିଯୋଗ ବିଧେୟକ ।

୧୧୪ । (୧) ଲୋକସଭା ଦ୍ୱାରା ଅନୁଚ୍ଛେଦ ୧୧୩ ଅଧୀନରେ ଅନୁଦାନ କରାଯିବା ପରେ ଯଥାଶୀଘ୍ର ଭାରତର ସଞ୍ଚିତ ନିଧିରୁ—

(କ) ଲୋକସଭା ଦ୍ୱାରା ଏହି ପ୍ରକାରେ କରାଯାଇଥିବା ଅନୁଦାନର, ତଥା

(ଖ) ଭାରତର ସଞ୍ଚିତନିଧି ଉପରେ ଭାରିତ ହୋଇଥିବା ଅଥଚ ସଂସଦ ସମକ୍ଷରେ ପୂର୍ବରୁ ଉପସ୍ଥାପିତ କରାଯାଇଥିବା ବିବରଣୀରେ ଦର୍ଶିତ ମୋଟ ପରିମାଣରୁ ଯେ କୌଣସି ଅବସ୍ଥାରେ ମଧ୍ୟ ଅଧିକ ନ ହୋଇଥିବା ବ୍ୟୟର,

ପୂରଣ ନିମିତ୍ତ ଆବଶ୍ୟକ ସମସ୍ତ ଧନର ବିନିଯୋଗ ନିମିତ୍ତ ଏକ ବିଧେୟକ ପୁରଃସ୍ଥାପିତ କରାଯିବ ।

(୨) ଏହି ପ୍ରକାରରେ କରାଯାଇଥିବା କୌଣସି ଅନୁଦାନର ପରିମାଣରେ ଅଦଳ ବଦଳ କରିବାର କିମ୍ବା ଅନୁଦାନର ଲକ୍ଷ୍ୟକୁ ପରିବର୍ତ୍ତନ କରିବାର ଅଥବା ଭାରତର ସଞ୍ଚିତ ନିଧି ଉପରେ ଭାରିତ ବ୍ୟୟର ପରିମାଣରେ ଅଦଳ ବଦଳ କରିବାର ପ୍ରଭାବ ଥିବା କୌଣସି ସଂଶୋଧନ ଏବଂ କୌଣସି ସଂଶୋଧନ ଏପରି କୌଣସି ବିଧେୟକ ଉପରେ ସଂସଦର କୌଣସି ସଦନରେ ପ୍ରସ୍ଥାପିତ କରାଯିବ ନାହିଁ ଏବଂ କୌଣସି ସଂଶୋଧନ ଏହି ଖଣ୍ଡ ଅଧୀନରେ ଅଗ୍ରାହ୍ୟ କି ନୁହେଁ ଏ ବିଷୟରେ ପୀଠାସୀନ ବ୍ୟକ୍ତିଙ୍କର ନିଷ୍ପତ୍ତି ଚୂଡ଼ାନ୍ତ ହେବ ।

(୩) ଅନୁଚ୍ଛେଦ ୧୧୫ ଓ ୧୧୬ ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ଏହି ଅନୁଚ୍ଛେଦର ଉପବନ୍ଧମାନଙ୍କ ଅନୁସାରେ ପାରିତ ବିଧି ଦ୍ୱାରା କରାଯିବା ବିନିଯୋଗ ଅଧୀନରେ ପ୍ରତ୍ୟାହୃତ କରାଯିବା ବ୍ୟତିରେକେ ଭାରତର ସଞ୍ଚିତ ନିଧିରୁ କୌଣସି ଧନ ପ୍ରତ୍ୟାହୃତ କରାଯିବ ନାହିଁ ।

ଅନୁପୂରକ, ଅତିରିକ୍ତ ବା ଅଧିକ ଅନୁଦାନ ।

୧୧୫ । (୧) ଯଦି—

(କ) ଅନୁଚ୍ଛେଦ ୧୧୪ ର ଉପବନ୍ଧମାନଙ୍କ ଅନୁସାରେ ପ୍ରଣୀତ କୌଣସି ବିଧିଦ୍ୱାରା ଚଳିତ ବିତ୍ତୀୟ ବର୍ଷର କୌଣସି ବିଶେଷ ସେବା ନିମିତ୍ତ ବ୍ୟୟ କରାଯିବା ପାଇଁ ପ୍ରାଧିକୃତ ପରିମାଣ ସେହି ବର୍ଷର ପ୍ରୟୋଜନ ନିମିତ୍ତ ଉନପର୍ଯ୍ୟାପ୍ତ ହେବାର ଦେଖାଯାଏ ଅଥବା ଚଳିତ ବର୍ଷର ବାର୍ଷିକ ବିତ୍ତୀୟ ବିବରଣୀରେ ପରିକଳ୍ପିତ ହୋଇ ନଥିବା କୌଣସି ନୂତନ ସେବାରେ ଅନୁପୂରକ ବା ଅତିରିକ୍ତ ବ୍ୟୟ ନିମିତ୍ତ ସେହି ବିତ୍ତୀୟ ବର୍ଷରେ ଆବଶ୍ୟକତା ଜାତ ହୋଇଥାଏ, ଅଥବା

(ଖ) କୌଣସି ବିତ୍ତୀୟ ବର୍ଷ ମଧ୍ୟରେ କୌଣସି ସେବାରେ ସେହି ସେବା ପାଇଁ ସେହି ବର୍ଷ ନିମିତ୍ତ ଅନୁଦାନ କରାଯାଇଥିବା ପରିମାଣରୁ ଅଧିକ ପରିମାଣ ଧନ ବ୍ୟୟ ହୋଇଯାଇଥାଏ, ତେବେ ରାଷ୍ଟ୍ରପତି ଯଥାସ୍ଥିତି ସେହି ବ୍ୟୟର ପ୍ରାକ୍‌କଳିତ ପରିମାଣ ଦର୍ଶାଉଥିବା ଅନ୍ୟ ଏକ ବିବରଣୀ ସଂସଦର ଉଭୟ ସଦନ ସମ୍ମୁଖରେ ଉପସ୍ଥାପିତ କରାଇବେ ବା ଏପରି ଆଧିକ୍ୟ ପାଇଁ ଲୋକସଭାରେ ଅଭିଯାଚନ ଉପସ୍ଥାପିତ କରାଇବେ ।

(୨) ଅନୁଚ୍ଛେଦ ୧୧୨, ୧୧୩ ଓ ୧୧୪ ର ଉପବନ୍ଧମାନ ବାର୍ଷିକ ବିତ୍ତୀୟ ବିବରଣୀ ତଥା ତହିଁରେ ବର୍ଣ୍ଣିତ ବ୍ୟୟ ସମ୍ବନ୍ଧରେ ବା କୌଣସି ଅନୁଦାନାର୍ଥ ଅଭିଯାଚନ ସମ୍ବନ୍ଧରେ ତଥା ସେପରି ବ୍ୟୟ ବା ଅନୁଦାନର ପୂରଣ ପାଇଁ ଭାରତର ସଞ୍ଚିତ ନିଧିରୁ ଧନର ବିନିଯୋଗ ପ୍ରାଧିକୃତ କରିବା ନିମିତ୍ତ ପ୍ରଣୀତ କରାଯିବା ବିଧି ସମ୍ବନ୍ଧରେ ଯେଉଁପରି ପ୍ରଭାବୀ ହୁଏ ଏପରି କୌଣସି ବିବରଣୀ ଏବଂ ବ୍ୟୟ ବା ଏପରି ଅଭିଯାଚନ ସଂପର୍କରେ ତଥା ସେହି ଅଭିଯାଚନ ସଂକ୍ରାନ୍ତ ବ୍ୟୟ ବା ଅନୁଦାନର ପୂରଣ ପାଇଁ ଭାରତର ସଞ୍ଚିତ ନିଧିରୁ ଧନର ବିନିଯୋଗ ପ୍ରାଧିକୃତ କରିବା ନିମିତ୍ତ ପ୍ରଣୀତ କରାଯିବା ବିଧି ସମ୍ବନ୍ଧରେ ସେହିପରି ପ୍ରଭାବୀ ହେବ ।

ଲେଖାନୁଦାନ, ପ୍ରତ୍ୟୟାନୁଦାନ ବା ବ୍ୟତିରିକ୍ତ ଅନୁଦାନ ।

୧୧୬ । (୧) ଏହି ଅଧ୍ୟାୟର ପୂର୍ବଗାମୀ ଉପବନ୍ଧମାନଙ୍କରେ ଯାହାକିଛି ଥିବା ସତ୍ତ୍ୱେ,—

(କ) କୌଣସି ବିତ୍ତୀୟ ବର୍ଷର ଭାଗ ନିମିତ୍ତ ପ୍ରାକ୍‌କଳିତ ବ୍ୟୟ ସଂପର୍କରେ ଅନୁଦାନ ପାଇଁ ଭୋଟ ଦାନ ନିମିତ୍ତ ଅନୁଚ୍ଛେଦ ୧୧୩ରେ ବିହିତ ପ୍ରକ୍ରିୟାର ପୂରଣ ଲମ୍ବିତ ଥିବା ଅବସ୍ଥାରେ ତଥା ସେହି ବ୍ୟୟ ସମ୍ବନ୍ଧରେ ଅନୁଚ୍ଛେଦ ୧୧୪ର ଉପବନ୍ଧମାନଙ୍କ ଅନୁସାରେ ବିଧିର ପାରଣ ଲମ୍ବିତ ଥିବା ଅବସ୍ଥାରେ ସେହି ବ୍ୟୟ ସଂପର୍କରେ କୌଣସି ଅଗ୍ରିମ ଅନୁଦାନ କରିବା ନିମିତ୍ତ,

(ଖ) ଯେବେ କୌଣସି ସେବାର ବିଶାଳତା ବା ଅନିଶ୍ଚିତତା ରୂପ ହେତୁ ବାର୍ଷିକ ବିତ୍ତୀୟ ବିବରଣୀରେ ସାଧାରଣତଃ ଦିଆଯାଉଥିବା ସବିଶେଷ ବର୍ଣ୍ଣନା ଅଭିଯାଚନରେ ଦିଆଯାଇ ପାରୁ ନ ଥାଏ ତେବେ ଭାରତର ବିଭବ ଉପରେ ସେହି ଅପ୍ରତ୍ୟାଶିତ ଅଭିଯାଚନ ପୂରଣ ପାଇଁ ଅନୁଦାନ କରିବା ନିମିତ୍ତ,

(ଗ) କୌଣସି ବିତ୍ତୀୟ ବର୍ଷର ଚଳନ୍ତି ସେବାର ଭାଗ ନ ହୋଇଥିବା ଏକ ବ୍ୟତିରିକ୍ତ ଅନୁଦାନ କରିବା ନିମିତ୍ତ,

ଲୋକସଭାର କ୍ଷମତା ରହିବ, ଏବଂ ଯେଉଁ ସବୁ ପ୍ରୟୋଜନପାଇଁ ଉକ୍ତ ଅନୁଦାନମାନ କରାଯାଇଥାଏ ସେଥି ନିମିତ୍ତ ଭାରତର ସଞ୍ଚିତ ନିଧିରୁ ଧନର ପ୍ରତ୍ୟାହରଣ ବିଧିଦ୍ୱାରା ପ୍ରାଧିକୃତ କରିବା ନିମିତ୍ତ ସଂସଦର କ୍ଷମତା ରହିବ ।

(୨) ଅନୁଚ୍ଛେଦ ୧୧୩ ଓ ୧୧୪ର ଉପବନ୍ଧମାନ ବାର୍ଷିକ ବିତ୍ତୀୟ ବିବରଣୀରେ ବର୍ଣ୍ଣିତ କୌଣସି ବ୍ୟୟ ବାବଦରେ କୌଣସି ଅନୁଦାନ କରାଯିବା ସଂବନ୍ଧରେ ତଥା ସେପରି ବ୍ୟୟରୁ ପୂରଣ ପାଇଁ ଭାରତର ସଞ୍ଚିତ ନିଧିରୁ ଧନର ବିନିଯୋଗ ପ୍ରାଧିକୃତ କରିବା ନିମିତ୍ତ ପ୍ରଣୀତ କରାଯିବା ବିଧି ସଂବନ୍ଧରେ ଯେଉଁପରି ପ୍ରଭାବୀ ହୁଏ ଖଣ୍ଡ (୧) ଅଧୀନରେ କରାଯିବା କୌଣସି ଅନୁଦାନ ସଂବନ୍ଧରେ ତଥା ସେହି ଖଣ୍ଡ ଅଧୀନରେ ପ୍ରଣୀତ କରାଯିବା କୌଣସି ବିଧି ସଂବନ୍ଧରେ ସେହିପରି ପ୍ରଭାବୀ ହେବ ।

ବିତ୍ତୀୟ ବିଧେୟକ ସଂବନ୍ଧରେ ବିଶେଷ ଉପବନ୍ଧ ।

୧୧୭ । (୧) ଅନୁଚ୍ଛେଦ ୧୧୦ର ଖଣ୍ଡ (୧)ର (କ)ଠାରୁ (ଚ) ପର୍ଯ୍ୟନ୍ତ ଉପଖଣ୍ଡମାନଙ୍କରେ ବିନିର୍ଦ୍ଦିଷ୍ଟ ବିଷୟମାନଙ୍କ ମଧ୍ୟରୁ କୌଣସି ବିଷୟ ନିମିତ୍ତ ଉପବନ୍ଧ କରିଥିବା କୌଣସି ବିଧେୟକ ବା ସଂଶୋଧନ ରାଷ୍ଟ୍ରପତିଙ୍କ ସୁପାରିଶ ବିନା ପୁରଃସ୍ଥାପିତ ବା ପ୍ରସ୍ତାବିତ କରାଯିବ ନାହିଁ ଏବଂ ଏପରି ଉପବନ୍ଧ କରିଥିବା ବିଧେୟକ ରାଜ୍ୟସଭାରେ ପୁରଃସ୍ଥାପିତ କରାଯିବ ନାହିଁ

ପରନ୍ତୁ କୌଣସି କରର ହ୍ରାସ କରଣ ବା ଉଚ୍ଛେଦ ନିମିତ୍ତ ଉପବନ୍ଧ କରିଥିବା ସଂଶୋଧନ ପ୍ରସ୍ତାବିତ କରିବା ନିମିତ୍ତ ଏହି ଖଣ୍ଡ ଅଧୀନରେ କୌଣସି ସୁପାରିଶ ଆବଶ୍ୟକ ହେବନାହିଁ ।

(୨) କୌଣସି ବଧେୟକ ବା ସଂଶୋଧନ ଜୋରିମାନା ବା ଅନ୍ୟ ଅର୍ଥ ଦଣ୍ଡର ଆରୋପଣ ନିମିତ୍ତ ବା ଲାଇସେନ୍‌ସ ପାଇଁ ଫିସର ଅଥବା କୃତ ସେବା ପାଇଁ ଫିସର ଅଭିଯାଚନ ବା ସଂଦାୟ ନିମିତ୍ତ ଉପବନ୍ଧ କରିଥିବା କାରଣରୁ ଅଥବା ତାହା କୌଣସି ସ୍ଥାନୀୟ ପ୍ରାଧିକାରୀ ବା ନିକାୟ ଦ୍ୱାରା ସ୍ଥାନୀୟ ପ୍ରୟୋଜନ ନିମିତ୍ତ କୌଣସି କରର ଆରୋପଣ, ଉଚ୍ଛେଦ, ପରିହାର, ପରିବର୍ତ୍ତନ ବା ବିନିୟମନ ନିମିତ୍ତ ଉପବନ୍ଧ କରିଥିବା କାରଣରୁ ପୂର୍ବୋକ୍ତ ବିଷୟମାନଙ୍କ ମଧ୍ୟରୁ କୌଣସି ବିଷୟ ନିମିତ୍ତ ଉପବନ୍ଧ କରୁଅଛି ବୋଲି ବିବେଚିତ ହେବନାହିଁ ।

(୩) ଯେଉଁ ବିଧେୟକକୁ ଅଧିନିୟମିତ କରାଗଲେ ଓ ପ୍ରବର୍ତ୍ତିତ କରାଗଲେ ଭାରତର ସଞ୍ଚିତନିଧିରୁ ବ୍ୟୟ କରିବାକୁ ପଡ଼ିବ ରାଷ୍ଟ୍ରପତି ସେପରି ବିଧେୟକର ବିଚାର ନିମିତ୍ତ ସଂସଦର ସଦନକୁ ସୁପାରିଶ ନକଲେ ସଦନ ଦ୍ୱାରା ତାହା ପାରିତ ହେବନାହିଁ ।

## ପ୍ରକ୍ରିୟା ସାଧାରଣତଃ

ପ୍ରକ୍ରିୟାର ନିୟମ ।

୧୧୮ । (୧) ସଂସଦର ପ୍ରତ୍ୟେକ ସଦନ, ଏହି ସଂବିଧାନର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, ନିଜର ପ୍ରକ୍ରିୟାକୁ ତଥା ନିଜର କାର୍ଯ୍ୟ ସଞ୍ଚାଳନକୁ ବିନିୟମିତ କରିବା ନିମିତ୍ତ ନିୟମାବଳୀ ପ୍ରଣୟନ କରିପାରିବ ।

(୨) ଯେଉଁ ପର୍ଯ୍ୟନ୍ତ ଖଣ୍ଡ (୧) ଅଧୀନରେ ନିୟମ ପ୍ରଣୀତ ନ ହୋଇଛି ସେ ପର୍ଯ୍ୟନ୍ତ ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତ ଡୋମିନିୟନର ବିଧାନମଣ୍ଡଳ ସଂପର୍କରେ ପ୍ରବୃତ୍ତ ରହିଥିବା ପ୍ରକ୍ରିୟାର ନିୟମ ଏବଂ ସ୍ଥାୟୀ ଆଦେଶମାନ, ଯଥାସ୍ଥିତି, ରାଜ୍ୟ ସଭାର ସଭାପତି ବା ଲୋକସଭାର ଅଧ୍ୟକ୍ଷଙ୍କ ଦ୍ୱାରା ତହିଁରେ କରାଯାଇଥିବା ରୂପାନ୍ତର ଓ ଅନୁକୂଳନର ବଶବର୍ତ୍ତୀ ରହି ସଂସଦ ସମ୍ବନ୍ଧରେ ପ୍ରଭାବୀ ହେବ ।

(୩) ରାଜ୍ୟ ସଭାର ସଭାପତି ଓ ଲୋକସଭାର ଅଧ୍ୟକ୍ଷଙ୍କ ସହ ପରାମର୍ଶ କରିବା ପରେ ରାଷ୍ଟ୍ରପତି ଉଭୟ ସଦନର ସଂଯୁକ୍ତ ବୈଠକ ସମ୍ବନ୍ଧୀୟ ଏବଂ ସେମାନଙ୍କ ମଧ୍ୟରେ ପରସ୍ପର ସଂଚାର ସମ୍ବନ୍ଧୀୟ ପ୍ରକ୍ରିୟାର ନିୟମ ପ୍ରଣୟନ କରି ପାରିବେ ।

(୪) ଉଭୟ ସଦନର ସଂଯୁକ୍ତ ବୈଠକରେ ଲୋକସଭାର ଅଧ୍ୟକ୍ଷ ବା ତାଙ୍କର ଅନୁପସ୍ଥିତିରେ ଖଣ୍ଡ (୩) ଅଧୀନରେ ପ୍ରଣୀତ ପ୍ରକ୍ରିୟାର ନିୟମ ଅନୁସାରେ ନିର୍ଦ୍ଧାରିତ ହେବା ବ୍ୟକ୍ତି ପୀଠାସୀନ ହେବେ ।

ସଂସଦରେ ବିତ୍ତୀୟ କାର୍ଯ୍ୟ ସମ୍ବନ୍ଧୀ ପ୍ରକ୍ରିୟାର ବିଧିଦ୍ୱାରା ବିନିୟମନ ।

୧୧୯ । ବିତ୍ତୀୟ କାର୍ଯ୍ୟକୁ ଯଥା ସମୟରେ ସମାପ୍ତ କରିବା ପ୍ରୟୋଜନାର୍ଥ ସଂସଦ କୌଣସି ବିତ୍ତୀୟ ବିଷୟ ସମ୍ବନ୍ଧରେ ଅଥବା ଭାରତର ସଞ୍ଚିତ ନିଧିରୁ ଧନ ବିନିଯୋଗ ନିମିତ୍ତ କୌଣସି ବିଧେୟକ ସମ୍ବନ୍ଧରେ ସଂସଦର ପ୍ରତ୍ୟେକ ସଦନର ପ୍ରକ୍ରିୟା ଓ ତହିଁରେ କାର୍ଯ୍ୟର ସଞ୍ଚାଳନକୁ ବିଧି ଦ୍ୱାରା ବିନିୟମିତ କରିପାରିବ ଏବଂ ଯଦି ଓ ଯେତେଦୂର ପର୍ଯ୍ୟନ୍ତ ଏପରି ପ୍ରଣୀତ କୌଣସି ବିଧିର କୌଣସି ଉପବନ୍ଧ ଅନୁଚ୍ଛେଦ ୧୧୮ର ଖଣ୍ଡ (୧) ଅଧୀନରେ ସଂସଦର କୌଣସି ସଦନ ଦ୍ୱାରା ପ୍ରଣୀତ ନିୟମ ସହିତ କିମ୍ବା ସେହି ଅନୁଚ୍ଛେଦର ଖଣ୍ଡ (୨) ଅଧୀନରେ ସଂସଦ ସମ୍ବନ୍ଧରେ ପ୍ରଭାବୀ ହୋଇଥିବା କୌଣସି ନିୟମ ବା ସ୍ଥାୟୀ ଆଦେଶ ସହିତ ଅସଙ୍ଗତ ହେଉଥାଏ ତେବେ ଓ ସେତେଦୂର ପର୍ଯ୍ୟନ୍ତ ସେହି ଉପବନ୍ଧ ଅଭିଭାବୀ ହେବ ।

ସଂସଦରେ ପ୍ରଯୋଗ କରଯିବା ଭଷା ।

୧୨୦ । (୧) ଭାଗ ୧୭ରେ ଯାହା କିଛି ଥିବା ସତ୍ତ୍ୱେ, ଅନୁଚ୍ଛେଦ ୩୪୮ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, ସଂସଦର କାର୍ଯ୍ୟ ହିନ୍ଦୀରେ ଅଥବା ଇଂରାଜୀରେ ନିର୍ବାହିତ ହେବ :

ପରନ୍ତୁ, ଯଥାସ୍ଥିତି, ରାଜ୍ୟ ସଭାର ସଭାପତି ବା ଲୋକ ସଭାର ଅଧ୍ୟକ୍ଷ ବା ଏହି ରୂପେ କାର୍ଯ୍ୟ କରୁଥିବା ବ୍ୟକ୍ତି ହିନ୍ଦୀରେ ବା ଇଂରାଜୀରେ ନିଜକୁ ପର୍ଯ୍ୟାପ୍ତ ରୂପେ ଅଭିବ୍ୟକ୍ତ କରିପାରୁ ନ ଥିବା ସଦସ୍ୟଙ୍କୁ ନିଜର ମାତୃଭାଷାରେ ସଦନରେ ଭାଷଣ ଦେବା ପାଇଁ ଅନୁମତି ଦେଇ ପାରିବେ ।

(୨) ସଂସଦ ବିଧି ଦ୍ୱାରା ଉପବନ୍ଧ ନ କଲେ, ଏହି ସଂବିଧାନର ପ୍ରାରମ୍ଭରୁ ପନ୍ଦର ବର୍ଷ କାଳାବଧିର ଅବସାନ ପରେ ଏହି ଅନୁଚ୍ଛେଦ ଏପରି ପ୍ରଭାବୀ ହେବ ସତେ ଯେପରି ତହିଁରୁ "ଅଥବା ଇଂରାଜୀରେ" ଶବ୍ଦମାନ ଲୋପ କରାଯାଇଅଛି ।

ସଂସଦରେ ଆଲୋଚନା ଉପରେ ନିର୍ବନ୍ଧନ ।

୧୨୧ । ଏଥିପରେ ଉପବଂଧିତ ରୀତିରେ ଉଚ୍ଚତମ ନ୍ୟାୟାଳୟ ବା ଉଚ୍ଚନ୍ୟାୟାଳୟର କୌଣସି ନ୍ୟାୟାଧୀଶଙ୍କୁ ଦୂରୀକୃତ କରିବା ନିମିତ୍ତ ପ୍ରାର୍ଥନା କରି ରାଷ୍ଟ୍ରପତିଙ୍କ ସମକ୍ଷରେ ଏକ ସମାବେଦନ ଉପସ୍ଥାପିତ କରିବାର ପ୍ରସ୍ତାବ ଉପରେ ଆଲୋଚନା ବ୍ୟତିରେକେ ନିଜର କର୍ତ୍ତବ୍ୟ ପାଳନରେ ଏପରି କୌଣସି ନ୍ୟାୟାଧୀଶଙ୍କର ଆଚରଣ ସଂପର୍କରେ ସଂସଦରେ କୌଣସି ଆଲୋଚନା କରାଯିବ ନାହିଁ ।

ନ୍ୟାୟାଳୟ ସଂସଦର କାର୍ଯ୍ୟବାହୀର ଜାଞ୍ଚ କରିବ ନାହିଁ ।

୧୨୨ । (୧) ପ୍ରକ୍ରିୟାର କୌଣସି ଅଭିକଥିତ ଅନିୟମିତତା ହେତୁ ସଂସଦର କୌଣସି କାର୍ଯ୍ୟବାହୀରେ ବୈଧତା ବିଷୟରେ କୌଣସି ଆପତ୍ତି କରାଯିବ ନାହିଁ ।

(୨) ସଂସଦର ଯେଉଁ ଅଫିସର ବା ସଦସ୍ୟଙ୍କଠାରେ ଏହି ସଂବିଧାନ ଦ୍ୱାରା ବା ଅଧୀନରେ ସଂସଦରେ ପ୍ରକ୍ରିୟାକୁ ବା କାର୍ଯ୍ୟ ସଞ୍ଚାଳନକୁ ବିନିୟମିତ କରିବାର କିମ୍ବା ସଂସଦରେ ଶୃଙ୍ଖଳା ରକ୍ଷା କରିବାର କ୍ଷମତା ନିହିତ ହୋଇଥିବ ସେ ସେହି କ୍ଷମତାମାନ ପ୍ରୟୋଗ କରିବା ସଂପର୍କରେ କୌଣସି ନ୍ୟାୟାଳୟର ଅଧିକାରିତାର ବଶବର୍ତ୍ତୀ ହେବେନାହିଁ ।

## ଅଧ୍ୟାୟ ୩--ରାଷ୍ଟ୍ରପତିଙ୍କ ବିଧାୟିନୀ କ୍ଷମତା

ସଂସଦର ବିଶ୍ରାନ୍ତିକାଳରେ ରାଷ୍ଟ୍ରପତିଙ୍କର ଅର୍ଡିନାନ୍‌ସ ପ୍ରଖ୍ୟାପନ କ୍ଷମତା ।

୧୨୩ । (୧) ସଂସଦର ଉଭୟ ସଦନ ସତ୍ରାବସ୍ଥାରେ ଥିବା ସମୟ ଭିନ୍ନ ଅନ୍ୟ କୌଣସି ସମୟରେ ଯଦି ରାଷ୍ଟ୍ରପତିଙ୍କ ହୃଦବୋଧ ହୁଏ ଯେ ଏପରି ପରିସ୍ଥିତି ବିଦ୍ୟମାନ ଯହିଁରେ କି ତାଙ୍କ ଦ୍ୱାରା ତୁରନ୍ତ କାର୍ଯ୍ୟ କରାଯିବା ଆବଶ୍ୟକ ଅଟେ, ତେବେ ପରିସ୍ଥିତିର ଆବଶ୍ୟକତା ଅନୁସାରେ ସେ ଅର୍ଡିନାନ୍‌ସ ପ୍ରଖ୍ୟାପନ କରିପାରିବେ ।

(୨) ଏହି ଅନୁଚ୍ଛେଦ ଅଧୀନରେ ପ୍ରଖ୍ୟାପିତ ଅର୍ଡିନାନ୍‌ସର ବଳ ଓ ପ୍ରଭାବ ସଂସଦର ଅଧିନିୟମର ଅନୁରୂପ ହେବ, କିନ୍ତୁ ଏପରି ପ୍ରତ୍ୟେକ ଅର୍ଡିନାନ୍‌ସ—

(କ) ସଂସଦର ଉଭୟ ସଦନ ସମକ୍ଷରେ ଉପସ୍ଥାପିତ କରାଯିବ, ଏବଂ ସଂସଦ ପୁନଃସମବେତ ହେବାଠାରୁ ଛଅ ସପ୍ତାହର ଅବସାନ ପରେ ବା ଯଦି ସେହି କାଳାବଧିର ଅବସାନ ପୂର୍ବରୁ ଉଭୟ ସଦନ ତାହାକୁ ଅନୁମୋଦନ ନ କରି ସଙ୍କଳ୍ପମାନ ପାରିତ କରନ୍ତି ତେବେ ସେହି ସଙ୍କଳ୍ପମାନଙ୍କ ମଧ୍ୟରୁ ଦ୍ୱିତୀୟଟିର ପାରଣ ହେଲେ ପ୍ରବର୍ତ୍ତିତ ରହିବାରୁ ବିରତ ହେବ ; ଏବଂ

(ଖ) ରାଷ୍ଟ୍ରପତିଙ୍କ ଦ୍ୱାରା ଯେ କୌଣସି ସମୟରେ ପ୍ରତ୍ୟାହୃତ ହୋଇପାରିବ ।

ସ୍ପଷ୍ଟୀକରଣ—ଯେବେ ସଂସଦର ସଦନମାନ ଭିନ୍ନ ଭିନ୍ନ ତାରିଖରେ ପୁନଃସମବେତ ହେବା ନିମିତ୍ତ ଆହୂତ ହୁଅନ୍ତି ତେବେ ଏହି ଖଣ୍ଡର ପ୍ରୟୋଜନ ନିମିତ୍ତ ଛଅମାସର କାଳାବଧିର ଗଣନା ସେହି ତାରିଖମାନଙ୍କ ମଧ୍ୟରୁ ପଛ ତାରିଖରୁ କରାଯିବ ।

(୩) ଯଦି ଏବଂ ଯେଉଁ ପର୍ଯ୍ୟନ୍ତ ଏହି ଅନୁଚ୍ଛେଦ ଅଧୀନରେ ଅର୍ଡିନାନ୍‌ସ ଏପରି କୌଣସି ଉପବନ୍ଧ କରେ ଯାହାକି ଅଧିନିୟମିତି କରିବା ନିମିତ୍ତ ସଂସଦ ଏହି ସମ୍ବିଧାନ ଅଧୀନରେ ସକ୍ଷମ ହୋଇ ନ ଥାନ୍ତା ତେବେ ତାହା ସେହି ପର୍ଯ୍ୟନ୍ତ ଶୂନ୍ୟ ହେବ ।

# ଅଧ୍ୟାୟ୪-ସଂଘର ନ୍ୟାୟପାଳିକା

ଉଚ୍ଚତମ ନ୍ୟାୟାଳୟର ସ୍ଥାପନା ଓ ଗଠନ ।

୧୨୪ । (୧) ଭାରତର ଏକ ଉଚ୍ଚତମ ନ୍ୟାୟାଳୟ ରହିବ ଯାହାକି ଭାରତର ମୁଖ୍ୟ ନ୍ୟାୟାଧିପତି ଏବଂ ଯେ ପର୍ଯ୍ୟନ୍ତ ସଂସଦ ବିଧି ଦ୍ୱାରା ଅଧିକ ସଂଖ୍ୟା ବିହିତ ନ କରିଛି ସେ ପର୍ଯ୍ୟନ୍ତ ସାତରୁ ଅନଧିକ ଅନ୍ୟ ନ୍ୟାୟାଧୀଶଙ୍କୁ ନେଇ ଗଠିତ ହେବ ।

(୨) ରାଷ୍ଟ୍ରପତି ଉଚ୍ଚତମ ନ୍ୟାୟାଳୟର ତଥା ରାଜ୍ୟମାନଙ୍କର ଉଚ୍ଚ ନ୍ୟାୟାଳୟର ଯେଉଁ ନ୍ୟାୟାଧୀଶମାନଙ୍କ ସହ ଏହି ଉଦ୍ଦେଶ୍ୟରେ ପରାମର୍ଶ କରିବା ଆବଶ୍ୟକ ମନେ କରନ୍ତି ସେମାନଙ୍କ ସଙ୍ଗେ ପରାମର୍ଶ କରିବା ପରେ ସ୍ୱାକ୍ଷରିତ ଓ ମୁଦ୍ରାଙ୍କିତ ଅଧିପତ୍ର ଦ୍ୱାରା ଉଚ୍ଚତମ ନ୍ୟାୟାଳୟର ପ୍ରତ୍ୟେକ ନ୍ୟାୟାଧୀଶଙ୍କୁ ନିଯୁକ୍ତ କରିବେ ଏବଂ ସେହି ନ୍ୟାୟାଧୀଶ ତାଙ୍କୁ ପଞ୍ଚଷଠୀ ବର୍ଷ ବୟସ ହେବା ପର୍ଯ୍ୟନ୍ତ ପଦ ଧାରଣ କରିବେ :

ପରନ୍ତୁ ମୁଖ୍ୟ ନ୍ୟାୟାଧିପତିଙ୍କ ଭିନ୍ନ ଅନ୍ୟ ନ୍ୟାୟାଧୀଶଙ୍କର ନିଯୁକ୍ତି ବିଷୟରେ ଭାରତର ମୁଖ୍ୟ ନ୍ୟାୟାଧିପତିଙ୍କ ସହ ସର୍ବଦା ପରାମର୍ଶ କରାଯିବ

ଅଧିକନ୍ତୁ—

(କ) କୌଣସି ନ୍ୟାୟାଧୀଶ ରାଷ୍ଟ୍ରପତିଙ୍କୁ ସମ୍ବୋଧିତ ସ୍ୱହସ୍ତାଙ୍କିତ ଲେଖଦ୍ୱାରା ନିଜର ପଦତ୍ୟାଗ କରିପାରିବେ ;

(ଖ) ଖଣ୍ଡ (୪) ରେ ଉପବନ୍ଧିତ ରୀତି ଅନୁସାରେ କୌଣସି ନ୍ୟାୟାଧୀଶଙ୍କୁ ତାଙ୍କ ପଦରୁ ଦୂରୀକୃତ କରାଯାଇ ପାରିବ ।

(୨ କ) ସଂସଦ ବିଧି ଦ୍ୱାରା ଯେପରି ଉପବନ୍ଧିତ କରେ ସେପରି ପ୍ରାଧିକାରୀ ଦ୍ୱାରା ଏବଂ ସେପରି ରୀତିରେ ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶଙ୍କର ବୟସ ନିର୍ଦ୍ଧାରିତ କରାଯିବ ।

(୩) କୌଣସି ବ୍ୟକ୍ତି ଭାରତର ନାଗରିକ ନ ହୋଇଥିଲେ, ଏବଂ—

(କ) ଅନ୍ୟୂନ ପାଞ୍ଚ ବର୍ଷ ଧରି କୌଣସି ଉଚ୍ଚ ନ୍ୟାୟାଳୟର ବା କ୍ରମାଗତ ଭାବେ ଏପରି ଦୁଇ ବା ଅଧିକ ନ୍ୟାୟାଳୟର ନ୍ୟାୟାଧୀଶ ନ ରହିଥିଲେ, ଅଥବା

(ଖ) ଅନ୍ୟୂନ ଦଶବର୍ଷ ଧରି କୌଣସି ଉଚ୍ଚ ନ୍ୟାୟାଳୟରେ ବା କ୍ରମାଗତ ଭାବେ ଏପରି ଦୁଇ ବା ଅଧିକ ନ୍ୟାୟାଳୟରେ ଆଡ଼ଭୋକେଟ ନ ହୋଇଥିଲେ, ଅଥବା

(ଗ) ରାଷ୍ଟ୍ରପତିଙ୍କ ବିବେଚନାରେ ଜଣେ ବିଶିଷ୍ଟ ବିଧିଜ୍ଞ ନ ହୋଇଥିଲେ,

ଉଚ୍ଚତମ ନ୍ୟାୟାଧୀଶରୂପେ ନିଯୁକ୍ତ ହେବା ନିମିତ୍ତଯୋଗ୍ୟ ହେବେ ନାହିଁ ।

ସ୍ପଷ୍ଟୀ କରଣ ୧ :—ଏହି ଖଣ୍ଡରେ "ଉଚ୍ଚ ନ୍ୟାୟାଳୟ" ବୋଲନ୍ତେ ଭାରତ ରାଜ୍ୟକ୍ଷେତ୍ରର କୌଣସି ଭାଗରେ ଅଧିକାରିତା ପ୍ରୟୋଗ କରୁଥିବା ବା ଏହି ସଂବିଧାନର ପ୍ରାରମ୍ଭ ପୂର୍ବରୁ କୌଣସି ସମୟରେ ଅଧିକାରିତା ପ୍ରୟୋଗ କରୁଥିବା ଉଚ୍ଚନ୍ୟାୟାଳୟକୁ ବୁଝାଇବ ।

ସ୍ପଷ୍ଟୀ କରଣ ୨ :—ଏହି ଖଣ୍ଡର ପ୍ରୟୋଜନ ନିମିତ୍ତ କୌଣସି ବ୍ୟକ୍ତି ଆଡ଼ଭୋକେଟ ଭାବେ ରହିଥିବା କାଳାବଧିର ସଂଗଣନା କଲାବେଳେ ସେ ଆଡ଼ଭୋକେଟ ହେବାପରେ ଯେଉଁ କାଳାବଧି ପର୍ଯ୍ୟନ୍ତ ଜିଲ୍ଲା ନ୍ୟାୟାଧୀଶ ପଦରୁ ନ୍ୟୂନ ହୋଇ ନ ଥିବା ନ୍ୟାୟିକ ପଦ ଧାରଣ କରିଥିବେ ସେହି କାଳାବଧି ଅନ୍ତର୍ଭୁକ୍ତ ହେବ ।

(୪) ପ୍ରମାଣିତ ଅସଦାଚରଣ ବା ଅସାମର୍ଥ୍ୟ କାରଣରୁ ଉଚ୍ଚତମ ନ୍ୟାୟାଳୟର କୌଣସି ନ୍ୟାୟାଧୀଶଙ୍କୁ ଦୂରୀକରଣ ନିମିତ୍ତ ସଂସଦର ପ୍ରତ୍ୟେକ ସଦନର ମୋଟ ସଦସ୍ୟ ସଂଖ୍ୟାର ବହୁମତ ଦ୍ୱାରା ତଥା ସେହି ସଦନର ଉପସ୍ଥିତ ଓ ଭୋଟ ଦାନକାରୀ ସଦସ୍ୟମାନଙ୍କ ମଧ୍ୟରୁ ଅନ୍ୟୂନ ଦୁଇ ତୃତୀୟାଂଶ

ବହୁମତ ଦ୍ୱାରା ସମର୍ଥିତ ହୋଇଥିବା ଏକ ସମାବେଦନ ସଂସଦର ପ୍ରତ୍ୟେକ ସଦନ ଦ୍ୱାରା ସେହି ସତ୍ର ମଧ୍ୟରେ ରାଷ୍ଟ୍ରପତିଙ୍କ ସମକ୍ଷରେ ଉପସ୍ଥାପିତ କରାଯିବା ପରେ ରାଷ୍ଟ୍ରପତିଙ୍କ ଦ୍ୱାରା ପାରିତ ଏକ ଆଦେଶ ଭିନ୍ନ ଅନ୍ୟଥା ସେହି ନ୍ୟାୟାଧୀଶଙ୍କୁ ତାଙ୍କ ପଦରୁ ଦୂରୀକୃତ କରାଯିବ ନାହିଁ ।

(୫) ଖଣ୍ଡ (୪) ଅଧୀନରେ କୌଣସି ସମାବେଦନର ଉପସ୍ଥାପନ ତଥା କୌଣସି ନ୍ୟାୟାଧୀଶଙ୍କର ଅସଦାଚରଣ ବା ଅସାମର୍ଥ୍ୟର ଅନୁସଂଧାନ ଓ ପ୍ରମାଣର ପ୍ରକ୍ରିୟା ସଂସଦ ବିଧି ଦ୍ୱାରା ବିନିୟମିତ କରିପାରିବ ।

(୬) ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶ ହେବା ପାଇଁ ନିଯୁକ୍ତ ପ୍ରତ୍ୟେକ ବ୍ୟକ୍ତି ନିଜର ପଦ ଗ୍ରହଣ କରିବା ପୂର୍ବରୁ ରାଷ୍ଟ୍ରପତି ବା ତାଙ୍କ ଦ୍ୱାରା ସେଥିନିମିତ୍ତ ନିଯୁକ୍ତ ବ୍ୟକ୍ତିଙ୍କ ସମକ୍ଷରେ ତୃତୀୟ ଅନୁସୂଚୀରେ ଏହି ପ୍ରୟୋଜନାର୍ଥ ପ୍ରଦତ୍ତ ପ୍ରପତ୍ର ଅନୁସାରେ ଶପଥ ବା ପ୍ରତିଜ୍ଞାନ କରିବେ ଓ ତହିଁରେ ସ୍ୱାକ୍ଷର କରିବେ ।

(୭) ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶ ପଦ ଧାରଣ କରିଥିବା କୌଣସି ବ୍ୟକ୍ତି ଭାରତର ରାଜ୍ୟକ୍ଷେତ୍ର ମଧ୍ୟସ୍ଥ କୌଣସି ନ୍ୟାୟାଳୟର ବା କୌଣସି ପ୍ରାଧିକାରୀ ସମକ୍ଷରେ ଓକିଲତି କାର୍ଯ୍ୟ କରିବେ ନାହିଁ ।

ନ୍ୟାୟାଧୀଶଙ୍କର ବେତନ ଆଦି ।

୧୨୫ । (୧) ଉଚ୍ଚତମ ନ୍ୟାୟାଧୀଶମାନଙ୍କୁ ଦ୍ୱିତୀୟ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହୋଇଥିବା ମତେ ବେତନ ଦିଆଯିବ ।

(୨) ପ୍ରତ୍ୟେକ ନ୍ୟାୟାଧୀଶ ସଂସଦ ପ୍ରଣୀତ ବିଧିଦ୍ୱାରା ବା ଅଧୀନରେ ଥରକୁ ଥର ଯେପରି ନିର୍ଦ୍ଧାରିତ ହେବ ସେପରି ବିଶେଷାଧିକାର ଓ ଭତ୍ତା ନିମିତ୍ତ ଏବଂ ଅନୁପସ୍ଥିତି ଛୁଟି ଓ ପେନ୍‌ସନ ସଂପର୍କରେ ସେପରି ଅଧିକାର ନିମିତ୍ତ ହକ୍‌ଦାର ହେବେ, ଏବଂ ଯେଉଁ ପର୍ଯ୍ୟନ୍ତ ଏପରି ନିର୍ଦ୍ଧାରିତ ନ ହୋଇଛି ସେପର୍ଯ୍ୟନ୍ତ ଦ୍ୱିତୀୟ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହୋଇଥିବା ମତେ ବିଶେଷାଧିକାର, ଭତ୍ତା ଓ ଅଧିକାର ନିମିତ୍ତ ହକ୍‌ଦାର ହେବେ :

ପରନ୍ତୁ କୌଣସି ନ୍ୟାୟାଧୀଶଙ୍କର ନିଯୁକ୍ତି ପରେ ତାଙ୍କର ବିଶେଷାଧିକାର ବା ଭତ୍ତା ବା ଅନୁପସ୍ଥିତି ଛୁଟି ଅଥବା ପେନ୍‌ସନ ସଂପର୍କରେ ତାଙ୍କର ଅଧିକାରମାନଙ୍କରେ ତାଙ୍କ ପ୍ରତି ଅନନୁକୂଳ ହେଉଥିବା କୌଣସି ଅଦଳ ବଦଳ କରାଯିବନାହିଁ ।

କାର୍ଯ୍ୟକାରୀ ମୁଖ୍ୟ ନ୍ୟାୟାଧିପତିଙ୍କ ନିଯୁକ୍ତି ।

୧୨୬ । ଯେବେ ଭାରତର ମୁଖ୍ୟ ନ୍ୟାୟାଧିପତି ପଦ ରିକ୍ତ ହୁଏ ବା ଯେବେ ମୁଖ୍ୟ ନ୍ୟାୟାଧୀପତି ଅନୁପସ୍ଥିତ ବା ଅନ୍ୟ କାରଣରୁ ନିଜ ପଦର କର୍ତ୍ତବ୍ୟ ପାଳନ କରିବାରେ ଅସମର୍ଥ ହୁଅନ୍ତି ତେବେ ନ୍ୟାୟାଳୟର ଅନ୍ୟ ନ୍ୟାୟାଧୀଶଙ୍କ ମଧ୍ୟରୁ ଯାହାଂକୁ ରାଷ୍ଟ୍ରପତି ସେହି ପ୍ରୟୋଜନାର୍ଥ ନିଯୁକ୍ତ କରିବେ ତାଙ୍କ ଦ୍ୱାରା ସେହି ପଦର କର୍ତ୍ତବ୍ୟମାନ ପାଳନ କରାଯିବ ।

ଆଡହକ ନ୍ୟାୟାଧୀଶଙ୍କର ନିଯୁକ୍ତି ।

୧୨୭ । (୧) ଯଦି କୌଣସି ସମୟରେ ଉଚ୍ଚତମ ନ୍ୟାୟାଳୟର କୌଣସି ସତ୍ର ବସାଇବା ବା ଚାଲୁରଖିବା ନିମିତ୍ତ ସେହି ନ୍ୟାୟାଳୟର ନ୍ୟାୟାଧୀଶମାନଙ୍କର କୋରମ ହେଉ ନ ଥାଏ ତେବେ ଭାରତର ମୁଖ୍ୟ ନ୍ୟାୟାଧିପତି ରାଷ୍ଟ୍ରପତିଙ୍କ ପୂର୍ବ ସମ୍ମତି କ୍ରମେ ତଥା ସଂପୃକ୍ତ ଉଚ୍ଚନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତିଙ୍କ ସଙ୍ଗେ ପରାମର୍ଶ କରିବା ପରେ ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶ ରୂପେ ନିଯୁକ୍ତ ହେବାପାଇଁ ଯଥାରୀତି ଯୋଗ୍ୟ ହୋଇଥିବା ଉଚ୍ଚ ନ୍ୟାୟାଳୟର ଏକ ନ୍ୟାୟାଧୀଶଙ୍କୁ, ଯେ କି ଭାରତର ମୁଖ୍ୟ ନ୍ୟାୟାଧିପତିଙ୍କ ଦ୍ୱାରା ନାମୋଦ୍ଦିଷ୍ଟ କରାଯିବେ, ଯଥା ଆବଶ୍ୟକ କାଳାବଧି ନିମିତ୍ତ ନ୍ୟାୟାଳୟର ବୈଠକମାନଙ୍କରେ ଆଡ୍‌ହକ ନ୍ୟାୟାଧୀଶରୂପେ ଉପସ୍ଥିତ ରହିବା ପାଇଁ ଲିଖିତ ଭାବେ ଅନୁରୋଧ କରିପାରିବେ ।

(୨) ଏପରି ନାମୋଦ୍ଦିଷ୍ଟ ହୋଇଥିବା ନ୍ୟାୟାଧୀଶଙ୍କର କର୍ତ୍ତବ୍ୟ ହେବ ଯେ ସେ ନିଜ ପଦର ଅନ୍ୟାନ୍ୟ କର୍ତ୍ତବ୍ୟ ଉପରେ ଅଗ୍ରାଧିକାର ଦେଇ ଯେଉଁ ସମୟରେ ତଥା ଯେଉଁ କାଳାବଧି ନିମିତ୍ତ ତାଙ୍କ ଉପସ୍ଥିତି ଆବଶ୍ୟକ ହୁଏ ସେହି ସମୟରେ ତଥା ସେହି କାଳାବଧି ନିମିତ୍ତ ଉଚ୍ଚତମ ନ୍ୟାୟାଳୟର ବୈଠକମାନଙ୍କରେ ଉପସ୍ଥିତ ରହିବେ, ଏବଂ ସେପରି ଉପସ୍ଥିତ ରହିଥିବା ସମୟରେ ସେ ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶଙ୍କର ସମସ୍ତ ଅଧିକାରିତା, କ୍ଷମତା ଓ ବିଶେଷାଧିକାର ମାନ ପ୍ରାପ୍ତ ହେବେ, ତଥା ସେ ଉକ୍ତ ନ୍ୟାୟାଧୀଶଙ୍କର କର୍ତ୍ତବ୍ୟମାନ ନିର୍ବହନ କରିବେ ।

ସେବା ନିବୃତ୍ତ ନ୍ୟାୟାଧୀଶ-ମାନଙ୍କର ଉଚ୍ଚତମ ନ୍ୟାୟାଳୟର ବୈଠକରେ ଉପସ୍ଥିତି ।

୧୨୮ । ଏହି ଅଧ୍ୟାୟରେ ଯାହାକିଛି ଥିବାସତ୍ତ୍ୱେ, ଭାରତର ମୁଖ୍ୟ ନ୍ୟାୟାଧିପତି ଯେ କୌଣସି ସମୟରେ ରାଷ୍ଟ୍ରପତିଙ୍କ ପୂର୍ବ ସମ୍ମତି କ୍ରମେ ଉଚ୍ଚତମ ନ୍ୟାୟାଳୟର ବା ଫେଡ଼େରାଲ ନ୍ୟାୟାଳୟର ନ୍ୟାୟାଧୀଶ ପଦ ଧାରଣ କରିଥିବା ଅଥବା ଉଚ୍ଚନ୍ୟାୟାଳୟର ନ୍ୟାୟାଧୀଶ ପଦ ଧାରଣ କରିଥିବା ତଥା ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶ ରୂପେ ନିଯୁକ୍ତ ହେବା ନିମିତ୍ତ ଯଥାରୀତି ଯୋଗ୍ୟ ହୋଇଥିବା କୌଣସି ବ୍ୟକ୍ତିଙ୍କୁ ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶ ରୂପେ ଆସୀନ ହେବା ବା କାର୍ଯ୍ୟ କରିବା ନିମିତ୍ତ ଅନୁରୋଧ କରିପାରିବେ ଏବଂ ଏହି ରୂପେ ଅନୁରୁଦ୍ଧ ପ୍ରତ୍ୟେକ ବ୍ୟକ୍ତି ସେପରି ଆସୀନ ହେବା ଓ କାର୍ଯ୍ୟ କରିବା ସମୟରେ ରାଷ୍ଟ୍ରପତି ଆଦେଶ ଦ୍ୱାରା ନିର୍ଦ୍ଧାରିତ କରିବା ମତେ ଭତ୍ତା ପାଇବା ନିମିତ୍ତ ହକ୍‌ଦାର ହେବେ ଏବଂ ତାଙ୍କର ସେହି ନ୍ୟାୟାଳୟର ନ୍ୟାୟାଧୀଶଙ୍କର ଥିବା ସମସ୍ତ ଅଧିକାରିତା, କ୍ଷମତା ଓ ବିଶେଷାଧିକାର ରହିବ, ମାତ୍ର ସେ ଅନ୍ୟଥା ସେହି ନ୍ୟାୟାଳୟର ନ୍ୟାୟାଧୀଶ ରୂପେ ବିବେଚିତ ହେବେନାହିଁ :

ପରନ୍ତୁ ପୂର୍ବୋକ୍ତ କୌଣସି ବ୍ୟକ୍ତି ସେହି ନ୍ୟାୟାଳୟର ନ୍ୟାୟାଧୀଶ ରୂପେ ଆସୀନ ହେବା ଓ କାର୍ଯ୍ୟ କରିବା ନିମିତ୍ତ ସମ୍ମତି ନ ଦେଲେ, ଏହି ଅନୁଚ୍ଛେଦର କୌଣସି ବିଷୟ ତାଙ୍କୁ ସେପରି କରିବା ନିମିତ୍ତ ଆବଶ୍ୟକ କରୁଅଛି ବୋଲି ବିବେଚିତ ହେବ ନାହିଁ ।

ଉଚ୍ଚତମ ନ୍ୟାୟାଳୟ ଅଭିଲେଖ ନ୍ୟାୟାଳୟ ହେବ ।

୧୨୯ । ଉଚ୍ଚତମ ନ୍ୟାୟାଳୟ ଅଭିଲେଖ ନ୍ୟାୟାଳୟ ହେବ ଏବଂ ନିଜ ପ୍ରତି ଅବମାନନା ନିମିତ୍ତ ଦଣ୍ଡ ଦେବାର କ୍ଷମତା ସମେତ ସେପରି ନ୍ୟାୟାଳୟର ସମସ୍ତ କ୍ଷମତା ତାହାର ରହିବ ।

ଉଚ୍ଚତମ ନ୍ୟାୟାଳୟର ସ୍ଥାନ ।

୧୩୦ । ଉଚ୍ଚତମ ନ୍ୟାୟାଳୟ ଦିଲ୍ଲୀରେ ବସିବ ବା ଭାରତର ମୁଖ୍ୟ ନ୍ୟାୟାଧିପତି ରାଷ୍ଟ୍ରପତିଙ୍କ ଅନୁମୋଦନ କ୍ରମେ ବିଭିନ୍ନ ସମୟରେ ଯେଉଁ ସ୍ଥାନ ବା ସ୍ଥାନମାନ ସ୍ଥିର କରିବେ ସେଠାରେ ବସିବ ।

ଉଚ୍ଚତମ ନ୍ୟାୟାଳୟର ଆରମ୍ଭିକ ଅଧିକାରିତା ।

୧୩୧ । ଏହି ସଂବିଧାନର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି :—

(କ) ଭାରତ ସରକାର ଏବଂ ଏକ ରାଜ୍ୟ ବା ଅଧିକ ରାଜ୍ୟ ମଧ୍ୟରେ, ଅଥବା

(ଖ) ଏକ ପକ୍ଷରେ ଭାରତ ସରକାର ଓ କୌଣସି ରାଜ୍ୟ ବା ରାଜ୍ୟମାନ ଏବଂ ଅପର ପକ୍ଷରେ ଏକ ବା ଅଧିକ ରାଜ୍ୟମାନଙ୍କ ମଧ୍ୟରେ, ଅଥବା

(ଗ) ଦୁଇ ବା ଅଧିକ ରାଜ୍ୟମଧ୍ୟରେ,

କୌଣସି ବିବାଦରେ ଯଦି ଓ ଯେପର୍ଯ୍ୟନ୍ତ (ବିଧିଗତ ବା ତଥ୍ୟଗତ ହେଉ) ଏପରି କୌଣସି ପ୍ରଶ୍ନ ଅନ୍ତର୍ଗ୍ରସ୍ତ ହୋଇଥାଏ ଯହିଁ ଉପରେ କି କୌଣସି ବୈଧ ଅଧିକାରର ଅସ୍ତିତ୍ୱ ବା ବିସ୍ତାର ନିର୍ଭର କରୁଥାଏ ତେବେ ଓ ସେ ପର୍ଯ୍ୟନ୍ତ ଅନ୍ୟ ନ୍ୟାୟାଳୟକୁ ଅପବର୍ଜିତ କରି ଉଚ୍ଚତମ ନ୍ୟାୟାଳୟର ଆରମ୍ଭିକ ଅଧିକାରିତା ରହିବ :

ପରନ୍ତୁ କୌଣସି ସନ୍ଧି, କରାର, ପ୍ରସଂବିଦା, ବଚନବନ୍ଧ, ସନନ୍ଦ ବା ସମରୂପ ଅନ୍ୟ ଲିଖତ ଯାହାକି ଏହି ସଂବିଧାନର ପ୍ରାରମ୍ଭ ପୂର୍ବରୁ କରାଯାଇଥାଏ ବା ନିଷ୍ପାଦିତ ହୋଇଥାଏ ତଥା ଏପରି ପ୍ରାରମ୍ଭ ପରେ ପ୍ରବୃତ୍ତ ରହିଥାଏ ତହିଁରୁ ଜାତ ବିବାଦ ଉପରେ ଅଥବା ଯାହା ଉପବନ୍ଧ କରିଥାଏ ଯେ ଏପରି ଅଧିକାରିତାର ବିସ୍ତାର ଏପରି ବିବାଦ ଉପରେ ରହିବ ନାହିଁ ତହିଁରୁ ଜାତ ବିବାଦ ଉପରେ ଉକ୍ତ ଅଧିକାରିତାର ବିସ୍ତାର ରହିବ ନାହିଁ ।

୧୩୧କ । × × × ×

କେତେକ ସ୍ଥଳରେ ଉଚ୍ଚ ନ୍ୟାୟାଳୟରୁ ହେବା ଅପିଲରେ ଉଚ୍ଚତମ ନ୍ୟାୟାଳୟର ଅପିଲୀୟ ଅଧିକାରିତା ।

୧୩୨ । (୧) ଯଦି କୌଣସି ମାମଲାରେ ଏହି ସଂବିଧାନର ନିର୍ବଚନ ବିଷୟକ କୌଣସି ସାରବାନ ବିଧିଗତ ପ୍ରଶ୍ନ ନିହିତ ଅଟେ ବୋଲି ଉଚ୍ଚନ୍ୟାୟାଳୟ ଅନୁଚ୍ଛେଦ ୧୩୪କ ଅଧୀନରେ ପ୍ରମାଣ ପତ୍ର ଦିଏ ତେବେ ଭାରତ ରାଜ୍ୟକ୍ଷେତ୍ରର କୌଣସି ଉଚ୍ଚନ୍ୟାୟାଳୟର ହୁଏତ ସିଭିଲ, କ୍ରିମିନାଲ ବା ଅନ୍ୟ କାର୍ଯ୍ୟବାହୀରେ ଦିଆ-ଯାଇଥିବା ନିର୍ଣ୍ଣୟ, ଡ଼ିକ୍ରୀ ବା ଚୂଡ଼ାନ୍ତ ଆଦେଶ ଉପରେ ଅପିଲ ଉଚ୍ଚତମ ନ୍ୟାୟାଳୟରେ ହୋଇ ପାରିବ ।

(୨) × × × ×

(୩) ଯେଉଁଠାରେ ଏପରି ପ୍ରମାଣପତ୍ର ଦିଆଯାଇଥାଏ ସେଠାରେ ମାମଲାର ଯେ କୌଣସି ପକ୍ଷକାର ପୂର୍ବୋକ୍ତ କୌଣସି ପ୍ରଶ୍ନ ଅଶୁଦ୍ଧ ଭାବେ ନିର୍ଣ୍ଣୀତ ହୋଇଥିବା ଆଧାର ଉପରେ ଉଚ୍ଚତମ ନ୍ୟାୟାଳୟରେ ଅପିଲ କରିପାରିବେ ।

**ସ୍ପଷ୍ଟୀକରଣ**—ଏହି ଅନୁଚ୍ଛେଦର ପ୍ରୟୋଜନାର୍ଥ "ଚୂଡ଼ାନ୍ତ ଆଦେଶ" ପଦାବଳୀରେ କୌଣସି ବିବାଦ୍ୟକର ନିଷ୍ପତ୍ତି କରୁଥିବା ଏପରି ଆଦେଶ ଅନ୍ତର୍ଗତ ଅଟେ ଯାହାକି ଅପିଲକାରୀ ସପକ୍ଷରେ ନିଷ୍ପତ୍ତି ହେଲେ ସେହି ମାମଲାର ଚୂଡ଼ାନ୍ତ ଫଏସଲା ନିମିତ୍ତ ପର୍ଯ୍ୟାପ୍ତ ହେବ ।

ଉଚ୍ଚ ନ୍ୟାୟାଳୟମାନଙ୍କରୁ ସିଭିଲ ବିଷୟକ ଅପିଲରେ ଉଚ୍ଚତମ ନ୍ୟାୟାଳୟର ଅପିଲୀୟ ଅଧିକାରିତା ।

୧୩୩ । (୧) ଭାରତ ରାଜ୍ୟକ୍ଷେତ୍ରସ୍ଥ କୌଣସି ଉଚ୍ଚ ନ୍ୟାୟାଳୟର କୌଣସି ସିଭିଲ କାର୍ଯ୍ୟବାହୀରେ କୌଣସି ନିର୍ଣ୍ଣୟ, ଡ଼ିକ୍ରୀ ବା ଚୂଡ଼ାନ୍ତ ଆଦେଶ ବିରୁଦ୍ଧରେ ଉଚ୍ଚତମ ନ୍ୟାୟାଳୟରେ ଅପିଲ କରାଯାଇ ପାରିବ, ଯଦି ସେହି ଉଚ୍ଚନ୍ୟାୟାଳୟ ଅନୁଚ୍ଛେଦ ୧୩୪କ ଅଧୀନରେ ପ୍ରମାଣପତ୍ର ଦିଏ ଯେ—

(କ) ଉକ୍ତ ମାମଲାରେ ସାଧାରଣ ଗୁରୁତ୍ୱ ସମ୍ପନ୍ନ କୌଣସି ସାରବାନ ବିଧିଗତ ପ୍ରଶ୍ନ ନିହିତ ଅଛି; ଏବଂ

(ଖ) ଉଚ୍ଚନ୍ୟାୟାଳୟର ମତରେ ଉକ୍ତ ପ୍ରଶ୍ନର ନିଷ୍ପତ୍ତି ଉଚ୍ଚତମ ନ୍ୟାୟାଳୟ ଦ୍ୱାରା କରାଯିବା ଆବଶ୍ୟକ ।

(୨) ଅନୁଚ୍ଛେଦ ୧୩୨ରେ ଯେକୌଣସି ବିଷୟ ଥିବା ସତ୍ତ୍ୱେ, ଖଣ୍ଡ (୧) ଅଧୀନରେ ଉଚ୍ଚତମ ନ୍ୟାୟାଳୟରେ ଅପିଲକାରୀ କୌଣସି ପକ୍ଷକାର ଏପରି ଅପିଲର କାରଣମାନଙ୍କ ମଧ୍ୟରେ ଏହା ମଧ୍ୟ ଏକ କାରଣ ରୂପେ ଦର୍ଶାଇପାରେ ଯେ ଏହି ସଂବିଧାନର ନିର୍ବଚନ ବିଷୟକ ଏକ ସାରବାନ ବିଧିଗତ ପ୍ରଶ୍ନ ଅଶୁଦ୍ଧ ଭାବରେ ନିଷ୍ପତ୍ତି କରାଯାଇଅଛି ।

(୩) ଏହି ଅନୁଚ୍ଛେଦରେ ଯାହା କିଛି ଥିବା ସତ୍ତ୍ୱେ, ସଂସଦ ବିଧିଦ୍ୱାରା ଅନ୍ୟଥା ଉପବନ୍ଧ ନ କଲେ କୌଣସି ଉଚ୍ଚନ୍ୟାୟାଳୟର ଜଣେ ନ୍ୟାୟାଧୀଶଙ୍କର ନିର୍ଣ୍ଣୟ, ଡ଼ିକ୍ରୀ ବା ଚୂଡ଼ାନ୍ତ ଆଦେଶ ଉପରେ ଉଚ୍ଚତମ ନ୍ୟାୟାଳୟରେ ଅପିଲ ହେବ ନାହିଁ ।

କ୍ରିମିନାଲ ବିଷୟ ସମ୍ବନ୍ଧରେ ଉଚ୍ଚତମ ନ୍ୟାୟାଳୟର ଅପିଲୀୟ ଅଧିକାରିତା ।

୧୩୪ । (୧) ଭାରତର ରାଜ୍ୟକ୍ଷେତ୍ରରେ କୌଣସି ଉଚ୍ଚନ୍ୟାୟାଳୟର କୌଣସି କ୍ରିମିନାଲ କାର୍ଯ୍ୟବାହୀରେ କୌଣସି ନିର୍ଣ୍ଣୟ, ଚୂଡ଼ାନ୍ତ ଆଦେଶ ବା ଦଣ୍ଡାଦେଶ ଉପରେ ଉଚ୍ଚତମ ନ୍ୟାୟାଳୟରେ ଅପିଲ କରାଯାଇ ପାରିବ ଯଦି, ଉଚ୍ଚ ନ୍ୟାୟାଳୟ—

(କ) ଅପିଲରେ କୌଣସି ଅଭିଯୁକ୍ତ ବ୍ୟକ୍ତିର ଦୋଷମୁକ୍ତି ଆଦେଶକୁ ଓଲଟାଇ ଦେଇଥାଏ ତଥା ତାହାକୁ ମୃତ୍ୟୁ ଦଣ୍ଡାଦେଶ ଦେଇଥାଏ; ଅଥବା

(ଖ) ନିଜର ପ୍ରାଧିକାର ଅଧୀନ କୌଣସି ନ୍ୟାୟାଳୟରୁ କୌଣସି ମାମଲାକୁ ନିଜ ସମକ୍ଷରେ ବିଚାରଣ ନିମିତ୍ତ ପ୍ରତ୍ୟାହାର କରି ନେଇଥାଏ ଏବଂ ଏପରି ବିଚାରଣରେ ଅଭିଯୁକ୍ତ ବ୍ୟକ୍ତିକୁ ସିଦ୍ଧ ଦୋଷ କରିଥାଏ ତଥା ମୃତ୍ୟୁ ଦଣ୍ଡାଦେଶ ଦେଇଥାଏ ; ଅଥବା

(ଗ) ଅନୁଚ୍ଛେଦ ୧୩୪ କ ଅଧୀନରେ ପ୍ରମାଣ ପତ୍ର ଦେଇଥାଏ ଯେ ମାମଲା ଉଚ୍ଚତମ ନ୍ୟାୟାଳୟରେ ଅପିଲ ପାଇଁ ଉପଯୁକ୍ତ ଅଟେ :

ପରନ୍ତୁ ଉପଖଣ୍ଡ (ଗ) ଅଧୀନରେ ଅପିଲ ଅନୁଚ୍ଛେଦ ୧୪୫ର ଖଣ୍ଡ (୧) ଅଧୀନରେ ସେଥିନିମିତ୍ତ କରାଯିବା ଉପବନ୍ଧର ତଥା ଉଚ୍ଚନ୍ୟାୟାଳୟ ଯେପରି ସର୍ତ୍ତ ଉପସ୍ଥାପନ ବା ଆବଶ୍ୟକ କରେ ତହିଁର ବଶବର୍ତ୍ତୀ ରହି କରାଯିବ ।

(୨) ସଂସଦ ବିଧିଦ୍ୱାରା ଉଚ୍ଚତମ ନ୍ୟାୟାଳୟକୁ ଏପରି ଅଧିକ କ୍ଷମତା ପ୍ରଦାନ କରିପାରିବ ଯେ ତାହା ସେହି ବିଧିରେ ବିନିର୍ଦ୍ଦିଷ୍ଟ ସର୍ତ୍ତ ଓ ପରିସୀମାର ବଶବର୍ତ୍ତୀ ରହି ଭାରତ ରାଜ୍ୟକ୍ଷେତ୍ରର କୌଣସି ଉଚ୍ଚ ନ୍ୟାୟାଳୟର କ୍ରିମିନାଲ କାର୍ଯ୍ୟବାହୀରେ ଦିଆଯାଇଥିବା କୌଣସି ନିର୍ଣ୍ଣୟ, ଚୂଡ଼ାନ୍ତ ଆଦେଶ ବା ଦଣ୍ଡାଦେଶ ଉପରେ ଅପିଲ ଗ୍ରହଣ କରିବ ଓ ଶୁଣିବ ।

ଉଚ୍ଚତମ ନ୍ୟାୟାଳୟକୁ ଅପିଲ ପାଇଁ ପ୍ରମାଣ ପତ୍ର ।

୧୩୪ କ । ଅନୁଚ୍ଛେଦ ୧୩୨ର ଖଣ୍ଡ (୧) ରେ ବା ଅନୁଚ୍ଛେଦ ୧୩୩ର ଖଣ୍ଡ (୧)ରେ ବା ଅନୁଚ୍ଛେଦ ୧୩୪ର ଖଣ୍ଡ (୧) ରେ ନିର୍ଦ୍ଦେଶିତ କୌଣସି ନିର୍ଣ୍ଣୟ, ଡ଼ିକ୍ରୀ, ଚୂଡ଼ାନ୍ତ ଆଦେଶ ବା ଦଣ୍ଡାଦେଶ ଦେବାରେ ବା କରିବାରେ ପ୍ରତ୍ୟେକ ଉଚ୍ଚନ୍ୟାୟାଳୟ,

(କ) ସେପରି କରିବାକୁ ଯଦି ଉଚିତ ମନେକରେ ତେବେ ତାହା ସ୍ୱଇଚ୍ଛାରେ, ଓ

(ଖ) ସେପରି ନିର୍ଣ୍ଣୟ, ଡ଼ିକ୍ରୀ, ଚୂଡ଼ାନ୍ତ ଆଦେଶ ବା ଦଣ୍ଡାଦେଶ ଦିଆଯିବା ବା କରାଯିବାର ଅବ୍ୟବହିତ ପରେ କ୍ଷୁବ୍ଧ ପକ୍ଷଙ୍କ ଦ୍ୱାରା ବା ତରଫରୁ ଯଦି କୌଣସି ମୌଖିକ ଦରଖାସ୍ତ କରାଯାଏ ତେବେ,

ଅନୁଚ୍ଛେଦ ୧୩୨ର ଖଣ୍ଡ (୧) ବା ଅନୁଚ୍ଛେଦ ୧୩୩ର ଖଣ୍ଡ (୧) ବା, ଯଥାସ୍ଥିତି, ଅନୁଚ୍ଛେଦ ୧୩୪ର ଖଣ୍ଡ (୧) ର ଉପଖଣ୍ଡ (ଗ) ରେ ନିର୍ଦ୍ଦେଶିତ ପ୍ରକୃତିର ଏକ ପ୍ରମାଣ ପତ୍ର ସେହି ମାମଲା ସଂକ୍ରାନ୍ତରେ ଦିଆଯାଇ ପାରିବ କି ନାହିଁ, ଏହି ପ୍ରଶ୍ନଟିକୁ ଅବଧାରଣ କରିବେ ।

ବିଦ୍ୟମାନ ବିଧି ଅଧୀନରେ ଫେଡେରଲ ନ୍ୟାୟାଳୟର ଅଧିକାରିତା ଓ କ୍ଷମତା ଉଚ୍ଚତମ ନ୍ୟାୟାଳୟ ଦ୍ୱାରା ପ୍ରୟୋଗ କରଯାଇ ପାରିବା ।

୧୩୫ । ଅନୁଚ୍ଛେଦ ୧୩୩ ବା ୧୩୪ର ଉପବନ୍ଧମାନ ଲାଗୁ ନ ହେଉଥିବା ବିଷୟମାନଙ୍କରେ ଯଦି ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଫେଡ଼େରାଲ ନ୍ୟାୟାଳୟ ଦ୍ୱାରା ଅଧିକାରିତା ଓ କ୍ଷମତା ପ୍ରୟୋଗ କରାଯାଇ ପାରୁଥିଲା ତେବେ ଯେ ପର୍ଯ୍ୟନ୍ତ ସଂସଦ ବିଧି ଦ୍ୱାରା ଅନ୍ୟଥା ଉପବନ୍ଧ ନ କରିଛି ସେ ପର୍ଯ୍ୟନ୍ତ ସେହି ବିଷୟମାନଙ୍କରେ ଉଚ୍ଚତମ ନ୍ୟାୟାଳୟର ମଧ୍ୟ ଅଧିକାରିତା ଓ କ୍ଷମତା ରହିବ ।

ଅପିଲ କରିବା ନିମିତ୍ତ ଉଚ୍ଚତମ ନ୍ୟାୟାଳୟର ବିଶେଷ ଅନୁମତି ।

୧୩୬ । (୧) ଏହି ଅଧ୍ୟାୟରେ ଯାହା କିଛି ଥିବା ସତ୍ତ୍ୱେ, ଉଚ୍ଚତମ ନ୍ୟାୟାଳୟ ସ୍ୱବିବେକରେ ଭାରତ ରାଜ୍ୟକ୍ଷେତ୍ରର କୌଣସି ନ୍ୟାୟାଳୟ ବା ଟ୍ରିବ୍ୟୁନାଲ ଦ୍ୱାରା କୌଣସି ବାଦରେ ବା ବିଷୟରେ ପାରିତ ବା ପ୍ରଦତ୍ତ କୌଣସି ନିର୍ଣ୍ଣୟ, ଡ଼ିକ୍ରୀ, ନିର୍ଦ୍ଧାରଣ, ଦଣ୍ଡାଦେଶ ବା ଆଦେଶ ଉପରେ ଅପିଲ କରିବା ନିମିତ୍ତ ବିଶେଷ ଅନୁମତି ଦେଇ ପାରିବ ।

(୨) ଖଣ୍ଡ (୧)ର କୌଣସି ବିଷୟ ସଶସ୍ତ୍ର ବାହିନୀ ସମ୍ବନ୍ଧୀୟ କୌଣସି ବିଧି ଦ୍ୱାରା ବା ଅଧୀନରେ ଗଠିତ କୌଣସି ନ୍ୟାୟାଳୟ ବା ଟ୍ରିବ୍ୟୁନାଲ ଦ୍ୱାରା ପାରିତ ବା ପ୍ରଦତ୍ତ କୌଣସି ନିର୍ଦ୍ଧାରଣ, ଦଣ୍ଡାଦେଶ ବା ଆଦେଶ ପ୍ରତି ଲାଗୁ ହେବ ନାହିଁ ।

ଉଚ୍ଚତମ ନ୍ୟାୟାଳୟ ଦ୍ୱାରା ନିର୍ଣ୍ଣୟ ବା ଆଦେଶର ପୁନର୍ବିଲୋକନ ।

୧୩୭ । ସଂସଦ ଦ୍ୱାରା ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କର ବା ଅନୁଚ୍ଛେଦ ୧୪୫ ଅଧୀନରେ ପ୍ରଣୀତ କୌଣସି ନିୟମମାନଙ୍କର ବଶବର୍ତ୍ତୀ ରହି ଉଚ୍ଚତମ ନ୍ୟାୟାଳୟର ନିଜ ଦ୍ୱାରା ଘୋଷିତ ନିର୍ଣ୍ଣୟ ବା ପ୍ରଦତ୍ତ ଆଦେଶର ପୁନର୍ବିଲୋକନ କରିବାର କ୍ଷମତା ରହିବ ।

ଉଚ୍ଚତମ ନ୍ୟାୟାଳୟର ଅଧିକାରିତାର ପରିବର୍ଦ୍ଧନ ।

୧୩୮ । (୧) ସଂଘ ସୂଚୀର ବିଷୟମାନଙ୍କ ମଧ୍ୟରୁ କୌଣସି ବିଷୟ ସମ୍ପର୍କରେ ସଂସଦ ବିଧି ଦ୍ୱାରା ଯେପରି ପ୍ରଦାନ କରେ, ଉଚ୍ଚତମ ନ୍ୟାୟାଳୟର ସେପରି ଅଧିକ ଅଧିକାରିତା ଓ କ୍ଷମତା ରହିବ ।

(୨) ଯଦି ସଂସଦ ବିଧିଦ୍ୱାରା ଉପବନ୍ଧ କରେ ଯେ ଉଚ୍ଚତମ ନ୍ୟାୟାଳୟ ଦ୍ୱାରା ସେପରି ଅଧିକାରିତା ଓ କ୍ଷମତା ପ୍ରୟୋଗ କରାଯିବ ତେବେ ଭାରତ ସରକାର ଓ କୌଣସି ରାଜ୍ୟ ସରକାର ବିଶେଷ କରାର ଦ୍ୱାରା ଉଚ୍ଚତମ ନ୍ୟାୟାଳୟକୁ କୌଣସି ବିଷୟ ସଂପର୍କରେ ଯେଉଁ ଅଧିକ ଅଧିକାରିତା ଓ କ୍ଷମତା ପ୍ରଦାନ କରିବେ ଉଚ୍ଚତମ ନ୍ୟାୟାଳୟର ସେହି ଅଧିକାରିତା ଓ କ୍ଷମତା ରହିବ ।

ଉଚ୍ଚତମ ନ୍ୟାୟାଳୟକୁ କେତେକ ରିଟ ବାହାର କରିବାର କ୍ଷମତା ପ୍ରଦାନ ।

୧୩୯ । ଅନୁଚ୍ଛେଦ ୩୨ର ଖଣ୍ଡ (୨) ରେ ବର୍ଣ୍ଣିତ ପ୍ରୟୋଜନ ଭିନ୍ନ ଅନ୍ୟ କୌଣସି ପ୍ରୟୋଜନ ନିମିତ୍ତ ନିଦେଶ, ଆଦେଶ ଅଥବା ହେବିୟସକର୍ପସ, ମାଣ୍ଡାମସ, ପ୍ରୋହିବିସନ, କ୍ୱୋଓ୍ୱାରଣ୍ଟୋ, ସରସିଓରେରାଇ ପ୍ରକାରର ରିଟ ବା ତହିଁ ମଧ୍ୟରୁ କୌଣସି ରିଟ ବାହାର କରିବାର କ୍ଷମତା ସଂସଦ ବିଧି ଦ୍ୱାରା ଉଚ୍ଚତମ ନ୍ୟାୟାଳୟକୁ ପ୍ରଦାନ କରି ପାରିବ ।

କେତେକ ମାମଲାର ଅନ୍ତରଣ ।

୧୩୯ କ । (୧) ଯେଉଁ ସ୍ଥଳେ ଏକାଭଳି ବା ସାରତଃ ଏକାଭଳି ବିଧିଗତ ପ୍ରଶ୍ନ ଜଡ଼ିତ ଥିବା ମାମଲା-ଗୁଡ଼ିକ ଉଚ୍ଚତମ ନ୍ୟାୟାଳୟ ଓ ଏକ ବା ଅଧିକ ଉଚ୍ଚନ୍ୟାୟାଳୟ ସମକ୍ଷରେ ବା ଦୁଇ ବା ଅଧିକ ଉଚ୍ଚନ୍ୟାୟାଳୟ ସମକ୍ଷରେ ଲମ୍ବିତ ଥାଏ ଏବଂ ଉଚ୍ଚତମ ନ୍ୟାୟାଳୟ ସ୍ୱଇଚ୍ଛାରେ ବା ଭାରତର ଆଟର୍ଣ୍ଣି ଜେନେରାଲଙ୍କ ଦ୍ୱାରା ବା

ସେପରି କୌଣସି ମାମଲାର କୌଣସି ପକ୍ଷଙ୍କ ଦ୍ୱାରା କରାଯାଇଥିବା ଦରଖାସ୍ତ ଉପରେ ସନ୍ତୁଷ୍ଟ ହୁଏ ଯେ ସେପରି ପ୍ରଶ୍ନମାନ ବ୍ୟାପକ ମହତ୍ତ୍ୱ ପୂର୍ଣ୍ଣ ସାରବାନ ପ୍ରଶ୍ନ ଅଟେ ସେହିସ୍ଥଳେ ଉଚ୍ଚତମ ନ୍ୟାୟାଳୟ, ସେହି ଉଚ୍ଚ-ନ୍ୟାୟାଳୟ ବା ଉଚ୍ଚ ନ୍ୟାୟାଳୟଗୁଡ଼ିକ ସମକ୍ଷରେ ଲମ୍ବିତ ଥିବା ମାମଲା ବା ମାମଲାଗୁଡ଼ିକୁ ସେଠାରୁ କାଢ଼ିନେଇ ପାରିବ ଓ ସ୍ୱୟଂ ସମସ୍ତ ମାମଲା ଫଏସଲା କରି ପାରିବ :

ପରନ୍ତୁ ଉଚ୍ଚତମ ନ୍ୟାୟାଳୟ ଉକ୍ତ ବିଧିଗତ ପ୍ରଶ୍ନ ଅବଧାରଣ କରିବା ପରେ ଯେଉଁ ଉଚ୍ଚ ନ୍ୟାୟାଳୟରୁ ସେ ମାମଲାକୁ କାଢ଼ି ନିଆଯାଇଥାଏ ସେହି ଉଚ୍ଚ ନ୍ୟାୟାଳୟକୁ ସେପରି ପ୍ରଶ୍ନଗୁଡ଼ିକ ଉପରେ ତାହାର ନିର୍ଣ୍ଣୟର ଏକକିତା ନକଲ ସହିତ ସେଭଳି କାଢ଼ି ନିଆଯାଇଥିବା କୌଣସି ମାମଲାକୁ ଫେରସ୍ତ କରିପାରିବ, ଏବଂ ଉଚ୍ଚନ୍ୟାୟାଳୟ ତାହା ପାଇବା ପରେ ସେପରି ନିର୍ଣ୍ଣୟ ଅନୁରୂପେ ସେହି ମାମଲା ଫଏସଲା କରିବାକୁ ଅଗ୍ରସର ହେବ ।

(୨) ଉଚ୍ଚତମ ନ୍ୟାୟାଳୟ ନ୍ୟାୟ ଦୃଷ୍ଟିରୁ ଏପରି କରାଯିବା ସମୀଚୀନ ମନେ କଲେ କୌଣସି ଉଚ୍ଚ ନ୍ୟାୟାଳୟ ସମକ୍ଷରେ ଲମ୍ବିତ କୌଣସି ମାମଲା, ଅପିଲ ବା ଅନ୍ୟ କାର୍ଯ୍ୟବାହୀକୁ ଅନ୍ୟ କୌଣସି ଉଚ୍ଚ ନ୍ୟାୟାଳୟକୁ ଅନ୍ତରିତ କରି ପାରିବ ।

ଉଚ୍ଚତମ ନ୍ୟାୟାଳୟର ଆନୁଷଙ୍ଗିକ କ୍ଷମତାମାନ ।

୧୪୦ । ଏହି ସଂବିଧାନ ଦ୍ୱାରା ବା ଅଧୀନରେ ପ୍ରଦତ୍ତ ଅଧିକାରିତାକୁ ଅଧିକ ଫଳପ୍ରଦ ରୂପେ ପ୍ରୟୋଗ କରିବାରେ ଉଚ୍ଚତମ ନ୍ୟାୟାଳୟକୁ ସକ୍ଷମ କରିବାର ପ୍ରୟୋଜନ ନିମିତ୍ତ ଯେପରି ଆବଶ୍ୟକ ବା ବାଞ୍ଛନୀୟ ପ୍ରତୀତ ହୁଏ ଏହି ସଂବିଧାନର ଉପବନ୍ଧମାନଙ୍କ ମଧ୍ୟରୁ କାହାରି ସହ ଅସଙ୍ଗତ ହେଉ ନଥିବା ସେପରି ଅନୁପୂରକ କ୍ଷମତାମାନ ଉଚ୍ଚତମ ନ୍ୟାୟାଳୟକୁ ପ୍ରଦାନ କରିବା ନିମିତ୍ତ ସଂସଦ ବିଧି ଦ୍ୱାରା ଉପବନ୍ଧ କରି ପାରିବ ।

ଉଚ୍ଚତମ ନ୍ୟାୟାଳୟ ଦ୍ୱାରା ଘୋଷିତ ବିଧି ସମସ୍ତ ନ୍ୟାୟାଳୟ ଉପରେ ବାଧ୍ୟକର ହେବ ।

୧୪୧ । ଉଚ୍ଚତମ ନ୍ୟାୟାଳୟ ଦ୍ୱାରା ଘୋଷିତ ବିଧି ଭାରତ ରାଜ୍ୟକ୍ଷେତ୍ର ମଧ୍ୟରେ ସମସ୍ତ ନ୍ୟାୟାଳୟ ଉପରେ ବାଧ୍ୟକର ହେବ ।

ଉଚ୍ଚତମ ନ୍ୟାୟାଳୟର ଡ଼ିକ୍ରୀ ଓ ଆଦେଶ ମାନଙ୍କର ପ୍ରବର୍ତ୍ତନ ତଥା ପ୍ରକଟନ ଆଦି ନିମିତ୍ତ ଆଦେଶ ।

୧୪୨ । (୧) ଉଚ୍ଚତମ ନ୍ୟାୟାଳୟ ନିଜର ଅଧିକାରିତା ପ୍ରୟୋଗ କରି ନିଜ ସମକ୍ଷରେ ଲମ୍ବିତ ଥିବା ଯେ କୌଣସି ବାଦ ବା ବିଷୟରେ ପୂର୍ଣ୍ଣ ନ୍ୟାୟ କରିବା ନିମିତ୍ତ ଯଥା ଆବଶ୍ୟକ ଡ଼ିକ୍ରୀ ବା ଆଦେଶ ଦେଇପାରିବ ଏବଂ ଏପରି ଦିଆଯାଇଥିବା ଡ଼ିକ୍ରୀ ବା ଆଦେଶ ସଂସଦ ଦ୍ୱାରା ପ୍ରଣୀତ ବିଧି ଦ୍ୱାରା ବା ଅଧୀନରେ ଯଥା ବିହିତ ରୀତିରେ ଏବଂ ଯେପର୍ଯ୍ୟନ୍ତ ସେଥି ନିମିତ୍ତ ଏପରି ଉପବନ୍ଧ କରା ନଯାଇଛି ସେ ପର୍ଯ୍ୟନ୍ତ ରାଷ୍ଟ୍ରପତି ଆଦେଶ ଦ୍ୱାରା ଯେପରି ବିହିତ କରନ୍ତି ସେପରି ରୀତିରେ ଭାରତ ରାଜ୍ୟକ୍ଷେତ୍ରର ସର୍ବତ୍ର ପ୍ରବର୍ତ୍ତନୀୟ ହେବ ।

(୨) ସଂସଦ ଦ୍ୱାରା ସେଥିନିମିତ୍ତ ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି କୌଣସି ବ୍ୟକ୍ତିଙ୍କୁ ହାଜର କରାଇବା, କୌଣସି ଦସ୍ତାବିଜକୁ ପ୍ରକଟ ବା ପେଶ କରାଇବା ଅଥବା ନିଜର କୌଣସି ଅବମାନନାର ଅନୁସନ୍ଧାନ କରାଇବା ବା ଦଣ୍ଡଦେବାର ପ୍ରୟୋଜନରେ ଯେ କୌଣସି ଆଦେଶ ଦେବାର ସମସ୍ତ ଓ ପ୍ରତ୍ୟେକ କ୍ଷମତା ଉଚ୍ଚତମ ନ୍ୟାୟାଳୟର ଭାରତର ସମସ୍ତ ରାଜ୍ୟକ୍ଷେତ୍ର ଉପରେ ରହିବ ।

ରାଷ୍ଟ୍ରପତିଙ୍କର ଉଚ୍ଚତମ ନ୍ୟାୟାଳୟ ସହିତ ପରାମର୍ଶ କରିବାର କ୍ଷମତା ।

୧୪୩ । (୧) ଯଦି କୌଣସି ସମୟରେ ରାଷ୍ଟ୍ରପତିଙ୍କୁ ପ୍ରତୀତ ହୁଏ ଯେ ବିଧି ବା ତଥ୍ୟ ସମ୍ବନ୍ଧୀୟ ଏପରି କୌଣସି ପ୍ରଶ୍ନ ଉପୁଜିବାର ସଂଭାବନା ଅଛି ଯାହାକି ଏପରି ପ୍ରକୃତିର ତଥା ଏପରି ସାଧାରଣ ଗୁରୁତ୍ୱ ସଂପନ୍ନ ଅଟେ ଯେ ସେ ବିଷୟରେ ଉଚ୍ଚତମ ନ୍ୟାୟାଳୟର ମତ ଗ୍ରହଣ କରିବା ସମୀଚୀନ ହେବ ତେବେ ସେ ସେହି ପ୍ରଶ୍ନ ସେହି ନ୍ୟାୟାଳୟକୁ ବିଚାର ନିମିତ୍ତ ପଠାଇ ପାରିବେ, ଏବଂ ନ୍ୟାୟାଳୟ ଯେପରି ଉଚିତ ବିବେଚନା କରେ ସେପରି ଶୁଣାଣି ପରେ ତହିଁ ଉପରେ ନିଜର ମତ ରାଷ୍ଟ୍ରପତିଙ୍କୁ ଜଣାଇ ପାରିବ ।

(୨) ଅନୁଚ୍ଛେଦ ୧୩୧ର ପରନ୍ତୁକରେ ଯାହା କିଛି ଥିବା ସତ୍ତ୍ୱେ, ରାଷ୍ଟ୍ରପତି ଉକ୍ତ ପରନ୍ତୁକରେ ଉଲ୍ଲିଖିତ ପ୍ରକାରର ବିବାଦକୁ ଉଚ୍ଚତମ ନ୍ୟାୟାଳୟକୁ ମତ ଦେବା ନିମିତ୍ତ ପଠାଇ ପାରିବେ ଏବଂ ଉଚ୍ଚତମ ନ୍ୟାୟାଳୟ ଯେପରି ଉଚିତ ବିବେଚନା କରେ ସେପରି ଶୁଣାଣି କରିବା ପରେ ତହିଁ ଉପରେ ନିଜର ମତ ରାଷ୍ଟ୍ରପତିଙ୍କୁ ଜଣାଇବେ ।

**ସିଭିଲ ଓ ନ୍ୟାୟିକ ପ୍ରାଧିକାରୀ ଉଚ୍ଚତମ ନ୍ୟାୟାଳୟର ସାହାଯ୍ୟକାରୀ ଭାବେ କାର୍ଯ୍ୟ କରିବେ ।**

୧୪୪ । ଭାରତ ରାଜ୍ୟ କ୍ଷେତ୍ରର ସମସ୍ତ ସିଭିଲ ଓ ନ୍ୟାୟିକ ପ୍ରାଧିକାରୀ ଉଚ୍ଚତମ ନ୍ୟାୟାଳୟର ସାହାଯ୍ୟକାରୀ ଭାବେ କାର୍ଯ୍ୟ କରିବେ ।

୧୪୪ କ । * * *

**ନ୍ୟାୟାଳୟର ନିୟମ ଆଦି ।**

୧୪୫ । (୧) ସଂସଦ ଦ୍ୱାରା ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ଉଚ୍ଚତମ ନ୍ୟାୟାଳୟ ବିଭିନ୍ନ ସମୟରେ ରାଷ୍ଟ୍ରପତିଙ୍କ ଅନୁମୋଦନ କ୍ରମେ ନିମ୍ନ ବିଷୟ ସମେତ ନ୍ୟାୟାଳୟର କାର୍ଯ୍ୟ ପ୍ରଣାଳୀ ଓ ପ୍ରକ୍ରିୟା ସାଧାରଣଭାବେ ବିନିୟମିତ କରିବା ନିମିତ୍ତ ନିୟମ ପ୍ରଣୟନ କରିପାରିବ—

(କ) ସେହି ନ୍ୟାୟାଳୟରେ ବିଧି ବୃତ୍ତି କରିବା ବ୍ୟକ୍ତିଙ୍କ ସଂପର୍କରେ ନିୟମାବଳୀ ;

(ଖ) ଯେଉଁ ସମୟ ମଧ୍ୟରେ ନ୍ୟାୟାଳୟରେ ଅପିଲ ଆଗତ କରିବାର କଥା ତାହା ସମେତ ଅପିଲର ଶୁଣାଣି ନିମିତ୍ତ ପ୍ରକ୍ରିୟା ତଥା ଅପିଲ ସମ୍ବନ୍ଧୀୟ ଅନ୍ୟାନ୍ୟ ବିଷୟ ସଂପର୍କରେ ନିୟମାବଳୀ ;

(ଗ) ଭାଗ ୩ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କ ମଧ୍ୟରୁ କାହାରିକୁ ପ୍ରବର୍ତ୍ତିତ କରାଇବା ନିମିତ୍ତ ନ୍ୟାୟାଳୟରେ କାର୍ଯ୍ୟବାହୀ ସଂପର୍କରେ ନିୟମାବଳୀ ;

(ଗଗ) ଅନୁଚ୍ଛେଦ ୧୩୯କ ଅଧୀନରେ ନ୍ୟାୟାଳୟରେ କାର୍ଯ୍ୟବାହୀ ସଂପର୍କରେ ନିୟମାବଳୀ ;

(ଘ) ଅନୁଚ୍ଛେଦ ୧୩୪ର ଖଣ୍ଡ (୧)ର ଉପଖଣ୍ଡ (ଘ) ଅଧୀନରେ ଅପିଲ ଗ୍ରହଣ କରିବା ସଂପର୍କରେ ନିୟମାବଳୀ ;

(ଙ) ସେହି ନ୍ୟାୟାଳୟ ଦ୍ୱାରା ଘୋଷଣା କରାଯାଇଥିବା କୌଣସି ନିର୍ଣ୍ଣୟ ବା ଦିଆଯାଇଥିବା କୌଣସି ଆଦେଶକୁ ଯେଉଁ ସର୍ତ୍ତମାନଙ୍କର ବଶବର୍ତ୍ତୀ ରହି ପୁନର୍ବିଲୋକନ କରାଯାଇ ପାରିବ ସେହି ସଂପର୍କରେ ତଥା ଯେଉଁ ସମୟ ମଧ୍ୟରେ ଏପରି ପୁନର୍ବିଲୋକନ ନିମିତ୍ତ ଆବେଦନ ପତ୍ର ନ୍ୟାୟାଳୟରେ ଆଗତ କରିବାକୁ ହେବ ତାହା ସମେତ ସେପରି ପୁନର୍ବିଲୋକନ ନିମିତ୍ତ ପ୍ରକ୍ରିୟା ସଂପର୍କରେ ନିୟମାବଳୀ ;

(ଚ) ସେହି ନ୍ୟାୟାଳୟରେ କୌଣସି କାର୍ଯ୍ୟବାହୀର ଖର୍ଚ୍ଚ ତଥା ତହିଁର ଆନୁଷଙ୍ଗିକ ଖର୍ଚ୍ଚ ସଂପର୍କରେ ଏବଂ ତହିଁରେ କାର୍ଯ୍ୟବାହୀମାନଙ୍କ ବାବଦରେ ନିଆଯିବା ଫିସ ସଂପର୍କରେ ନିୟମାବଳୀ ;

(ଛ) ଜାମିନ ମଞ୍ଜୁରୀ ସଂପର୍କରେ ନିୟମାବଳୀ ;

(ଜ) କାର୍ଯ୍ୟବାହୀମାନ ସ୍ଥଗିତ ରଖିବା ସମ୍ପର୍କରେ ନିୟମାବଳୀ ;

(ଝ) ନିରର୍ଥକ ବା ବିରକ୍ତିକର ଅଥବା ବିଳମ୍ବ କରିବାର ପ୍ରୟୋଜନରେ ଆଗତ କରାଯାଇଛି ବୋଲି ନ୍ୟାୟାଳୟକୁ ପ୍ରତୀତ ହେଉଥିବା କୌଣସି ଅପିଲର ସରାସରି ନିର୍ଦ୍ଧାରଣ ନିମିତ୍ତ ଉପବନ୍ଧ କରିବା ନିୟମାବଳୀ ;

(ଞ) ଅନୁଚ୍ଛେଦ ୩୧୭ର ଖଣ୍ଡ (୧) ରେ ନିର୍ଦ୍ଦିଷ୍ଟ ଅନୁସନ୍ଧାନମାନଙ୍କ ନିମିତ୍ତ ପ୍ରକ୍ରିୟା ସଂପର୍କରେ ନିୟମାବଳୀ ।

(୨) ଖଣ୍ଡ (୩)ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, ଏହି ଅନୁଚ୍ଛେଦ ଅଧୀନରେ ପ୍ରଣୀତ ନିୟମାବଳୀ କୌଣସି ପ୍ରୟୋଜନ ନିମିତ୍ତ ଆସୀନହେବା ନ୍ୟାୟାଧୀଶମାନଙ୍କର ନ୍ୟୁନତମ ସଂଖ୍ୟା ନିୟତ କରିପାରିବ ଏବଂ ଏକକ ନ୍ୟାୟାଧୀଶ ତଥା ଖଣ୍ଡ ନ୍ୟାୟାଳୟମାନଙ୍କର କ୍ଷମତା ବିଷୟରେ ଉପବନ୍ଧ କରି ପାରିବ ।

(୩) ଏହି ସଂବିଧାନର ନିର୍ବଚନ ବିଷୟକ କୌଣସି ସାରବାନ ବିଧିଗତପ୍ରଶ୍ନ ନିହିତ ଥିବା କୌଣସି ମାମଲାର ନିଷ୍ପତ୍ତି କରିବାର ପ୍ରୟୋଜନ ନିମିତ୍ତ ଅଥବା ଏହି ସଂବିଧାନର ଅନୁଚ୍ଛେଦ ୧୪୩ ଅଧୀନରେ ପଠାଯିବା ପ୍ରଶ୍ନ ଉପରେ ଶୁଣାଣିର ପ୍ରୟୋଜନ ନିମିତ୍ତ ଆସୀନ ହେବା ନ୍ୟାୟାଧୀଶଙ୍କର ନ୍ୟୂନତମ ସଂଖ୍ୟା ପାଞ୍ଚ ହେବ :

ପରନ୍ତୁ ଅନୁଚ୍ଛେଦ ୧୩୨ ଭିନ୍ନ ଏହି ଅଧ୍ୟାୟର ଅନ୍ୟ ଉପବନ୍ଧମାନଙ୍କ ଅଧୀନରେ ଅପିଲ ଶୁଣାଣି କରୁଥିବା ନ୍ୟାୟାଳୟ ଯଦି ପାଞ୍ଚଜଣରୁ ଊଣା ନ୍ୟାୟଧୀଶଙ୍କୁ ନେଇ ଗଠିତ ହୋଇଥାଏ ତଥା ଅପିଲର ଶୁଣାଣି ମଧ୍ୟରେ ନ୍ୟାୟାଳୟ ସନ୍ତୁଷ୍ଟ ହୁଏ ଯେ ସେହି ଅପିଲରେ ଏହି ସମ୍ବିଧାନର ନିର୍ବଚନ ବିଷୟକ ଏପରି ଏକ ସାରବାନ ବିଧିଗତ ପ୍ରଶ୍ନ ନିହିତ ଅଛି ଯାହାର ନିର୍ଦ୍ଧାରଣ ସେହି ଅପିଲର ନିଷ୍ପତ୍ତି ନିମିତ୍ତ ଆବଶ୍ୟକ ଅଟେ ତେବେ ନ୍ୟାୟାଳୟ ଏପରି କୌଣସି ପ୍ରଶ୍ନ ନିହିତ ଥିବା କୌଣସି ମାମଲାର ନିଷ୍ପତ୍ତି କରିବାର ପ୍ରୟୋଜନରେ ଏହି ଖଣ୍ଡ ଦ୍ୱାରା ଆବଶ୍ୟକ ହୋଇଥିବା ମତେ ଗଠିତ ନ୍ୟାୟାଳୟକୁ ତାହାର ମତ ନିମିତ୍ତ ସେହି ପ୍ରଶ୍ନ ପଠାଇବ ଓ ମତ ପାଇବା ପରେ ସେହି ମତ ଅନୁସାରେ ସେହି ଅପିଲକୁ ନିଷ୍ପତ୍ତି କରିବ ।

(୪) ଉଚ୍ଚତମ ନ୍ୟାୟାଳୟର କୌଣସି ନିର୍ଣ୍ଣୟ ଖୋଲା ନ୍ୟାୟାଳୟ ଭିନ୍ନ ଅନ୍ୟତ୍ର ଦିଆଯିବ ନାହିଁ ଏବଂ ଖୋଲା ନ୍ୟାୟାଳୟରେ ହିଁ ଦିଆଯିବା ମତ ଅନୁସାରେ ନ ହୋଇଥିବା କୌଣସି ରିପୋର୍ଟ ଅନୁଚ୍ଛେଦ ୧୪୩ ଅଧୀନରେ ଦିଆଯିବନାହିଁ ।

(୫) ମାମଲା ଶୁଣାଣିରେ ଉପସ୍ଥିତ ନ୍ୟାୟାଧୀଶମାନଙ୍କ ମଧ୍ୟରୁ ସଂଖ୍ୟାଧିକଙ୍କର ସହମତି ବ୍ୟତିରେକେ ଉଚ୍ଚତମ ନ୍ୟାୟାଳୟର କୌଣସି ନିର୍ଣ୍ଣୟ ତଥା ଏପରି କୌଣସି ମତ ଦିଆଯିବନାହିଁ, କିନ୍ତୁ ସହମତ ନ ହେବା କୌଣସି ନ୍ୟାୟାଧୀଶଙ୍କୁ ନିଜର ମତ ନିର୍ଣ୍ଣୟ ବା ଭିନ୍ନ ମତ ପ୍ରଦାନ କରିବା ପାଇଁ ଏହି ଖଣ୍ଡର କୌଣସି ବିଷୟ ବାଧା ଦେଉଅଛି ବୋଲି ବିବେଚିତ ହେବନାହିଁ ।

ଉଚ୍ଚତମ ନ୍ୟାୟାଳୟର ଅଫିସର ଓ ସେବକ ଏବଂ ବ୍ୟୟ।

୧୪୬ । (୧) ଉଚ୍ଚତମ ନ୍ୟାୟାଳୟର ଅଫିସର ଓ ସେବକଙ୍କର ନିଯୁକ୍ତି ଭାରତର ମୁଖ୍ୟ ନ୍ୟାୟାଧିପତିଙ୍କ ଦ୍ୱାରା ଅଥବା ତାଙ୍କ ଦ୍ୱାରା ନିର୍ଦ୍ଦେଶିତ ହେବା ସେହି ନ୍ୟାୟାଳୟର ଅନ୍ୟ ନ୍ୟାୟାଧୀଶ ବା ଅଫିସରଙ୍କ ଦ୍ୱାରା କରାଯିବ ;

ପରନ୍ତୁ ରାଷ୍ଟ୍ରପତି ନିୟମ ଦ୍ୱାରା ଏହା ଆବଶ୍ୟକ କରିପାରିବେ ଯେ ସେହି ନିୟମରେ ଯଥା ବିନିର୍ଦ୍ଦିଷ୍ଟ କୌଣସି ସ୍ଥଳରେ ପୂର୍ବରୁ ନ୍ୟାୟାଳୟସହ ସଂଶ୍ଳିଷ୍ଟ ନ ଥିବା କୌଣସି ବ୍ୟକ୍ତିଙ୍କୁ ଇଉନିୟନ ପବ୍ଲିକ ସର୍ଭିସ କମିସନ ସଙ୍ଗେ ପରାମର୍ଶ କରାନଯାଇ ନ୍ୟାୟାଳୟ ସହ ସଂପୃକ୍ତ କୌଣସି ପଦରେ ନିଯୁକ୍ତ କରାଯିବ ନାହିଁ ।

(୨) ସଂସଦ ଦ୍ୱାରା ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କ ବଶବର୍ତ୍ତୀ ରହି ଉଚ୍ଚତମ ନ୍ୟାୟାଳୟର ଅଫିସର ଓ ସେବକଙ୍କର ସେବାର ସର୍ତ୍ତମାନ ଉଚ୍ଚତମ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତିଙ୍କ ଦ୍ୱାରା ପ୍ରଣୀତ ବା ସେହି ପ୍ରୟୋଜନ ନିମିତ୍ତ ନିୟମ ପ୍ରଣୟନ କରିବା ପାଇଁ ଭାରତର ମୁଖ୍ୟ ନ୍ୟାୟାଧିପତିଙ୍କ ଦ୍ୱାରା ପ୍ରାଧିକୃତ ସେହି ନ୍ୟାୟାଳୟର ଅନ୍ୟ କୌଣସି ନ୍ୟାୟାଧୀଶ ବା ଅଫିସରଙ୍କ ଦ୍ୱାରା ପ୍ରଣୀତ ନିୟମାବଳୀରେ ଯେପରି ବିହିତ କରାଯାଇଥିବ ସେପରି ହେବ :

ପରନ୍ତୁ ଏହି ଖଣ୍ଡ ଅଧୀନରେ ପ୍ରଣୀତ ନିୟମାବଳୀ ଯେତେଦୂର ପର୍ଯ୍ୟନ୍ତ ତାହା ବେତନ, ଭତ୍ତା, ଛୁଟି ବା ପେନ୍‌ସନ୍ ସହ ସମ୍ବନ୍ଧିତ ଅଟେ ସେତେଦୂର ପର୍ଯ୍ୟନ୍ତ ସେଥିନିମିତ୍ତ ରାଷ୍ଟ୍ରପତିଙ୍କ ଅନୁମୋଦନ ଆବଶ୍ୟକ ହେବ ।

(୩) ଉଚ୍ଚତମ ନ୍ୟାୟାଳୟର ଅଫିସର ଓ ସେବକ ମାନଙ୍କୁ ଓ ସେମାନଙ୍କ ସଂପର୍କରେ ଦିଆଯାଇଥିବା ବେତନ, ଭତ୍ତା ଓ ପେନସନ୍ ସମେତ ସେହି ନ୍ୟାୟାଳୟର ପ୍ରଶାସନିକ ବ୍ୟୟ ଭାରତର ସଂଚିତ ନିଧି ଉପରେ ଭାରିତ ହେବ, ଏବଂ ସେହି ନ୍ୟାୟାଳୟ ଦ୍ୱାରା ନିଆଯିବା ଫିସ ଓ ଅନ୍ୟାନ୍ୟ ଧନ ସେହି ନିଧିର ଭାଗ ହେବ ।

ନିର୍ବାଚନ

୧୪୭ । ଏହି ଅଧ୍ୟାୟରେ ଏବଂ ଭାଗ ୬ର ଅଧ୍ୟାୟ ୫ରେ ଏହି ସମ୍ବିଧାନର ନିର୍ବଚନ ବିଷୟକ କୌଣସି ସାରବାନ ବିଧିଗତ ପ୍ରଶ୍ନ ପ୍ରତି ନିର୍ଦ୍ଦେଶମାନ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ, ୧୯୩୫ର (ସେହି ଅଧିନିୟମକୁ ସଂଶୋଧିତ କରୁଥିବା ବା ତାହାର ଅନୁପୂରକ ହେଉଥିବା ଯେ କୌଣସି ଅଧିନିୟମିତି ସମେତ) ବା ତଦଧୀନ କରାଯାଇଥିବା କୌଣସି ପରିଷଦାଦେଶ ବା ଆଦେଶର ଅଥବା ଇଣ୍ଡିଆନ୍ ଇଣ୍ଡିପେଣ୍ଡେନ୍‌ସ ଆକ୍ଟ, ୧୯୪୭ ର ବା ତଦଧୀନ କରାଯାଇଥିବା କୌଣସି ଆଦେଶର ନିର୍ବଚନ ବିଷୟକ କୌଣସି ସାରବାନ ବିଧିଗତ ପ୍ରଶ୍ନ ପ୍ରତି ନିର୍ଦ୍ଦେଶମାନଙ୍କର ଅନ୍ତର୍ଗତ ଅଟେ ବୋଲି ଅର୍ଥ କରାଯିବ ।

## ଅଧ୍ୟାୟ ୫-ଭାରତ କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲ

ଭାରତର କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲ ।

୧୪୮ । (୧) ଭାରତର ଜଣେ କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲ ରହିବେ ଯାହାଙ୍କୁ କି ରାଷ୍ଟ୍ରପତି ନିଜ ସ୍ୱାକ୍ଷରିତ ମୁଦ୍ରାଙ୍କିତ ଅଧିପତ୍ର ଦ୍ୱାରା ନିଯୁକ୍ତ କରିବେ ଏବଂ ଯେଉଁ ରୀତିରେ ଓ ଯେଉଁ କାରଣ ନେଇ ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶ ଦୂରୀକୃତ ହୁଅନ୍ତି କେବଳ ସେହି ରୀତିରେ ଓ ସେହି କାରଣ ଉପରେ ତାହାଙ୍କୁ ସେହି ପଦରୁ ଦୂରୀକୃତ କରାଯାଇ ପାରିବ ।

(୨) ଭାରତର କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲ ହେବାପାଇଁ ନିଯୁକ୍ତ ପ୍ରତ୍ୟେକ ବ୍ୟକ୍ତି ନିଜର ପଦ ଗ୍ରହଣ କରିବା ପୂର୍ବରୁ ତୃତୀୟ ଅନୁସୂଚୀରେ ଏହି ପ୍ରୟୋଜନାର୍ଥ ପ୍ରଦତ୍ତ ପ୍ରପତ୍ର ଅନୁସାରେ ରାଷ୍ଟ୍ରପତି ବା ତାଙ୍କ ଦ୍ୱାରା ସେଥି ନିମିତ୍ତ ନିଯୁକ୍ତ ବ୍ୟକ୍ତିଙ୍କ ସମକ୍ଷରେ ଶପଥ ଗ୍ରହଣ କରିବେ ବା ପ୍ରତିଜ୍ଞାନ କରିବେ ଓ ତହିଁରେ ସ୍ୱାକ୍ଷର କରିବେ ।

(୩) କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କ ବେତନ ଓ ସେବାର ଅନ୍ୟାନ୍ୟ ସର୍ତ୍ତମାନ ସଂସଦ କର୍ତ୍ତୃକ ବିଧିଦ୍ୱାରା ଯେପରି ନିର୍ଦ୍ଧାରିତ ହୁଏ ସେପରି ହେବ ଏବଂ ଯେଉଁ ପର୍ଯ୍ୟନ୍ତ ଏପରି ନିର୍ଦ୍ଧାରିତ କରା-ନଯାଇଛି ସେ ପର୍ଯ୍ୟନ୍ତ ଦ୍ୱିତୀୟ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହୋଇଥିବା ମତେ ହେବ :

ପରନ୍ତୁ କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କ ନିଯୁକ୍ତି ପରେ ତାଙ୍କ ବେତନରେ ବା ଅନୁପସ୍ଥିତି ଛୁଟି, ପେନ୍ସନ ଓ ନିବୃତ୍ତି ବିଷୟକ ତାଙ୍କର ଅଧିକାରମାନଙ୍କରେ ତାଙ୍କ ପ୍ରତି ଅନୁକୂଳ ହେଉଥିବା କୌଣସି ଅଦଳ ବଦଳ କରାଯିବନାହିଁ ।

(୪) ନିଜ ପଦ ଧାରଣରୁ ବିରତ ହେବାପରେ କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲ ଭାରତ ସରକାର ଅଥବା କୌଣସି ରାଜ୍ୟ ସରକାରଙ୍କ ଅଧୀନରେ ପୁନଃ ପଦଗ୍ରହଣ ପାଇଁ ପାତ୍ର ହେବେନାହିଁ ।

(୫) ଏହି ସଂବିଧାନର ଓ ସଂସଦ ଦ୍ୱାରା ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ଭାରତୀୟ ଅଡ଼ିଟ ଏବଂ ହିସାବ ବିଭାଗରେ ସେବା କରିବା ବ୍ୟକ୍ତିଙ୍କର ସେବା ସର୍ତ୍ତ ଏବଂ କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କର ପ୍ରଶାସନିକ କ୍ଷମତା ରାଷ୍ଟ୍ରପତି କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କ ସହ ପରାମର୍ଶ କରିବା ପରେ ପ୍ରଣୟନ କରିବା ନିୟମ ଦ୍ୱାରା ଯେପରି ବିହିତ ହୁଏ ସେପରି ହେବ ।

(୬) କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କ କାର୍ଯ୍ୟାଳୟରେ ସେବା କରୁଥିବା ବ୍ୟକ୍ତିମାନଙ୍କୁ ବା ସେମାନଙ୍କ ସଂପର୍କରେ ଦେୟ ବେତନ, ଭତ୍ତା, ପେନ୍ସନ ସମେତ ସେହି କାର୍ଯ୍ୟାଳୟର ପ୍ରଶାସନିକ ବ୍ୟୟ ଭାରତର ସଞ୍ଚିତ ନିଧି ଉପରେ ଭାରିତ ହେବ ।

କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କର କର୍ତ୍ତବ୍ୟ ଓ କ୍ଷମତା ।

୧୪୯ । ସଂଘର ଏବଂ ରାଜ୍ୟମାନଙ୍କର ଓ ଅନ୍ୟ ପ୍ରାଧିକାରୀ ବା ନିକାୟର ହିସାବ ସମ୍ବନ୍ଧରେ କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲ ସଂସଦ ପ୍ରଣୀତ ବିଧି ଦ୍ୱାରା ବା ଅଧୀନରେ ଯେପରି ବିହିତ କରାଯାଏ ସେପରି କର୍ତ୍ତବ୍ୟ ପାଳନ କରିବେ ଓ ସେପରି କ୍ଷମତା ପ୍ରୟୋଗ କରିବେ ଏବଂ ଯେପର୍ଯ୍ୟନ୍ତ ସେପରି ଭାବେ ସେଥିନିମିତ୍ତ ଉପବନ୍ଧ କରା ନ ଯାଇଛି ସେପର୍ଯ୍ୟନ୍ତ ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯଥାକ୍ରମେ ଭାରତ ଡ଼ୋମିନିୟନର ଓ ପ୍ରଦେଶମାନଙ୍କର ହିସାବ ସମ୍ବନ୍ଧରେ ଭାରତର ଅଡ଼ିଟର ଜେନେରାଲଙ୍କ ଠାରେ ଯେଉଁ କର୍ତ୍ତବ୍ୟ ନ୍ୟସ୍ତ ହୋଇଥିଲା ବା ତାଙ୍କ ଦ୍ୱାରା ଯେଉଁ କ୍ଷମତା ପ୍ରୟୋଗ କରାଯାଉଥିଲା ସେହି କର୍ତ୍ତବ୍ୟ ପାଳନ କରିବେ ଓ ସେହି କ୍ଷମତା ପ୍ରୟୋଗ କରିବେ ।

ସଂଘ ଓ ରାଜ୍ୟମାନଙ୍କର ହିସାବର ପ୍ରପତ୍ର ।

୧୫୦ । ରାଷ୍ଟ୍ରପତି ଭାରତର କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କ ଉପଦେଶ କ୍ରମେ ଯେଉଁ ପ୍ରପତ୍ର ବିହିତ କରିବେ ସେପରି ପ୍ରପତ୍ରରେ ସଂଘ ଓ ରାଜ୍ୟମାନଙ୍କର ହିସାବ ରଖାଯିବ ।

ଅଡ଼ିଟ ରିପୋର୍ଟ ।

୧୫୧ । ଭାରତର କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କର ସଂଘର ହିସାବ ସମ୍ବନ୍ଧୀୟ ରିପୋର୍ଟମାନ ରାଷ୍ଟ୍ରପତିଙ୍କୁ ଦିଆଯିବ ଏବଂ ସେ ତାହା ସଂସଦର ପ୍ରତ୍ୟେକ ସଦନ ସମକ୍ଷରେ ଉପସ୍ଥାପିତ କରାଇବେ ।

(୨) ଭାରତର କମ୍ପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କର ରାଜ୍ୟର ହିସାବ ସମ୍ବନ୍ଧୀୟ ରିପୋର୍ଟ ସେହି ରାଜ୍ୟର ରାଜ୍ୟପାଳଙ୍କୁ ଦିଆଯିବ ଏବଂ ସେ ସେହି ରାଜ୍ୟର ବିଧାନ ମଣ୍ଡଳ ସମକ୍ଷରେ ତାହା ଉପସ୍ଥାପିତ କରାଇବେ ।

# ଭାଗ ୬

## ରାଜ୍ୟ

### ଅଧ୍ୟାୟ ୧-ସାଧାରଣ

ସଂଜ୍ଞା

୧୫୨ । ପ୍ରସଙ୍ଗ ଅନ୍ୟଥା ଆବଶ୍ୟକ କରୁ ନ ଥିଲେ ଜାମ୍ମୁ ଓ କାଶ୍ମୀର ରାଜ୍ୟ ଏହି ଭାଗରେ "ରାଜ୍ୟ" ଅଭିବ୍ୟକ୍ତିର ଅନ୍ତର୍ଗତ ନୁହେଁ ।

### ଅଧ୍ୟାୟ ୨-କାର୍ଯ୍ୟପାଳିକା

#### ରାଜ୍ୟପାଳ

ରାଜ୍ୟମାନଙ୍କର ରାଜ୍ୟପାଳ ।

୧୫୩ । ପ୍ରତ୍ୟେକ ରାଜ୍ୟ ନିମିତ୍ତ ଜଣେ ରାଜ୍ୟପାଳ ରହିବେ

ପରନ୍ତୁ ଦୁଇ ବା ଅଧିକ ରାଜ୍ୟ ନିମିତ୍ତ ଜଣେ ବ୍ୟକ୍ତିଙ୍କୁ ରାଜ୍ୟପାଳ ରୂପେ ନିଯୁକ୍ତ କରିବାରେ ଏହି ଅନୁଚ୍ଛେଦର କୌଣସି ବିଷୟ ବାଧା ଦେବ ନାହିଁ ।

ରାଜ୍ୟର କାର୍ଯ୍ୟପାଳିକା କ୍ଷମତା ।

୧୫୪ । (୧) ରାଜ୍ୟର କାର୍ଯ୍ୟପାଳିକା କ୍ଷମତା ରାଜ୍ୟପାଳଙ୍କଠାରେ ନିହିତ ହେବ ଏବଂ ସ୍ୱୟଂ ତାଙ୍କ ଦ୍ୱାରା ତାଙ୍କର ଅଧୀନସ୍ଥ ଅଫିସରଙ୍କ ଦ୍ୱାରା ଏହି ସଂବିଧାନ ଅନୁସାରେ ତହିଁର ପ୍ରୟୋଗ କରାଯିବ ।

(୨) ଏହି ଅନୁଚ୍ଛେଦର କୌଣସି ବିଷୟ,

(କ) କୌଣସି ବିଦ୍ୟମାନ ବିଧିଦ୍ୱାରା ଅନ୍ୟ କୌଣସି ପ୍ରାଧୀକାରୀଙ୍କୁ ପ୍ରଦତ୍ତ କୌଣସି କୃତ୍ୟ ରାଜ୍ୟପାଳଙ୍କୁ ଅନ୍ତରିତ ହେଉଅଛି ବୋଲି ବିବେଚିତ ହେବ ନାହିଁ ; ଅଥବା

(ଖ) ରାଜ୍ୟପାଳଙ୍କ ଅଧୀନସ୍ଥ କୌଣସ ପ୍ରାଧୀକାରୀଙ୍କୁ ବିଧିଦ୍ୱାରା କୌଣସି କୃତ୍ୟ ପ୍ରଦାନ କରିବାରେ ସଂସଦକୁ ବା ରାଜ୍ୟର ବିଧାନ ମଣ୍ଡଳକୁ ବାଧା ଦେବ ନାହିଁ ।

ରାଜ୍ୟପାଳଙ୍କ ନିଯୁକ୍ତି ।

୧୫୫ । ରାଜ୍ୟର ରାଜ୍ୟପାଳଙ୍କୁ ରାଷ୍ଟ୍ରପତି ସ୍ୱାକ୍ଷରିତ ଓ ମୁଦ୍ରାଙ୍କିତ ଅଧିପତ୍ର ଦ୍ୱାରା ନିଯୁକ୍ତ କରିବେ ।

ରାଜ୍ୟପାଳଙ୍କ ପଦାବଧି ।

୧୫୬ । (୧) ରାଜ୍ୟପାଳ ରାଷ୍ଟ୍ରପତିଙ୍କ ସନ୍ତୋଷାବଧି ପଦଧାରଣ କରିବେ ।

(୨) ରାଜ୍ୟପାଳ ରାଷ୍ଟ୍ରପତିଙ୍କୁ ସଂବୋଧିତ ସ୍ୱାକ୍ଷରିତ ଲେଖ ଦ୍ୱାରା ନିଜର ପଦ ତ୍ୟାଗ କରି-ପାରିବେ ।

(୩) ଏହି ଅନୁଚ୍ଛେଦର ପୂର୍ବଗାମୀ ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ରାଜ୍ୟପାଳ ତାଙ୍କର ପଦ ଗ୍ରହଣ କରିବା ତାରିଖଠାରୁ ପାଞ୍ଚବର୍ଷ ଅବଧି ପଦ ଧାରଣ କରିବେ :

ପରନ୍ତୁ ରାଜ୍ୟପାଳ ତାଙ୍କର ପଦାବଧିର ଅବସାନ ହେବା ସତ୍ତ୍ୱେ, ତାଙ୍କର ଉତ୍ତରାଧୀକାରୀ ତାଙ୍କର ପଦ ଗ୍ରହଣ କରିବା ପର୍ଯ୍ୟନ୍ତ ପଦାସୀନ ରହିଥିବେ ।

ରାଜ୍ୟପାଳରୂପେ ନିଯୁକ୍ତ ହେବାର ଯୋଗ୍ୟତା ।

୧୫୭ । (୧) କୌଣସି ବ୍ୟକ୍ତି ଭାରତର ନାଗରିକ ହୋଇ ନଥିଲେ ଓ ତାଙ୍କର ପଞ୍ଚତିରିଶ ବର୍ଷ ବୟସ ପୂର୍ଣ୍ଣ ହୋଇ ନଥିଲେ ସେ ରାଜ୍ୟପାଳ ରୂପେ ନିଯୁକ୍ତ ହେବା ନିମିତ୍ତ ପାତ୍ର ହେବେ ନାହିଁ ।

ରାଜ୍ୟପାଳଙ୍କର ପଦର ସର୍ତ୍ତାବଳୀ ।

୧୫୮ । (୧) ରାଜ୍ୟପାଳ ସଂସଦର କୌଣସି ସଦନର କିମ୍ବା ପ୍ରଥମ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ କୌଣସି ରାଜ୍ୟର ବିଧାନ ମଣ୍ଡଳର କୌଣସି ସଦନର ସଦସ୍ୟ ହେବେ ନାହିଁ ଏବଂ ଯଦି ସଂସଦର କୌଣସି ସଦନର ବା ସେପରି କୌଣସି ରାଜ୍ୟର ବିଧାନମଣ୍ଡଳର କୌଣସି ସଦନର ସଦସ୍ୟ ରାଜ୍ୟପାଳ ରୂପେ ନିଯୁକ୍ତ ହୁଅନ୍ତି ତେବେ ସେ ଯେଉଁ ତାରିଖରେ ରାଜ୍ୟପାଳ ରୂପେ ତାଙ୍କର ପଦ ଗ୍ରହଣ କଲେ ସେହି ତାରିଖରେ ସେହି ସଦନରୁ ନିଜର ସ୍ଥାନ ରିକ୍ତ କଲେ ବୋଲି ବିବେଚିତ ହେବେ ।

(୨) ରାଜ୍ୟପାଳ ଅନ୍ୟ କୌଣସି ଲାଭପ୍ରଦ ପଦ ଧାରଣ କରିବେ ନାହିଁ ।

(୩) ରାଜ୍ୟପାଳ ତାଙ୍କର ପଦାବାସ ବିନା ଭଡ଼ାରେ ବ୍ୟବହାର କରିବା ପାଇଁ ହକ୍‌ଦାର ହେବେ, ଏବଂ ସଂସଦ ବିଧି ଦ୍ୱାରା ଯେପରି ନିର୍ଦ୍ଧାରିତ କରେ ସେହିପରି ଉପଲବ୍‌ଧି, ଭତ୍ତା ଓ ବିଶେଷାଧିକାର ପାଇଁ ମଧ୍ୟ ହକ୍‌ଦାର ହେବେ ଏବଂ ଯେଉଁ ପର୍ଯ୍ୟନ୍ତ ସେହି ବିଷୟରେ ଏପରି ଉପବଂଧ ନ କରାଯାଇଛି ସେପର୍ଯ୍ୟନ୍ତ ଦ୍ୱିତୀୟ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହୋଇଥିବା ଉପଲବ୍‌ଧି, ଭତ୍ତା ଓ ବିଶେଷାଧିକାର ପାଇଁ ହକ୍‌ଦାର ହେବେ ।

(୩ କ) ଯେଉଁଠାରେ ଏକା ବ୍ୟକ୍ତିଙ୍କୁ ଦୁଇ ବା ଅଧିକ ରାଜ୍ୟନିମିତ୍ତ ରାଜ୍ୟପାଳ ରୂପେ ନିଯୁକ୍ତ କରାଯାଏ ସେଠାରେ ରାଜ୍ୟପାଳଙ୍କୁ ଦେୟ ଉପଲବ୍‌ଧି ଓ ଭତ୍ତା ରାଷ୍ଟ୍ରପତି ଆଦେଶ ଦ୍ୱାରା ଯେପରି ନିର୍ଦ୍ଧାରିତ କରନ୍ତି ସେପରି ଅନୁପାତରେ ସେହି ରାଜ୍ୟମାନଙ୍କ ମଧ୍ୟରେ ଆବର୍ଣ୍ଟିତ ହେବ ।

(୪) ରାଜ୍ୟପାଳଙ୍କର ଉପଲବ୍‌ଧି ଓ ଭତ୍ତା ତାଙ୍କର ପଦାବଧି ମଧ୍ୟରେ ହ୍ରାସ କରାଯିବ ନାହିଁ ।

ରାଜ୍ୟପାଳଙ୍କ ଦ୍ୱାରା ଶପଥ ବା ପ୍ରତିଜ୍ଞାନ ।

୧୫୯ । ପ୍ରତ୍ୟେକ ରାଜ୍ୟପାଳ ବା ରାଜ୍ୟପାଳଙ୍କର କୃତ୍ୟ ନିର୍ବହନ କରୁଥିବା ପ୍ରତ୍ୟେକ ବ୍ୟକ୍ତି ନିଜର ପଦ ଗ୍ରହଣ କରିବା ପୂର୍ବରୁ ସେହି ରାଜ୍ୟ ସଂବଂଧରେ ଅଧିକାରିତା ପ୍ରୟୋଗ କରୁଥିବା ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତିଙ୍କ ସମକ୍ଷରେ ବା ତାଙ୍କ ଅନୁପସ୍ଥିତିରେ ସେହି ନ୍ୟାୟାଳୟର ଉପସ୍ଥିତ ବରିଷ୍ଠତମ ନ୍ୟାୟଧୀଶଙ୍କ ସମକ୍ଷରେ ନିମ୍ନ ପ୍ରପତ୍ରରେ ଶପଥ ବା ପ୍ରତିଜ୍ଞାନ କରିବେ ଓ ତହିଁରେ ସ୍ୱାକ୍ଷର କରିବେ ଯଥା :—

"ମୁଁ.................................................................................. ଅମୁକ

ଈଶ୍ୱରଙ୍କ ନାମରେ ଶପଥ କରୁଅଛି
———————————— ଯେ ମୁଁ ଶ୍ରଦ୍ଧାପୂର୍ବକ ..............................................
ସତ୍ୟ ନିଷ୍ଠା ସହ ପ୍ରତିଜ୍ଞାନ କରୁଅଛି

(ରାଜ୍ୟର ନାମ) ର ରାଜ୍ୟପାଳଙ୍କ କାର୍ଯ୍ୟ ପାଳନ କରିବି (ଅଥବା ରାଜ୍ୟପାଳଙ୍କ କୃତ୍ୟ ନିର୍ବହନ କରିବି) ଏବଂ ନିଜର ପୂର୍ଣ୍ଣ ସାମର୍ଥ୍ୟ ଦେଇ ସଂବିଧାନ ଓ ବିଧିର ପରିରକ୍ଷା, ସଂରକ୍ଷା ଓ ପ୍ରତିରକ୍ଷା କରିବି ଏବଂ ମୁଁ ..............................(ରାଜ୍ୟର ନାମ)ର ଜନତାର ସେବା ଓ କଲ୍ୟାଣ ନିମିତ୍ତ ନିଜକୁ ନିୟୋଜିତ କରିବି ।"

କେତେକ ଆକସ୍ମିକତାରେ ରାଜ୍ୟପାଳଙ୍କ କୃତ୍ୟର ନିର୍ବହନ ।

୧୬୦ । ଏହି ଅଧ୍ୟାୟରେ ଉପବଂଧିତ କରାଯାଇନଥିବା କୌଣସି ଆକସ୍ମିକତାରେ ରାଜ୍ୟର ରାଜ୍ୟପାଳଙ୍କ କୃତ୍ୟମାନ ନିର୍ବହନକରିବା ନିମିତ୍ତ ରାଷ୍ଟ୍ରପତି ଯେପରି ଉଚିତ ମନେ କରନ୍ତି ସେପରି ଉପବଂଧ କରିପାରିବେ ।

କେତେକ ସ୍ଥଳରେ କ୍ଷମା-ଦାନ ଆଦି ତଥା ଦଣ୍ଡାଦେଶର ନିଲମ୍ବନ, ପରିହାର ବା ହ୍ରାସ-କରଣ ନିମିତ୍ତ ରାଜ୍ୟପାଳଙ୍କର କ୍ଷମତା ।

୧୬୧ । ଯେଉଁ ବିଷୟ ପ୍ରତି ରାଜ୍ୟର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ଅଛି ସେପରି ବିଷୟ ସଂବଂଧୀୟ କୌଣସି ବିଧିର ବିରୁଦ୍ଧ କୌଣସି ଅପରାଧରେ ସିଦ୍ଧଦୋଷ କୌଣସି ବ୍ୟକ୍ତିର ଦଣ୍ଡର କ୍ଷମାଦାନ ଲଘୁକରଣ, ବିରାମ ବା ପରିହାର କରିବା ନିମିତ୍ତ ଅଥବା ଦଣ୍ଡାଦେଶର ନିଲମ୍ବନ, ପରିହାର ବା ହ୍ରାସ କରିବା ନିମିତ୍ତ ପ୍ରତ୍ୟେକ ରାଜ୍ୟର ରାଜ୍ୟପାଳଙ୍କର କ୍ଷମତା ରହିବ ।

ରାଜ୍ୟର କାର୍ଯ୍ୟପାଳିକା କ୍ଷମତା ବିସ୍ତାର ।

୧୬୨ । ଏହି ସଂବିଧାନର ଉପବଂଧମାନଙ୍କର ବଶବର୍ତ୍ତୀ ରହି ଯେଉଁ ବିଷୟମାନଙ୍କ ସଂବଂଧରେ ରାଜ୍ୟ ବିଧାନ ମଣ୍ଡଳର ବିଧି ପ୍ରଣୟନ କରିବାର କ୍ଷମତା ଅଛି ସେହି ବିଷୟମାନଙ୍କ ପ୍ରତି ରାଜ୍ୟର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ରହିବ

ପରନ୍ତୁ ଯେଉଁ ବିଷୟ ସଂପର୍କରେ ରାଜ୍ୟ ବିଧାନମଣ୍ଡଳର ତଥା ସଂସଦର ବିଧି ପ୍ରଣୟନ କରିବାର କ୍ଷମତା ଅଛି ସେ ବିଷୟରେ ରାଜ୍ୟର କାର୍ଯ୍ୟପାଳିକା କ୍ଷମତା ଏହି ସଂବିଧାନ ଦ୍ୱାରା ବା ସଂସଦ ପ୍ରଣୀତ କୌଣସି ବିଧି ଦ୍ୱାରା ସଂଘ ବା ତାହାର ପ୍ରାଧିକାରୀଙ୍କଠାରେ ଅଭିବ୍ୟକ୍ତ ରୂପେ ନ୍ୟସ୍ତ କାର୍ଯ୍ୟପାଳିକା କ୍ଷମତାର ବଶବର୍ତ୍ତୀ ହେବ ଓ ତଦ୍ଦ୍ୱାରା ସୀମାବଦ୍ଧ ହେବ ।

## ମନ୍ତ୍ରୀ ପରିଷଦ

ରାଜ୍ୟପାଳଙ୍କୁ ସହାୟତା ଓ ମନ୍ତ୍ରଣା ଦେବା ନିମିତ୍ତ ମନ୍ତ୍ରୀ ପରିଷଦ ।

୧୬୩ । (୧) ରାଜ୍ୟପାଳଙ୍କ କୃତ୍ୟମାନ ବା ତନ୍ମଧ୍ୟରୁ କୌଣସି କୃତ୍ୟ, ଯେତେଦୂର ପର୍ଯ୍ୟନ୍ତ ଏହି ସଂବିଧାନ ଦ୍ୱାରା ବା ଅଧୀନରେ ରାଜ୍ୟପାଳ ନିଜର ବିବେକ ଅନୁସାରେ ନିର୍ବହନ କରିବା ଆବଶ୍ୟକ ଅଟେ ତାହା ବ୍ୟତିରେକେ ରାଜ୍ୟପାଳଙ୍କୁ ତାଙ୍କର କୃତ୍ୟ ନିର୍ବହନ କରିବାରେ ସହାୟତା ଓ ମନ୍ତ୍ରଣା ଦେବା ନିମିତ୍ତ ମୁଖ୍ୟମନ୍ତ୍ରୀଙ୍କ ଅଧିନାୟକତ୍ୱରେ ଏକ ମନ୍ତ୍ରୀ ପରିଷଦ ରହିବ ।

(୨) ଯଦି ପ୍ରଶ୍ନଉଠେ ଯେ କୌଣସି ବିଷୟ ଏପରି ବିଷୟକି ନୁହେଁ ଯାହା ସଂପର୍କରେ କି ଏହି ସଂବିଧାନ ଦ୍ୱାରା ବା ଅଧୀନରେ ରାଜ୍ୟପାଳ ନିଜର ବିବେକ ଅନୁସାରେ କାର୍ଯ୍ୟ କରିବା ଆବଶ୍ୟକ ଅଟେ, ତେବେ ରାଜ୍ୟପାଳ ନିଜର ବିବେକ ଅନୁସାରେ କରିବା ନିଷ୍ପତ୍ତି ଚୂଡ଼ାନ୍ତ ହେବ, ଏବଂ ରାଜ୍ୟପାଳ ନିଜର ବିବେକ ଅନୁସାରେ କରିବା ଉଚିତ ହୋଇଅଛି କି ନାହିଁ ଏହି ଆଧାର ଉପରେ ସେ କରିଥିବା କୌଣସି କାର୍ଯ୍ୟର ବୈଧତା ବିରୁଦ୍ଧରେ ଆପତ୍ତି କରାଯିବ ନାହିଁ ।

(୩) ମନ୍ତ୍ରୀମାନେ ରାଜ୍ୟପାଳଙ୍କୁ କୌଣସି ମନ୍ତ୍ରଣା ଦେଇଥିଲେ କି ନାହିଁ, ଏବଂ ଯଦି ଦେଇଥିଲେ ତେବେ କି ମନ୍ତ୍ରଣା ଦେଇଥିଲେ ଏ ବିଷୟରେ କୌଣସି ନ୍ୟାୟାଳୟରେ ଯାଞ୍ଚ କରାଯିବ ନାହିଁ ।

ମନ୍ତ୍ରୀମାନଙ୍କ ସମ୍ବନ୍ଧରେ ଅନ୍ୟାନ୍ୟ ଉପବନ୍ଧ ।

୧୬୪ । (୧) ମୁଖ୍ୟମନ୍ତ୍ରୀ ରାଜ୍ୟପାଳଙ୍କ ଦ୍ୱାରା ନିଯୁକ୍ତ ହେବେ ଏବଂ ଅନ୍ୟ ମନ୍ତ୍ରୀମାନେ ମୁଖ୍ୟମନ୍ତ୍ରୀଙ୍କ ମନ୍ତ୍ରଣା ଅନୁସାରେ ରାଜ୍ୟପାଳଙ୍କ ଦ୍ୱାରା ନିଯୁକ୍ତ ହେବେ ଏବଂ ରାଜ୍ୟପାଳଙ୍କ ସନ୍ତୋଷାବଧି ମନ୍ତ୍ରୀମାନେ ପଦ ଧାରଣ କରିବେ :

ପରନ୍ତୁ, ବିହାର, ମଧ୍ୟପ୍ରଦେଶ ଓ ଓଡ଼ିଶା ଏହି ରାଜ୍ୟମାନଙ୍କରେ ଜନଜାତିଙ୍କର କଲ୍ୟାଣ ଦାୟିତ୍ୱରେ ଜଣେ ମନ୍ତ୍ରୀ ରହିବେ ଯେ କି ଏହି କାର୍ଯ୍ୟ ସମେତ ଅନୁସୂଚିତ ଜାତି ଓ ଅନୁନ୍ନତ ଶ୍ରେଣୀଙ୍କର କଲ୍ୟାଣ ଅଥବା ଅନ୍ୟ ଯେକୌଣସି କାର୍ଯ୍ୟର ଦାୟିତ୍ୱରେ ରହି ପାରିବେ ।

(୨) ମନ୍ତ୍ରୀ ପରିଷଦ ସମୂହ ଭାବରେ ରାଜ୍ୟର ବିଧାନ ସଭାଠାରେ ଉତ୍ତରଦାୟୀ ହେବେ ।

(୩) କୌଣସି ମନ୍ତ୍ରୀ ନିଜର ପଦ ଗ୍ରହଣ କରିବା ପୂର୍ବରୁ ତାହାଙ୍କୁ ରାଜ୍ୟପାଳ ତୃତୀୟ ଅନୁସୂଚୀରେ ଏହି ପ୍ରୟୋଜନାର୍ଥ ପ୍ରଦତ୍ତ ପ୍ରପତ୍ର ଅନୁସାରେ ପଦର ତଥା ଗୋପନୀୟତାର ଶପଥ କରାଇବେ ।

(୪) ଯେଉଁ ମନ୍ତ୍ରୀ ନିରବଚ୍ଛିନ୍ନ ଛଅମାସର କୌଣସି କାଳାବଧି ପର୍ଯ୍ୟନ୍ତ ରାଜ୍ୟ ବିଧାନ ମଣ୍ଡଳର ସଦସ୍ୟ ନଥାନ୍ତି ସେ ସେହି କାଳାବଧିର ଅବସାନ ହେଲେ ମନ୍ତ୍ରୀ ରୂପେ ରହିବେ ନାହିଁ ।

(୫) ମନ୍ତ୍ରୀମାନଙ୍କର ବେତନ ଓ ଭତ୍ତା ରାଜ୍ୟର ବିଧାନ ମଣ୍ଡଳ ବିଭିନ୍ନ ସମୟରେ ବିଧି ଦ୍ୱାରା ଯେପରି ନିର୍ଦ୍ଧାରିତ କରେ ସେହି ଅନୁସାରେ ହେବ ଏବଂ ଯେଉଁ ପର୍ଯ୍ୟନ୍ତ ରାଜ୍ୟର ବିଧାନ ମଣ୍ଡଳ ସେପରି ନିର୍ଦ୍ଧାରିତ ନ କରେ ସେ ପର୍ଯ୍ୟନ୍ତ ଦ୍ୱିତୀୟ ଅନୁସୂଚୀରେ ଯେପରି ବିନିର୍ଦ୍ଦିଷ୍ଟ ହୋଇଅଛି ସେହି ଅନୁସାରେ ହେବ ।

## ରାଜ୍ୟ ନିମିତ୍ତ ଆଡଭୋକେଟ ଜେନେରାଲ

ରାଜ୍ୟନିମିତ୍ତ ଆଡ଼ଭୋକେଟ ଜେନେରାଲ ।

୧୬୫ । (୧) ପ୍ରତ୍ୟେକ ରାଜ୍ୟର ରାଜ୍ୟପାଳ ଉଚ୍ଚନ୍ୟାୟାଳୟର ନ୍ୟାୟାଧୀଶ ରୂପେ ନିଯୁକ୍ତ ହେବା ଯୋଗ୍ୟତା ଥିବା ଜଣେ ବ୍ୟକ୍ତିଙ୍କୁ ରାଜ୍ୟ ନିମିତ୍ତ ଆଡ଼ଭୋକେଟ ଜେନେରାଲ ରୂପେ ନିଯୁକ୍ତ କରିବେ ।

(୨) ଆଡ଼ଭୋକେଟ ଜେନେରାଲଙ୍କର କର୍ତ୍ତବ୍ୟ ହେବ ଯେ, ଯେଉଁସବୁ ବିଧିକ ବିଷୟ ବା ଅନ୍ୟ ବିଧି ରୂପକ କର୍ତ୍ତବ୍ୟମାନ ରାଜ୍ୟପାଳଙ୍କ ଦ୍ୱାରା ବିଭିନ୍ନ ସମୟରେ ତାହାଙ୍କୁ ନିର୍ଦ୍ଦେଶିତ ବା ଅର୍ପିତ ହେବ ସେ ସେହିସବୁ

ବିଧିକ ବିଷୟରେ ରାଜ୍ୟ ସରକାରଙ୍କୁ ମନ୍ତ୍ରଣା ଦେବେ ଏବଂ ସେହି ବିଧି ରୂପକ କର୍ତ୍ତବ୍ୟମାନ ପାଳନ କରିବେ ଏବଂ ସମ୍ବିଧାନ ବା ତତ୍‌ସମୟ ପ୍ରବୃତ୍ତ ଅନ୍ୟ କୌଣସି ବିଧିଦ୍ୱାରା ବା ଅଧୀନରେ ତାହାଙ୍କୁ ପ୍ରଦତ୍ତ କୃତ୍ୟମାନ ନିର୍ବହନ କରିବେ ।

(୩) ଆଡ଼ଭୋକେଟ ଜେନେରାଲ ରାଜ୍ୟପାଳଙ୍କ ସନ୍ତୋଷାବଧି ପଦଧାରଣ କରିବେ ଓ ରାଜ୍ୟପାଳ ନିର୍ଦ୍ଧାରିତ କରିବା ମତେ ପାରିଶ୍ରମିକ ପାଇବେ ।

## ସରକାରୀ କାର୍ଯ୍ୟର ସଞ୍ଚାଳନ

ରାଜ୍ୟ ସରକାରଙ୍କର କାର୍ଯ୍ୟର ସଞ୍ଚାଳନ ।

୧୬୬ । (୧) ରାଜ୍ୟ ସରକାରଙ୍କର ସମସ୍ତ କାର୍ଯ୍ୟପାଳିକା କାର୍ଯ୍ୟ ରାଜ୍ୟପାଳଙ୍କ ନାମରେ କୃତ ବୋଲି ଅଭିବ୍ୟକ୍ତ ହେବ ।

(୨) ରାଜ୍ୟପାଳଙ୍କ ନାମରେ ପ୍ରଦତ୍ତ ଓ ନିଷ୍ପାଦିତ ଆଦେଶ ଏବଂ ଅନ୍ୟ ଲିଖତମାନ ରାଜ୍ୟପାଳଙ୍କ ଦ୍ୱାରା ପ୍ରଣୀତ ହେବା ନିୟମରେ ଯେପରି ବିନିର୍ଦ୍ଦିଷ୍ଟ ହୋଇଥାଏ ସେପରି ରୀତିରେ ଅଧିପ୍ରମାଣିତ ହେବ ଏବଂ ଏହି ପ୍ରକାରେ ଅଧିପ୍ରମାଣିତ ଆଦେଶ ବା ଲିଖତର ବୈଧତା ଉପରେ ଏହି ଆଧାର ଉପରେ ଆପତ୍ତି ହେବ ନାହିଁ ଯେ ତାହା ରାଜ୍ୟପାଳଙ୍କ ଦ୍ୱାରା ପ୍ରଦତ୍ତ ବା ନିଷ୍ପାଦିତ ଆଦେଶ ବା ଲିଖତ ନୁହେଁ ।

(୩) ରାଜ୍ୟ ସରକାରଙ୍କ କାର୍ଯ୍ୟ ଯେତେଦୂର ପର୍ଯ୍ୟନ୍ତ ଏପରି କାର୍ଯ୍ୟ ହୋଇ ନଥାଏ ଯାହା ସଂପର୍କରେ କି ରାଜ୍ୟପାଳ ନିଜ ବିବେକ ଅନୁସାରେ କାର୍ଯ୍ୟ କରିବେ ବୋଲି ଏହି ସମ୍ବିଧାନ ଦ୍ୱାରା ବା ଅଧୀନରେ ଆବଶ୍ୟକ କରାଯାଇଅଛି ସେହି କାର୍ଯ୍ୟର ଅଧିକ ସୁବିଧାଜନକ ନିର୍ବହନ ନିମିତ୍ତ ତଥା ମନ୍ତ୍ରୀମାନଙ୍କ ମଧ୍ୟରେ ଉକ୍ତ କାର୍ଯ୍ୟର ଆବଣ୍ଟନ ନିମିତ୍ତ ରାଜ୍ୟପାଳ ନିୟମ ପ୍ରଣୟନ କରିବେ ।

ରାଜ୍ୟପାଳଙ୍କୁ ସମ୍ବାଦ ଯୋଗାଇବା ସମ୍ବନ୍ଧିତ ବିଷୟରେ ମୁଖ୍ୟମନ୍ତ୍ରୀଙ୍କ କର୍ତ୍ତବ୍ୟ ।

୧୬୭ । ପ୍ରତ୍ୟେକ ରାଜ୍ୟର ମୁଖ୍ୟ ମନ୍ତ୍ରୀଙ୍କର ଏହା କର୍ତ୍ତବ୍ୟ ହେବ ଯେ ସେ—

(କ) ରାଜ୍ୟ କାର୍ଯ୍ୟର ପ୍ରଶାସନ ଏବଂ ବିଧାନ ନିମିତ୍ତ ପ୍ରସ୍ତାପନାମାନଙ୍କ ସମ୍ବନ୍ଧରେ ମନ୍ତ୍ରୀ ପରିଷଦର ସମସ୍ତ ନିଷ୍ପତ୍ତି ରାଜ୍ୟର ରାଜ୍ୟପାଳଙ୍କୁ ସଂସୂଚିତ କରିବେ ;

(ଖ) ରାଜ୍ୟ କାର୍ଯ୍ୟର ପ୍ରଶାସନ ତଥା ବିଧାନ ନିମିତ୍ତ ପ୍ରସ୍ତାପନା ସମ୍ବନ୍ଧରେ ଯେଉଁ ସମ୍ବାଦ ରାଜ୍ୟପାଳ ମଗାଇବେ ତାହା ତାଙ୍କୁ ଯୋଗାଇବେ ;

(ଗ) ଯେଉଁ ବିଷୟରେ କୌଣସି ମନ୍ତ୍ରୀଙ୍କ ଦ୍ୱାରା ନିଷ୍ପତ୍ତି କରାଯାଇଥାଏ, କିନ୍ତୁ ମନ୍ତ୍ରୀ ପରିଷଦ ଦ୍ୱାରା ବିଚାର କରାଯାଇ ନ ଥାଏ ରାଜ୍ୟପାଳ ଆବଶ୍ୟକ କଲେ ସେହି ବିଷୟ ମନ୍ତ୍ରୀ ପରିଷଦ ସମକ୍ଷରେ ବିଚାର ନିମିତ୍ତ ଉପସ୍ଥାପିତ କରିବେ ।

## ଅଧ୍ୟାୟ ୩—ରାଜ୍ୟ ବିଧାନମଣ୍ଡଳ

### ସାଧାରଣ

ରାଜ୍ୟମାନଙ୍କରେ ବିଧାନ ମଣ୍ଡଳ ଗଠନ ।

୧୬୮ । (୧) ପ୍ରତ୍ୟେକ ରାଜ୍ୟ ନିମିତ୍ତ ଏକ ବିଧାନ ମଣ୍ଡଳ ରହିବ ଯାହାକି ରାଜ୍ୟପାଳ ଏବଂ—

(କ) ଆନ୍ଧ୍ରପ୍ରଦେଶ, ବିହାର, ମଧ୍ୟପ୍ରଦେଶ, ତାମିଲିନାଡୁ, ମହାରାଷ୍ଟ୍ର, ମହିଶୂର, ପଞ୍ଜାବ, ଉତ୍ତରପ୍ରଦେଶ ଓ ପଶ୍ଚିମବଙ୍ଗରେ ଦୁଇଟି ସଦନକୁ ନେଇ,

(ଖ) ଅନ୍ୟ ରାଜ୍ୟମାନଙ୍କରେ ଗୋଟିଏ ସଦନକୁ ନେଇ,

ଗଠିତ ହେବ ।

(୨) ରାଜ୍ୟର ବିଧାନମଣ୍ଡଳରେ ଦୁଇଗୋଟି ସଦନ ଥିଲେ ତହିଁରୁ ଗୋଟିଏ ବିଧାନ ପରିଷଦ ଏବଂ ଅନ୍ୟଟି ବିଧାନ ସଭା ନାମରେ ଜ୍ଞାତ ହେବ, ଏବଂ ଗୋଟିଏ ମାତ୍ର ସଦନ ଥିଲେ ତାହା ବିଧାନ ସଭା ନାମରେ ଜ୍ଞାତ ହେବ ।

ରାଜ୍ୟମାନ-ଙ୍କରେ ବିଧାନ ପରିଷଦର ଲୋପ ବା ସୃଷ୍ଟି ।

୧୬୯ । (୧) ଅନୁଚ୍ଛେଦ ୧୬୮ରେ ଯାହା କିଛି ଥିବା ସତ୍ତ୍ୱେ, ବିଧାନ ପରିଷଦ ଥିବା କୌଣସି ରାଜ୍ୟରେ ବିଧାନ ପରିଷଦର ଲୋପ ନିମିତ୍ତ ଅଥବା ସେପରି ପରିଷଦ ନ ଥିବା ରାଜ୍ୟରେ ସେପରି ପରିଷଦ ସୃଷ୍ଟି କରିବା ନିମିତ୍ତ ସେହି ରାଜ୍ୟର ବିଧାନ ସଭାରେ ଏହି ଉଦ୍ଦେଶ୍ୟରେ ଏକ ସଙ୍କଳ୍ପ ସଭାରେ ସମସ୍ତ ସଦସ୍ୟ ସଂଖ୍ୟାର ବହୁମତରେ ଏବଂ ଉପସ୍ଥିତ ଓ ଭୋଟ ଦେଉଥିବା ସଦସ୍ୟମାନଙ୍କ ସଂଖ୍ୟାର ଅନ୍ୟୂନ ଦୁଇ ତୃତୀୟାଂଶଙ୍କ ବହୁମତରେ ପାରିତ ହେଲେ ସଂସଦ ବିଧିଦ୍ୱାରା ସେଥି ନିମିତ୍ତ ଉପବନ୍ଧ କରି ପାରିବ ।

(୨) ଖଣ୍ଡ (୧) ରେ ନର୍ଦ୍ଦିଷ୍ଟ କୌଣସି ବିଧିର ଉପବନ୍ଧମାନଙ୍କୁ ପ୍ରଭାବୀ କରିବା ନିମିତ୍ତ ଏହି ସମ୍ବିଧାନର ଯେପରି ସଂଶୋଧନ କରିବା ଆବଶ୍ୟକ ହୁଏ ତାହା କରିବା ନିମିତ୍ତ ଉପବନ୍ଧ ତଥା ସଂସଦ ଯେପରି ଆବଶ୍ୟକ ବୋଲି ବିବେଚନା କରେ ସେପରି ଅନୁପୂରକ, ଆନୁଷଙ୍ଗିକ ଓ ପାରିଣାମିକ ଉପବନ୍ଧମାନ ମଧ୍ୟ ସେହି ବିଧିରେ ରହିବ ।

(୩) ପୂର୍ବୋକ୍ତ ପ୍ରକାରର କୌଣସି ବିଧି ଅନୁଚ୍ଛେଦ ୩୬୮ର ପ୍ରୟୋଜନ ନିମିତ୍ତ ଏହି ସମ୍ବିଧାନର ସଂଶୋଧନ ବୋଲି ବିବେଚିତ ହେବ ନାହିଁ ।

ବିଧାନ ସଭା-ମାନଙ୍କର ଗଠନ ।

୧୭୦ । (୧) ଅନୁଚ୍ଛେଦ ୩୩୩ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ପ୍ରତ୍ୟେକ ରାଜ୍ୟର ବିଧାନ ସଭା ରାଜ୍ୟର ଆଞ୍ଚଳିକ ନିର୍ବାଚନ କ୍ଷେତ୍ରମାନଙ୍କରୁ ପ୍ରତ୍ୟକ୍ଷ ନିର୍ବାଚନ ଦ୍ୱାରା ବଛାଯିବା ପାଞ୍ଚଶହରୁ ଅନଧିକ ଓ ଷାଠିଏରୁ ଅନ୍ୟୂନ ସଦସ୍ୟମାନଙ୍କୁ ନେଇ ଗଠିତ ହେବ ।

(୨) ଖଣ୍ଡ (୧) ର ପ୍ରୟୋଜନ ନିମିତ୍ତ ପ୍ରତ୍ୟେକ ରାଜ୍ୟକୁ ଏପରି ରୀତିରେ ଆଞ୍ଚଳିକ ନିର୍ବାଚନ କ୍ଷେତ୍ରମାନଙ୍କରେ ବିଭାଜନ କରାଯିବ ଯେପରିକି ପ୍ରତ୍ୟେକ ନିର୍ବାଚନ କ୍ଷେତ୍ରର ଜନସଂଖ୍ୟା ଏବଂ ସେହି ରାଜ୍ୟକୁ ଆବଣ୍ଟିତ ସ୍ଥାନ ସଂଖ୍ୟାର ଅନୁପାତ ଯଥାସାଧ୍ୟ ସାରା ରାଜ୍ୟରେ ଏକା ହେବ ।

ସ୍ପଷ୍ଟୀକରଣ:—ଏହି ଖଣ୍ଡରେ "ଜନସଂଖ୍ୟା" ପଦର ଅର୍ଥ ଅନ୍ତିମ ପୂର୍ବଗାମୀ ଜନଗଣନାରେ ନିଶ୍ଚିତ ହୋଇଥିବା ଜନସଂଖ୍ୟା, ଯହିଁର କି ସୁସଙ୍ଗତ ସଂଖ୍ୟା ପ୍ରକାଶିତ ହୋଇଥାଏ :

ପରନ୍ତୁ ଏହି ସ୍ପଷ୍ଟୀକରଣରେ ଅନ୍ତିମ ପୂର୍ବଗାମୀ ଜନଗଣନା ପ୍ରତି ନିର୍ଦ୍ଦେଶ, ଯହିଁର କି ସୁସଙ୍ଗତ ସଂଖ୍ୟା ପ୍ରକାଶିତ ହୋଇଥାଏ, ସନ ୨୦୦୦ ପରେ କରାଯିବା ପ୍ରଥମ ଜନଗଣନାର ସୁସଙ୍ଗତ ସଂଖ୍ୟା ପ୍ରକାଶିତ ହେବା ପର୍ଯ୍ୟନ୍ତ ସନ ୧୯୭୧ର ଜନଗଣନା ପ୍ରତି ନିର୍ଦ୍ଦେଶ ବୋଲି ଅର୍ଥ କରାଯିବ ।

(୩) ପ୍ରତ୍ୟେକ ଜନଗଣନା ସଂପୂର୍ଣ୍ଣ ହେବା ପରେ ପ୍ରତ୍ୟେକ ରାଜ୍ୟର ବିଧାନ ସଭାରେ ମୋଟ ସ୍ଥାନ ସଂଖ୍ୟାର ପୁନଃସମାୟୋଜନ ତଥା ପ୍ରତ୍ୟେକ ରାଜ୍ୟକୁ ଆଞ୍ଚଳିକ ନିର୍ବାଚନ କ୍ଷେତ୍ରମାନଙ୍କରେ ବିଭାଜନର ପୁନଃସମାୟୋଜନ ସଂସଦ ବିଧି ଦ୍ୱାରା ଯେପରି ନିର୍ଦ୍ଧାରିତ କରେ ସେପରି ପ୍ରାଧିକାରୀ ଦ୍ୱାରା ଓ ସେପରି ରୀତିରେ କରାଯିବ :

ପରନ୍ତୁ ଯେ ପର୍ଯ୍ୟନ୍ତ ତତ୍‌ସମୟ ବିଦ୍ୟମାନ ବିଧାନସଭାର ବିଘଟନ ନ ହୋଇଛି ସେ ପର୍ଯ୍ୟନ୍ତ ବିଧାନ ସଭାର ପ୍ରତିନିଧିତ୍ୱ ଉପରେ ଏପରି ପନଃସମାୟୋଜନର ପ୍ରଭାବ ପଡ଼ିବ ନାହିଁ :

ଅଧିକନ୍ତୁ ରାଷ୍ଟ୍ରପତି ଆଦେଶ ଦ୍ୱାରା ଯେଉଁ ତାରିଖ ବିନିର୍ଦ୍ଦିଷ୍ଟ କରିବେ ଏପରି ପୁନଃସମାୟୋଜନ ସେହି ତାରିଖରୁ ପ୍ରଭାବୀ ହେବ, ଏବଂ ଏପରି ପୁନଃସମାୟୋଜନ ପ୍ରଭାବୀ ହେବା ପର୍ଯ୍ୟନ୍ତ ଏପରି ପୁନଃସମାୟୋଜନ ପୂର୍ବରୁ ଥିବା ଆଞ୍ଚଳିକ ନିର୍ବାଚନ କ୍ଷେତ୍ର ଭିତ୍ତିରେ ବିଧାନ ସଭା ପାଇଁ ଯେକୌଣସି ନିର୍ବାଚନ ହୋଇପାରିବ :

ପୁନଶ୍ଚ ସନ ୨୦୦୦ ପରେ କରାଯିବା ପ୍ରଥମ ଜନଗଣନାର ସୁସଙ୍ଗତ ସଂଖ୍ୟା ପ୍ରକାଶିତ ହେବା ପର୍ଯ୍ୟନ୍ତ ପ୍ରତ୍ୟେକ ରାଜ୍ୟର ବିଧାନ ସଭାର ମୋଟ ସ୍ଥାନ ସଂଖ୍ୟାର ପୁନଃସମାୟୋଜନ କରିବା ଏବଂ ଏହି ଖଣ୍ଡ ଅଧୀନରେ ସେହି ରାଜ୍ୟକୁ ଆଞ୍ଚଳିକ ନିର୍ବାଚନ କ୍ଷେତ୍ରମାନଙ୍କରେ ବିଭାଜନ କରିବା ଆବଶ୍ୟକ ହେବ ନାହିଁ ।

ବିଧାନ ପରିଷଦ ମାନଙ୍କର ଗଠନ ।

୧୭୧।(୧) ବିଧାନ ପରିଷଦ ଥିବା ରାଜ୍ୟର ବିଧାନ ପରିଷଦର ସଦସ୍ୟମାନଙ୍କର ମୋଟ ସଂଖ୍ୟା ସେହି ରାଜ୍ୟର ବିଧାନ ସଭାର ସଦସ୍ୟମାନଙ୍କର ମୋଟ ସଂଖ୍ୟାର ଏକତୃତୀୟାଂଶରୁ ଅଧିକ ହେବ ନାହିଁ :

ପରନ୍ତୁ କୌଣସି କ୍ଷେତ୍ରରେ ରାଜ୍ୟର ବିଧାନ ପରିଷଦର ସଦସ୍ୟମାନଙ୍କର ମୋଟ ସଂଖ୍ୟା ଚାଳିଶରୁ ଊଣା ହେବ ନାହିଁ ।

(୨) ଯେ ପର୍ଯ୍ୟନ୍ତ ସଂସଦ ବିଧି ଦ୍ୱାରା ଅନ୍ୟଥା ଉପବନ୍ଧ ନ କରିଛି ସେ ପର୍ଯ୍ୟନ୍ତ କୌଣସି ରାଜ୍ୟର ବିଧାନ ପରିଷଦର ଗଠନ ଖଣ୍ଡ (୩) ରେ ଉପବନ୍ଧିତ ହୋଇଥିବା ମତେ ହେବ ।

(୩) କୌଣସି ରାଜ୍ୟର ବିଧାନ ପରିଷଦର ସଦସ୍ୟମାନଙ୍କର ମୋଟ ସଂଖ୍ୟାର :—

(କ) ଏକତୃତୀୟାଂଶର ନିକଟତମ ସମ୍ଭବ ସଂଖ୍ୟା, ସେହି ରାଜ୍ୟର ନଗରପାଳିକା, ଜିଲ୍ଲାବୋର୍ଡ ଏବଂ ସଂସଦ ବିଧି ଦ୍ୱାରା ବିନିର୍ଦ୍ଦିଷ୍ଟ କରିବାମତେ ଅନ୍ୟ ସ୍ଥାନୀୟ ପ୍ରାଧିକାରୀମାନଙ୍କର ସଦସ୍ୟମାନଙ୍କୁ ନେଇ ଗଠିତ ନିର୍ବାଚକ ମଣ୍ଡଳ ଦ୍ୱାରା ନିର୍ବାଚିତ ହେବେ ;

(ଖ) ଏକ ଦ୍ୱାଦଶାଂଶର ନିକଟତମ ସମ୍ଭବ ସଂଖ୍ୟା ସେହି ରାଜ୍ୟର ବାସିନ୍ଦା ହୋଇଥିବା ତଥା ଭାରତ ରାଜ୍ୟକ୍ଷେତ୍ରର କୌଣସି ବିଶ୍ୱବିଦ୍ୟାଳୟରୁ ଅନ୍ୟୂନ ତିନିବର୍ଷକାଳ ସ୍ନାତକ ଉପାଧି ଧାରଣ କରିଥିବା ଅଥବା ଏପରି କୌଣସି ବିଶ୍ୱବିଦ୍ୟାଳୟ ସ୍ନାତକ ଉପାଧିର ସମତୁଲ୍ୟ ବୋଲି ସଂସଦ ପ୍ରଣୀତ କୌଣସି ବିଧି ଦ୍ୱାରା ବା ଅଧୀନରେ ବିହିତ କରାଯାଇଥିବା ଯୋଗ୍ୟତା ଅନ୍ୟୂନ ତିନିବର୍ଷକାଳ ଧାରଣ କରିଥିବା ବ୍ୟକ୍ତିମାନଙ୍କୁ ନେଇ ଗଠିତ ନିର୍ବାଚକମଣ୍ଡଳ ଦ୍ୱାରା ନିର୍ବାଚିତ ହେବେ ;

(ଗ) ଏକ ଦ୍ୱାଦଶାଂଶର ନିକଟତମ ସମ୍ଭବ ସଂଖ୍ୟା, ସଂସଦ ପ୍ରଣୀତ ବିଧି ଦ୍ୱାରା ବା ଅଧୀନରେ ବିହିତ ହେବା ମତେ ରାଜ୍ୟମଧ୍ୟରେ ମାଧ୍ୟମିକ ବିଦ୍ୟାଳୟରୁ ନିମ୍ନସ୍ତରର ନ ହୋଇଥିବା ଶିକ୍ଷା ଅନୁଷ୍ଠାନରେ ଅନ୍ୟୂନ ତିନିବର୍ଷକାଳ ଶିକ୍ଷା ଦାନରେ ନିଯୁକ୍ତ ଥିବା ବ୍ୟକ୍ତିମାନଙ୍କୁ ନେଇ ଗଠିତ ନିର୍ବାଚକମଣ୍ଡଳ ଦ୍ୱାରା ନିର୍ବାଚିତ ହେବେ ;

(ଘ) ଏକ ତୃତୀୟାଂଶର ନିକଟତମ ସମ୍ଭବ ସଂଖ୍ୟା, ବିଧାନସଭାର ସଦସ୍ୟମାନଙ୍କ ଦ୍ୱାରା ସେହି ସଭାର ସଦସ୍ୟ ହୋଇନଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ନିର୍ବାଚିତ ହେବେ ;

(ଙ) ଅବଶିଷ୍ଟ ସଦସ୍ୟ ରାଜ୍ୟପାଳଙ୍କ ଦ୍ୱାରା ଏହି ଅନୁଚ୍ଛେଦର ଖଣ୍ଡ ୫ର ଉପବନ୍ଧ ଅନୁସାରେ ମନୋନୀତ ହେବେ ।

(୪) ଖଣ୍ଡ (୩) ର ଉପଖଣ୍ଡ (କ), (ଖ) ଓ (ଗ) ର ଅଧୀନରେ ଯେଉଁମାନେ ନିର୍ବାଚିତ ହେବେ ସେମାନେ ସଂସଦ ପ୍ରଣୀତ ବିଧିଦ୍ୱାରା ବା ଅଧୀନରେ ଯେପରି ବିହିତ କରାଯାଏ ସେପରି ଆଞ୍ଚଳିକ ନିର୍ବାଚନ କ୍ଷେତ୍ରରୁ ନିର୍ବାଚିତ ହେବେ, ଏବଂ ଉକ୍ତ ଉପଖଣ୍ଡ ତଥା ଉକ୍ତ ଖଣ୍ଡର ଉପଖଣ୍ଡ (ଘ) ଅଧୀନରେ ହେବା ନିର୍ବାଚନ ଆନୁପାତିକ ପ୍ରତିନିଧିତ୍ୱ ପଦ୍ଧତି ଅନୁସାରେ ଏକ ସଂକ୍ରମଣୀୟ ଭୋଟ ଦ୍ୱାରା ହେବ ।

(୫) ରାଜ୍ୟପାଳଙ୍କ ଦ୍ୱାରା ଖଣ୍ଡ (୩)ର ଉପଖଣ୍ଡ (ଢ) ଅଧୀନରେ ମନୋନୀତ କରାଯିବା ସଦସ୍ୟମାନେ ଏପରି ବ୍ୟକ୍ତି ହୋଇଥିବେ ଯେଉଁମାନଙ୍କର କି ନିମ୍ନ ପ୍ରକାର ବିଷୟ ସଂପର୍କରେ ବିଶେଷ ଜ୍ଞାନ ବା ବ୍ୟବହାରିକ ଅଭିଜ୍ଞତା ଥିବ, ଯଥା—

ସାହିତ୍ୟ, ବିଜ୍ଞାନ, କଳା, ସମବାୟ ଆନ୍ଦୋଳନ ଏବଂ ସମାଜ ସେବା ।

ରାଜ୍ୟ ବିଧାନ ମଣ୍ଡଳମାନଙ୍କର କାଳାବଧି ।

୧୭୨ । (୧) ପ୍ରତ୍ୟେକ ରାଜ୍ୟର ପ୍ରତ୍ୟେକ ବିଧାନ ସଭା ପୂର୍ବରୁ ବିଘଟିତ କରାନଗଲେ ତହିଁର ପ୍ରଥମ ଅଧିବେଶନ ନିମିତ୍ତ ନିର୍ଦ୍ଧାରିତ ତାରିଖ ଠାରୁ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ଚାଲୁ ରହିବ ଓ ତହିଁରୁ ଅଧିକ ହେବ ନାହିଁ ଏବଂ ଉକ୍ତ ପାଞ୍ଚବର୍ଷର କାଳାବଧିର ସମାପ୍ତିରେ ବିଧାନ ସଭାର ବିଘଟନ ହେବ :

ପରନ୍ତୁ ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତିତ ଥିବା ସମୟରେ ସଂସଦ ବିଧି ଦ୍ୱାରା ଉକ୍ତ କାଳାବଧିକୁ ଥରକରେ ଏକ ବର୍ଷରୁ ଅନଧିକ ଯେ କୌଣସି କାଳାବଧି ନିମିତ୍ତ ବଢ଼ାଇପାରିବ ତଥା କୌଣସି ଅବସ୍ଥାରେ ମଧ୍ୟ ତାହା ଉଦ୍‌ଘୋଷଣା ପ୍ରବର୍ତ୍ତନର ଅନ୍ତ ହୋଇଯିବା ପରେ ଛଅମାସର କାଳାବଧିରୁ ଅଧିକ ବଢ଼ିବ ନାହିଁ ।

(୨) ରାଜ୍ୟ ବିଧାନ ପରିଷଦର ବିଘଟନ ହେବ ନାହିଁ କିନ୍ତୁ ତହିଁର ସଦସ୍ୟମାନଙ୍କ ଏକ ତୃତୀୟାଂଶର ନିକଟତମ ସମ୍ଭବ ସଂଖ୍ୟା ବିଧି ଦ୍ୱାରା ସଂସଦ କୃତ ତଦ୍‌ବିଷୟକ ଉପବନ୍ଧ ଅନୁସାରେ ପ୍ରତ୍ୟେକ ଦ୍ୱିତୀୟ ବର୍ଷର ଅବସାନ ହେଲେ ଯଥାଶୀଘ୍ର ନିବୃତ୍ତ ହେବେ ।

ରାଜ୍ୟ ବିଧାନ ମଣ୍ଡଳର ସଦସ୍ୟ ହେବା ନିମିତ୍ତ ଯୋଗ୍ୟତା ।

୧୭୩ । କୌଣସି ବ୍ୟକ୍ତି କୌଣସି ରାଜ୍ୟର ବିଧାନ ମଣ୍ଡଳର କୌଣସି ସ୍ଥାନ ପୂରଣ କରିବା ପାଇଁ ବଛା ଯିବା ନିମିତ୍ତ ଯୋଗ୍ୟ ହେବେ ନାହିଁ, ଯଦି—

(କ) ସେ ଭାରତର ନାଗରିକ ହୋଇ ନ ଥାନ୍ତି ଏବଂ ନିର୍ବାଚନ କମିଶନ ଦ୍ୱାରା ସେଥି ନିମିତ୍ତ ପ୍ରାଧିକୃତ କୌଣସି ବ୍ୟକ୍ତି ସମକ୍ଷରେ ତୃତୀୟ ଅନୁସୂଚୀରେ ସେହି ପ୍ରୟୋଜନାର୍ଥ ଦିଆଯାଇଥିବା ପ୍ରପତ୍ର ଅନୁସାରେ ଶପଥ ବା ପ୍ରତିଜ୍ଞାନ ନ କରନ୍ତି ତଥା ତହିଁ ଉପରେ ସ୍ୱାକ୍ଷର ନ କରନ୍ତି ;

(ଖ) ସେ ବିଧାନ ସଭାର ସ୍ଥାନ ନିମିତ୍ତ ଅନ୍ୟୂନ ପଚିଶ ବର୍ଷ ବୟସ୍କ ଏବଂ ବିଧାନ ପରିଷଦର ସ୍ଥାନ ନିମିତ୍ତ ଅନ୍ୟୂନ ତିରିଶ ବର୍ଷ ବୟସ୍କ ହୋଇ ନ ଥାନ୍ତି; ଏବଂ

(ଗ) ସଂସଦ ପ୍ରଣୀତ କୌଣସି ବିଧି ଦ୍ୱାରା ବା ଅଧୀନରେ ଏଥିନିମିତ୍ତ ଅନ୍ୟ ଯେଉଁ ଯୋଗ୍ୟତା ବିହିତ କରାଯାଏ ତାହା ତାଙ୍କର ନଥାଏ ।

ରାଜ୍ୟ ବିଧାନ ମଣ୍ଡଳର ସତ୍ର, ସତ୍ରାବସାନ ଓ ବିଘଟନ ।

୧୭୪ । (୧) ରାଜ୍ୟପାଳ ଥରକୁ ଥର ରାଜ୍ୟ ବିଧାନ ମଣ୍ଡଳର ସଦନ ବା ପ୍ରତ୍ୟେକ ସଦନକୁ ଯେପରି ଉଚିତ ମନେ କରନ୍ତି ସେପରି ସମୟ ଓ ସ୍ଥାନରେ ଅଧିବେଶନ ନିମିତ୍ତ ଆହ୍ୱାନ କରିବେ, କିନ୍ତୁ ତହିଁର ପ୍ରତ୍ୟେକ ସତ୍ରର ଶେଷ ବୈଠକ ଓ ଆଗାମୀ ସତ୍ରର ପ୍ରଥମ ବୈଠକ ନିମିତ୍ତ ଧାର୍ଯ୍ୟ ତାରିଖ ମଧ୍ୟରେ ବ୍ୟବଧାନ ଛଅମାସ ହେବ ନାହିଁ ।

(୨) ରାଜ୍ୟପାଳ ଥରକୁ ଥର—

(କ) ସଦନ ମାନଙ୍କର ବା କୌଣସି ସଦନର ସତ୍ରାବସାନ କରିପାରିବେ ;

(ଖ) ବିଧାନ ସଭାର ବିଘଟନ କରିପାରିବେ ।

ସଦନ ବା ସଦନମାନଙ୍କୁ ଅଭିଭାଷଣ ଦେବା ଏବଂ ବାର୍ତ୍ତା ପ୍ରେରଣ କରିବାରେ ରାଜ୍ୟପାଳଙ୍କ ଅଧିକାର ।

୧୭୫ । (୧) ରାଜ୍ୟପାଳ ବିଧାନ ସଭାରେ ବା ବିଧାନ ମଣ୍ଡଳରେ ଥିବା ରାଜ୍ୟରେ ରାଜ୍ୟ ବିଧାନ ମଣ୍ଡଳର ଯେ କୌଣସି ସଦନରେ ଅଥବା ଏକତ୍ର ସମବେତ ଉଭୟ ସଦନରେ ଅଭିଭାଷଣ ଦେଇ ପାରିବେ ଏବଂ ସେହି ପ୍ରୟୋଜନାର୍ଥ ସଦସ୍ୟମାନଙ୍କର ଉପସ୍ଥିତି ଆବଶ୍ୟକ କରିପାରିବେ ।

(୨) ରାଜ୍ୟପାଳ ରାଜ୍ୟ ବିଧାନ ମଣ୍ଡଳର ସଦନ ବା ସଦନମାନଙ୍କୁ ରାଜ୍ୟ ବିଧାନମଣ୍ଡଳରେ ସେହି ସମୟରେ ଲମ୍ବିତ ଥିବା କୌଣସି ବିଧେୟକ ବିଷୟରେ ବା ଅନ୍ୟ ବିଷୟରେ ବାର୍ତ୍ତା ପ୍ରେରଣ କରି ପାରିବେ ଏବଂ ଯେଉଁ ସଦନକୁ ଏହି ପ୍ରକାର କୌଣସି ବାର୍ତ୍ତା ପ୍ରେରିତ ହୁଏ ସେହି ସଦନ ତାହା ସୁବିଧାମତେ ଶୀଘ୍ର ବିଚାର କରିବେ ।

ରାଜ୍ୟପାଳଙ୍କ ବିଶେଷ ଅଭିଭାଷଣ ।

୧୭୬ । (୧) ବିଧାନ ସଭା ନିମିତ୍ତ ପ୍ରତ୍ୟେକ ସାଧାରଣ ନିର୍ବାଚନ ପରେ ପ୍ରଥମ ସତ୍ରର ପ୍ରାରମ୍ଭରେ ଏବଂ ପ୍ରତ୍ୟେକ ବର୍ଷର ପ୍ରଥମ ସତ୍ରର ପ୍ରାରମ୍ଭରେ ରାଜ୍ୟପାଳ ବିଧାନ ସଭାକୁ ବା ବିଧାନ ପରିଷଦ ଥିବା ରାଜ୍ୟରେ ଏକତ୍ର ସମବେତ ଉଭୟ ସଦନକୁ ଅଭିଭାଷଣ ଦେବେ ଏବଂ ବିଧାନ ମଣ୍ଡଳକୁ ଆହ୍ୱାନ କରିବାର କାରଣ ଜଣାଇବେ ।

(୨) ଏପରି ଅଭିଭାଷଣରେ ନିର୍ଦ୍ଦିଷ୍ଟ ହୋଇଥିବା ବିଷୟ ମାନଙ୍କର ଆଲୋଚନା ପାଇଁ ସମୟ ଆବଣ୍ଟନ କରିବା ନିମିତ୍ତ ସଦନ ବା ଉଭୟ ମଧ୍ୟରୁ ପ୍ରତ୍ୟେକ ସଦନର ପ୍ରକ୍ରିୟାକୁ ବିନିୟମିତ କରୁଥିବା ନିୟମରେ ଉପବନ୍ଧ କରାଯିବ ।

ସଦନମାନଙ୍କ ସମ୍ପର୍କରେ ମନ୍ତ୍ରୀ ଏବଂ ଆଡ଼ଭୋକେଟ ଜେନେରଲଙ୍କର ଅଧିକାର ।

୧୭୭ । ରାଜ୍ୟର ପ୍ରତ୍ୟେକ ମନ୍ତ୍ରୀଙ୍କର ଏବଂ ଆଡ଼ଭୋକେଟ ଜେନେରାଲଙ୍କ ବିଧାନ ସଭାରେ ବା ବିଧାନ ପରିଷଦ ଥିବା ରାଜ୍ୟରେ ଉଭୟ ସଦନରେ କହିବାର ଏବଂ ଅନ୍ୟଥା ତହିଁର କାର୍ଯ୍ୟବାହୀରେ ଭାଗ ନେବାର ଏବଂ ବିଧାନ ମଣ୍ଡଳର କୌଣସି ସମିତିର ସଦସ୍ୟରୂପେ ସେ ନାମିତ ହୋଇଥିଲେ ସେଥିରେ କହିବାର ଏବଂ ଅନ୍ୟଥା ତହିଁର କାର୍ଯ୍ୟବାହୀରେ ଭାଗ ନେବାର ଅଧିକାର ରହିବ କିନ୍ତୁ ଏହି ଅନୁଚ୍ଛେଦ ବଳରେ ଭୋଟ-ଦେବାଲାଗି ସେ ହକ୍‌ଦାର ହେବେ ନାହିଁ ।

## ରାଜ୍ୟ ବିଧାନମଣ୍ଡଳର ଅଫିସର

ବିଧାନ ସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ।

୧୭୮ । ପ୍ରତ୍ୟେକ ରାଜ୍ୟ ବିଧାନ ସଭା ଯଥା ଶୀଘ୍ର ସଭାର ଦୁଇଜଣ ସଦସ୍ୟଙ୍କୁ ଯଥାକ୍ରମେ ତହିଁର ଅଧ୍ୟକ୍ଷ ଓ ଉପଧ୍ୟକ୍ଷ ରୂପେ ବାଛିବ ଏବଂ ଯେତେଥର ଅଧ୍ୟକ୍ଷ ବା ଉପାଧ୍ୟକ୍ଷ ପଦ ରିକ୍ତ ହେଉଥିବ ସେତେଥର ସଭା, ଯଥାସ୍ଥିତି, ଅଧ୍ୟକ୍ଷ ବା ଉପାଧ୍ୟକ୍ଷ ରୂପେ ଅନ୍ୟ ଜଣେ ସଦସ୍ୟଙ୍କୁ ବାଛୁଥିବ ।

ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ପଦର ରିକ୍ତତା, ପଦତ୍ୟାଗ ଓ ପଦରୁ ଦୂରୀକରଣ ।

୧୭୯ । ବିଧାନ ସଭାର ଅଧ୍ୟକ୍ଷ ବା ଉପାଧ୍ୟକ୍ଷ ପଦ ଧାରଣ କରିଥିବା ସଦସ୍ୟ—

(କ) ସଭାର ସଦସ୍ୟ ନ ରହିଲେ ତାଙ୍କର ପଦ ରିକ୍ତ କରିବେ ;

(ଖ) ସେପରି ସଦସ୍ୟ ଅଧ୍ୟକ୍ଷ ହୋଇଥିଲେ ଉପାଧ୍ୟକ୍ଷଙ୍କୁ ଏବଂ ସେପରି ସଦସ୍ୟ ଉପାଧ୍ୟକ୍ଷ ହୋଇଥିଲେ ଅଧ୍ୟକ୍ଷଙ୍କୁ ସଂବୋଧିତ ନିଜର ସ୍ୱାକ୍ଷରିତ ଲେଖ ଦ୍ୱାରା ଯେ କୌଣସି ସମୟରେ ନିଜର ପଦତ୍ୟାଗ କରିପାରିବେ; ଏବଂ

(ଗ) ସଭାର ତତ୍କାଳୀନ ସମସ୍ତ ସଦସ୍ୟଙ୍କର ବହୁ ମତରେ ପାରିତ ସଭାର ସଙ୍କଳ୍ପ ଦ୍ୱାରା ତାଙ୍କ ପଦରୁ ଦୂରୀକୃତ ହୋଇପାରିବେ :

ପରନ୍ତୁ ଏପରି ସଂକଳ୍ପ ପ୍ରସ୍ତାବିତ କରିବାର ଅଭିପ୍ରାୟର ଅନ୍ୟୂନ ଚଉଦ ଦିନର ସୂଚନା ଦିଆଯାଇ ନ ଥିଲେ ଖଣ୍ଡ (ଗ) ର ପ୍ରୟୋଜନ ନିମିତ୍ତ କୌଣସି ସଂକଳ୍ପ ପ୍ରସ୍ତାବିତ କରାଯିବ ନାହିଁ :

ଅଧିକନ୍ତୁ ଯଦି କେବେ ବିଧାନ ସଭାର ବିଘଟନ କରାଯାଏ ତେବେ ବିଘଟନର ପରବର୍ତ୍ତୀ ବିଧାନ ସଭାର ପ୍ରଥମ ଅଧିବେଶନର ଅବ୍ୟବହିତ ପୂର୍ବ ପର୍ଯ୍ୟନ୍ତ ଅଧ୍ୟକ୍ଷ ନିଜର ପଦ ରିକ୍ତ କରିବେ ନାହିଁ ।

ଅଧ୍ୟକ୍ଷ ପଦର କର୍ତ୍ତବ୍ୟ ପାଳନ କରିବା ବା ଅଧ୍ୟକ୍ଷ ରୂପେ କାର୍ଯ୍ୟ କରିବା ପାଇଁ ଉପାଧ୍ୟକ୍ଷ ବା ଅନ୍ୟ ବ୍ୟକ୍ତିଙ୍କର କ୍ଷମତା ।

୧୮୦ । (୧) ଅଧ୍ୟକ୍ଷ ପଦ ରିକ୍ତ ଥିବାବେଳେ ଉପାଧ୍ୟକ୍ଷଙ୍କ ଦ୍ୱାରା ବା ଯଦି ଉପାଧ୍ୟକ୍ଷ ପଦ ମଧ୍ୟ ରିକ୍ତ ଥାଏ ତେବେ ସେହି ପ୍ରୟୋଜନ ନିମିତ୍ତ ରାଜ୍ୟପାଳ ବିଧାନ ସଭାର ଯେଉଁ ସଦସ୍ୟଙ୍କୁ ନିଯୁକ୍ତ କରିବେ ତାଙ୍କ ଦ୍ୱାରା ସେହି ପଦର କର୍ତ୍ତବ୍ୟ ପାଳନ କରାଯିବ ।

(୨) ବିଧାନ ସଭାର କୌଣସି ବୈଠକରେ ଅଧ୍ୟକ୍ଷଙ୍କ ଅନୁପସ୍ଥିତିରେ ଉପାଧ୍ୟକ୍ଷ ବା ଯଦି ସେ ମଧ୍ୟ ଅନୁପସ୍ଥିତ ଥାନ୍ତି ତେବେ ବିଧାନ ସଭା ପ୍ରକ୍ରିୟାର ନିୟମ ଦ୍ୱାରା ଯେପରି ନିର୍ଦ୍ଧାରିତ ହୋଇଥାଏ ସେପରି ବ୍ୟକ୍ତି ଅଥବା ଯଦି ସେପରି କୌଣସି ବ୍ୟକ୍ତି ଉପସ୍ଥିତ ନଥାନ୍ତି ତେବେ ବିଧାନ ସଭା ଯେପରି ନିର୍ଦ୍ଧାରିତ କରେ ସେପରି ଅନ୍ୟ ବ୍ୟକ୍ତି ଅଧ୍ୟକ୍ଷ ରୂପେ କାର୍ଯ୍ୟ କରିବେ ।

ଅଧ୍ୟକ୍ଷ ବା ଉପାଧ୍ୟକ୍ଷଙ୍କୁ ଦୂରୀକୃତ କରିବାର ସଙ୍କଳ୍ପ ବିଗ୍ରଧୀନ ଥିବାବେଳେ ସେ ପୀଠାସୀନ ନହେବା ।

୧୮୧ । (୧) ବିଧାନ ସଭାର କୌଣସି ବୈଠକରେ ଅଧ୍ୟକ୍ଷଙ୍କୁ ତାଙ୍କପଦରୁ ଦୂରୀକୃତ କରିବାର କୌଣସି ସଂକଳ୍ପ ବିଗ୍ରାଧୀନ ଥିବା ବେଳେ ଅଧ୍ୟକ୍ଷ, ଅଥବା ଉପାଧ୍ୟକ୍ଷଙ୍କୁ ତାଙ୍କ ପଦରୁ ଦୂରୀକୃତ କରିବାର ସଂକଳ୍ପ ବିଗ୍ରାଧୀନ ଥିବା ବେଳେ ଉପାଧ୍ୟକ୍ଷ ଉପସ୍ଥିତ ଥିଲେ ମଧ୍ୟ ପୀଠାସୀନ ହେବେ ନାହିଁ, ଏବଂ ଅନୁଚ୍ଛେଦ ୧୮୦ ର ଖଣ୍ଡ(୨) ର ଉପବଂଧମାନ ଯେଉଁ ବୈଠକରେ, ଯଥାସ୍ଥିତି, ଅଧ୍ୟକ୍ଷ ବା ଉପାଧ୍ୟକ୍ଷ ଅନୁପସ୍ଥିତ ଥାନ୍ତି ସେଥିପ୍ରତି ଯେପରି ଲଗୁ ହୁଏ ସେପରି ପ୍ରତ୍ୟେକ ବୈଠକ ସମ୍ବନ୍ଧରେ ସେହିପରି ଲଗୁ ହେବ ।

(୨) ଅଧ୍ୟକ୍ଷଙ୍କୁ ତାଙ୍କ ପଦରୁ ଦୂରୀକୃତ କରିବାର କୌଣସି ସଙ୍କଳ୍ପ ବିଧାନ ସଭାରେ ବିଗ୍ରାଧୀନ ଥିବାବେଳେ ଅଧ୍ୟକ୍ଷଙ୍କର ବିଧାନ ସଭାରେ କହିବା ପାଇଁ ଏବଂ ଅନ୍ୟଥା ତହିଁର କାର୍ଯ୍ୟବାହୀରେ ଭାଗ ନେବାପାଇଁ ଅଧିକାର ରହିବ, ଏବଂ ଅନୁଚ୍ଛେଦ ୧୮୯ରେ ଯାହା କିଛି ଥିବା ସତ୍ତ୍ୱେ, ସେ ଏପରି ସଙ୍କଳ୍ପ ଉପରେ ବା ଏପରି କାର୍ଯ୍ୟବାହୀର କୌଣସି ବିଷୟ ଉପରେ କେବଳ ପ୍ରଥମବାର ଭୋଟ ଦେବା ପାଇଁ ହକ୍‌ଦାର ହେବେ, କିନ୍ତୁ ଭୋଟ ସମାନ ହେଲେ ହକ୍‌ଦାର ହେବେ ନାହିଁ ।

ବିଧାନ ପରିଷଦର ସଭାପତି ଓ ଉପସଭାପତି ।

୧୮୨ । ଯେଉଁ ରାଜ୍ୟରେ ବିଧାନ ପରିଷଦ ଥାଏ ସେପରି ପ୍ରତ୍ୟେକ ରାଜ୍ୟର ବିଧାନ ପରିଷଦ ଯଥାଶୀଘ୍ର ପରିଷଦର ଦୁଇଜଣ ସଦସ୍ୟଙ୍କୁ ଯଥାକ୍ରମେ ତହିଁର ସଭାପତି ଓ ଉପସଭାପତି ରୂପେ ବାଛିବ ଏବଂ ଯେତେଥର ସଭାପତି ବା ଉପସଭାପତି ପଦ ରିକ୍ତ ହେଉଥିବ ସେତେଥର ପରିଷଦ ଅନ୍ୟ ଏକ ସଦସ୍ୟଙ୍କୁ, ଯଥାସ୍ଥିତି, ସଭାପତି ବା ଉପସଭାପତି ରୂପେ ବାଛୁଥିବ ।

ସଭାପତି ଓ ଉପସଭାପତି ପଦ ରିକ୍ତ କରିବା, ପଦତ୍ୟାଗ ଓ ପଦରୁ ଦୂରୀକରଣ ।

୧୮୩ । ବିଧାନ ପରିଷଦର ସଭାପତି ବା ଉପସଭାପତି ରୂପେ ପଦଧାରଣ କରିଥିବା ସଦସ୍ୟ—

(କ) ପରିଷଦର ସଦସ୍ୟ ନ ରହିଲେ ନିଜର ପଦ ରିକ୍ତ କରିବେ ;

(ଖ) ଯଦି ଏପରି ସଦସ୍ୟ ସଭାପତି ହୋଇଥାନ୍ତି ତେବେ ଉପସଭାପତିଙ୍କୁ ଏବଂ ଯଦି ଏପରି ସଦସ୍ୟ ଉପସଭାପତି ହୋଇଥାନ୍ତି ତେବେ ସଭାପତିଙ୍କୁ ସଂବୋଧିତ ନିଜର ସ୍ୱାକ୍ଷରିତ ଲେଖ ଦ୍ୱାରା ଯେ କୌଣସି ସମୟରେ ନିଜର ପଦତ୍ୟାଗ କରିପାରିବେ ; ଏବଂ

(ଗ) ପରିଷଦର ତତ୍କାଳୀନ ସମସ୍ତ ସଦସ୍ୟଙ୍କର ବହୁ ମତରେ ପାରିତ ପରିଷଦର ସଙ୍କଳ୍ପ ଦ୍ୱାରା ନିଜ ପଦରୁ ଦୂରୀକୃତ ହୋଇ ପାରିବେ

ପରନ୍ତୁ ଏପରି ସଙ୍କଳ୍ପ ପ୍ରସ୍ତାବିତ କରିବା ଅଭିପ୍ରାୟର ଅନ୍ୟୂନ ଚଉଦ ଦିନର ସୂଚନା ଦିଆଯାଇ ନଥିଲେ ଖଣ୍ଡ (ଗ)ର ପ୍ରୟୋଜନ ନିମିତ୍ତ କୌଣସି ସଙ୍କଳ୍ପ ପ୍ରସ୍ତାବିତ କରଯିବ ନାହିଁ ।

ଉପସଭାପତି ବା ଅନ୍ୟ ବ୍ୟକ୍ତିଙ୍କର ସଭାପତି ପଦର କର୍ତ୍ତବ୍ୟ ପାଳନ କରିବା ଅଥବା ସଭାପତି ରୂପେ କାର୍ଯ୍ୟ କରିବାର କ୍ଷମତା ।

୧୮୪ । (୧) ଯେଉଁ ସମୟରେ ସଭାପତି ପଦ ରିକ୍ତ ହୁଏ ସେତେବେଳେ ସେହି ପଦର କର୍ତ୍ତବ୍ୟ ଉପସଭାପତିଙ୍କ ଦ୍ୱାରା ପାଳିତ ହେବ ଅଥବା ଯଦି ଉପସଭାପତି ପଦ ମଧ୍ୟ ରିକ୍ତ ଥାଏ ତେବେ ରାଜ୍ୟପାଳ ଏହି ପ୍ରୟୋଜନରେ ପରିଷଦର ଯେଉଁ ସଦସ୍ୟଙ୍କୁ ନିଯୁକ୍ତ କରିବେ ତାଙ୍କ ଦ୍ୱାରା ପାଳିତ ହେବ ।

(୨) ବିଧାନ ପରିଷଦର କୌଣସି ବୈଠକରେ ସଭାପତିଙ୍କ ଅନୁପସ୍ଥିତିରେ ଉପସଭାପତି ବା ଯଦି ସେ ମଧ୍ୟ ଅନୁପସ୍ଥିତ ଥାନ୍ତି ତେବେ ପରିଷଦ ଯେପରି ନିର୍ଦ୍ଧାରିତ କରେ ସେପରି ଅନ୍ୟ ବ୍ୟକ୍ତି ସଭାପତି ରୂପେ କାର୍ଯ୍ୟ କରିବେ ।

ସଭାପତି ବା ଉପସଭାପତିଙ୍କୁ ପଦରୁ ଦୂରୀକୃତ କରିବାର ସଙ୍କଳ୍ପ ବିଗ୍ରଧୀନ ଥିବାବେଳେ ସେ ପୀଠାସୀନ ନ ହେବା ।

୧୮୫ । (୧) ବିଧାନ ପରିଷଦର କୌଣସି ବୈଠକରେ ସଭାପତିଙ୍କୁ ତାଙ୍କ ପଦରୁ ଦୂରୀକୃତ କରିବାର ସଂକଳ୍ପ ବିଗ୍ରାଧୀନ ଥିବା ବେଳେ ସଭାପତି ଅଥବା ଉପସଭାପତିଙ୍କୁ ତାଙ୍କ ପଦରୁ ଦୂରୀକୃତ କରିବାର କୌଣସି ସଂକଳ୍ପ ବିଗ୍ରାଧୀନ ଥିବାବେଳେ ଉପସଭାପତି ଉପସ୍ଥିତ ଥିଲେ ମଧ୍ୟ ପୀଠାସୀନ ହେବେନାହିଁ ଏବଂ ଅନୁଚ୍ଛେଦ ୧୮୪ର ଖଣ୍ଡ (୨)ର ଉପବଂଧ ମାନ, ଯଥାସ୍ଥିତି, ସଭାପତି ବା ଉପସଭାପତି ଅନୁପସ୍ଥିତ ଥିବା ବୈଠକ ସଂବଧରେ ଯେପରି ଲଗୁ ହୁଏ ସେପରି ପ୍ରତ୍ୟେକ ବୈଠକ ସଂବଧରେ ସେହିପରି ଲଗୁ ହେବ ।

(୨) ସଭାପତିଙ୍କୁ ତାଙ୍କ ପଦରୁ ଦୂରୀକୃତ କରିବାର କୌଣସି ସଂକଳ୍ପ ବିଧାନ ପରିଷଦରେ ବିଚାରାଧୀନ ଥିବାବେଳେ ପରିଷଦରେ କହିବା ପାଇଁ ଏବଂ ଅନ୍ୟଥା ତହିଁର କାର୍ଯ୍ୟବାହୀରେ ଭାଗ ନେବା ପାଇଁ ତାଙ୍କର ଅଧିକାର ରହିବ, କିନ୍ତୁ ଅନୁଚ୍ଛେଦ ୧୮୯ରେ ଯାହା କିଛି ଥିବା ସତ୍ତ୍ୱେ, ଏପରି ସଂକଳ୍ପ ଉପରେ ବା ଏପରି କାର୍ଯ୍ୟବାହୀର ଅନ୍ୟ କୌଣସି ବିଷୟ ଉପରେ କେବଳ ପ୍ରଥମବାର ଭୋଟ ଦେବା ପାଇଁ ସେ ହକ୍‌ଦାର ହେବେ, କିନ୍ତୁ ଭୋଟ ସମାନ ହେଲେ ହକ୍‌ଦାର ହେବେ ନାହିଁ ।

ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ଏବଂ ସଭାପତି ଓ ଉପସଭାପତିଙ୍କର ବେତନ ଓ ଭତ୍ତା ।

୧୮୬ । ବିଧାନ ସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ଏବଂ ବିଧାନ ପରିଷଦର ସଭାପତି ଓ ଉପସଭାପତିଙ୍କୁ ଯଥାକ୍ରମେ ରାଜ୍ୟ ବିଧାନ ମଣ୍ଡଳ ବିଧିଦ୍ୱାରା ଯେପରି ସ୍ଥିର କରେ ସେପରି ବେତନ ଓ ଭତ୍ତା ଦିଆଯିବ ଏବଂ ଯେପର୍ଯ୍ୟନ୍ତ ସେଥି ନିମିତ୍ତ ଏପରି ଉପବନ୍ଧ କରା ନ ଯାଇଛି ସେପର୍ଯ୍ୟନ୍ତ ଦ୍ୱିତୀୟ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହୋଇଥିବା ମତେ ବେତନ ଓ ଭତ୍ତା ଦିଆଯିବ ।

ରାଜ୍ୟ ବିଧାନ ମଣ୍ଡଳର ସଚିବାଳୟ ।

୧୮୭ । (୧) ରାଜ୍ୟ ବିଧାନ ମଣ୍ଡଳର ସଦନ ବା ପ୍ରତ୍ୟେକ ସଦନର ପୃଥକ ସଚିବୀୟ କର୍ମଚାରୀବୃନ୍ଦ ରହିବେ :

ପରନ୍ତୁ ବିଧାନ ପରିଷଦ ଥିବା ରାଜ୍ୟର ବିଧାନ ମଣ୍ଡଳ ସଂପର୍କରେ ଏପରି ବିଧାନ ମଣ୍ଡଳର ଉଭୟ ସଦନ ନିମିତ୍ତ ସାଧାରଣ ପଦ ସୃଷ୍ଟି କରିବାରେ ଏହି ଖଣ୍ଡର କୌଣସି ବିଷୟ ବାଧା ଦେଉଅଛି ବୋଲି ଅର୍ଥ କରାଯିବ ନାହିଁ ।

(୨) ରାଜ୍ୟ ବିଧାନ ମଣ୍ଡଳ ବିଧି ଦ୍ୱାରା ରାଜ୍ୟ ବିଧାନ ମଣ୍ଡଳର ସଦନ ବା ସଦନମାନଙ୍କର ସଚିବୀୟ କର୍ମଚାରୀ ବୃନ୍ଦଙ୍କର ଭର୍ତ୍ତି ତଥା ନିଯୁକ୍ତ ବ୍ୟକ୍ତିଙ୍କର ସେବାର ସର୍ତ୍ତମାନ ବିନିୟମିତ କରିପାରିବ ।

(୩) ଯେପର୍ଯ୍ୟନ୍ତ ରାଜ୍ୟର ବିଧାନ ମଣ୍ଡଳ ଦ୍ୱାରା ଖଣ୍ଡ (୨) ଅଧୀନରେ ଉପବନ୍ଧ କରା ନ ଯାଇଛି ସେପର୍ଯ୍ୟନ୍ତ ରାଜ୍ୟପାଳ, ଯଥାସ୍ଥିତି, ବିଧାନ ସଭାର ଅଧ୍ୟକ୍ଷ ବା ବିଧାନ ପରିଷଦର ସଭାପତିଙ୍କ ସହ ପରାମର୍ଶ କରି ସଭା ବା ପରିଷଦର ସଚିବୀୟ କର୍ମଚାରୀବୃନ୍ଦଙ୍କ ଭର୍ତ୍ତି ତଥା ନିଯୁକ୍ତ ବ୍ୟକ୍ତିଙ୍କର ସେବାର ସର୍ତ୍ତମାନ ବିନିୟମିତ କରୁଥିବା ନିୟମାବଳୀ ପ୍ରଣୟନ କରିପାରିବେ ଏବଂ ଏପରି ପ୍ରଣୀତ ଯେ କୌଣସି ନିୟମ ଉକ୍ତ ଖଣ୍ଡ ଅଧୀନରେ ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ପ୍ରଭାବୀ ହେବ ।

## କାର୍ଯ୍ୟ ସଞ୍ଚାଳନ

ସଦସ୍ୟଙ୍କ ଦ୍ୱାରା ଶପଥ ବା ପ୍ରତିଜ୍ଞାନ ।

୧୮୮ । ରାଜ୍ୟ ବିଧାନ ସଭାର ଅଥବା ବିଧାନ ପରିଷଦର ପ୍ରତ୍ୟେକ ସଦସ୍ୟ ନିଜର ସ୍ଥାନ ଗ୍ରହଣ କରିବା ପୂର୍ବରୁ ରାଜ୍ୟପାଳଙ୍କ ଦ୍ୱାରା ସେଥିନିମିତ୍ତ ନିଯୁକ୍ତ କୌଣସି ବ୍ୟକ୍ତିଙ୍କ ସମକ୍ଷରେ ତୃତୀୟ ଅନୁସୂଚୀରେ ସେହି ପ୍ରୟୋଜନାର୍ଥ ଦିଆଯାଇଥିବା ପ୍ରପତ୍ର ଅନୁସାରେ ଏକ ଶପଥ ବା ପ୍ରତିଜ୍ଞାନ କରିବେ ଓ ତହିଁରେ ସ୍ୱାକ୍ଷର କରିବେ ।

ସଦନମାନଙ୍କରେ ଭୋଟଦାନ, ରିକ୍ତତା ଥିବା ସତ୍ତ୍ୱେ ସଦନମାନଙ୍କର କାର୍ଯ୍ୟ କରିବାର କ୍ଷମତା ଏବଂ କୋରମ ।

୧୮୯ । (୧) ଏହି ସଂବିଧାନରେ ଅନ୍ୟଥା ଉପବନ୍ଧିତ କରାଯାଇଥିବା ବ୍ୟତିରେକେ, ରାଜ୍ୟ ବିଧାନ ମଣ୍ଡଳର କୌଣସି ସଦନର କୌଣସି ବୈଠକରେ ଅଧ୍ୟକ୍ଷ ଅଥବା ସଭାପତି ବା ସେହି ରୂପରେ କାର୍ଯ୍ୟ କରୁଥିବା ବ୍ୟକ୍ତିଙ୍କୁ ଛାଡ଼ି ଉପସ୍ଥିତ ଥିବା ତଥା ଭୋଟ ଦେଉଥିବା ସଦସ୍ୟମାନଙ୍କ ବହୁମତରେ ସମସ୍ତ ପ୍ରଶ୍ନର ନିର୍ଦ୍ଧାରଣ କରାଯିବ ।

ଅଧ୍ୟକ୍ଷ ବା ସଭାପତି ବା ସେହି ରୂପରେ କାର୍ଯ୍ୟ କରୁଥିବା ବ୍ୟକ୍ତି ପ୍ରଥମ ବାର ଭୋଟ ଦେବେ ନାହିଁ କିନ୍ତୁ ଭୋଟ ସମାନ ହେବା ସ୍ଥଳରେ ତାଙ୍କର ନିର୍ଣ୍ଣାୟକ ଭୋଟ ରହିବ ଓ ସେ ତହିଁର ପ୍ରୟୋଗ କରିବେ ।

(୨) ରାଜ୍ୟ ବିଧାନ ମଣ୍ଡଳର କୌଣସି ସଦନର ସଦସ୍ୟତାରେ ରିକ୍ତତା ଥିବା ସତ୍ତ୍ୱେ, ସେହି ସଦନର କାର୍ଯ୍ୟ କରିବାର କ୍ଷମତା ରହିବ ଏବଂ ଯଦି କାର୍ଯ୍ୟବାହୀରେ ଉପସ୍ଥିତ ହେବା ବା ଭୋଟ ଦେବା ବା ଅନ୍ୟଥା ଭାଗ ନେବା ପାଇଁ ହକ୍‌ଦାର ହୋଇ ନ ଥିବା କୌଣସି ବ୍ୟକ୍ତି ସେପରି କରିଛନ୍ତି ବୋଲି ପରେ ଜଣାପଡ଼େ, ତେବେ ସେପରି ହୋଇଥିବା ସତ୍ତ୍ୱେ ରାଜ୍ୟ ବିଧାନ ମଣ୍ଡଳର ଯେ କୌଣସି କାର୍ଯ୍ୟବାହୀ ବୈଧ ହେବ ।

(୩) ଯେଉଁ ପର୍ଯ୍ୟନ୍ତ ରାଜ୍ୟର ବିଧାନ ମଣ୍ଡଳ ବିଧିଦ୍ୱାରା ଅନ୍ୟଥା ଉପବନ୍ଧିତ ନ କରିଛି ସେ ପର୍ଯ୍ୟନ୍ତ ରାଜ୍ୟ ବିଧାନ ମଣ୍ଡଳର କୌଣସି ସଦନର ଅଧିବେଶନ ଗଠିତ କରିବା ନିମିତ୍ତ କୋରମ ଦଶ ଜଣ ସଦସ୍ୟ ବା ସଦନର ମୋଟ ସଦସ୍ୟ ସଂଖ୍ୟାର ଏକ ଦଶମାଂଶ, ଏହି ଦୁଇଟି ମଧ୍ୟରୁ ଯାହା ଅଧିକ ଅଟେ ତାହାହିଁ ହେବ ।

(୪) ରାଜ୍ୟର ବିଧାନ ସଭା ବା ବିଧାନ ପରିଷଦର ଅଧିବେଶନ ହେଉଥିବାବେଳେ ଯଦି କୌଣସି ସମୟରେ କୋରମ ନ ଥାଏ ତେବେ ଅଧ୍ୟକ୍ଷ ବା ସଭାପତି ବା ସେହି ରୂପେ କାର୍ଯ୍ୟ କରୁଥିବା ବ୍ୟକ୍ତିଙ୍କର କର୍ତ୍ତବ୍ୟ ହେବ ଯେ ସେ ସଦନକୁ ସ୍ଥଗିତ ରଖିବେ ବା କୋରମ ହେବା ପର୍ଯ୍ୟନ୍ତ ଅଧିବେଶନକୁ ବିଲମ୍ବିତ କରିବେ ।

## ସଦସ୍ୟମାନଙ୍କର ଅଯୋଗ୍ୟତା

ସ୍ଥାନ ମାନଙ୍କର ରିକ୍ତତା ।

୧୯୦. । (୧) କୌଣସି ବ୍ୟକ୍ତି ରାଜ୍ୟ ବିଧାନ ମଣ୍ଡଳର ଉଭୟ ସଦନର ସଦସ୍ୟ ହେବେ ନାହିଁ ଏବଂ ଯେଉଁ ବ୍ୟକ୍ତି ଉଭୟ ସଦନର ସଦସ ରୂପେ ବଛା ହୁଅନ୍ତି ସେ ଏକ ବା ଅନ୍ୟ ସଦନରୁ ତାଙ୍କର ସ୍ଥାନ ରିକ୍ତ କରିବା ନିମନ୍ତେ ରାଜ୍ୟ ବିଧାନ ମଣ୍ଡଳ ବିଧି ଦ୍ୱାରା ଉପବନ୍ଧ କରିବ ।

(୨) କୌଣସି ବ୍ୟକ୍ତି ପ୍ରଥମ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ରାଜ୍ୟମାନଙ୍କ ମଧ୍ୟରୁ ଦୁଇ ବା ଅଧିକ ରାଜ୍ୟର ବିଧାନ ମଣ୍ଡଳର ସଦସ୍ୟ ହେବେ ନାହିଁ ଏବଂ ଯଦି କୌଣସି ବ୍ୟକ୍ତି ଏପରି ଦୁଇ ବା ତତୋଧିକ ରାଜ୍ୟ ବିଧାନ-ମଣ୍ଡଳର ସଦସ୍ୟ ରୂପେ ବଛା ହୁଅନ୍ତି ତେବେ ପୂର୍ବରୁ ସେ ଗୋଟିଏ ରାଜ୍ୟଭିନ୍ନ ଅନ୍ୟ ରାଜ୍ୟମାନଙ୍କର ବିଧାନ ମଣ୍ଡଳରୁ ତାଙ୍କର ସ୍ଥାନ ତ୍ୟାଗ କରି ନ ଥିଲେ ରାଷ୍ଟ୍ରପତିଙ୍କ ଦ୍ୱାରା ପ୍ରଣୀତ ନିୟମରେ ଯେଉଁ କାଳାବଧି ବିନିର୍ଦ୍ଦିଷ୍ଟ ହୋଇଥାଏ ତହିଁର ଅବସାନ ହେଲେ ଏପରି ସମସ୍ତ ରାଜ୍ୟର ବିଧାନ ମଣ୍ଡଳମାନଙ୍କରେ ତାଙ୍କର ସ୍ଥାନ ରିକ୍ତ ହୋଇଯିବ ।

(୩) ଯଦି ରାଜ୍ୟ ବିଧାନମଣ୍ଡଳର କୌଣସି ସଦସ୍ୟ–

(କ) ଅନୁଚ୍ଛେଦ ୧୯୧ର ଖଣ୍ଡ(୧)ରେ ବର୍ଣ୍ଣିତ ଅଯୋଗ୍ୟତାମାନଙ୍କ ମଧ୍ୟରୁ କୌଣସିଟିର ବଶବର୍ତ୍ତୀ ହୁଅନ୍ତି, ବା

(ଖ) ଯଥାସ୍ଥିତି, ଅଧ୍ୟକ୍ଷ ବା ସଭାପତିଙ୍କୁ ସମ୍ବୋଧିତ ସ୍ୱାକ୍ଷରିତ ଲେଖ ଦ୍ୱାରା ନିଜର ସ୍ଥାନ ତ୍ୟାଗ କରନ୍ତି ଏବଂ ତାଙ୍କର ତ୍ୟାଗପତ୍ର, ଯଥାସ୍ଥିତି, ଅଧ୍ୟକ୍ଷ ବା ସଭାପତିଙ୍କ ଦ୍ୱାରା ଗୃହୀତ ହୁଏ,

ତେବେ ତାହା ଫଳରେ ତାଙ୍କର ସ୍ଥାନ ରିକ୍ତ ହୋଇଯିବ :

ପରନ୍ତୁ ଉପଖଣ୍ଡ (ଖ)ରେ ନିର୍ଦ୍ଦେଶିତ କୌଣସି ତ୍ୟାଗପତ୍ର ସ୍ଥଳେ, ଯଦି କୌଣସି ସମ୍ବାଦ ପାଇ ବା ଅନ୍ୟଥା ଯଥାସ୍ଥିତି, ଅଧ୍ୟକ୍ଷ ବା ସଭାପତି ଉଚିତ ମନେ କରିବା ମତେ ଅନୁସନ୍ଧାନ କରିବା ପରେ ସନ୍ତୁଷ୍ଟ ହୁଅନ୍ତି ଯେ ସେହି ତ୍ୟାଗପତ୍ର ସ୍ୱେଚ୍ଛାକୃତ ବା ଯଥାର୍ଥ ନୁହେଁ ତାହାହେଲେ ସେ ଉକ୍ତ ତ୍ୟାଗପତ୍ର ଗ୍ରହଣ କରିବେ ନାହିଁ ।

(୪) ଯଦି ରାଜ୍ୟ ବିଧାନମଣ୍ଡଳର କୌଣସି ସଦନର କୌଣସି ସଦସ୍ୟ ଷାଠିଏ ଦିନର କାଳାବଧି ପର୍ଯ୍ୟନ୍ତ ସଦନର ବିନା ଅନୁମତିରେ ତହିଁର ସମସ୍ତ ଅଧିବେଶନରୁ ଅନୁପସ୍ଥିତ ରହନ୍ତି ତେବେ ତାଙ୍କର ସ୍ଥାନ ରିକ୍ତ ହେଲା ବୋଲି ସଦନ ଘୋଷଣା କରିପାରିବ :

ପରନ୍ତୁ ଷାଠିଏ ଦିନର କାଳାବଧିର ସଂଗଣନା କରିବା ବେଳେ ଯେଉଁ କାଳାବଧି ମଧ୍ୟରେ ସଦନ ସତ୍ରାବସିତ ବା କ୍ରମାଗତ ଚାରିରୁ ଅଧିକ ଦିନ ପାଇଁ ସ୍ଥଗିତ ହୋଇଥାଏ ତାହା ହିସାବକୁ ନିଆଯିବ ନାହିଁ ।

ସଦସ୍ୟତା ନିମିତ୍ତ ଅଯୋଗ୍ୟତା ।

୧୯୧ । (୧) ଯଦି କୌଣସି ବ୍ୟକ୍ତି ,–

(କ) ଯେଉଁ ପଦ ଧାରଣ କଲେ କୌଣସି ବ୍ୟକ୍ତି ଅଯୋଗ୍ୟ ହେବେ ନାହିଁ ବୋଲି ରାଜ୍ୟ ବିଧାନ ମଣ୍ଡଳ କର୍ତ୍ତୃକ ବିଧି ଦ୍ୱାରା ଘୋଷିତ ହୋଇଥାଏ ସେହି ପଦ ଭିନ୍ନ ଅନ୍ୟ କୌଣସି ଲାଭପ୍ରଦ ପଦ ଭାରତ ସରକାରଙ୍କ ଅଧୀନରେ ବା ପ୍ରଥମ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ କୌଣସି ରାଜ୍ୟର ସରକାରଙ୍କ ଅଧୀନରେ ଧାରଣ କରିଥାନ୍ତି,

(ଖ) ବିକୃତ ଚିତ୍ତ ହୋଇଥାନ୍ତି ଏବଂ କୌଣସି ସକ୍ଷମ ନ୍ୟାୟାଳୟ ଦ୍ୱାରା ଏପରି ଘୋଷଣା କରାଯାଇଥାଏ,

(ଗ) ଅନୁନ୍ମୁକ୍ତ ଦେବାଳିଆ ହୋଇଥାନ୍ତି,

(ଘ) ଭାରତର ନାଗରିକ ହୋଇ ନ ଥାନ୍ତି ବା କୌଣସି ବିଦେଶୀ ରାଜ୍ୟର ନାଗରିକତା ସ୍ୱେଚ୍ଛାରେ ଅର୍ଜନ କରିଥାନ୍ତି ବା କୌଣସି ବିଦେଶୀ ରାଜ୍ୟପ୍ରତି ନିଷ୍ଠା ବା ଅନୁରକ୍ତି ଅଭିସ୍ୱୀକାର କରିଥାନ୍ତି,

(ଙ) ସଂସଦ ପ୍ରଣୀତ ବିଧିଦ୍ୱାରା ବା ଅଧୀନରେ ଏହି ପ୍ରକାରେ ଅଯୋଗ୍ୟ ହୋଇଥାନ୍ତି,

ତେବେ ସେ କୌଣସି ରାଜ୍ୟର ବିଧାନ ସଭା ବା ବିଧାନ ପରିଷଦର ସଦସ୍ୟରୂପେ ବଛାଯିବା ନିମିତ୍ତ ଓ ସଦସ୍ୟ ହେବା ନିମିତ୍ତ ଅଯୋଗ୍ୟ ହେବେ ।

(୨) କୌଣସି ବ୍ୟକ୍ତି ସଂଘର ବା ପ୍ରଥମ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ କୌଣସି ରାଜ୍ୟର ମନ୍ତ୍ରୀ ହୋଇଥିବା କାରଣରୁ ଏହି ଅନୁଚ୍ଛେଦର ପ୍ରୟୋଜନ ନିମିତ୍ତ ସେ ଭାରତ ସରକାର ବା ସେପରି କୌଣସି ରାଜ୍ୟର ସରକାରଙ୍କ ଅଧୀନରେ ଲାଭପ୍ରଦ ପଦ ଧାରଣ କରିଅଛନ୍ତି ବୋଲି ବିବେଚିତ ହେବେ ନାହିଁ ।

ସଦସ୍ୟମାନଙ୍କର ଅଯୋଗ୍ୟତା ବିଷୟକ ପ୍ରଶ୍ନ ଉପରେ ବିନିଶ୍ଚୟ ।

୧୯୨ । (୧) ଯଦି କୌଣସି ରାଜ୍ୟର ବିଧାନ ମଣ୍ଡଳର କୌଣସି ସଦସ୍ୟ ଅନୁଚ୍ଛେଦ ୧୯୧ର ଖଣ୍ଡ(୧)ରେ ବର୍ଣ୍ଣିତ କୌଣସି ଅଯୋଗ୍ୟତାର ବଶବର୍ତ୍ତୀ ହୋଇଛନ୍ତି କି ନାହିଁ ବୋଲି କୌଣସି ପ୍ରଶ୍ନ ଉଠେ ତେବେ ସେହି ପ୍ରଶ୍ନକୁ ରାଜ୍ୟପାଳଙ୍କ ବିନିଶ୍ଚୟ ନିମନ୍ତେ ନିର୍ଦ୍ଦେଶିତ କରାଯିବ ଓ ତାହାଙ୍କ ବିନିଶ୍ଚୟ ଚୂଡ଼ାନ୍ତ ହେବ ।

(୨) ସେପରି କୌଣସି ପ୍ରଶ୍ନ ଉପରେ କୌଣସି ବିନିଶ୍ଚୟ କରିବା ପୂର୍ବରୁ ରାଜ୍ୟପାଳ ନିର୍ବାଚନ କମିଶନଙ୍କ ଅଭିମତ ଅଭିପ୍ରାପ୍ତ କରିବେ ଏବଂ ସେପରି ଅଭିମତ ଅନୁଯାୟୀ କାର୍ଯ୍ୟ କରିବେ ।

ଅନୁଚ୍ଛେଦ ୧୮୮ ଅଧୀନରେ ଶପଥ ବା ପ୍ରତିଜ୍ଞାନ କରିବା ପୂର୍ବରୁ ଅଥବା ଯୋଗ୍ୟ ନ ଥାଇ ବା ଅଯୋଗ୍ୟ ହୋଇଥାଇ ବସିବା ଏବଂ ଭୋଟ ଦେବା ନିମିତ୍ତ ଦଣ୍ଡ ।

୧୯୩ । ଯଦି କୌଣସି ବ୍ୟକ୍ତି ଅନୁଚ୍ଛେଦ ୧୮୮ ଦ୍ୱାରା ଆବଶ୍ୟକ ବିଷୟମାନ ପୂରଣ କରିବା ପୂର୍ବରୁ ଅଥବା ସେ ରାଜ୍ୟ ବିଧାନ ସଭା ବା ବିଧାନ ପରିଷଦର ସଦସ୍ୟତା ଲାଗି ଯୋଗ୍ୟ ନୁହନ୍ତି ବା ଅଯୋଗ୍ୟ ଅଟନ୍ତି ବା ସଂସଦ ବା ରାଜ୍ୟ ବିଧାନ ମଣ୍ଡଳ ଦ୍ୱାରା ପ୍ରଣୀତ କୌଣସି ବିଧିର ଉପବଂଧମାନଙ୍କ ଦ୍ୱାରା ବିଧାନ ମଣ୍ଡଳର କୌଣସି ସଦନରେ ଉପସ୍ଥିତ ହେବା ନିମିତ୍ତ ବା ଭୋଟ ଦେବା ନିମିତ୍ତ ସେ ନିଷିଦ୍ଧ ହୋଇଅଛନ୍ତି ବୋଲି ଜାଣି କରି ମଧ୍ୟ ବିଧାନ ସଭା ବା ବିଧାନ ପରିଷଦରେ ସଦସ୍ୟ ରୂପେ ଉପସ୍ଥିତ ହୁଅନ୍ତି ବା ଭୋଟ ଦିଅନ୍ତି ତେବେ ସେ ଯେଉଁ ଦିନ ଏପରି ଉପସ୍ଥିତ ହୁଅନ୍ତି ବା ଭୋଟ ଦିଅନ୍ତି ସେପରି ପ୍ରତ୍ୟେକ ଦିନ ନିମିତ୍ତ ପାଞ୍ଚ ଶହ ଟଙ୍କା ଶାସ୍ତିରେ ଭାଗୀ ହେବେ ଯାହାକି ରାଜ୍ୟକୁ ଦେୟ ଋଣ ରୂପେ ଅସୁଲ କରାଯିବ ।

## ରାଜ୍ୟ ବିଧାନମଣ୍ଡଳ ଏବଂ ତହିଁର ସଦସ୍ୟମାନଙ୍କର କ୍ଷମତା, ବିଶେଷାଧିକାର ଏବଂ ଉନ୍ମୁକ୍ତି

ବିଧାନ ମଣ୍ଡଳର ସଦନମାନଙ୍କର ଏବଂ ତହିଁର ସଦସ୍ୟମାନଙ୍କର ଓ ସମିତିମାନଙ୍କର କ୍ଷମତା, ବିଶେଷାଧିକାର ଇତ୍ୟାଦି ।

୧୯୪ । (୧) ଏହି ସଂବିଧାନର ଉପବନ୍ଧମାନଙ୍କର ଏବଂ ବିଧାନ ମଣ୍ଡଳର ପ୍ରକ୍ରିୟା, ନିୟମାବଳୀ ଓ ସ୍ଥାୟୀ ଆଦେଶମାନଙ୍କର ବଶବର୍ତ୍ତୀ ରହି ପ୍ରତ୍ୟେକ ରାଜ୍ୟର ବିଧାନ ମଣ୍ଡଳରେ ବାକ୍ ସ୍ୱାତନ୍ତ୍ର୍ୟ ରହିବ ।

(୨) ରାଜ୍ୟ ବିଧାନ ମଣ୍ଡଳର କୌଣସି ସଦସ୍ୟ ବିଧାନ ମଣ୍ଡଳରେ ବା ତହିଁର କୌଣସି ସମିତିରେ କୌଣସି ବିଷୟ କହିଥିବା ବା କୌଣସି ଭୋଟ ଦେଇଥିବା ସଂପର୍କରେ ତାଙ୍କ ବିରୁଦ୍ଧରେ କୌଣସି ନ୍ୟାୟାଳୟରେ କୌଣସି କାର୍ଯ୍ୟବାହୀ ଚଳିବ ନାହିଁ ଏବଂ ଏପରି ବିଧାନ ମଣ୍ଡଳର କୌଣସି ସଦନର ପ୍ରାଧିକାର ଦ୍ୱାରା ବା ଅଧୀନରେ କୌଣସି ରିପୋର୍ଟ, ପତ୍ର, ଭୋଟ ବା କାର୍ଯ୍ୟବାହୀର ପ୍ରକାଶନ ସଂପର୍କରେ କୌଣସି ବ୍ୟକ୍ତି ବିରୁଦ୍ଧରେ ସେପରି କାର୍ଯ୍ୟବାହୀ ଚଳିବ ନାହିଁ ।

(୩) ଅନ୍ୟାନ୍ୟ ବିଷୟ ସଂପର୍କରେ କୌଣସି ରାଜ୍ୟର ବିଧାନମଣ୍ଡଳର ଯେ କୌଣସି ସଦନର ତଥା ସେପରି ବିଧାନମଣ୍ଡଳର ଯେ କୌଣସି ସଦନର ସଦସ୍ୟ ଓ ସମିତିମାନଙ୍କର କ୍ଷମତା, ବିଶେଷାଧିକାର ଓ ଉନ୍ମୁକ୍ତିମାନ ତାହାହିଁ ରହିବ ଯାହାକି ବିଧାନମଣ୍ଡଳ କର୍ତ୍ତୃକ ବିଧି ଦ୍ୱାରା ଥରକୁ ଥର ସଂଜ୍ଞାକୃତ କରାଯାଇ ପାରିବ, ଏବଂ ସେପରି ସଂଜ୍ଞାକୃତ ନହେବା ପର୍ଯ୍ୟନ୍ତ ସଂବିଧାନ (୪୪ଶ ସଂଶୋଧନ) ଅଧିନିୟମ, ୧୯୭୮ର ଧାରା ୨୬ ପ୍ରବୃତ୍ତ ହେବାର ଅବ୍ୟବହିତ ପୂର୍ବରୁ ତାହାର ସଦସ୍ୟ ଓ ସମିତିମାନଙ୍କର ଯେଉଁ କ୍ଷମତା, ବିଶେଷାଧିକାର ଓ ଉନ୍ମୁକ୍ତି ଥିଲା ତାହାହିଁ ରହିବ ।

(୪) ଖଣ୍ଡ (୧), (୨) ଓ (୩) ର ଉପବନ୍ଧ ସେହି ବିଧାନମଣ୍ଡଳର ସଦସ୍ୟମାନଙ୍କ ସମ୍ବନ୍ଧରେ ଯେପରି ଲାଗୁ ହୁଏ ଏହି ସଂବିଧାନ ବଳରେ ଯେଉଁ ବ୍ୟକ୍ତିମାନଙ୍କର ରାଜ୍ୟ ବିଧାନମଣ୍ଡଳର କୌଣସି ସଦନରେ ଅଥବା କୌଣସି ସମିତିରେ କହିବାର ବା ଅନ୍ୟଥା ତହିଁର କାର୍ଯ୍ୟବାହୀରେ ଭାଗ ନେବାର ଅଧିକାର ରହିଅଛି ସେମାନଙ୍କ ସମ୍ବନ୍ଧରେ ସେହିପରି ଲାଗୁ ହେବ ।

ସଦସ୍ୟମାନଙ୍କର ବେତନ ଓ ଭତ୍ତା ।

୧୯୫ । ରାଜ୍ୟର ବିଧାନସଭା ଓ ବିଧାନପରିଷଦର ସଦସ୍ୟମାନେ ରାଜ୍ୟ ବିଧାନମଣ୍ଡଳ କର୍ତ୍ତୃକ ବିଧି ଦ୍ୱାରା ବିଭିନ୍ନ ସମୟରେ ଯେପରି ନର୍ଦ୍ଧାରିତ ହୁଏ ସେପରି ବେତନ ଓ ଭତ୍ତା ପାଇବା ପାଇଁ ହକଦାର ହେବେ ଏବଂ ଯେପର୍ଯ୍ୟନ୍ତ ଏହି ସଂପର୍କରେ ଉପବନ୍ଧ କରା ନ ଯାଇଛି ସେପର୍ଯ୍ୟନ୍ତ ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ତତ୍‌ସ୍ଥାନୀ ପ୍ରଦେଶର ବିଧାନସଭାର ସଦସ୍ୟମାନଙ୍କ ପ୍ରତି ଯେପରି ଲାଗୁ ହେଉଥିଲା ସେହି ହାର ଓ ସେହି ସର୍ତ୍ତରେ ବେତନ ଓ ଭତ୍ତା ପାଇବା ପାଇଁ ହକଦାର ହେବେ ।

## ବିଧାନ ପ୍ରକ୍ରିୟା

ବିଧେୟକମାନଙ୍କର ପୁରଃସ୍ଥାପନ ଓ ପାରଣ ବିଷୟରେ ଉପବନ୍ଧ ।

୧୯୬ । (୧) ଧନ ବିଧେୟକ ଏବଂ ଅନ୍ୟାନ୍ୟ ବିତ୍ତୀୟ ବିଧେୟକ ସଂପର୍କରେ ଅନୁଚ୍ଛେଦ ୧୯୮ ଏବଂ ୨୦୭ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି କୌଣସି ବିଧେୟକ ବିଧାନ ପରିଷଦ ଥିବା ରାଜ୍ୟର ବିଧାନ ମଣ୍ଡଳର ଯେ କୌଣସି ସଦନରେ ଆରମ୍ଭ ହୋଇ ପାରିବ ।

(୨) ଅନୁଚ୍ଛେଦ ୧୯୭ ଓ ୧୯୮ ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ଯଦି କୌଣସି ବଧେୟକ ବିଧାନ ପରିଷଦ ଥିବା ରାଜ୍ୟର ବିଧାନମଣ୍ଡଳ ଉଭୟ ସଦନ ଦ୍ୱାରା ହୁଏତ ସଂଶୋଧନ ବିନା ଅଥବା ଉଭୟ ସଦନ ଦ୍ୱାରା ଯଥା ସହମତ ସଂଶୋଧନ ସହ ଉଭୟ ସଦନର ସହମତି ଲାଭ କରି ନ ଥାଏ ତେବେ ତାହା ସେପରି ବିଧାନ ମଣ୍ଡଳର ସଦନମାନଙ୍କ ଦ୍ୱାରା ପାରିତ ହୋଇଅଛି ବୋଲି ବିବେଚିତ ହେବ ନାହିଁ ।

(୩) ରାଜ୍ୟର ବିଧାନମଣ୍ଡଳରେ ଲମ୍ବିତ ଥିବା ବଧେୟକ ତହିଁର ସଦନ ବା ସଦନମାନଙ୍କର ସତ୍ରାବସାନ କାରଣରୁ ବ୍ୟପଗତ ହେବ ନାହିଁ ।

(୪) ରାଜ୍ୟର ବିଧାନ ପରିଷଦରେ ଲମ୍ବିତ ଥିବା ବିଧେୟକ ଯାହାକି ବିଧାନ ସଭା ଦ୍ୱାରା ପାରିତ ହୋଇ ନ ଥାଏ ବିଧାନ ସଭାର ବିଘଟନ ହେଲେ ବ୍ୟପଗତ ହେବ ନାହିଁ ।

(୫) ରାଜ୍ୟର ବିଧାନ ସଭାରେ ଲମ୍ବିତ ଥିବା ଅଥବା ବିଧାନ ସଭା ଦ୍ୱାରା ପାରିତ ହୋଇ ବିଧାନ ପରିଷଦରେ ଲମ୍ବିତ ଥିବା ବିଧେୟକ ବିଧାନ ସଭାର ବିଘଟନ ହେଲେ ବ୍ୟପଗତ ହୋଇଯିବ ।

ଧନ ବିଧେୟକ ଭିନ୍ନ ଅନ୍ୟ ବିଧେୟକମାନଙ୍କ ବିଷୟରେ ବିଧାନ ପରିଷଦର କ୍ଷମତା ଉପରେ ନିର୍ବନ୍ଧନ ।

୧୯୭ । (୧) ଯଦି କୌଣସି ବିଧେୟକ ବିଧାନ ପରିଷଦ ଥିବା ରାଜ୍ୟର ବିଧାନ ସଭା ଦ୍ୱାରା ପାରିତ ହୋଇ ବିଧାନ ପରିଷଦକୁ ପ୍ରେରିତ ହେବା ପରେ—

(କ) ପରିଷଦ ଦ୍ୱାରା ସେହି ବିଧେୟକ ଅସ୍ୱୀକୃତ ହୁଏ, ବା

(ଖ) ପରିଷଦ ସମକ୍ଷରେ ସେହି ବିଧେୟକ ଉପସ୍ଥାପିତ କରାଯିବା ତାରିଖରୁ ତାହା ପାରିତ ନ ହୋଇ ତିନିମାସରୁ ଅଧିକ ସମୟ ଅତିବାହିତ ହୁଏ, ବା

(ଗ) ପରିଷଦ ଦ୍ୱାରା ସେହି ବିଧେୟକ ଏପରି ସଂଶୋଧନ ସହ ପାରିତ ହୁଏ ଯହିଁରେ ବିଧାନ ସଭା ସହମତ ହୁଏ ନାହିଁ ,

ତେବେ ବିଧାନ ସଭା ନିଜର କାର୍ଯ୍ୟ ବିଧିର ବିନିୟାମକ ନିୟମର ବଶବର୍ତ୍ତୀ ରହି, ବିଧାନ ପରିଷଦ କରିଥିବା, ସୂଚନା ଦେଇଥିବା ବା ସହମତ ହୋଇଥିବା ସଂଶୋଧନ, ଯଦି କିଛି ଥାଏ, ତାହା ସହିତ ବା ତାହା ବିନା ସେହି ସତ୍ରରେ ବା କୌଣସି ପରବର୍ତ୍ତୀ ସତ୍ରରେ ସେହି ବିଧେୟକକୁ ପୁନଃପାରିତ କରିପାରିବ ଏବଂ ତତ୍‌ପରେ ଏପରି ପାରିତ ବିଧେୟକକୁ ବିଧାନ ପରିଷଦକୁ ପ୍ରେରଣ କରି ପାରିବ ।

(୨) ଯଦି କୌଣସି ବିଧେୟକ ବିଧାନ ସଭା ଦ୍ୱାରା ଏପରି ଦ୍ୱିତୀୟ ଥର ପାରିତ ହୋଇ ବିଧାନ ପରିଷଦକୁ ପ୍ରେରିତ ହେବା ପରେ—

(କ) ପରିଷଦ ଦ୍ୱାରା ସେହି ବିଧେୟକ ଅସ୍ୱୀକୃତ ହୁଏ, ବା

(ଖ) ପରିଷଦ ସମକ୍ଷରେ ସେହି ବିଧେୟକ ଉପସ୍ଥାପିତ କରାଯିବା ତାରିଖରୁ ତାହା ପାରିତ ନ ହୋଇ ଏକମାସରୁ ଅଧିକ ସମୟ ଅତିବାହିତ ହୁଏ, ବା

(ଗ) ପରିଷଦ ଦ୍ୱାରା ସେହି ବିଧେୟକ ଏପରି ସଂଶୋଧନ ସହ ପାରିତ ହୁଏ, ଯାହା ପ୍ରତି ବିଧାନ ସଭା ସହମତ ହୁଏ ନାହିଁ,

ତେବେ ବିଧାନ ପରିଷଦ କରିଥିବା, ପରାମର୍ଶ ଦେଇଥିବା ତଥା ସହମତ ହୋଇଥିବା ସଂଶୋଧନ, ଯଦି କିଛି ଥାଏ, ତାହା ସହ ସେହି ବିଧେୟକ ଯେଉଁ ରୂପରେ ବିଧାନ ସଭା ଦ୍ୱାରା ଦ୍ୱିତୀୟ ଥର ପାରିତ ହୋଇଥିଲା ସେହି ରୂପରେ ରାଜ୍ୟ ବିଧାନମଣ୍ଡଳର ସଦନମାନଙ୍କ ଦ୍ୱାରା ପାରିତ ହୋଇଅଛି ବୋଲି ବିବେଚିତ ହେବ ।

(୩) ଏହି ଅନୁଚ୍ଛେଦର କୌଣସି ବିଷୟ କୌଣସି ଧନ ବିଧେୟକ ପ୍ରତି ଲାଗୁ ହେବନାହିଁ ।

ଧନ ବିଧେୟକ ସମ୍ପର୍କରେ ବିଶେଷ ପ୍ରକ୍ରିୟା ।

୧୯୮ । (୧) ଧନ ବିଧେୟକ ବିଧାନ ପରିଷଦରେ ପୁରଃସ୍ଥାପିତ କରାଯିବ ନାହିଁ ।

(୨) ଧନ ବିଧେୟକ ବିଧାନ ପରିଷଦ ଥିବା ରାଜ୍ୟରେ ବିଧାନ ସଭାରେ ପାରିତ ହେବା ପରେ ବିଧାନ ପରିଷଦକୁ ତାହାର ସୁପାରିଶ ନିମିତ୍ତ ପ୍ରେରିତ ହେବ ଏବଂ ବିଧାନ ପରିଷଦ ବିଧେୟକକୁ ତହିଁର ପ୍ରାପ୍ତି ତାରିଖଠାରୁ ଚଉଦ ଦିନର କାଳାବଧି ମଧ୍ୟରେ ନିଜର ସୁପାରିଶ ସହ ବିଧାନ ସଭାକୁ ପ୍ରତ୍ୟର୍ପଣ କରିବ ଏବଂ ତାହା ପରେ ବିଧାନ ସଭା ବିଧାନ ପରିଷଦର ସୁପାରିଶମାନଙ୍କ ମଧ୍ୟରୁ ସମସ୍ତ ବା କେତେକ ହୁଏତ ଗ୍ରହଣ କରି ପାରିବ ବା ଅସ୍ୱୀକାର କରିପାରିବ ।

(୩) ଯଦି ବିଧାନ ସଭା ବିଧାନ ପରିଷଦର ସୁପାରିଶମାନଙ୍କ ମଧ୍ୟରୁ କୌଣସି ସୁପାରିଶ ଗ୍ରହଣ କରିନିଏ ତେବେ ସେହି ଧନ ବିଧେୟକ ବିଧାନ ପରିଷଦ ଦ୍ୱାରା ସୁପାରିଶ କରାଯାଇଥିବା ତଥା ବିଧାନ ସଭା ଦ୍ୱାରା ଗୃହୀତ ହୋଇଥିବା ସଂଶୋଧନମାନଙ୍କ ସହ ଉଭୟ ସଦନ ଦ୍ୱାରା ପାରିତ ହୋଇଅଛି ବୋଲି ବିବେଚିତ ହେବ ।

(୪) ଯଦି ବିଧାନ ସଭା ବିଧାନ ପରିଷଦର କୌଣସି ସୁପାରିଶ ଗ୍ରହଣ ନକରେ ତେବେ ଧନ ବିଧେୟକ [ବିଧାନ ପରିଷଦ] ଦ୍ୱାରା ସୁପାରିଶ କରାଯାଇଥିବା କୌଣସି ସଂଶୋଧନ ବିନା ଯେଉଁ ରୂପରେ ବିଧାନ ସଭା ଦ୍ୱାରା ପାରିତ ହୋଇଥିଲା ସେହି ରୂପରେ ଉଭୟ ସଦନ ଦ୍ୱାରା ପାରିତ ହୋଇଅଛି ବୋଲି ବିବେଚିତ ହେବ ।

(୫) ଯଦି ବିଧାନ ସଭା ଦ୍ୱାରା ପାରିତ ତଥା ବିଧାନ ପରିଷଦକୁ ତାହାର ସୁପାରିଶ ନିମିତ୍ତ ପ୍ରେରିତ ହୋଇଥିବା ଧନ ବିଧେୟକ ଉକ୍ତ ଚଉଦଦିନର କାଳାବଧି ମଧ୍ୟରେ ବିଧାନସଭାକୁ ଫେରାଇ ଦିଆଯାଏ ନାହିଁ ତେବେ ଯେଉଁ ରୂପରେ ବିଧାନ ସଭା ଦ୍ୱାରା ତାହା ପାରିତ ହୋଇଥିଲା ଉକ୍ତ କାଳାବଧିର ଅବସାନ ହେଲେ ତାହା ଉଭୟ ସଦନ ଦ୍ୱାରା ସେହି ରୂପରେ ପାରିତ ହୋଇଅଛି ବୋଲି ବିବେଚିତ ହେବ ।

ଧନ ବିଧେୟକର ସଂଜ୍ଞା ।

୧୯୯ । (୧) ଏହି ଅଧ୍ୟାୟର ପ୍ରୟୋଜନ ନିମିତ୍ତ କୌଣସି ବିଧେୟକରେ ଯଦି ନିମ୍ନଲିଖିତ ବିଷୟମାନଙ୍କ ମଧ୍ୟରୁ ସମସ୍ତ ବା କୌଣସିଟି ସମ୍ବନ୍ଧରେ ଉପବନ୍ଧମାନ ଥାଏ ତେବେ ସେହି ବିଧେୟକ ଧନ ବିଧେୟକ ବୋଲି ବିବେଚିତ ହେବ, ଯଥା:—

(କ) କୌଣସି କରର ଆରୋପଣ, ଉତ୍ସାଦନ, ପରିହାର, ପରିବର୍ତ୍ତନ ବା ବିନିୟମନ;

(ଖ) ରାଜ୍ୟ ଦ୍ୱାରା ଧନ ଋଣ କରାଯିବାର ବା କୌଣସି ପ୍ରତ୍ୟାଭୂତି ଦିଆଯିବାର ବିନିୟମନ ବା ରାଜ୍ୟ ଦ୍ୱାରା ନିଆଯାଇଥିବା ବା ନିଆଯିବା କୌଣସି ବିତ୍ତୀୟ ବାଧ୍ୟତା ସଂପର୍କୀୟ ବିଧିର ସଂଶୋଧନ ;

(ଗ) ରାଜ୍ୟର ସଞ୍ଚିତ ନିଧି ବା ଆକସ୍ମିକତା ନିଧିର ଅଭିରକ୍ଷା, ଏପରି କୌଣସି ନିଧିକୁ ଧନ ସଦାୟ ବା ଏପରି ନିଧିରୁ ଧନ ପ୍ରତ୍ୟାହରଣ ;

(ଘ) ରାଜ୍ୟର ସଞ୍ଚିତ ନିଧିରୁ ଧନର ବିନିଯୋଗ ;

(ଙ) କୌଣସି ବ୍ୟୟକୁ ରାଜ୍ୟର ସଞ୍ଚିତ ନିଧି ଉପରେ ଭାରିତ ବ୍ୟୟ ବୋଲି ଘୋଷଣା କରିବା ବା ଏପରି କୌଣସି ବ୍ୟୟର ପରିମାଣ ବୃଦ୍ଧି କରିବା ;

(ଚ) ରାଜ୍ୟର ସଞ୍ଚିତ ନିଧି ବା ରାଜ୍ୟର ଲୋକଲେଖା ବାବଦକୁ ଧନ ପ୍ରାପ୍ତି ବା ଏପରି ଧନର ଅଭିରକ୍ଷା ବା ନିକାଶି ; ଅଥବା

(ଛ) (କ) ଠାରୁ (ଚ) ପର୍ଯ୍ୟନ୍ତ ଉପଖଣ୍ଡମାନଙ୍କରେ ବିନିର୍ଦ୍ଦିଷ୍ଟ ବିଷୟମାନଙ୍କ ମଧ୍ୟରୁ କୌଣସିଟିର ଆନୁଷଙ୍ଗିକ କୌଣସି ବିଷୟ ।

(୨) କେବଳ ଜୋରିମାନା ବା ଅନ୍ୟ ଅର୍ଥ ଦଣ୍ଡର ଆରୋପଣ କରାଯାଇଥିବା କାରଣରୁ କିମ୍ବା ଲାଇସେନ୍‌ସ ପାଇଁ ଫିସର ବା କରାଯିବା ସେବା ପାଇଁ ଫିସର ଅଭିଯାଚନା ଅଥବା ସଂଦାୟ ନିମିତ୍ତ ଉପବନ୍ଧ କରାଯାଇଥିବା କାରଣରୁ ଅଥବା କୌଣସି ସ୍ଥାନୀୟ ପ୍ରାଧିକାରୀ ବା ନିକାୟ ଦ୍ୱାରା ସ୍ଥାନୀୟ ପ୍ରୟୋଜନ ନିମିତ୍ତ କୌଣସି କରର ଆରୋପଣ, ଉତ୍‌ସାଦନ, ପରିହାର, ପରିବର୍ତ୍ତନ ବା ବିନିୟମନ ନିମିତ୍ତ ଉପବନ୍ଧ କରାଯାଇଥିବା କାରଣରୁ କୌଣସି ବିଧେୟକ ଧନ ବିଧେୟକ ବୋଲି ବିବେଚିତ ହେବ ନାହିଁ ।

(୩) ବିଧାନ ପରିଷଦ ଥିବା ରାଜ୍ୟର ବିଧାନମଣ୍ଡଳରେ ପୁରଃସ୍ଥାପିତ କୌଣସି ବିଧେୟକ ଧନ ବିଧେୟକ କି ନୁହେଁ ଏପରି କୌଣସି ପ୍ରଶ୍ନ ଉଠିଲେ ସେ ବିଷୟରେ ରାଜ୍ୟ ବିଧାନ ସଭାର ଅଧ୍ୟକ୍ଷଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ହେବ ।

(୪) ପ୍ରତ୍ୟେକ ଧନ ବିଧେୟକ ଅନୁଚ୍ଛେଦ ୧୯୮ ଅଧୀନରେ ବିଧାନ ପରିଷଦକୁ ପ୍ରେରିତ ହେବା ସମୟରେ ଏବଂ ଅନୁଚ୍ଛେଦ ୨୦୦ ଅଧୀନରେ ସ୍ୱୀକୃତି ନିମିତ୍ତ ରାଜ୍ୟପାଳଙ୍କ ସମକ୍ଷରେ ଉପସ୍ଥାପିତ କରାଯିବା ସମୟରେ ତହିଁର ଉପରେ ବିଧାନ ସଭାର ଅଧ୍ୟକ୍ଷଙ୍କର ସ୍ୱାକ୍ଷର ସହ ଏହି ପ୍ରମାଣପତ୍ର ପୃଷ୍ଠାଙ୍କିତ ହେବ ଯେ ତାହା ଧନ ବିଧେୟକ ଅଟେ ।

ବିଧେୟକମାନଙ୍କୁ ସ୍ୱୀକୃତି ।

୨୦୦ । କୌଣସି ବିଧେୟକ ରାଜ୍ୟ ବିଧାନ ସଭା ଦ୍ୱାରା ପାରିତ କରାଯିବା ପରେ ଅଥବା ବିଧାନ ପରିଷଦ ଥିବା ରାଜ୍ୟରେ ରାଜ୍ୟ ବିଧାନମଣ୍ଡଳର ଉଭୟ ସଦନ ଦ୍ୱାରା ପାରିତ କରାଯିବା ପରେ ତାହା ରାଜ୍ୟପାଳଙ୍କ ସମକ୍ଷରେ ଉପସ୍ଥାପିତ କରାଯିବ ଏବଂ ରାଜ୍ୟପାଳ ଏହି ବିଧେୟକକୁ ସ୍ୱୀକୃତି ଦେଲେ କି ତାଙ୍କର ସ୍ୱୀକୃତି ଅଟକ ରଖିଲେ କି ସେହି ବିଧେୟକକୁ ରାଷ୍ଟ୍ରପତିଙ୍କ ବିଚାରାର୍ଥ ଆରକ୍ଷିତ କଲେ ତାହା ଘୋଷଣା କରିବେ :

ପରନ୍ତୁ ସ୍ୱୀକୃତି ନିମିତ୍ତ ରାଜ୍ୟପାଳଙ୍କ ସମକ୍ଷରେ ବିଧେୟକ ଉପସ୍ଥାପିତ କରାଯିବା ପରେ ତାହା ଧନ ବିଧେୟକ ହୋଇ ନ ଥିଲେ ସେହି ବିଧେୟକକୁ ଯଥା ସମ୍ଭବ ଶୀଘ୍ର ଏପରି ସନ୍ଦେଶ ସହ ଫେରାଇ ଦେଇପାରିବେ ଯହିଁରେକି ସେ ଅନୁରୋଧ କରିଥିବେ ଯେ ସଦନ ବା ଉଭୟ ସଦନ ସେହି ବିଧେୟକର ବା ତହିଁର କୌଣସି ବିନିର୍ଦ୍ଦିଷ୍ଟ ଉପବନ୍ଧମାନଙ୍କର ପୁନର୍ବିଚାର କରନ୍ତୁ ଏବଂ ବିଶେଷଭାବେ ତାଙ୍କର ସନ୍ଦେଶରେ ସେ ଯେପରି ସୁପାରିଶ କରିଥିବେ ସେପରି ସଂଶୋଧନମାନ ପୁରଃସ୍ଥାପିତ କରିବାର ବାଞ୍ଛନୀୟତା ବିଷୟରେ ବିଚାର କରନ୍ତୁ, ଏବଂ ବିଧେୟକ ଏପରି ଫେରାଇ ଦିଆଗଲେ ସଦନ ବା ଉଭୟ ସଦନ ତଦନୁସାରେ ବିଧେୟକର ପୁନର୍ବିଚାର କରିବେ ଏବଂ ଯଦି ବିଧେୟକ ସଦନ ବା ସଦନମାନଙ୍କ ଦ୍ୱାରା ସଂଶୋଧନ ସହ ବା ବିନା ସଂଶୋଧନରେ ପୁନର୍ବାର ପାରିତ କରାଯାଏ ତଥା ଅନୁମତି ନିମିତ୍ତ ରାଜ୍ୟପାଳଙ୍କ ସମକ୍ଷରେ ଉପସ୍ଥାପିତ କରାଯାଏ ତେବେ ରାଜ୍ୟପାଳ ତହିଁ ଉପରେ ତାଙ୍କର ସ୍ୱୀକୃତି ଅଟକ ରଖିବେ ନାହିଁ

ଅଧିକନ୍ତୁ, ଯଦି କୌଣସି ବିଧେୟକ ବିଧିରେ ପରିଣତ ହେଲେ ଉଚ୍ଚ ନ୍ୟାୟାଳୟର କ୍ଷମତାର ଏପରି ଅଳ୍ପୀକରଣ ହେବ ଯଦ୍ୱାରାକି ସେହି ନ୍ୟାୟାଳୟ ଯେଉଁ ସ୍ଥାନ ପୂରଣ କରିବା ଏହି ସଂବିଧାନ ଦ୍ୱାରା ପରି-କଳ୍ପିତ ଅଟେ ସେହି ସ୍ଥାନ ସଙ୍କଟାପନ୍ନ ହୋଇଯିବ ବୋଲି ରାଜ୍ୟପାଳ ମନେ କରନ୍ତି ତେବେ ସେହି ବିଧେୟକ ଉପରେ ସେ ସ୍ୱୀକୃତି ଦେବେ ନାହିଁ, ମାତ୍ର ତାହାକୁ ରାଷ୍ଟ୍ରପତିଙ୍କ ବିଚାରାର୍ଥ ଆରକ୍ଷିତ କରିବେ ।

ବିଚାରାର୍ଥ ଆରକ୍ଷିତ ବିଧେୟକ ।

୨୦୧ । ଯେବେ ରାଜ୍ୟପାଳଙ୍କ ଦ୍ୱାରା କୌଣସି ବିଧେୟକ ରାଷ୍ଟ୍ରପତିଙ୍କ ବିଚାରାର୍ଥ ଆରକ୍ଷିତ କରାଯାଏ, ରାଷ୍ଟ୍ରପତି ସେହି ବିଧେୟକ ଉପରେ ସ୍ୱୀକୃତି ଦେଲେ କି ତାଙ୍କ ସ୍ୱୀକୃତି ଅଟକ ରଖିଲେ ତାହା ଘୋଷଣା କରିବେ·

ପରନ୍ତୁ ସେହି ବିଧେୟକ ଧନ ବିଧେୟକ ହୋଇ ନ ଥିଲେ ରାଷ୍ଟ୍ରପତି ବିଧେୟକକୁ ରାଜ୍ୟର ବିଧାନମଣ୍ଡଳର, ଯଥାସ୍ଥିତି, ସଦନ ବା ସଦନମାନଙ୍କ ଅନୁଚ୍ଛେଦ ୨୦୦ର ପ୍ରଥମ ପରନ୍ତୁକରେ ଯେପରି ଉଲ୍ଲିଖିତ ହୋଇଅଛି ସେପରି ସନ୍ଦେଶ ସହ ଫେରାଇ ଦେବା ନିମିତ୍ତ ରାଜ୍ୟପାଳଙ୍କୁ ନିର୍ଦ୍ଦେଶ ଦେଇ ପାରିବେ ଏବଂ କୌଣସି ବିଧେୟକ ଏପରି ଫେରାଇ ଦିଆଗଲେ ଏପରି ସନ୍ଦେଶ ପ୍ରାପ୍ତି ତାରିଖରୁ ଛଅମାସର କାଳାବଧି ମଧ୍ୟରେ ତଦନୁସାରେ ସଦନ ବ ସଦନମାନଙ୍କ ଦ୍ୱାରା ତହିଁର ପୁନର୍ବିଚାର କରାଯିବ ଏବଂ ଯଦି ତାହା ସଂଶୋଧନ ସହିତ ବା ବିନା ସଂଶୋଧନରେ ସଦନ ବା ସଦନମାନଙ୍କ ଦ୍ୱାରା ପୁନର୍ବାର ପାରିତ କରାଯାଏ ତେବେ ତାହା ରାଷ୍ଟପତିଙ୍କ ସମକ୍ଷରେ ବିଚାରାଥ ପୁନର୍ବାର ଉପସ୍ଥାପିତ କରାଯିବ ।

## ବିତ୍ତୀୟ ବିଷୟରେ କାର୍ଯ୍ୟବିଧି

ବାର୍ଷିକ ବିତ୍ତୀୟ ବିବରଣୀ ।

୨୦୨ । (୧) ରାଜ୍ୟପାଳ ପ୍ରତ୍ୟେକ ବିତ୍ତୀୟ ବର୍ଷ ସଂପର୍କରେ ସେହି ବର୍ଷ ନିମିତ୍ତ ରାଜ୍ୟର ପ୍ରାକ୍‌କଳିତପ୍ରାପ୍ତି ଓ ବ୍ୟୟର ବିବରଣୀ ଯାହାକି ଏହି ଭାଗରେ "ବାର୍ଷିକ ବିତ୍ତୀୟ ବିବରଣୀ" ନାମରେ ନିର୍ଦ୍ଦିଷ୍ଟ ହୋଇଅଛି, ରାଜ୍ୟର ବିଧାନ ମଣ୍ଡଳର ସଦନ ବା ସଦନମାନଙ୍କର ସମକ୍ଷରେ ଉପସ୍ଥାପିତ କରାଇବେ ।

(୨) ବାର୍ଷିକ ବିତ୍ତୀୟ ବିବରଣୀରେ ସନ୍ନିବିଷ୍ଟ ବ୍ୟୟର ପ୍ରାକ୍‌କଳନରେ—

(କ) ରାଜ୍ୟର ସଞ୍ଚିତ ନିଧି ଉପରେ ଭାରିତ ବ୍ୟୟ ରୂପେ ଏହି ସଂବିଧାନରେ ବର୍ଣ୍ଣିତ ବ୍ୟୟର ପୂରଣ ନିମିତ୍ତ ଆବଶ୍ୟକ ଧନରାଶି, ଏବଂ

(ଖ) ରାଜ୍ୟର ସଞ୍ଚିତ ନିଧିରୁ ବ୍ୟୟିତ ହେବା ପାଇଁ ଉପସ୍ଥାପିତ ଅନ୍ୟାନ୍ୟ ବ୍ୟୟର ପୂରଣ ନିମିତ୍ତ ଆବଶ୍ୟକ ଧନରାଶି,

ପୃଥକ ପୃଥକ ଭାବେ ଦର୍ଶିତ କରାଯିବ ଏବଂ ରାଜ୍ୟର ହିସାବ ସଂପର୍କୀୟ ବ୍ୟୟ ଅନ୍ୟ ବ୍ୟୟଠାରୁ ପୃଥକ ଭାବେ ରଖାଯିବ ।

(୩) ନିମ୍ନଲିଖିତ ବ୍ୟୟ ପ୍ରତ୍ୟେକ ରାଜ୍ୟର ସଞ୍ଚିତ ନିଧି ଉପରେ ଭାରିତ ବ୍ୟୟ ହେବ—

(କ) ରାଜ୍ୟପାଳଙ୍କ ଉପଲବ୍ଧି ଓ ଭତ୍ତା ତଥା ତାଙ୍କ ପଦ ସହ ସଂବନ୍ଧିତ ଅନ୍ୟାନ୍ୟ ବ୍ୟୟ ;

(ଖ) ବିଧାନ ସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କର ଏବଂ ବିଧାନ ପରିଷଦ ଥିବା ରାଜ୍ୟରେ ବିଧାନ ପରିଷଦର ସଭାପତି ଓ ଉପସଭାପତିଙ୍କର ବେତନ ଓ ଭତ୍ତା ;

(ଗ) ଏପରି ଋଣଭାର, ଯାହାର ଦାୟିତ୍ୱ ରାଜ୍ୟ ଉପରେ ଥାଏ ଏବଂ ଯହିଁରେ ସୁଧ, ନିକ୍ଷେପ ନିଧି ଭାର ଓ ମୋଚନ ଭାର ଏବଂ ଋଣ ଉଠାଣ, ଋଣ ସେବା ଓ ଋଣ ମୋଚନ ସମ୍ବନ୍ଧୀୟ ଅନ୍ୟ ବ୍ୟୟ ଅନ୍ତର୍ଗତ ଅଟେ ;

(ଘ) କୌଣସି ଉଚ୍ଚନ୍ୟାୟାଳୟର ନ୍ୟାୟାଧୀଶମାନଙ୍କର ବେତନ ଓ ଭତ୍ତା ସଂପର୍କରେ ବ୍ୟୟ ;

(ଙ) କୌଣସି ନ୍ୟାୟାଳୟ ବା ମଧ୍ୟସ୍ଥ ନ୍ୟାୟାଧିକରଣର ନିର୍ଣ୍ଣୟ, ଡ଼ିକ୍ରି ବା ପଞ୍ଚାଟର ପୂରଣ ନିମିତ୍ତ ଆବଶ୍ୟକ ଧନରାଶି ;

(ଚ) ଏହି ସମ୍ବିଧାନ ଦ୍ୱାରା ବା ରାଜ୍ୟ ବିଧାନ ମଣ୍ଡଳ କର୍ତ୍ତୃକ ବିଧି ଦ୍ୱାରା ଏପରି ଭାରିତ ବୋଲି ଘୋଷିତ ଅନ୍ୟ ଯେ କୌଣସି ବ୍ୟୟ ।

ପ୍ରାକ୍‌କଳନ ସଂପର୍କରେ ବିଧାନମଣ୍ଡଳରେ କାର୍ଯ୍ୟବିଧି ।

୨୦୩ । (୧) ପ୍ରାକ୍‌କଳନ ମଧ୍ୟରୁ ଯେତିକି ରାଜ୍ୟର ସଞ୍ଚିତ ନିଧି ଉପରେ ଭାରିତ ବ୍ୟୟ ସହିତ ସମ୍ବନ୍ଧିତ ଅଟେ ତାହା ବିଧାନ ସଭାର ଭୋଟ ଦାନ ନିମିତ୍ତ ଉପସ୍ଥାପିତ କରାଯିବ ନାହିଁ, କିନ୍ତୁ ଏହି ଖଣ୍ଡର କୌଣସି ବିଷୟ ରାଜ୍ୟ ବିଧାନ ମଣ୍ଡଳରେ ସେହି ପ୍ରାକ୍‌କଳନ ମଧ୍ୟରୁ କୌଣସିଟି ଉପରେ ଆଲୋଚନା କରାଯିବାକୁ ବାଧା ଦେଉଅଛି ବୋଲି ଅର୍ଥ କରାଯିବ ନାହିଁ ।

(୨) ଉକ୍ତ ପ୍ରାକ୍‌କଳନ ମଧ୍ୟରୁ ଯେତିକି ଅନ୍ୟ ବ୍ୟୟ ସଙ୍ଗେ ସମ୍ବନ୍ଧିତ ଅଟେ ତାହା ବିଧାନ ସଭା ସମକ୍ଷରେ ଅନୁଦାନ ନିମିତ୍ତ ଅଭିଯାଚନା ରୂପେ ଉପସ୍ଥାପିତ କରାଯିବ ତଥା କୌଣସି ଅଭିଯାଚନାକୁ ଅନୁମତି ଦେବା ବା ଅନୁମତି ପ୍ରତ୍ୟାଖ୍ୟାନ କରିବା ବା କୌଣସି ଅଭିଯାଚନାରେ ବିନିର୍ଦ୍ଦିଷ୍ଟ ପରିମାଣକୁ ହ୍ରାସ କରି ତାହାକୁ ଅନୁମତି ଦେବା ପାଇଁ ବିଧାନ ସଭାର କ୍ଷମତା ରହିବ ।

(୩) ରାଜ୍ୟପାଳଙ୍କ ସୁପାରିଶ ବିନା କୌଣସି ଅନୁଦାନାର୍ଥ ଅଭିଯାଚନା କରାଯିବ ନାହିଁ ।

ବିନିଯୋଗ ବିଧେୟକ ।

୨୦୪ । (୧) ବିଧାନ ସଭାଦ୍ୱାରା ଅନୁଚ୍ଛେଦ ୨୦୩ ଅଧୀନରେ ଅନୁଦାନ କରାଯିବା ପରେ ଯଥାଶୀଘ୍ର ରାଜ୍ୟର ସଞ୍ଚିତ ନିଧିରୁ—

(କ) ବିଧାନ ସଭା ଦ୍ୱାରା ଏହି ପ୍ରକାରେ କରାଯାଇଥିବା ଅନୁଦାନର, ଏବଂ

(ଖ) ରାଜ୍ୟର ସଞ୍ଚିତ ନିଧି ଉପରେ ଭାରିତ ହୋଇଥିବା ଅଥଚ ସଦନ ବା ସଦନମାନଙ୍କ ସମକ୍ଷରେ ପୂର୍ବରୁ ଉପସ୍ଥାପିତ କରାଯାଇଥିବା ବିବରଣୀରେ ଦର୍ଶିତ ପରିମାଣରୁ ଯେ କୌଣସି ଅବସ୍ଥାରେ ମଧ୍ୟ ଅଧିକ ନ ହୋଇଥିବା ବ୍ୟୟର,

ପୂରଣପାଇଁ ଆବଶ୍ୟକ ସମସ୍ତ ଧନର ବିନିଯୋଗ ନିମିତ୍ତ ଏକ ବିଧେୟକ ପୁରଃସ୍ଥାପିତ କରାଯିବ ।

(୨) ଏହି ପ୍ରକାରେ କରାଯାଇଥିବା କୌଣସି ଅନୁଦାନର ପରିମାଣ ଅଦଳ ବଦଳ କରିବାର ବା ଅନୁଦାନର ଲକ୍ଷ୍ୟକୁ ପରିବର୍ତ୍ତନ କରିବାର ଅଥବା ରାଜ୍ୟର ସଞ୍ଚିତ ନିଧି ଉପରେ ଭାରିତ ବ୍ୟୟର ପରିମାଣରେ ଅଦଳ ବଦଳ କରିବାର ପ୍ରଭାବ ଥିବା ଏପରି କୌଣସି ସଂଶୋଧନ ଏପରି କୌଣସି ବିଧେୟକ ଉପରେ ରାଜ୍ୟ ବିଧାନମଣ୍ଡଳର ସଦନ ବା କୌଣସି ସଦନରେ ପୁରଃସ୍ଥାପିତ କରାଯିବ ନାହିଁ ଏବଂ କୌଣସି ସଂଶୋଧନ ଏହି ଖଣ୍ଡ ଅଧୀନରେ ଅଗ୍ରାହ୍ୟ କି ନୁହେଁ ଏ ବିଷୟରେ ପୀଠାସୀନ ବ୍ୟକ୍ତିଙ୍କର ନିଷ୍ପତ୍ତି ଚୂଡ଼ାନ୍ତ ହେବ ।

(୩) ଅନୁଚ୍ଛେଦ ୨୦୫ ଓ ୨୦୬ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ଏହି ଅନୁଚ୍ଛେଦର ଉପବନ୍ଧମାନଙ୍କ ଅନୁସାରେ ପାରିତ ବିଧି ଦ୍ୱାରା କରାଯିବା ବିନିଯୋଗ ଅଧୀନରେ ପ୍ରତ୍ୟାହୃତ କରାଯିବା ବ୍ୟତିରେକେ ରାଜ୍ୟର ସଞ୍ଚିତ ନିଧିରୁ କୌଣସି ଧନ ପ୍ରତ୍ୟାହୃତ କରାଯିବ ନାହିଁ ।

ଅନୁପୂରକ, ଅତିରିକ୍ତ

୨୦୫ । (୧) ଯଦି–

(କ) ଅନୁଚ୍ଛେଦ ୨୦୪ର ଉପବନ୍ଧମାନଙ୍କ ଅନୁସାରେ ପ୍ରଣୀତ କୌଣସି ବିଧି ଦ୍ୱାରା ଚଳିତ ବିତ୍ତୀୟ ବର୍ଷରେ କୌଣସି ବିଶେଷ ସେବା ନିମିତ୍ତ ବ୍ୟୟ କରାଯିବା ପାଇଁ ପ୍ରାଧିକୃତ ପରିମାଣ ସେହି ବର୍ଷର ପ୍ରୟୋଜନ ନିମିତ୍ତ ଉନପର୍ଯ୍ୟାପ୍ତ ହେବାର ଦେଖାଯାଏ, ଅଥବା ଚଳିତ ବର୍ଷର ବାର୍ଷିକ ବିତ୍ତୀୟ ବିବରଣୀରେ ଅପେକ୍ଷିତ ହୋଇ ନ ଥିବା କୌଣସି ନୂତନା ସେବାର ଅନୁପୂରକ ବା ଅତିରିକ୍ତ ବ୍ୟୟ ନିମିତ୍ତ ସେହି ବିତ୍ତୀୟ ବର୍ଷରେ ଆବଶ୍ୟକତ ଜାତ ହୋଇଥାଏ, ଅଥବା

(ଖ) କୌଣସି ବିତ୍ତୀୟ ବର୍ଷ ମଧ୍ୟରେ କୌଣସି ସେବାର ସେହି ସେବା ପାଇଁ ଏହି ବର୍ଷ ନିମିତ୍ତ ଅନୁଦାନ କରାଯାଇଥିବା ପରିମାଣରୁ ଅଧିକ ପରିମାଣ ଧନ ବ୍ୟୟ ହୋଇ ଯାଇଥାଏ,

ତେବେ ରାଜ୍ୟପାଳ, ଯଥାସ୍ଥିତି, ସେହି ବ୍ୟୟର ପ୍ରାକ୍‌କଳିତ ପରିମାଣ ଦର୍ଶାଉଥିବା ଅନ୍ୟ ଏକ ବିବରଣୀ ରାଜ୍ୟ ବିଧାନମଣ୍ଡଳର ସଦନ ବା ସଦନମାନଙ୍କ ସମକ୍ଷରେ ଉପସ୍ଥାପିତ କରାଇବେ ବା ଏପରି ଆଧିକ୍ୟ ପାଇଁ ରାଜ୍ୟ ବିଧାନ ସଭାରେ ଅଭିଯାଚନା ଉପସ୍ଥାପିତ କରାଇବେ ।

(୨) ଅନୁଚ୍ଛେଦ ୨୦୨, ୨୦୩ ଓ ୨୦୪ର ଉପବନ୍ଧମାନ ବାର୍ଷିକ ବିତ୍ତୀୟ ବିବରଣୀ ଓ ତହିଁରେ ବର୍ଣ୍ଣିତ ବ୍ୟୟ ଅଥବା କୌଣସି ଅନୁଦାନାର୍ଥ ଅଭିଯାଚନା ତଥା ଏପରି ବ୍ୟୟ ବା ଅନୁଦାନର ପୂରଣ ପାଇଁ ରାଜ୍ୟର ସଞ୍ଚିତ ନିଧିରୁ ଧନର ବିନିଯୋଗ ପ୍ରାଧିକୃତ କରିବା ନିମିତ୍ତ ପ୍ରଣୟନ କରାଯିବା ବିଧି ସମ୍ବନ୍ଧରେ ଯେପରି ପ୍ରଭାବୀ ହୁଏ ଏପରି କୌଣସି ବିବରଣୀ ଓ ବ୍ୟୟ ବା ଅଭିଯାଚନା ସମ୍ପର୍କରେ ଏବଂ ଏପରି ବ୍ୟୟ ବା ଏପରି ଅଭିଯାଚନା ସମ୍ବନ୍ଧୀୟ ଅନୁଦାନର ପୂରଣ ପାଇଁ ରାଜ୍ୟର ସଞ୍ଚିତ ନିଧିରୁ ଧନର ବିନିଯୋଗ ପ୍ରାଧିକୃତ କରିବା ନିମିତ୍ତ ପ୍ରଣୀତ ହେବା କୌଣସି ବିଧି ସମ୍ବନ୍ଧରେ ସେହିପରି ପ୍ରଭାବୀ ହେବ ।

ହିସାବ ଅନୁଦାନ ପ୍ରତ୍ୟୟାନୁଦାନ ଓ ବ୍ୟତିରିକ୍ତ ଅନୁଦାନ ପାଇଁ ଭୋଟ ଦାନ ।

୨୦୬ । (୧) ଏହି ଅଧ୍ୟାୟର ପୂର୍ବଗାମୀ ଉପବନ୍ଧମାନଙ୍କରେ ଯାହା କିଛି ଥିବା ସତ୍ତ୍ୱେ–

(କ) କୌଣସି ବିତ୍ତୀୟ ବର୍ଷର ଭାଗ ନିମିତ୍ତ ପ୍ରାକ୍‌କଳିତ ବ୍ୟୟ ସମ୍ପର୍କରେ ଅନୁଦାନ ପାଇଁ ଭୋଟ ଦାନ କରିବା ନିମିତ୍ତ ଅନୁଚ୍ଛେଦ ୨୦୩ରେ ବିହିତ ପ୍ରକ୍ରିୟାର ପୂରଣ ଲମ୍ବିତ ଥିବା ଅବସ୍ଥାରେ ଏବଂ ସେହି ବ୍ୟୟ ସମ୍ବନ୍ଧରେ ଅନୁଚ୍ଛେଦ ୨୦୪ ଅନୁସାରେ ବିଧିର ପାରଣ ଲମ୍ବିତ ଥିବା ଅବସ୍ଥାରେ ସେହି ବିଷୟ ସମ୍ପର୍କରେ କୌଣସି ଅଗ୍ରୀମ ଅନୁଦାନ କରିବା ନିମିତ୍ତ,

(ଖ) ଯେବେ କୌଣସି ସେବାର ବିଶାଳତା ବା ଅନିଶ୍ଚିତ ରୂପ ହେତୁ ବାର୍ଷିକ ବିତ୍ତୀୟ ବିବରଣୀରେ ସାଧାରଣତଃ ଦିଆଯାଉଥିବା ସବିଶେଷ ବର୍ଣ୍ଣନା ଅଭିଯାଚନାରେ ଦିଆଯାଇ ପାରୁ ନ ଥାଏ ତେବେ ରାଜ୍ୟର ବିଭବରୁ ସେହି ଅପତ୍ୟାଶିତ ଅଭିଯାଚନାର ପୂରଣ ପାଇଁ ଅନୁଦାନ କରିବା ନିମିତ୍ତ,

(ଗ) କୌଣସି ବିତ୍ତୀୟ ବର୍ଷର ଚଳନ୍ତି ସେବାର ଭାଗ ନ ହୋଇଥିବା କୌଣସି ବ୍ୟତିରିକ୍ତ ଅନୁଦାନ କରିବା ନିମିତ୍ତ,

ରାଜ୍ୟ ବିଧାନ ସଭାର କ୍ଷମତା ରହିବ ଏବଂ ଯେଉଁ ସବୁ ପ୍ରୟୋଜନ ନିମିତ୍ତ ଉକ୍ତ ଅନୁଦାନମାନ କରା ଯାଇଥାଏ ସେଥି ନିମିତ୍ତ ରାଜ୍ୟର ସଞ୍ଚିତ ନିଧିରୁ ଧନର ପ୍ରତ୍ୟାହରଣ ବିଧି ଦ୍ୱାରା ପ୍ରାଧିକୃତ କରିବା ନିମିତ୍ତ ରାଜ୍ୟ ବିଧାନ ମଣ୍ଡଳର କ୍ଷମତା ରହିବ ।

(୨) ଅନୁଚ୍ଛେଦ ୨୦୩ ଓ ୨୦୬ ର ଉପବନ୍ଧମାନ, ବାର୍ଷିକ ବିତ୍ତୀୟ ବିବରଣୀରେ ବର୍ଣ୍ଣିତ କୌଣସି ବ୍ୟୟ ବାବଦରେ କୌଣସି ଅନୁଦାନ କରାଯିବା ସମ୍ବନ୍ଧରେ ଏବଂ ସେପରି ବ୍ୟୟର ପୂରଣ ପାଇଁ ରାଜ୍ୟର ସଞ୍ଚିତ ନିଧିରୁ ଧନର ବିନିଯୋଗ ପ୍ରାଧିକୃତ କରିବା ନିମିତ୍ତ ପ୍ରଣୀତ କରାଯିବା ବିଧି ସମ୍ବନ୍ଧରେ ଯେଉଁପରି ପ୍ରଭାବୀ ହୁଏ ଖଣ୍ଡ (୧) ଅଧୀନରେ କରାଯିବା କୌଣସି ଅନୁଦାନ ସମ୍ବନ୍ଧରେ ତଥା ସେହି ଖଣ୍ଡ ଅଧୀନରେ ପ୍ରଣୀତ କରାଯିବା କୌଣସି ବିଧି ସମ୍ବନ୍ଧରେ ସେହିପରି ପ୍ରଭାବୀ ହେବ ।

ବିତ୍ତୀୟ ବିଧେୟକ ସମ୍ବନ୍ଧରେ ବିଶେଷ ଉପବନ୍ଧ ।

୨୦୭ । (୧) ଅନୁଚ୍ଛେଦ ୧୯୯ରେ ଖଣ୍ଡ (୧)ର (କ) ଠାରୁ (ଚ) ପର୍ଯ୍ୟନ୍ତ ଉପଖଣ୍ଡମାନଙ୍କରେ ବିନିର୍ଦ୍ଦିଷ୍ଟ ବିଷୟମାନଙ୍କ ମଧ୍ୟରୁ କୌଣସି ବିଷୟ ନିମିତ୍ତ ଉପବନ୍ଧ କରିଥିବା କୌଣସି ବିଧେୟକ ବା ସଂଶୋଧନ ରାଜ୍ୟପାଳଙ୍କ ସୁପାରିଶ ବିନା ପୁରଃସ୍ଥାପିତ ବା ପ୍ରସ୍ତାବିତ କରାଯିବ ନାହିଁ, ଏବଂ ଏପରି ଉପବନ୍ଧ କରିଥିବା ବିଧେୟକ ବିଧାନ ପରିଷଦରେ ପୁରଃସ୍ଥାପିତ କରାଯିବ ନାହିଁ :

ପରନ୍ତୁ କୌଣସି କରର ହ୍ରାସ ବା ଉତ୍ସାଦନ ନିମିତ୍ତ ଉପବନ୍ଧ କରିଥିବା ସଂଶୋଧନ ପ୍ରସ୍ତାବିତ କରିବା ନିମିତ୍ତ ଏହି ଖଣ୍ଡ ଅଧୀନରେ କୌଣସି ସୁପାରିଶ ଆବଶ୍ୟକ ହେବ ନାହିଁ ।

(୨) କୌଣସି ବିଧେୟକ ବା ସଂଶୋଧନ ଜୋରିମାନା ବା ଅନ୍ୟ ଅର୍ଥ ଦଣ୍ଡର ଆରୋପଣ ନିମିତ୍ତ ବା ଲାଇସେନ୍ସ ପାଇଁ ଫିସ୍‌ର ବା କରାଯିବା ସେବା ପାଇଁ ଫିସ୍‌ର ଅଭିଯାଚନା ଅଥବା ସଂଦାୟ ନିମିତ୍ତ ଉପବନ୍ଧ କରିଥିବା କାରଣରୁ ହିଁ ଅଥବା ତାହା କୌଣସି ସ୍ଥାନୀୟ ପ୍ରାଧୀକାରୀ ବା ନିକାୟ ଦ୍ୱାରା ସ୍ଥାନୀୟ ପ୍ରୟୋଜନ ନିମିତ୍ତ କୌଣସି କରର ଆରୋପଣ, ଉତ୍ସାଦନ, ପରିହାର, ପରିବର୍ତ୍ତନ ବା ବିନିୟମନ ନିମିତ୍ତ ଉପବନ୍ଧ କରିଥିବା କାରଣରୁ ହିଁ ପୂର୍ବୋକ୍ତ ବିଷୟମାନଙ୍କ ମଧ୍ୟରୁ କୌଣସି ବିଷୟ ନିମିତ୍ତ ଉପବନ୍ଧ କରୁଅଛି ବୋଲି ବିବେଚିତ ହେବ ନାହିଁ ।

(୩) ଯେଉଁ ବିଧେୟକକୁ ଅଧିନିୟମିତ କରାଗଲେ ଓ ପ୍ରବର୍ତ୍ତିତ କରାଗଲେ ରାଜ୍ୟର ସଞ୍ଚିତ ନିଧିରୁ ବ୍ୟୟ କରିବାକୁ ପଡିବ ରାଜ୍ୟପାଳ ସେପରି ବିଧେୟକର ବିଚାର ନିମିତ୍ତ ରାଜ୍ୟ ବିଧାନ ସଭାର କୌଣସି ସଦନକୁ ସୁପାରିଶ ନ କଲେ ସେହି ସଦନ ଦ୍ୱାରା ତାହା ପାରିତ ହେବ ନାହିଁ ।

## ପ୍ରକ୍ରିୟା ସାଧାରଣତଃ

ପ୍ରକ୍ରିୟାର ନିୟମ ।

୨୦୮ । (୧) ରାଜ୍ୟ ବିଧାନ ମଣ୍ଡଳର କୌଣସି ସଦନ ଏହି ସଂବିଧାନର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ନିଜର ପ୍ରକ୍ରିୟାକୁ ଏବଂ ନିଜର କାର୍ଯ୍ୟ ସଞ୍ଚାଳନକୁ ବିନିୟମିତ କରିବା ନିମିତ୍ତ ନିୟମାବଳୀ ପ୍ରଣୟନ କରିପାରିବ ।

(୨) ଯେଉଁ ପର୍ଯ୍ୟନ୍ତ ଖଣ୍ଡ (୧) ଅଧୀନରେ ନିୟମ ପ୍ରଣୀତ ନ ହୋଇଛି ସେ ପର୍ଯ୍ୟନ୍ତ ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ତତ୍‌ସ୍ଥାନୀ ରାଜ୍ୟର ପ୍ରାଦେଶିକ ବିଧାନମଣ୍ଡଳ ସମ୍ପର୍କରେ ପ୍ରବୃତ୍ତ ରହିଥିବା କାର୍ଯ୍ୟ-ବିଧିର ନିୟମାବଳୀ ଏବଂ ସ୍ଥାୟୀ ଆଦେଶମାନ, ଯଥାସ୍ଥିତି, ବିଧାନ ସଭାର ଅଧ୍ୟକ୍ଷ ବା ବିଧାନ ପରିଷଦର ସଭାପତିଙ୍କ ଦ୍ୱାରା ତହିଁରେ କରାଯିବା ରୂପାନ୍ତର ଓ ଅନୁକୂଳନର ବଶବର୍ତ୍ତୀ ରହି ସେହି ରାଜ୍ୟର ବିଧାନ ମଣ୍ଡଳ ସମ୍ବନ୍ଧରେ ପ୍ରଭାବୀ ହେବ ।

(୩) ବିଧାନ ପରିଷଦ ଥିବା ରାଜ୍ୟରେ ବିଧାନ ସଭାର ଅଧ୍ୟକ୍ଷ ତଥା ବିଧାନ ପରିଷଦର ସଭାପତିଙ୍କ ସଙ୍ଗେ ପରାମର୍ଶ କରିବା ପରେ ରାଜ୍ୟପାଳ ଉଭୟ ସଦନ ମଧ୍ୟରେ ପରସ୍ପର ସଞ୍ଚାର ସମ୍ପର୍କୀୟ ପ୍ରକ୍ରିୟାର ନିୟମାବଳୀ ପ୍ରଣୟନ କରି ପାରିବେ ।

ରାଜ୍ୟ ବିଧାନ-ମଣ୍ଡଳରେ ବିଧି ଦ୍ୱାରା ବିତ୍ତୀୟ କାର୍ଯ୍ୟ ସମ୍ବନ୍ଧୀ ପ୍ରକ୍ରିୟାର ବିନିୟମନ ।

୨୦୯ । ବିତ୍ତୀୟ କାର୍ଯ୍ୟକୁ ଯଥା ସମୟରେ ସମାପ୍ତ କରିବା ପ୍ରୟୋଜନ ନିମିତ୍ତ କୌଣସି ରାଜ୍ୟର ବିଧାନ ମଣ୍ଡଳ କୌଣସି ବିତ୍ତୀୟ ବିଷୟ ସମ୍ବନ୍ଧରେ ରାଜ୍ୟ ବିଧାନ ମଣ୍ଡଳର ସଦନ ବା ସଦନମାନଙ୍କର ପ୍ରକ୍ରିୟା ଓ ତହିଁରେ କାର୍ଯ୍ୟର ସଞ୍ଚାଳନକୁ ବିଧି ଦ୍ୱାରା ବିନିୟମିତ କରି ପାରିବ ଏବଂ ଯଦି ଓ ଯେଉଁ ପର୍ଯ୍ୟନ୍ତ ଏପରି ପ୍ରଣୀତ କୌଣସି ବିଧିର କୌଣସି ଉପବନ୍ଧ ଅନୁଚ୍ଛେଦ ୨୦୮ ର ଖଣ୍ଡ (୧) ଅଧୀନରେ ରାଜ୍ୟ ବିଧାନ ମଣ୍ଡଳର ସଦନ ବା ଉଭୟ ମଧ୍ୟରୁ କୌଣସି ସଦନ ଦ୍ୱାରା ପ୍ରଣୀତ ନିୟମ ସହିତ ଅଥବା ସେହି ଅନୁଚ୍ଛେଦର ଖଣ୍ଡ (୨) ଅଧୀନରେ ରାଜ୍ୟ ବିଧାନ ମଣ୍ଡଳ ସମ୍ବନ୍ଧରେ ପ୍ରଭାବୀ ହୋଇଥିବା କୌଣସି ନିୟମ ବା ସ୍ଥାୟୀ ଆଦେଶ ସହିତ ଅସଙ୍ଗତ ହେଉଥାଏ ତେବେ ଓ ସେହି ପର୍ଯ୍ୟନ୍ତ ସେପରି ଉପବନ୍ଧ ଅଭିଭାବୀ ହେବ ।

ବିଧାନ ମଣ୍ଡଳରେ ପ୍ରୟୋଗ କରାଯିବା ଭାଷା ।

୨୧୦ । (୧) ଭାଗ ୧୭ରେ ଯାହା କିଛି ଥିବା ସତ୍ତ୍ୱେ, ଅନୁଚ୍ଛେଦ ୩୪୮ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ରାଜ୍ୟର ବିଧାନମଣ୍ଡଳର କାର୍ଯ୍ୟ ରାଜ୍ୟର ରାଜଭାଷା ବା ଭାଷାମାନଙ୍କରେ ବା ହିନ୍ଦୀରେ ଅଥବା ଇଂରାଜୀରେ ନିର୍ବାହିତ ହେବ

ପରନ୍ତୁ, ଯଥାସ୍ଥିତି, ବିଧାନସଭାର ଅଧ୍ୟକ୍ଷ ବା ବିଧାନ ପରିଷଦର ସଭାପତି ବା ଏପରି ରୂପରେ କାର୍ଯ୍ୟ କରୁଥିବା ବ୍ୟକ୍ତି ଉପରୋକ୍ତ ଭାଷାମାନଙ୍କ ମଧ୍ୟରୁ କୌଣସିଟିରେ ନିଜକୁ ପର୍ଯ୍ୟାପ୍ତ ରୂପେ ଅଭିବ୍ୟକ୍ତ କରି ପାରୁ ନ ଥିବା ସଦସ୍ୟଙ୍କୁ ନିଜର ମାତୃଭାଷାରେ ସଦନରେ ଭାଷଣ ଦେବାପାଇଁ ଅନୁମତି ଦେଇ ପାରିବେ ।

(୨) ଯଦି ରାଜ୍ୟର ବିଧାନମଣ୍ଡଳ ବିଧି ଦ୍ୱାରା ଅନ୍ୟଥା ଉପବନ୍ଧ ନକରେ ତେବେ ଏହି ସଂବିଧାନର ପ୍ରାରମ୍ଭରୁ ପନ୍ଦର ବର୍ଷ କାଳାବଧିର ସମାପ୍ତି ପରେ ଏହି ଅନୁଚ୍ଛେଦ ଏପରି ପ୍ରଭାବୀ ହେବ ସତେ ଯେପରି ତହିଁରୁ "ଅଥବା ଇଂରାଜୀରେ" ଶବ୍ଦମାନ ଲୋପ କରାଯାଇଛି

ପରନ୍ତୁ ହିମାଚଳ ପ୍ରଦେଶ, ମଣିପୁର, ମେଘାଳୟ ଓ ତ୍ରିପୁରା ରାଜ୍ୟ ବିଧାନ ମଣ୍ଡଳମାନଙ୍କ ସମ୍ବନ୍ଧରେ ଏହି ଖଣ୍ଡ ଏପରି ପ୍ରଭାବୀ ହେବ ସତେ ଯେପରି ତହିଁରେ ଥିବା "ପନ୍ଦରବର୍ଷ" ଶବ୍ଦମାନଙ୍କ ସ୍ଥାନରେ "ପଚିଶବର୍ଷ" ଶବ୍ଦମାନ ପ୍ରତିସ୍ଥାପିତ ହୋଇଅଛି ।

ବିଧାନ ମଣ୍ଡଳରେ ଆଲୋଚନା ଉପରେ ନିର୍ବନ୍ଧନ ।

୨୧୧ । ଉଚ୍ଚତମ ନ୍ୟାୟାଳୟ ବା କୌଣସି ଉଚ୍ଚ ନ୍ୟାୟାଳୟର କୌଣସି ନ୍ୟାୟାଧୀଶଙ୍କର ନିଜର କର୍ତ୍ତବ୍ୟ-ପାଳନ ସଂପର୍କୀୟ ଆଚରଣ ବିଷୟରେ ରାଜ୍ୟ ବିଧାନମଣ୍ଡଳରେ କୌଣସି ଆଲୋଚନା କରାଯିବ ନାହିଁ ।

ନ୍ୟାୟାଳୟ ବିଧାନ-ମଣ୍ଡଳର କାର୍ଯ୍ୟବାହୀର କାର୍ଯ୍ୟ ଯାଞ୍ଚ କରିବ ନାହିଁ ।

୨୧୨ । (୧) ପ୍ରକ୍ରିୟାର କୌଣସି ଅଭିକଥିତ ଅନିୟମିତତାର ଆଧାର ଉପରେ ରାଜ୍ୟ ବିଧାନ ମଣ୍ଡଳର କୌଣସି କାର୍ଯ୍ୟବାହୀର ବୈଧତା ବିଷୟରେ କୌଣସି ଆପତ୍ତି କରାଯିବ ନାହିଁ ।

(୨) ରାଜ୍ୟ ବିଧାନମଣ୍ଡଳର ଯେଉଁ ଅଫିସର ବା ସଦସ୍ୟଙ୍କଠାରେ ଏହି ସଂବିଧାନ ଦ୍ୱାରା ବା ଅଧୀନରେ ବିଧାନମଣ୍ଡଳର ପ୍ରକ୍ରିୟାକୁ ବା କାର୍ଯ୍ୟ ସଞ୍ଚାଳନକୁ ବିନିୟମିତ କରିବାର ବା ଶୃଙ୍ଖଳା ରକ୍ଷା କରିବାର କ୍ଷମତା ନିହିତ ହୋଇଅଛି ସେ ସେହି କ୍ଷମତା ପ୍ରୟୋଗ କରିବା ସଂପର୍କରେ କୌଣସି ନ୍ୟାୟାଳୟର ଅଧିକାରିତାର ବଶବର୍ତ୍ତୀ ହେବେ ନାହିଁ ।

## ଅଧ୍ୟାୟ ୪-ରାଜ୍ୟପାଳଙ୍କ ବିଧାୟିନୀ କ୍ଷମତା

ବିଧାନ ମଣ୍ଡଳର ବିଶ୍ରାନ୍ତିକାଳରେ ରାଜ୍ୟପାଳଙ୍କର ଅର୍ଡିନାନ୍ସ ପ୍ରଖ୍ୟାପନ କ୍ଷମତା ।

୨୧୩ । (୧) ରାଜ୍ୟର ବିଧାନସଭା ଅଥବା ଯେଉଁ ରାଜ୍ୟରେ ବିଧାନ ପରିଷଦ ଥାଏ ସେଠାରେ ବିଧାନ-ମଣ୍ଡଳର ଉଭୟ ସଦନ ସତ୍ରାବସ୍ଥାରେ ଥିବା ସମୟ ଭିନ୍ନ ଅନ୍ୟ ସମୟରେ ଯଦି ରାଜ୍ୟପାଳଙ୍କ ହୃଦବୋଧ ହୁଏ ଯେ ଏପରି ପରିସ୍ଥିତି ବିଦ୍ୟମାନ ଯହିଁରେକି ତାଙ୍କ ଦ୍ୱାରା ତୁରନ୍ତ କାର୍ଯ୍ୟ କରାଯିବା ଆବଶ୍ୟକ ଅଟେ ତେବେ ପରିସ୍ଥିତିର ଆବଶ୍ୟକତା ଅନୁସାରେ ସେ ଅର୍ଡିନାନ୍ସ ପ୍ରଖ୍ୟାପନ କରି ପାରିବେ :

ପରନ୍ତୁ ରାଜ୍ୟପାଳ ରାଷ୍ଟ୍ରପତିଙ୍କ ଅନୁଦେଶ ବିନା ଏପରି କୌଣସି ଅର୍ଡିନାନ୍ସ ପ୍ରଖ୍ୟାପନ କରିବେ ନାହିଁ, ଯଦି–

(କ) ସେହି ଉପବନ୍ଧ ଥିବା କୌଣସି ବିଧେୟକକୁ ବିଧାନ ମଣ୍ଡଳରେ ପୁରଃସ୍ଥାପିତ କରିବା ନିମିତ୍ତ ଏହି ସଂବିଧାନ ଅଧୀନରେ ରାଷ୍ଟ୍ରପତିଙ୍କ ପୂର୍ବ ମଞ୍ଜୁରୀ ଆବଶ୍ୟକ ହୋଇଥାନ୍ତା ; ଅଥବା

(ଖ) ସେହି ଉପବନ୍ଧ ଥିବା କୌଣସି ବିଧେୟକକୁ ରାଷ୍ଟ୍ରପତିଙ୍କ ବିଚାରାର୍ଥ ଆରକ୍ଷିତ କରିବା ଆବଶ୍ୟକ ବୋଲି ସେ ମନେ କରିଥାନ୍ତେ ; ଅଥବା

(ଗ) ସେହି ଉପବନ୍ଧ ଥିବା ରାଜ୍ୟ ବିଧାନ ମଣ୍ଡଳର ଅଧିନିୟମ ଏହି ସଂବିଧାନ ଅଧୀନରେ ରାଷ୍ଟ୍ରପତିଙ୍କ ବିଚାରାର୍ଥ ଆରକ୍ଷିତ ହୋଇ ତାଙ୍କର ଅନୁମତି ପ୍ରାପ୍ତ ହୋଇ ନ ଥିଲେ ଅବୈଧ ହୋଇଥାନ୍ତା ।

(୨) ଏହି ଅନୁଚ୍ଛେଦ ଅଧୀନରେ ପ୍ରଖ୍ୟାପିତ ଅର୍ଡିନାନ୍‌ସର ବଳ ଓ ପ୍ରଭାବ ରାଜ୍ୟପାଳଙ୍କ ଦ୍ୱାରା ସ୍ୱୀକୃତି ରାଜ୍ୟ ବିଧାନ ମଣ୍ଡଳର ଅଧିନିୟମର ଅନୁରୂପ ହେବ , କିନ୍ତୁ ଏପରି ପ୍ରତ୍ୟେକ ଅର୍ଡିନାନ୍‌ସ—

(କ) ରାଜ୍ୟ ବିଧାନ ସଭାରେ ବା ଯେଉଁ ରାଜ୍ୟରେ ବିଧାନ ପରିଷଦ ଥାଏ ସେଠାରେ ଉଭୟ ସଦନ ସମକ୍ଷରେ ଉପସ୍ଥାପିତ କରାଯିବ ଏବଂ ରାଜ୍ୟ ବିଧାନମଣ୍ଡଳ ପୁନଃସମବେତ ହେବାଠାରୁ **ଛଅ** ସପ୍ତାହର ଅବସାନ ପରେ ବା ଯଦି ସେହି କାଳାବଧିର ଅବସାନ ପୂର୍ବରୁ ତାହାକୁ ଅନନୁମୋଦନ କରି କୌଣସି ସଙ୍କଳ୍ପ ବିଧାନସଭାରେ ପାରିତ ହୋଇ ବିଧାନ ପରିଷଦ ଥିଲେ ତାହା ଦ୍ୱାରା ସହମତ ହୁଏ ତେବେ, ଯଥାସ୍ଥିତି, ସଙ୍କଳ୍ପ ପାରିତ ହେଲେ ବା ପରିଷଦ ଦ୍ୱାରା ସଙ୍କଳ୍ପ ସହମତ ହେଲେ ପ୍ରବର୍ତ୍ତିତ ରହିବାରୁ ବିରତ ହେବ; ଏବଂ

(ଖ) ରାଜ୍ୟପାଳଙ୍କ ଦ୍ୱାରା ଯେ କୌଣସି ସମୟରେ ପ୍ରତ୍ୟାହୃତ ହୋଇ ପାରିବ ।

**ସ୍ପଷ୍ଟୀକରଣ**:—ଯେବେ ବିଧାନ ପରିଷଦ ଥିବା ରାଜ୍ୟରେ ବିଧାନ ମଣ୍ଡଳର ସଦନମାନ ଭିନ୍ନ ଭିନ୍ନ ତାରିଖରେ ପୁନଃସମବେତ ହେବା ନିମିତ୍ତ ଆହୂତ ହୁଅନ୍ତି ତେବେ ଏହି ଖଣ୍ଡର ପ୍ରୟୋଜନ ନିମିତ୍ତ ଛଅ ମାସର କାଳାବଧିର ଗଣନା ସେହି ତାରିଖମାନଙ୍କ ମଧ୍ୟରୁ ପଛ ତାରିଖରୁ କରାଯିବ ।

(୩) ଯଦି ଓ ଯେଉଁ ପର୍ଯ୍ୟନ୍ତ ଏହି ଅନୁଚ୍ଛେଦ ଅଧୀନରେ ଅର୍ଡିନାନ୍‌ସ ଏପରି କୌଣସି ଉପବନ୍ଧ କରେ ଯାହାକି ରାଜ୍ୟ ବିଧାନ ମଣ୍ଡଳ ଦ୍ୱାରା ଅଧିନିୟମିତ ଓ ରାଜ୍ୟପାଳଙ୍କ ଦ୍ୱାରା ସ୍ୱୀକୃତିପ୍ରାପ୍ତ ଅଧିନିୟମରେ କରା ଯାଇଥିଲେ ବୈଧ ହୋଇ ନ ଥାନ୍ତା ତେବେ ତାହା ସେହି ପର୍ଯ୍ୟନ୍ତ ଶୂନ୍ୟ ହେବ :

ପରନ୍ତୁ କୌଣସି ରାଜ୍ୟର ବିଧାନମଣ୍ଡଳର ଯେଉଁ ଅଧିନିୟମ ସମବର୍ତ୍ତୀ ସୂଚୀରେ ପ୍ରଗଣିତ କୌଣସି ବିଷୟ ସମ୍ପର୍କରେ ସଂସଦରେ କୌଣସି ଅଧିନିୟମ ବା କୌଣସି ବିଦ୍ୟମାନ ବିଧିର ବିରୁଦ୍ଧାଚରଣ କରୁଥାଏ ସେପରି ଅଧିନିୟମର ପ୍ରଭାବ ସମ୍ବନ୍ଧୀୟ ଏହି ସଂବିଧାନର ଉପବନ୍ଧମାନଙ୍କର ପ୍ରୟୋଜନ ନିମିତ୍ତ, ରାଷ୍ଟ୍ରପତିଙ୍କ ଅନୁଦେଶର ଅନୁସରଣରେ ଏହି ଅନୁଚ୍ଛେଦ ଅଧୀନରେ ପ୍ରଖ୍ୟାପିତ କୌଣସି ଅର୍ଡିନାନ୍‌ସ ରାଷ୍ଟ୍ରପତିଙ୍କ ବିଚାରାର୍ଥ ଆରକ୍ଷିତ ତଥା ତାଙ୍କ ଦ୍ୱାରା ସ୍ୱୀକୃତିପ୍ରାପ୍ତ ରାଜ୍ୟ ବିଧାନମଣ୍ଡଳର ଏକ ଅଧିନିୟମ ଅଟେ ବୋଲି ବିବେଚିତ ହେବ ।

## ଅଧ୍ୟାୟ ୫-ରାଜ୍ୟମାନଙ୍କରେ ଉଚ୍ଚ ନ୍ୟାୟାଳୟ

ରାଜ୍ୟମାନଙ୍କ ନିମିତ୍ତ ଉଚ୍ଚ ନ୍ୟାୟାଳୟ ।

୨୧୪ । ପ୍ରତ୍ୟେକ ରାଜ୍ୟ ନିମିତ୍ତ ଏକ ଉଚ୍ଚ ନ୍ୟାୟାଳୟ ରହିବ ।

× × × × × ×

ଉଚ୍ଚ ନ୍ୟାୟାଳୟ ଅଭିଲେଖ ନ୍ୟାୟାଳୟ ହେବ ।

୨୧୫ । ପ୍ରତ୍ୟେକ ଉଚ୍ଚ ନ୍ୟାୟାଳୟ ଏକ ଅଭିଲେଖ ନ୍ୟାୟାଳୟ ହେବ ଏବଂ ନିଜ ପ୍ରତି ଅବମାନନା ନିମିତ୍ତ ଦଣ୍ଡ ଦେବାର କ୍ଷମତା ସମେତ ତାହାର ସେପରି ନ୍ୟାୟାଳୟର ସମସ୍ତ କ୍ଷମତା ରହିବ ।

ଉଚ୍ଚ ନ୍ୟାୟାଳୟର ଗଠନ ।

୨୧୬ । ପ୍ରତ୍ୟେକ ଉଚ୍ଚନ୍ୟାୟାଳୟ ଏକ ମୁଖ୍ୟ ନ୍ୟାୟାଧିପତିଙ୍କୁ ନେଇ ଏବଂ ରାଷ୍ଟ୍ରପତି ଥରକୁ ଥର ଅନ୍ୟ ଯେଉଁ ନ୍ୟାୟାଧୀଶମାନଙ୍କୁ ନିଯୁକ୍ତ କରିବା ଆବଶ୍ୟକ ବିବେଚନା କରନ୍ତି ସେପରି ନ୍ୟାୟାଧୀଶଙ୍କୁ ନେଇ ଗଠିତ ହେବ ।

× × × × × ×

ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ-ଙ୍କର ନିଯୁକ୍ତି ଓ ତାହାଙ୍କ ପଦର ସର୍ତ୍ତ ।

୨୧୭ । (୧) ରାଷ୍ଟ୍ରପତି ଭାରତର ମୁଖ୍ୟ ନ୍ୟାୟାଧିପତିଙ୍କ ସହିତ, ସଂପୃକ୍ତ ରାଜ୍ୟର ରାଜ୍ୟପାଳଙ୍କ ସହିତ ଏବଂ ମୁଖ୍ୟ ନ୍ୟାୟାଧିପତିଙ୍କ ଭିନ୍ନ ଅନ୍ୟ ନ୍ୟାୟାଧୀଶଙ୍କ ନିଯୁକ୍ତି ସ୍ଥଳେ ସେହି ରାଜ୍ୟର ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତିଙ୍କ ସହିତ ପରାମର୍ଶ କରିବା ପରେ ନିଜର ସ୍ୱାକ୍ଷରିତ ଓ ମୁଦ୍ରାଙ୍କିତ ଅଧିପତ୍ର ଦ୍ୱାରା ଉଚ୍ଚ ନ୍ୟାୟାଳୟର ପ୍ରତ୍ୟେକ ନ୍ୟାୟାଧୀଶଙ୍କୁ ନିଯୁକ୍ତ କରିବେ ଏବଂ ସେହି ନ୍ୟାୟାଧୀଶ ଅତିରିକ୍ତ ବା କାର୍ଯ୍ୟକାରୀ ନ୍ୟାୟାଧୀଶ ହୋଇଥିବା ସ୍ଥଳେ ଅନୁଚ୍ଛେଦ ୨୨୪ ରେ ଉପବନ୍ଧିତ ହୋଇଥିବା ଅନୁସାରେ ଏବଂ ଅନ୍ୟ ଯେକୌଣସି ସ୍ଥଳେ ବାଷଠି ବର୍ଷ ବୟସ ପ୍ରାପ୍ତ ହେବା ପର୍ଯ୍ୟନ୍ତ ପଦ ଧାରଣ କରିବେ :

ପରନ୍ତୁ—

(କ) କୌଣସି ନ୍ୟାୟାଧୀଶ ରାଷ୍ଟ୍ରପତିଙ୍କୁ ସମ୍ବୋଧିତ ସ୍ୱାକ୍ଷରିତ ଲେଖଦ୍ୱାରା ନିଜର ପଦ ତ୍ୟାଗ କରିପାରିବେ ;

(ଖ) ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶଙ୍କୁ ଦୂରୀକୃତ କରିବା ନିମିତ୍ତ ଏହି ସମ୍ବିଧାନ ଅନୁଚ୍ଛେଦ ୧୨୪ର ଖଣ୍ଡ (୪)ରେ ଉପବନ୍ଧିତ ରୀତି ଅନୁସାରେ କୌଣସି ନ୍ୟାୟାଧୀଶଙ୍କୁ ତାଙ୍କ ପଦରୁ ରାଷ୍ଟ୍ରପତିଙ୍କ ଦ୍ୱାରା ଦୂରୀକୃତ କରାଯାଇ ପାରିବ ;

(ଗ) କୌଣସି ନ୍ୟାୟାଧୀଶ ରାଷ୍ଟ୍ରପତିଙ୍କ ଦ୍ୱାରା ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶ ରୂପେ ନିଯୁକ୍ତ ହେଲେ କିମ୍ବା ରାଷ୍ଟ୍ରପତିଙ୍କ ଦ୍ୱାରା ଭାରତ ରାଜ୍ୟକ୍ଷେତ୍ରର ଅନ୍ୟ କୌଣସି ଉଚ୍ଚ ନ୍ୟାୟାଳୟକୁ ସ୍ଥାନାନ୍ତରିତ ହେଲେ ତାଙ୍କର ପଦ ରିକ୍ତ ହୋଇଯିବ ।

(୨) କୌଣସି ବ୍ୟକ୍ତି ଭାରତର ନାଗରିକ ହୋଇ ନ ଥିଲେ ଏବଂ—

(କ) ଭାରତ ରାଜ୍ୟକ୍ଷେତ୍ରରେ ଅନ୍ୟୂନ ଦଶବର୍ଷ ପର୍ଯ୍ୟନ୍ତ ନ୍ୟାୟିକ ପଦ ଧାରଣ କରି ନ ଥିଲେ, ଅଥବା

(ଖ) ଉଚ୍ଚ ନ୍ୟାୟାଳୟରେ ବା ଏପରି ଦୁଇ ବା ଅଧିକ ନ୍ୟାୟାଳୟରେ କ୍ରମାଗତ ଭାବେ ଅନ୍ୟୂନ ଦଶବର୍ଷ ପର୍ଯ୍ୟନ୍ତ ଏଡ଼ଭୋକେଟ ନ ହୋଇଥିଲେ,

କୌଣସି ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ ରୂପେ ନିଯୁକ୍ତ ହେବା ନିମିତ୍ତ ଯୋଗ୍ୟ ହେବେନାହିଁ ।

ସ୍ପଷ୍ଟୀକରଣ:—ଏହି ଖଣ୍ଡର ପ୍ରୟୋଜନ ନିମିତ୍ତ,—

(କ) ଯେଉଁ କାଳାବଧି ମଧ୍ୟରେ କୌଣସି ବ୍ୟକ୍ତି ଭାରତ ରାଜ୍ୟକ୍ଷେତ୍ରରେ ନ୍ୟାୟିକ ପଦ ଧାରଣ କରିଥାନ୍ତି ତାହାକୁ ଗଣନା କରିବାରେ, କୌଣସି ନ୍ୟାୟିକ ପଦ ଧାରଣ କରିବା ପରେ ଯେଉଁ କାଳାବଧି ମଧ୍ୟରେ ସେହି ବ୍ୟକ୍ତି କୌଣସି ଉଚ୍ଚ ନ୍ୟାୟାଳୟର ଅଧିବକ୍ତା ଥାନ୍ତି ବା କୌଣସି ଟ୍ରିବୁନାଲର ସଦସ୍ୟ ପଦ ବା ସଂଘ ବା କୌଣସି ରାଜ୍ୟ ଅଧୀନରେ ବିଧିଗତ ବିଶେଷ ଜ୍ଞାନ ଆବଶ୍ୟକ କରୁଥିବା ପଦସ୍ଥାନ ଧାରଣ କରିଥାନ୍ତି ତାହାକୁ ଅନ୍ତର୍ଭୁକ୍ତ କରାଯିବ ।

(କକ) କୌଣସି ବ୍ୟକ୍ତି କେତେକାଳ ପାଇଁ କୌଣସି ଉଚ୍ଚ ନ୍ୟାୟାଳୟର ଏଡ଼ଭୋକେଟ ରହିଛନ୍ତି ତାହାର ସଙ୍ଗଣନା କଲାବେଳେ ସେହି ବ୍ୟକ୍ତି ଏଡ଼ଭୋକେଟ ହେବା ପରେ ଯେଉଁ କାଳାବଧି ପର୍ଯ୍ୟନ୍ତ କୌଣସି ନ୍ୟାୟିକ ପଦ ଧାରଣ କରିଥାନ୍ତି, କିମ୍ବା କୌଣସି ଟ୍ରିବୁନାଲର ସଦସ୍ୟ ପଦ ଅଥବା ସଂଘ ବା କୌଣସି ରାଜ୍ୟ ଅଧୀନରେ ବିଧି ବିଷୟକ ବିଶେଷ ଜ୍ଞାନ ଆବଶ୍ୟକ ହେଉଥିବା କୌଣସି ପଦ ଧାରଣ କରିଥାନ୍ତି, ତାହା ଅନ୍ତର୍ଭୁକ୍ତ ହେବ ;

(ଖ) କୌଣସି ବ୍ୟକ୍ତି କେତେ କାଳ ପାଇଁ ଭାରତ ରାଜ୍ୟକ୍ଷେତ୍ରରେ ନ୍ୟାୟିକ ପଦ ଧାରଣ କରିଛନ୍ତି ଅଥବା କୌଣସି ନ୍ୟାୟାଳୟର ଏଡ଼ଭୋକେଟ ରହିଛନ୍ତି ତାହାର ସଙ୍ଗଣନା କଲାବେଳେ ଏହି ସବିଂଧାନର ପ୍ରାରମ୍ଭ ପୂର୍ବରୁ ଯେଉଁ କାଳାବଧି ପର୍ଯ୍ୟନ୍ତ ସେ କୌଣସି ରାଜ୍ୟକ୍ଷେତ୍ରରେ ଗଭର୍ଣ୍ଣମେଣ୍ଟ ଅଫ ଇଣ୍ଡିଆ ଆକ୍ଟ, ୧୯୩୫ ରେ ଯଥା ସଂଜ୍ଞାକୃତ ଭାରତରେ ସମାବିଷ୍ଟ କୌଣସି କ୍ଷେତ୍ରରେ ୧୯୪୭ ଅଗଷ୍ଟ ପନ୍ଦର ତାରିଖ ପୂର୍ବରୁ, ଯଥାସ୍ଥିତି, ନ୍ୟାୟିକ ପଦ ଧାରଣ କରିଥିଲେ ବା ଏପରି କୌଣସି କ୍ଷେତ୍ରର କୌଣସି ଉଚ୍ଚ ନ୍ୟାୟାଳୟର ଏଡଭୋକେଟ ରହିଥିଲେ ସେହି କାଳାବଧି ଅନ୍ତର୍ଭୁକ୍ତ କରାଯିବ ।

(୩) ଯଦି ଉଚ୍ଚ ନ୍ୟାୟାଳୟର କୌଣସି ନ୍ୟାୟାଧୀଶଙ୍କ ବୟସ ସଂପର୍କରେ କୌଣସି ପ୍ରଶ୍ନ ଉଠେ ତେବେ ସେହି ପ୍ରଶ୍ନ ଭାରତର ମୁଖ୍ୟ ନ୍ୟାୟାଧିପତିଙ୍କ ସହିତ ପରାମର୍ଶ କରିବା ପରେ ରାଷ୍ଟ୍ରପତି ନିଷ୍ପତ୍ତି କରିବେ ଏବଂ ରାଷ୍ଟ୍ରପତିଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ହେବ ।

ଉଚ୍ଚତମ ନ୍ୟାୟାଳୟ ସମ୍ବନ୍ଧୀୟ କୌଣସି ଉପବନ୍ଧ ଉଚ୍ଚ ନ୍ୟାୟାଳୟ ସମ୍ବନ୍ଧରେ ଲାଗୁ ହେବା ।

୨୧୮ । ଉଚ୍ଚତମ ନ୍ୟାୟାଳୟ ସମ୍ବନ୍ଧରେ ନିର୍ଦ୍ଦେଶ ସ୍ଥାନରେ ଉଚ୍ଚନ୍ୟାୟାଳୟ ସମ୍ବନ୍ଧରେ ନିର୍ଦ୍ଦେଶ ପ୍ରତିସ୍ଥାପିତ ହୋଇ ଅନୁଚ୍ଛେଦ ୧୨୪ ର ଖଣ୍ଡ (୪) ଓ (୫) ର ଉପବନ୍ଧମାନ ଉଚ୍ଚତମ ନ୍ୟାୟାଳୟ ସମ୍ବନ୍ଧରେ ଯେଉଁପରି ଲାଗୁ ହୁଏ ଉଚ୍ଚ ନ୍ୟାୟାଳୟ ସମ୍ବନ୍ଧରେ ସେହିପରି ଲାଗୁ ହେବ ।

ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶଙ୍କ ଶପଥ ବା ପ୍ରତିଜ୍ଞାନ ।

୨୧୯ । କୌଣସି ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ ହେବା ପାଇଁ ନିଯୁକ୍ତ ପ୍ରତ୍ୟେକ ବ୍ୟକ୍ତି ତାଙ୍କ ପଦ ଗ୍ରହଣ କରିବା ପୂର୍ବରୁ ସେହି ରାଜ୍ୟର ରାଜ୍ୟପାଳଙ୍କ ସମକ୍ଷରେ କିମ୍ବା ତାଙ୍କ ଦ୍ୱାରା ନିଯୁକ୍ତ କୌଣସି ବ୍ୟକ୍ତିଙ୍କ ସମକ୍ଷରେ ତୃତୀୟ ଅନୁସୂଚୀରେ ଏହି ପ୍ରୟୋଜନାର୍ଥ ପ୍ରଦତ୍ତ ପ୍ରପତ୍ର ଅନୁସାରେ ଶପଥ ବା ପ୍ରତିଜ୍ଞାନ କରିବେ ଓ ତହିଁରେ ସ୍ୱାକ୍ଷର କରିବେ ।

ସ୍ଥାୟୀ ନ୍ୟାୟାଧୀଶ ହେବା ପରେ ବିଧିବୃତ୍ତି ଉପରେ ନିର୍ବନ୍ଧନ ।

୨୨୦ । ଏହି ସବିଂଧାନର ପ୍ରାରମ୍ଭପରେ କୌଣସି ଉଚ୍ଚନ୍ୟାୟାଳୟର ସ୍ଥାୟୀ ନ୍ୟାୟାଧୀଶ ପଦ ଧାରଣ କରିଥିବା କୌଣସି ବ୍ୟକ୍ତି ଉଚ୍ଚତମ ନ୍ୟାୟାଳୟ ବା ଅନ୍ୟ ଉଚ୍ଚ ନ୍ୟାୟାଳୟମାନଙ୍କ ବ୍ୟତିରେକେ ଭାରତର କୌଣସି ନ୍ୟାୟାଳୟ ବା ପ୍ରାଧିକାରୀଙ୍କ ସମକ୍ଷରେ ଓକିଲାତି ବା କାର୍ଯ୍ୟ କରିବେ ନାହିଁ ।

**ସ୍ପଷ୍ଟୀକରଣ**:—ଏହି ଅନୁଚ୍ଛେଦରେ "ଉଚ୍ଚ ନ୍ୟାୟାଳୟ" ପଦ ମଧ୍ୟରେ ସବିଂଧାନ (ସପ୍ତମ ସଂଶୋଧନ) ଅଧିନିୟମ, ୧୯୫୬ର ପାରମ୍ଭ ପୂର୍ବରୁ ଯଥା ବିଦ୍ୟମାନ ପ୍ରଥମ ଅନୁସୂଚୀରେ ଭାଗ (ଖ) ରେ ବିନିର୍ଦ୍ଦିଷ୍ଟ କୌଣସି ରାଜ୍ୟ ନିମିତ୍ତ ଉଚ୍ଚ ନ୍ୟାୟାଳୟ ଅନ୍ତର୍ଭୁକ୍ତ ନୁହେଁ ।

ନ୍ୟାୟାଧୀଶଙ୍କର ବେତନ ।

୨୨୧ । (୧) ପ୍ରତ୍ୟେକ ଉଚ୍ଚନ୍ୟାୟାଳୟର ନ୍ୟାୟାଧୀଶଙ୍କୁ ଦ୍ୱିତୀୟ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହୋଇଥିବା ମତେ ବେତନ ଦିଆଯିବ ।

(୨) ପ୍ରତ୍ୟେକ ନ୍ୟାୟାଧୀଶ ସଂସଦ ପ୍ରଣୀତ ବିଧି ଦ୍ୱାରା ବା ଅଧୀନରେ ଥରକୁ ଥର ଯେପରି ନିର୍ଦ୍ଧାରିତ କରାଯାଏ ସେପରି ଭତ୍ତା ନିମିତ୍ତ ଏବଂ ଅନୁପସ୍ଥିତି ଛୁଟି ଓ ପେନ୍‌ସନ ସଂପର୍କରେ ସେପରି ଅଧିକାର ନିମିତ୍ତ ହକଦାର ହେବେ, ଏବଂ ଯେଉଁ ପର୍ଯ୍ୟନ୍ତ ଏପରି ନିର୍ଦ୍ଧାରିତ ନ ହୋଇଛି ସେପର୍ଯ୍ୟନ୍ତ ଦ୍ୱିତୀୟ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହୋଇଥିବା ମତେ ଭତ୍ତା ଓ ଅଧିକାର ନିମିତ୍ତ ହକଦାର ହେବେ :

ପରନ୍ତୁ କୌଣସି ନ୍ୟାୟାଧୀଶଙ୍କର ନିଯୁକ୍ତି ପରେ ତାଙ୍କର ଭତ୍ତାରେ ଅଥବା ଅନୁପସ୍ଥିତି ଛୁଟି ବା ପେନ୍‌ସନ ସଂପର୍କରେ ତାଙ୍କ ଅଧିକାରମାନଙ୍କରେ ତାଙ୍କ ପ୍ରତି ଅନନୁକୂଳ ହେଉଥିବା ପରି କୌଣସି ଅଦଳ ବଦଳ କରାଯିବ ନାହିଁ ।

ଏକ ନ୍ୟାୟାଳୟରୁ ଅନ୍ୟ ନ୍ୟାୟାଳୟକୁ କୌଣସି ନ୍ୟାୟାଧୀଶଙ୍କର ସ୍ଥାନାନ୍ତରଣ ।

୨୨୨ । (୧) ରାଷ୍ଟ୍ରପତି ଭାରତର ମୁଖ୍ୟ ନ୍ୟାୟାଧୀପତିଙ୍କ ସହିତ ପରାମର୍ଶ କରିବା ପରେ କୌଣସି ନ୍ୟାୟାଧୀଶଙ୍କୁ ଏକ ଉଚ୍ଚ ନ୍ୟାୟାଳୟରୁ ଅନ୍ୟ କୌଣସି ଉଚ୍ଚନ୍ୟାୟାଳୟକୁ ସ୍ଥାନାନ୍ତରିତ କରି ପାରିବେ ।

(୨) ଯେବେ କୌଣସି ନ୍ୟାୟାଧୀଶଙ୍କୁ ଏପରି ସ୍ଥାନାନ୍ତରିତ କରାଯାଇଥାଏ ବା କରାଯାଏ ତେବେ ସେ ସଂବିଧାନ (ପଞ୍ଚଦଶ ସଂଶୋଧନ) ଅଧିନିୟମ, ୧୯୬୩ ର ପ୍ରାରମ୍ଭ ପରେ ଯେଉଁ କାଳାବଧି ପାଇଁ ଅନ୍ୟ ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ ରୂପେ ସେବା କରନ୍ତି ସେହି କାଳାବଧି ନିମିତ୍ତ ସଂସଦ କର୍ତ୍ତୃକ ବିଧିଦ୍ୱାରା ଯେଉଁ କ୍ଷତିପୂରକ ଭତ୍ତା ନିର୍ଦ୍ଧାରିତ କରାଯାଏ ସେହି ଭତ୍ତା ଏବଂ ଯେଉଁ ପର୍ଯ୍ୟନ୍ତ ଏପରି ନିର୍ଦ୍ଧାରିତ ନ ହୋଇଛି ସେପର୍ଯ୍ୟନ୍ତ ରାଷ୍ଟ୍ରପତି ଆଦେଶ ଦ୍ୱାରା ଯେଉଁ କ୍ଷତିପୂରକ ଭତ୍ତା ନିୟତ କରନ୍ତି ସେହି ଭତ୍ତା ନିଜ ବେତନ ସହିତ ପାଇବା ପାଇଁ ହକଦାର ହେବେ ।

କାର୍ଯ୍ୟକାରୀ ମୁଖ୍ୟ ନ୍ୟାୟାଧିପତିଙ୍କର ନିଯୁକ୍ତି ।

୨୨୩ । ଯେବେ ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତିଙ୍କ ପଦ ରିକ୍ତ ହୁଏ ବା ମୁଖ୍ୟ ନ୍ୟାୟାଧିପତି ଅନୁପସ୍ଥିତି ବା ଅନ୍ୟ କାରଣରୁ ନିଜ ପଦର କର୍ତ୍ତବ୍ୟ ପାଳନ କରିବାରେ ଅସମର୍ଥ ହୁଅନ୍ତି ତେବେ ନ୍ୟାୟାଳୟର ଅନ୍ୟ ନ୍ୟାୟାଧୀଶମାନଙ୍କ ମଧ୍ୟରୁ ଯାହାଙ୍କୁ ରାଷ୍ଟ୍ରପତି ଏହି ପ୍ରୟୋଜନାର୍ଥ ନିଯୁକ୍ତ କରିବେ ତାଙ୍କ ଦ୍ୱାରା ସେହି ପଦର କର୍ତ୍ତବ୍ୟମାନ ପାଳନ କରାଯିବ ।

ଅତିରିକ୍ତ ଓ କାର୍ଯ୍ୟକାରୀ ନ୍ୟାୟାଧୀଶମାନଙ୍କ ନିଯୁକ୍ତି ।

୨୨୪ । (୧) ଯଦି କୌଣସି ଉଚ୍ଚ ନ୍ୟାୟାଳୟରେ କାର୍ଯ୍ୟର ଅସ୍ଥାୟୀ ବୃଦ୍ଧି କାରଣରୁ ବା ତହିଁରେ କାର୍ଯ୍ୟ ବାକି ପଡିଥିବା କାରଣରୁ ରାଷ୍ଟ୍ରପତିଙ୍କୁ ପ୍ରତୀତ ହୁଏ ଯେ ସେହି ନ୍ୟାୟାଳୟର ନ୍ୟାୟାଧୀଶଙ୍କ ସଂଖ୍ୟା ତତ୍‌ସମୟ ନିମିତ୍ତ ବୃଦ୍ଧି କରାଯିବା ଉଚିତ ତେବେ ରାଷ୍ଟ୍ରପତି ଯଥାରୀତି ଯୋଗ୍ୟ ହୋଇଥିବା ବ୍ୟକ୍ତିଙ୍କୁ ସେହି ନ୍ୟାୟାଳୟର ଅତିରିକ୍ତ ନ୍ୟାୟାଧୀଶ ରୂପେ ଦୁଇବର୍ଷରୁ ଅନଧିକ ଯେଉଁ କାଳାବଧି ସେ ବିନିର୍ଦ୍ଦିଷ୍ଟ କରିବେ ସେହି କାଳାବଧି ନିମିତ୍ତ ନିଯୁକ୍ତ କରି ପାରିବେ ।

(୨) ଯେବେ କୌଣସି ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତିଙ୍କ ଭିନ୍ନ ଅନ୍ୟ କୌଣସି ନ୍ୟାୟାଧୀଶ ଅନୁପସ୍ଥିତି କାରଣରୁ ବା ଅନ୍ୟ କୌଣସି କାରଣରୁ ନିଜ ପଦର କର୍ତ୍ତବ୍ୟ ପାଳନ କରିବା ନିମିତ୍ତ ଅକ୍ଷମ ହୁଅନ୍ତି ବା ମୁଖ୍ୟ ନ୍ୟାୟାଧିପତି ରୂପେ ଅସ୍ଥାୟୀ ଭାବେ କାର୍ଯ୍ୟ କରିବା ନିମିତ୍ତ ନିଯୁକ୍ତ ହୁଅନ୍ତି ତେବେ ସ୍ଥାୟୀ ନ୍ୟାୟାଧୀଶ ନିଜ କର୍ତ୍ତବ୍ୟ ପୁନର୍ଗ୍ରହଣ କରିବା ପର୍ଯ୍ୟନ୍ତ ସେହି ନ୍ୟାୟାଳୟର ଏକ ନ୍ୟାୟାଧୀଶ ରୂପେ କାର୍ଯ୍ୟ କରିବା ନିମିତ୍ତ ରାଷ୍ଟ୍ରପତି ଯଥାରୀତି ଯୋଗ୍ୟ ହୋଇଥିବା କୌଣସି ବ୍ୟକ୍ତିଙ୍କୁ ନିଯୁକ୍ତ କରି ପାରିବେ ।

(୩) ଉଚ୍ଚ ନ୍ୟାୟାଳୟର ଅତିରିକ୍ତ ବା କାର୍ଯ୍ୟକାରୀ ନ୍ୟାୟାଧୀଶ ରୂପେ ନିଯୁକ୍ତ କୌଣସି ବ୍ୟକ୍ତି ବାଷଠି-ବର୍ଷ ବୟସପ୍ରାପ୍ତ ହେବା ପରେ ପଦ ଧାରଣ କରିବେ ନାହିଁ ।

ଉଚ୍ଚ ନ୍ୟାୟାଳୟମାନଙ୍କର ବୈଠକ-ମାନଙ୍କରେ ଅବସରପ୍ରାପ୍ତ ନ୍ୟାୟାଧୀଶ-ମାନଙ୍କର ନିଯୁକ୍ତି ।

୨୨୪କ । ଏହି ଅଧ୍ୟାୟରେ ଯେକୌଣସି ବିଷୟ ଥିବା ସତ୍ତ୍ୱେ, କୌଣସି ରାଜ୍ୟର ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତି ଯେ କୌଣସି ସମୟରେ ରାଷ୍ଟ୍ରପତିଙ୍କ ପୂର୍ବ ସମ୍ମତି ନେଇ ଏପରି କୌଣସି ବ୍ୟକ୍ତିଙ୍କୁ ସେହି ରାଜ୍ୟର ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ ରୂପେ ଆସୀନ ହେବା ଓ କାର୍ଯ୍ୟ କରିବାକୁ ଅନୁରୋଧ କରିପାରିବେ ଯେ କି ସେହି ନ୍ୟାୟାଳୟର ନ୍ୟାୟାଧୀଶ ପଦ ଧାରଣ କରିଥିଲେ ଏବଂ ଏହି ରୂପେ ଅନୁରୁଦ୍ଧ ସେପରି ପ୍ରତ୍ୟେକ ବ୍ୟକ୍ତି ସେପରି ଆସୀନ ହେବା ଓ କାର୍ଯ୍ୟ କରିବା ସମୟରେ ରାଷ୍ଟ୍ରପତି ଆଦେଶ ଦ୍ୱାରା ନିର୍ଦ୍ଧାରିତ କରିବା ମତେ ଭତ୍ତା ପାଇବା ପାଇଁ ହକଦାର ହେବେ ଏବଂ ତାଙ୍କର ସେହି ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶଙ୍କର ସମସ୍ତ ଅଧିକାରିତା, କ୍ଷମତା ଓ ବିଶେଷାଧିକାର ରହିବ, ମାତ୍ର ସେ ଅନ୍ୟଥା ସେହି ନ୍ୟାୟାଳୟର ନ୍ୟାୟାଧୀଶ ରୂପେ ବିବେଚିତ ହେବେ ନାହିଁ :

ପରନ୍ତୁ ପୂର୍ବୋକ୍ତ ବ୍ୟକ୍ତି ସେହି ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ ରୂପେ ଆସୀନ ହେବା ଏବଂ କାର୍ଯ୍ୟ କରିବା ନିମିତ୍ତ ସମ୍ମତି ନ ଦେଲେ ଏହି ଅନୁଚ୍ଛେଦର କୌଣସି ବିଷୟ ତାହାଙ୍କୁ ଏପରି କରିବା ପାଇଁ ଆବଶ୍ୟକ କରୁଅଛି ବୋଲି ବିବେଚିତ ହେବ ନାହିଁ ।

ବିଦ୍ୟମାନ ଉଚ୍ଚ ନ୍ୟାୟାଳୟ-ମାନଙ୍କର ଅଧିକାରିତା ।

୨୨୫ । ଏହି ସବିଂଧାନର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ଏବଂ ସମୁଚିତ ବିଧାନମଣ୍ଡଳ ଦ୍ୱାରା ସେହି ବିଧାନ ମଣ୍ଡଳକୁ ଏହି ସବିଂଧାନ ଦ୍ୱାରା ପ୍ରଦତ୍ତ କ୍ଷମତା ବଳରେ ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, କୌଣସି ବିଦ୍ୟମାନ ଉଚ୍ଚ ନ୍ୟାୟାଳୟର ଅଧିକାରିତା ଏବଂ ତହିଁରେ ପ୍ରଶାସିତ ବିଧି ଓ ସେହି ନ୍ୟାୟାଳୟର ନିୟମ ପ୍ରଣୟନ ପାଇଁ କ୍ଷମତା ଏବଂ ନ୍ୟାୟାଳୟର ବୈଠକମାନ ଓ ତହିଁର ସଦସ୍ୟମାନେ ଏକାକୀ ବା ଖଣ୍ଡ ନ୍ୟାୟାଳୟରେ ବସିବା ବିନିୟମିତ କରିବା ନିମିତ୍ତ କ୍ଷମତା ସମେତ ନ୍ୟାୟାଳୟରେ ନ୍ୟାୟ ପ୍ରଶାସନ ସମ୍ବନ୍ଧରେ ତହିଁର ନ୍ୟାୟାଧୀଶମାନଙ୍କର ନିଜ ନିଜ କ୍ଷମତା, ଏହି ସବିଂଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେପରି ଥିଲା ସେପରି ରହିବ

ପରନ୍ତୁ ଏହି ସବିଂଧାନ ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ରାଜସ୍ୱ ସମ୍ବନ୍ଧରେ ବା ତାହା ଆଦାୟ ପାଇଁ ଆଦିଷ୍ଟ ବା କୃତ କୌଣସି କାର୍ଯ୍ୟ ସଂପର୍କୀୟ କୌଣସି ବିଷୟ ସଂକ୍ରାନ୍ତରେ କୌଣସି ଉଚ୍ଚ ନ୍ୟାୟାଳୟ ଦ୍ୱାରା ଆରମ୍ଭିକ ଅଧିକାରିତାର ପ୍ରୟୋଗ ଯେଉଁ ନିର୍ବନ୍ଧନର ବଶବର୍ତ୍ତୀ ଥିଲା ତାହା ସେଭଳି ଅଧିକାରିତାର ପ୍ରୟୋଗ ପ୍ରତି ଆଉ ଲାଗୁ ହେବ ନାହିଁ ।

କୌଣସି ରିଟ୍ ବାହାର କରିବା ନିମିତ୍ତ ଉଚ୍ଚ-ନ୍ୟାୟାଳୟର କ୍ଷମତା ।

୨୨୬ । (୧) ଅନୁଚ୍ଛେଦ ୩୨ରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ପ୍ରତ୍ୟେକ ଉଚ୍ଚ ନ୍ୟାୟାଳୟ ଯେଉଁ ରାଜ୍ୟକ୍ଷେତ୍ରମାନଙ୍କ ସମ୍ବନ୍ଧରେ ନିଜର ଅଧିକାରିତା ପ୍ରୟୋଗ କରୁଥାଏ ସେହି ସମଗ୍ର ରାଜ୍ୟକ୍ଷେତ୍ରରେ ଭାଗ-୩ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କ ମଧ୍ୟରୁ କୌଣସିଟିର ପ୍ରବର୍ତ୍ତନ ନିମିତ୍ତ ଏବଂ ଅନ୍ୟ କୌଣସି ପ୍ରୟୋଜନ ନିମିତ୍ତ ସେହି ରାଜ୍ୟକ୍ଷେତ୍ରମାନଙ୍କ ମଧ୍ୟରେ ଯେ କୌଣସି ବ୍ୟକ୍ତି ବା ପ୍ରାଧିକାରୀଙ୍କ ପ୍ରତି ଏବଂ ସମୁଚିତ ମାମଲାରେ କୌଣସି ସରକାର ପ୍ରତି ନିଦେଶ, ଆଦେଶ ଅଥବା ହେବିୟସ କର୍ପସ, ମାଣ୍ଡାମସ, ପ୍ରୋହିବିସନ, କୋ-ଓ୍ୱାରେଣ୍ଟୋ. ସରସିଓରାରୀ ପ୍ରକାରର ରିଟ୍ ସମେତ ରିଟ୍‌ମାନ ବା ତହିଁ ମଧ୍ୟରୁ କୌଣସି ରିଟ୍ ବାହାର କରିବା ପାଇଁ ସେହି ଉଚ୍ଚ ନ୍ୟାୟାଳୟର କ୍ଷମତା ରହିବ ।

(୨) କୌଣସି ସରକାର, ପ୍ରାଧିକାରୀ ବା ବ୍ୟକ୍ତି ପ୍ରତି ନିଦେଶ, ଆଦେଶ ବା ରିଟ ବାହାର କରିବା ନିମିତ୍ତ ଖଣ୍ଡ (୧) ଦ୍ୱାରା ଯେଉଁ କ୍ଷମତା ପ୍ରଦତ୍ତ ହୋଇଅଛି ତାହା ଯେଉଁ ରାଜ୍ୟକ୍ଷେତ୍ର ମଧ୍ୟରେ ବାଦର ହେତୁ ପୂର୍ଣ୍ଣତଃ ବା ଭାଗତଃ ଉଦ୍‌ଭବ ହୋଇଥାଏ ସେହି ରାଜ୍ୟକ୍ଷେତ୍ର ସମ୍ବନ୍ଧରେ ଏପରି କ୍ଷମତାର ପ୍ରୟୋଗ ନିମିତ୍ତ ଅଧିକାରିତା ପ୍ରୟୋଗ କରୁଥିବା କୌଣସି ଉଚ୍ଚନ୍ୟାୟାଳୟ ଦ୍ୱାରା ମଧ୍ୟ ପ୍ରୟୋଗ କରାଯାଇ ପାରିବ, ଯଦ୍ୟପି ଏପରି ସରକାର ବା ପ୍ରାଧିକାରୀଙ୍କ ସ୍ଥାନ ବା ଏପରି ବ୍ୟକ୍ତିଙ୍କର ନିବାସ ସ୍ଥାନ ସେହି ରାଜ୍ୟକ୍ଷେତ୍ର ମଧ୍ୟରେ ହୋଇ ନ ଥାଏ ।

(୩) ଯେଉଁସ୍ଥଳେ କୌଣସି ପକ୍ଷଙ୍କ ବିରୁଦ୍ଧରେ ଖଣ୍ଡ (୧) ଅଧୀନ ଦରଖାସ୍ତ ଉପରେ ବା ଦରଖାସ୍ତ ସଂପର୍କିତ କୌଣସି କାର୍ଯ୍ୟବାହୀରେ ନିଷେଧାଜ୍ଞା ବା ସ୍ଥଗନ ବା ଅନ୍ୟ ଯେ କୌଣସି ପ୍ରକାରର ଅନ୍ତବର୍ତ୍ତୀ ଆଦେଶ—

(କ) ସେହି ପକ୍ଷଙ୍କୁ ସେପରି ଦରଖାସ୍ତର ନକଲମାନ ଓ ସେପରି ଅନ୍ତବର୍ତ୍ତୀ ଆଦେଶ ନେଇ ଯୁକ୍ତିର ସମର୍ଥନରେ ଥିବା ସମସ୍ତ ଦସ୍ତାବେଜ ଯୋଗାଇ ନ ଦେଇ, ଏବଂ

(ଖ) ସେପରି ପକ୍ଷଙ୍କୁ ଶୁଣାଣିର ଅବସର ନ ଦେଇ,

କରାଯାଏ, ସେହିସ୍ଥଳେ ସେହି ପକ୍ଷ ସେପରି ଆଦେଶ ଉଠାଇ ନେବା ଲାଗି ଉଚ୍ଚ ନ୍ୟାୟାଳୟକୁ ଏକ ଆବେଦନ କଲେ ଓ ଯେଉଁ ପକ୍ଷଙ୍କ ସପକ୍ଷରେ ସେପରି ଆଦେଶ କରାଯାଇଥାଏ ତାହାଙ୍କୁ ବା ତାଙ୍କ ପକ୍ଷର ଓକିଲକୁ ସେପରି ଦରଖାସ୍ତର ଏକ ନକଲ ଯୋଗାଇ ଦେଲେ ଉଚ୍ଚ ନ୍ୟାୟାଳୟ ଯେଉଁ ତାରିଖରେ ଆବେଦନ ଗ୍ରହଣ କରାଯାଏ ସେହି ତାରିଖ ବା ଯେଉଁ ତାରିଖରେ ସେପରି ଦରଖାସ୍ତର ନକଲ ଏରୂପେ ଯୋଗାଇ ଦିଆଯାଏ ସେହି ତାରିଖ ମଧ୍ୟରୁ ଯେଉଁ ତାରିଖ ପରବର୍ତ୍ତୀ ହୋଇଥିବ ସେହି ତାରିଖଠାରୁ କିମ୍ବା ସେହି କାଳାବଧିର ଅନ୍ତିମ ଦିବସରେ ଉଚ୍ଚ ନ୍ୟାୟାଳୟ ବନ୍ଦ ଥିଲେ ଉଚ୍ଚ ନ୍ୟାୟାଳୟ ଯେଉଁ ପରବର୍ତ୍ତୀ ଦିନ ଖୋଲା ରହେ ସେହି ଦିନଠାରୁ ଦୁଇ ସପ୍ତାହ କାଳାବଧି ମଧ୍ୟରେ ଅବସାନ ପୂର୍ବରୁ ତାହାକୁ ଫଏସଲା କରିବ, ଏବଂ ଯଦି ସେହି ଦରଖାସ୍ତ ଏରୂପେ ଫଏସଲା କରାନଯାଏ ତାହାହେଲେ ସେହି କାଳାବଧିର ଅବସାନ ପରେ ବା, ଯଥାସ୍ଥିତି, ଉକ୍ତ ପରବର୍ତ୍ତୀ ଦିବସର ଅବସାନ ପରେ, ସେହି ଅନ୍ତର୍ବର୍ତ୍ତୀ ଆଦେଶ ଉଠିଯିବ ।

(୪) ଏହି ଅନୁଚ୍ଛେଦ ଦ୍ୱାରା ଉଚ୍ଚ ନ୍ୟାୟାଳୟକୁ ପ୍ରଦତ୍ତ କ୍ଷମତା ଏହି ସଂବିଧାନର ଅନୁଚ୍ଛେଦ ୩୧ର ଖଣ୍ଡ (୨) ଦ୍ୱାରା ଉଚ୍ଚତମ ନ୍ୟାୟାଳୟକୁ ପ୍ରଦତ୍ତ କ୍ଷମତାର ଅଳ୍ପୀକରଣ କରିବ ନାହିଁ ।

୨୨୬କ । ନିରସିତ

ନ୍ୟାୟାଳୟ ଉପରେ ଅଧୀକ୍ଷଣ ନିମିତ୍ତ ଉଚ୍ଚ ନ୍ୟାୟାଳୟର କ୍ଷମତା ।

୨୨୭ । (୧) ଯେଉଁ ରାଜ୍ୟକ୍ଷେତ୍ର ସଂକ୍ରାନ୍ତରେ ପ୍ରତ୍ୟେକ ଉଚ୍ଚ ନ୍ୟାୟାଳୟ ଅଧିକାରିତା ପ୍ରୟୋଗ କରେ ସେହି ସାରା ରାଜ୍ୟ କ୍ଷେତ୍ରରେ ଥିବା ସମସ୍ତ ନ୍ୟାୟାଳୟ ଓ ଟ୍ରିବ୍ୟୁନାଲ ଉପରେ ତାହାର ଅଧୀକ୍ଷଣ କ୍ଷମତା ରହିବ ।

(୨) ପୂର୍ବଗାମୀ ଉପବନ୍ଧମାନଙ୍କ ବ୍ୟାପକତା ଉପରେ ପ୍ରତିକୂଳ ପ୍ରଭାବ ନ ପକାଇ ଉଚ୍ଚ ନ୍ୟାୟାଳୟ,–

(କ) ସେପରି ନ୍ୟାୟାଳୟରୁ ବିବରଣୀ ମଗାଇ ପାରିବ ;

(ଖ) ସେପରି ନ୍ୟାୟାଳୟର କାର୍ଯ୍ୟ ପ୍ରଣାଳୀ ଓ କାର୍ଯ୍ୟବାହୀର ବିନିୟମନ ନିମିତ୍ତ ସାଧାରଣ ନିୟମାବଳୀ ପ୍ରଣୟନ କରି ପାରିବ ଓ ବାହାର କରି ପାରିବ ଏବଂ ପ୍ରପତ୍ରମାନ ବିହିତ କରି ପାରିବ; ଏବଂ

(ଗ) ସେପରି କୌଣସି ନ୍ୟାୟାଳୟର ଅଫିସରମାନେ ଯେଉଁ ପ୍ରପତ୍ରରେ ପୁସ୍ତକ, ପ୍ରବିଷ୍ଟି ଓ ଲେଖା ରଖିବେ ତାହା ବିହିତ କରି ପାରିବ ।

(୩) ଉଚ୍ଚନ୍ୟାୟାଳୟ, ସେପରି ନ୍ୟାୟାଳୟର ସେରିଫ ଏବଂ ସମସ୍ତ ଲିପିକାର ଓ ଅଫିସରମାନଙ୍କୁ ଏବଂ ତହିଁରେ ବୃତ୍ତି କରୁଥିବା ଆଟର୍ଣ୍ଣି, ଆଡ଼ଭୋକେଟ ଓ ଓକିଲମାନଙ୍କୁ ଦେୟ ଫିସର ସାରଣୀ ସ୍ଥିର କରି ପାରିବ :

ପରନ୍ତୁ ଖଣ୍ଡ (୨) ବା ଖଣ୍ଡ (୩) ଅଧୀନରେ ପ୍ରଣୀତ କୌଣସି ନିୟମ ବା ବିହିତ କୌଣସି ପ୍ରପତ୍ର କିମ୍ବା ସ୍ଥିରୀକୃତ କୌଣସି ସାରଣୀ ତତ୍‌ସମୟ ପ୍ରବୃତ୍ତ କୌଣସି ବିଧିର ଉପବନ୍ଧମାନଙ୍କ ସହ ଅସଙ୍ଗତ ହେବ ନାହିଁ ଏବଂ ସେଥି ନିମିତ୍ତ ରାଜ୍ୟପାଳଙ୍କର ପୂର୍ବାନୁମୋଦନ ଆବଶ୍ୟକ ହେବ ।

(୪) ଏହି ଅନୁଚ୍ଛେଦର କୌଣସି ବିଷୟ କୌଣସି ଉଚ୍ଚନ୍ୟାୟାଳୟକୁ ସଶସ୍ତ୍ରବାହୀନୀ ସମ୍ବନ୍ଧୀୟ କୌଣସି ବିଧି ଦ୍ୱାରା ବା ଅଧୀନରେ ଗଠିତ କୌଣସି ନ୍ୟାୟାଳୟ ବା ଟ୍ରିବ୍ୟୁନାଲ ଉପରେ ଅଧୀକ୍ଷଣ ନିମିତ୍ତ କ୍ଷମତା ଦେଉଅଛି ବୋଲି ବିବେଚିତ ହେବନାହିଁ ।

ଉଚ୍ଚ ନ୍ୟାୟାଳୟକୁ କେତେକ ମାମଲାର ଅନ୍ତରଣ ।

୨୨୮ । ଯଦି ଉଚ୍ଚ ନ୍ୟାୟାଳୟ ସନ୍ତୁଷ୍ଟ ହୁଏ ଯେ ତାହାର ଅଧୀନସ୍ଥ କୌଣସି ନ୍ୟାୟାଳୟରେ ଲମ୍ବିତ କୌଣସି ମାମଲାରେ ଏହି ସଂବିଧାନର ନିର୍ବାଚନ ବିଷୟକ ଏପରି କୌଣସି ସାରବାନ ବିଧି ଗତ ପ୍ରଶ୍ନ ନିହିତ ଅଛି ଯାହାକି ମାମଲାର ଫଏସଲା ପାଇଁ ନିର୍ଦ୍ଧାରିତ ହେବା ଆବଶ୍ୟକ ତେବେ ସେ ସେହି ମାମଲାକୁ ନିଜ ପାଖକୁ ମଗାଇ ନେବ ଏବଂ—

(କ) ହୁଏତ ସେହି ମାମଲାକୁ ନିଜେ ଫଇସଲା କରି ପାରିବ ; ବା

(ଖ) ଉକ୍ତ ବିଧିଗତ ପ୍ରଶ୍ନର ନିର୍ଦ୍ଧାରଣ କରି ପାରିବ ଏବଂ ସେହି ପ୍ରଶ୍ନ ଉପରେ ନିଜ ନିର୍ଣ୍ଣୟର ପ୍ରତିଲିପି ସହ ସେହି ମାମଲାକୁ ଯେଉଁ ନ୍ୟାୟାଳୟରୁ ତାହା ମଗା ଯାଇଥିବ ସେହି ନ୍ୟାୟାଳୟକୁ ଫେରାଇ ଦେଇ ପାରିବ ଏବଂ ତାହା ପାଇବା ପରେ ଉକ୍ତ ନ୍ୟାୟାଳୟ ସେହି ମାମଲାକୁ ସେହି ନିର୍ଣ୍ଣୟ ଅନୁଯାୟୀ ଫଏସଲା କରିବ ।

୨୨୮ କ । ନିରସିତ

ଉଚ୍ଚ ନ୍ୟାୟାଳୟର ଅଫିସର ଓ ସେବକ ଏବଂ ବ୍ୟୟ ।

୨୨୯ । (୧) ଉଚ୍ଚ ନ୍ୟାୟାଳୟର ଅଫିସର ଓ ସେବକଙ୍କର ନିଯୁକ୍ତି ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତିଙ୍କ ଦ୍ୱାରା ଅଥବା ତାହାଙ୍କ ଦ୍ୱାରା ନିଦେଶିତ ହେବା ସେହି ନ୍ୟାୟାଳୟର ଅନ୍ୟ ନ୍ୟାୟାଧୀଶ ବା ଅଫିସରଙ୍କ ଦ୍ୱାରା କରାଯିବ ;

ପରନ୍ତୁ ସେହି ରାଜ୍ୟର ରାଜ୍ୟପାଳ ନିୟମ ଦ୍ୱାରା ଏହା ଆବଶ୍ୟକ କରିପାରିବେ ଯେ ସେହି ନିୟମରେ ଯଥା ବିନିର୍ଦ୍ଦିଷ୍ଟ କୌଣସି ସ୍ଥଳରେ ପୂର୍ବରୁ ନ୍ୟାୟାଳୟ ସହ ସଂଶ୍ଳିଷ୍ଟ ନ ଥିବା କୌଣସି ବ୍ୟକ୍ତିଙ୍କୁ ରାଜ୍ୟ ପବ୍ଲିକ ସର୍ଭିସ କମିଶନ ସଙ୍ଗେ ପରାମର୍ଶ କରା ନ ଯାଇ ନ୍ୟାୟାଳୟ ସହ ସଂପୃକ୍ତ କୌଣସି ପଦରେ ନିଯୁକ୍ତ କରାଯିବ ନାହିଁ ।

(୨) ରାଜ୍ୟର ବିଧାନ ମଣ୍ଡଳ ଦ୍ୱାରା ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ନ୍ୟାୟାଳୟର ଅଫିସର ଓ ସେବକମାନଙ୍କର ସେବାର ସର୍ତ୍ତମାନ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତିଙ୍କ ଦ୍ୱାରା ପ୍ରଣୀତ ବା ସେହି ପ୍ରୟୋଜନ ନିମିତ୍ତ ନିୟମ ପ୍ରଣୟନ କରିବା ପାଇଁ ମୁଖ୍ୟ ନ୍ୟାୟାଧିପତିଙ୍କ ଦ୍ୱାରା ପ୍ରାଧିକୃତ ସେହି ନ୍ୟାୟାଳୟର ଅନ୍ୟ କୌଣସି ନ୍ୟାୟାଧୀଶ ବା ଅଫିସରଙ୍କ ଦ୍ୱାରା ପ୍ରଣୀତ ନିୟମାବଳୀରେ ଯେପରି ବିହିତ କରାଯାଏ ସେପରି ହେବ

ପରନ୍ତୁ ଏହି ଖଣ୍ଡ ଅଧୀନରେ ପ୍ରଣୀତ ନିୟମାବଳୀ ଯେ ପର୍ଯ୍ୟନ୍ତ ବେତନ, ଭତ୍ତା, ଛୁଟି ବା ପେନ୍‌ସନ ସହ ସମ୍ବନ୍ଧିତ ଅଟେ ସେହି ନିୟମାବଳୀ ନିମିତ୍ତ ସେହି ରାଜ୍ୟର ରାଜ୍ୟପାଳଙ୍କର ଅନୁମୋଦନ ଆବଶ୍ୟକ ହେବ ।

(୩) ଉଚ୍ଚ ନ୍ୟାୟାଳୟର ଅଫିସର ଓ ସେବକମାନଙ୍କୁ ଓ ସେମାନଙ୍କର ସଂପର୍କରେ ଦିଆଯାଇଥିବା ବେତନ, ଭତ୍ତା ଓ ପେନ୍‌ସନ ସମେତ ସେହି ନ୍ୟାୟାଳୟର ପ୍ରଶାସନିକ ବ୍ୟୟ ରାଜ୍ୟ ସଞ୍ଚିତ ନିଧି ଉପରେ ଭାରିତ ହେବ, ଏବଂ ସେହି ନ୍ୟାୟାଳୟ ଦ୍ୱାରା ନିଆଯିବା ଫିସ ଓ ଅନ୍ୟାନ୍ୟ ଧନ ସେହି ନିଧିର ଭାଗ ହେବ ।

ସଂଘ ରାଜ୍ୟକ୍ଷେତ୍ର ଉପରେ ଉଚ୍ଚନ୍ୟାୟାଳୟମାନଙ୍କର ଅଧିକାରିତାର ବିସ୍ତାର ।

୨୩୦ । (୧) ସଂସଦ ବିଧି ଦ୍ୱାରା କୌଣସି ସଂଘ ରାଜ୍ୟକ୍ଷେତ୍ର ଉପରେ କୌଣସି ଉଚ୍ଚ ନ୍ୟାୟାଳୟର ଅଧିକାରିତା ବିସ୍ତାର କରି ପାରିବ ବା କୌଣସି ସଂଘ ରାଜ୍ୟକ୍ଷେତ୍ରରୁ ଉଚ୍ଚ ନ୍ୟାୟାଳୟର ଅଧିକାରିତାର ଅପବର୍ଜନ କରି ପାରିବ ।

(୨) ଯେଉଁଠାରେ କୌଣସି ରାଜ୍ୟର ଉଚ୍ଚ ନ୍ୟାୟାଳୟ କୌଣସି ସଂଘ ରାଜ୍ୟକ୍ଷେତ୍ର ସମ୍ବନ୍ଧରେ ଅଧିକାରିତା ପ୍ରୟୋଗ କରେ ସେଠାରେ—

(କ) ଏହି ସଂବିଧାନରେ ଥିବା କୌଣସି ବିଷୟ ସେହି ରାଜ୍ୟର ବିଧାନ ମଣ୍ଡଳକୁ ସେହି ଅଧିକାରିତାକୁ ବୃଦ୍ଧି କରିବା , ନିର୍ବନ୍ଧିତ କରିବା ବା ଉତ୍ସାଦନ କରିବା ନିମିତ୍ତ କ୍ଷମତା ପ୍ରଦାନ କରୁଅଛି ବୋଲି ଅର୍ଥ କରାଯିବ ନାହିଁ ।

(ଖ) ଅନୁଚ୍ଛେଦ ୨୨୭ରେ ରାଜ୍ୟପାଳଙ୍କ ପ୍ରତି ଥିବା ନିର୍ଦ୍ଦେଶ ସେହି ରାଜ୍ୟକ୍ଷେତ୍ରରେ ଥିବା ଅଧୀନସ୍ଥ ନ୍ୟାୟାଳୟମାନଙ୍କ ନିମିତ୍ତ କୌଣସି ନିୟମାବଳୀ, ପ୍ରପତ୍ର ବା ସାରଣୀ ସମ୍ବନ୍ଧରେ ରାଷ୍ଟ୍ରପତିଙ୍କ ପ୍ରତି ନିର୍ଦ୍ଦେଶ ଅଟେ ବୋଲି ଅର୍ଥ କରାଯିବ ।

ଦୁଇ ବା ଅଧିକ ରାଜ୍ୟ ନିମିତ୍ତ ଗୋଟିଏ ସାଧାରଣ ଉଚ୍ଚ ନ୍ୟାୟାଳୟ ସ୍ଥାପନା ।

୨୩୧ । (୧) ଏହି ଅଧ୍ୟାୟର ପୂର୍ବବର୍ତ୍ତୀ ଉପବନ୍ଧମାନଙ୍କରେ ଅନ୍ତର୍ବିଷ୍ଟ ଯେ କୌଣସି ବିଷୟ ସତ୍ତ୍ୱେ ସଂସଦ ବିଧି ଦ୍ୱାରା ଦୁଇ ବା ଅଧିକ ରାଜ୍ୟ ନିମିତ୍ତ ଅଥବା ଦୁଇ ବା ଅଧିକ ରାଜ୍ୟ ଓ ଏକ ସଂଘ ରାଜ୍ୟକ୍ଷେତ୍ର ନିମିତ୍ତ ଏକ ଉଚ୍ଚ ନ୍ୟାୟାଳୟ ସ୍ଥାପନ କରି ପାରିବ ।

(୨) ଏପରି କୌଣସି ଉଚ୍ଚ ନ୍ୟାୟାଳୟ ସମ୍ବନ୍ଧରେ—

(କ) ଅନୁଚ୍ଛେଦ ୨୧୭ ରେ ରାଜ୍ୟର ରାଜ୍ୟପାଳଙ୍କ ପ୍ରତି ଥିବା ନିର୍ଦ୍ଦେଶକୁ ଉଚ୍ଚ ନ୍ୟାୟାଳୟ ଯେଉଁ ରାଜ୍ୟମାନଙ୍କ ସମ୍ବନ୍ଧରେ ଅଧିକାରିତା ପ୍ରୟୋଗ କରୁଥାଏ ସେହି ସମସ୍ତ ରାଜ୍ୟର ରାଜ୍ୟପାଳଙ୍କ ପ୍ରତି ନିର୍ଦ୍ଦେଶ ବୋଲି ଅର୍ଥ କରାଯିବ;

(ଖ) ଅନୁଚ୍ଛେଦ ୨୨୭ ରେ ରାଜ୍ୟପାଳଙ୍କ ପ୍ରତି ଥିବା ନିର୍ଦ୍ଦେଶକୁ ଅଧୀନସ୍ଥ ନ୍ୟାୟାଳୟମାନଙ୍କ ନିମିତ୍ତ କୌଣସି ନିୟମାବଳୀ, ପ୍ରପତ୍ର ବା ସାରଣୀ ସମ୍ବନ୍ଧରେ ସେହି ଅଧୀନସ୍ଥ ନ୍ୟାୟାଳୟମାନ ଯେଉଁ ରାଜ୍ୟରେ ଅବସ୍ଥିତ ସେହି ରାଜ୍ୟର ରାଜ୍ୟପାଳଙ୍କ ପ୍ରତି ନିର୍ଦ୍ଦେଶ ବୋଲି ଅର୍ଥ କରାଯିବ;

(ଗ) ଅନୁଚ୍ଛେଦ ୨୧୯ ଓ ୨୨୯ ରେ ରାଜ୍ୟ ପ୍ରତି ଥିବା ନିର୍ଦ୍ଦେଶ ଯେଉଁ ରାଜ୍ୟରେ ଉଚ୍ଚ ନ୍ୟାୟାଳୟର ମୁଖ୍ୟ ସ୍ଥାନ ଥାଏ ସେହି ରାଜ୍ୟ ପ୍ରତି ନିର୍ଦ୍ଦେଶ ବୋଲି ଅର୍ଥ କରାଯିବ :

ପରନ୍ତୁ ଯଦି ଏପରି ମୁଖ୍ୟ ସ୍ଥାନ ଏକ ସଂଘ ରାଜ୍ୟ କ୍ଷେତ୍ରରେ ଥାଏ ତେବେ ଅନୁଚ୍ଛେଦ ୨୧୯ ଓ ୨୨୯ ରେ ରାଜ୍ୟପାଳ, ପବ୍ଲିକ ସର୍ଭିସ କମିସନ, ବିଧାନ ମଣ୍ଡଳ ଓ ସଂଚିତ ନିଧି ପ୍ରତି ଥିବା ନିର୍ଦ୍ଦେଶମାନ ଯଥାକ୍ରମେ ରାଷ୍ଟ୍ରପତି, ସଂଘ ପବ୍ଲିକ ସର୍ଭିସ କମିସନ, ସଂସଦ ଓ ଭାରତର ସଞ୍ଚିତ ନିଧି ପ୍ରତି ନିର୍ଦ୍ଦେଶ ବୋଲି ଅର୍ଥ କରାଯିବ ।

[

୨୩୨ । × × × × × × × ×

## ଅଧ୍ୟାୟ ୬–ଅଧୀନସ୍ଥ ନ୍ୟାୟାଳୟ

ଜିଲ୍ଲା ନ୍ୟାୟାଳୟରେ ନ୍ୟାୟାଧୀଶଙ୍କର ନିଯୁକ୍ତି ।

୨୩୩ । (୧) କୌଣସି ରାଜ୍ୟରେ ଜିଲ୍ଲା ନ୍ୟାୟାଧୀଶ ହେବା ବ୍ୟକ୍ତିମାନଙ୍କର ନିଯୁକ୍ତି, ଅବସ୍ଥାପନ ଓ ପଦୋନ୍ନତି ରାଜ୍ୟର ରାଜ୍ୟପାଳ ସେହି ରାଜ୍ୟ ସମ୍ବନ୍ଧରେ ଅଧିକାରିତା ପ୍ରୟୋଗ କରୁଥିବା ଉଚ୍ଚ ନ୍ୟାୟାଳୟ ସହିତ ପରାମର୍ଶ କରି କରିବେ ।

(୨) ସଂଘ ବା ରାଜ୍ୟର ସେବାରେ ଆଗରୁ ନିଯୁକ୍ତ ହୋଇ ନ ଥିବା କୌଣସି ବ୍ୟକ୍ତି ଯଦି ଅନ୍ୟୂନ ସାତ ବର୍ଷ କାଳ ଆଡ୍‌ଭୋକେଟ ବା ଓକିଲ ହୋଇଥିବ ଏବଂ ତାଙ୍କର ନିଯୁକ୍ତି ନିମିତ୍ତ ଉଚ୍ଚ ନ୍ୟାୟଳୟ ସୁପାରିଶ କରିଥିବେ, ତେବେ ସେ ଜିଲ୍ଲା ନ୍ୟାୟାଧୀଶ ହେବା ପାଇଁ ପାତ୍ର ହେବେ ।

କେତେକ ଜିଲ୍ଲା ନ୍ୟାୟାଧୀଶଙ୍କ ନିଯୁକ୍ତିର ଏବଂ ସେମାନଙ୍କ ଦ୍ୱାରା ପ୍ରଦତ୍ତ ନିର୍ଣ୍ଣୟର ବିଧିମାନ୍ୟକରଣ ।

୨୩୩ କ । କୌଣସି ନ୍ୟାୟାଳୟର କୌଣସି ନିର୍ଣ୍ଣୟ, ଡିକ୍ରୀ ବା ଆଦେଶ ସତ୍ତ୍ୱେ–

(କ) ଅନୁଚ୍ଛେଦ ୨୩୩ ବା ଅନୁଚ୍ଛେଦ ୨୩୫ ର ଉପବନ୍ଧମାନଙ୍କ ଅନୁସାରେ ହୋଇଥିବା ଭିନ୍ନ ଅନ୍ୟଥା ସଂବିଧାନ (୨୦ଶ ସଂଶୋଧନ) ଅଧିନିୟମ, ୧୯୬୬ ର ପ୍ରାରମ୍ଭ ପୂର୍ବରୁ ଯେ କୌଣସି ସମୟରେ କରାଯାଇଥିବା–

(୧) କୌଣସି ରାଜ୍ୟର ନ୍ୟାୟିକ ସେବାରେ ଆଗରୁ ରହିଥିବା କୌଣସି ବ୍ୟକ୍ତିଙ୍କର ଅଥବା ଅନ୍ୟୂନ ସାତ ବର୍ଷ ଆଡ୍‌ଭୋକେଟ ବା ଓକିଲ ରହିଥିବା କୌଣସି ବ୍ୟକ୍ତିଙ୍କର ସେହି ରାଜ୍ୟରେ ଜିଲ୍ଲା ନ୍ୟାୟାଧୀଶ ହେବା ପାଇଁ ନିଯୁକ୍ତି, ଏବଂ

(୨) ଜିଲ୍ଲା ନ୍ୟାୟାଧୀଶ ରୂପେ ସେପରି କୌଣସି ବ୍ୟକ୍ତିଙ୍କର ଅବସ୍ଥାପନ, ପଦୋନ୍ନତି ବା ସ୍ଥାନାନ୍ତରଣ,

କେବଳ ଏହି କାରଣରୁ ଅବୈଧ ବା ଶୂନ୍ୟ ବୋଲି ବିବେଚିତ ହେବ ନାହିଁ ବା କେବେ ଅବୈଧ ବା ଶୂନ୍ୟ ହୋଇ ଯାଇଥିଲା ବୋଲି ବିବେଚିତ ହେବ ନାହିଁ ଯେ ଏପରି ନିଯୁକ୍ତି, ଅବସ୍ଥାପନ, ପଦୋନ୍ନତି ବା ସ୍ଥାନାନ୍ତରଣ ଉକ୍ତ ଉପବନ୍ଧମାନଙ୍କ ଅନୁସାରେ ହୋଇ ନ ଥିଲା;

(ଖ) ସଂବିଧାନ (୨୦ଶ ସଂଶୋଧନ) ଅଧିନିୟମ, ୧୯୬୬ର ପ୍ରାରମ୍ଭ ପୂର୍ବରୁ ଅନୁଚ୍ଛେଦ ୨୩୩ ର ବା ଅନୁଚ୍ଛେଦ ୨୩୫ର ଉପବନ୍ଧ ଅନୁସାରେ ନ ହୋଇ ଅନ୍ୟଥା କୌଣସି ରାଜ୍ୟର ଜିଲ୍ଲା ନ୍ୟାୟାଧୀଶ ରୂପେ ନିଯୁକ୍ତ, ଅବସ୍ଥାପିତ, ପଦୋନ୍ନତ ବା ସ୍ଥାନାନ୍ତରିତ ହୋଇଥିବା କୌଣସି ବ୍ୟକ୍ତିଙ୍କ ଦ୍ୱାରା ପ୍ରୟୋଗ କରିଥିବା ଅଧିକାରିତା ବା ସେ ଦେଇଥିବା କୌଣସି ନିର୍ଣ୍ଣୟ, ଡିକ୍ରୀ, ଦଣ୍ଡାଦେଶ ବା ଆଦେଶ ତଥା ତାଙ୍କ ଦ୍ୱାରା ବା ତାଙ୍କ ସମକ୍ଷରେ କରାଯାଇଥିବା ଅନ୍ୟ

କୌଣସି କାର୍ଯ୍ୟ ବା କାର୍ଯ୍ୟବାହୀ କେବଳ ଏହି କାରଣରୁ ଅବୈଧ ବା ଶୂନ୍ୟ ବୋଲି ବିବେଚିତ ହେବ ନାହିଁ ବା କେବେ ଅବୈଧ ବା ଶୂନ୍ୟ ହୋଇ ଯାଇଥିଲା ବୋଲି ବିବେଚିତ ହେବ ନାହିଁ ଯେ ଏପରି ନିଯୁକ୍ତି, ଅବସ୍ଥାପନ , ପଦୋନ୍ନତି ବା ସ୍ଥାନାନ୍ତରଣ ଉକ୍ତ ଉପବନ୍ଧମାନଙ୍କ ଅନୁସାରେ ହୋଇ ନ ଥିଲା ।

**ଜିଲ୍ଲା ନ୍ୟାୟାଧୀଶ ଭିନ୍ନ ଅନ୍ୟ ବ୍ୟକ୍ତିଙ୍କର ନ୍ୟାୟିକ ସେବାରେ ଭର୍ତ୍ତି ।**

୨୩୪ । ଜିଲ୍ଲା ନ୍ୟାୟାଧୀଶ ଭିନ୍ନ ଅନ୍ୟ ବ୍ୟକ୍ତିଙ୍କର ରାଜ୍ୟର ନ୍ୟାୟିକ ସେବାରେ ନିଯୁକ୍ତି, ରାଜ୍ୟର ପବ୍ଲିକ ସର୍ଭିସ କମସନ ଏବଂ ଏହି ରାଜ୍ୟ ସମ୍ବନ୍ଧରେ ଅଧିକାରିତା ପ୍ରୟୋଗ କରୁଥିବା ଉଚ୍ଚ ନ୍ୟାୟାଳୟ ସହିତ ପରାମର୍ଶ କଲା ପରେ ରାଜ୍ୟପାଳ ତାଙ୍କ ଦ୍ୱାରା ସେଥି ନିମିତ୍ତ ପ୍ରଣୀତ ନିୟାମାବଳୀ ଅନୁସାରେ କରିବେ ।

**ଅଧୀନସ୍ଥ ନ୍ୟାୟାଳୟମାନଙ୍କର ନିୟନ୍ତ୍ରଣ ।**

୨୩୫ । ଜିଲ୍ଲା ନ୍ୟାୟାଧୀଶଙ୍କ ପଦରୁ ନ୍ୟୂନ କୌଣସି ପଦ ଧାରଣ କରୁଥିବା ରାଜ୍ୟର ନ୍ୟାୟିକ ସେବାରେ ନିଯୁକ୍ତ ଥିବା କୌଣସି ବ୍ୟକ୍ତିଙ୍କ ଅବସ୍ଥାପନ, ପଦୋନ୍ନତି ଏବଂ ତାହାଙ୍କୁ ଛୁଟି ପ୍ରଦାନ ସମେତ ଜିଲ୍ଲା ନ୍ୟାୟାଳୟମାନଙ୍କ ଓ ତହିଁର ଅଧୀନସ୍ଥ ନ୍ୟାୟାଳୟମାନଙ୍କର ନିୟନ୍ତ୍ରଣ ଉଚ୍ଚ ନ୍ୟାୟାଳୟଠାରେ ନିହିତ ହେବ, ମାତ୍ର ଏହି ଅନୁଚ୍ଛେଦର କୌଣସି ବିଷୟର ଏପରି ଅର୍ଥ କରାଯିବ ନାହିଁ ଯେ ଏହା କୌଣସି ବ୍ୟକ୍ତିଙ୍କ ସେବା ସର୍ତ୍ତକୁ ବିନିୟମିତ କରୁଥିବା ବିଧି ଅଧୀନରେ ସେ ପାଇଥିବା ଅପିଲ ଅଧିକାରକୁ କ୍ଷୁର୍ଣ୍ଣ କରୁଅଛି ଅଥବା ତାହା ପ୍ରତି ସେପରି ବିଧି ଅଧୀନରେ ବିହିତ ସେବାର ସର୍ତ୍ତମାନଙ୍କ ଅନୁସରଣ ଭିନ୍ନ ଅନ୍ୟଥା ବ୍ୟବହାର କରିବା ପାଇଁ ଉଚ୍ଚ ନ୍ୟାୟାଳୟକୁ ଅଧିକାର ପ୍ରଦାନ କରୁଅଛି ।

**ନିର୍ବାଚନ ।**

୨୩୬ । (୧) ଏହି ଅଧ୍ୟାୟରେ—

(କ) "ଜିଲ୍ଲା ନ୍ୟାୟାଧୀଶ" ପଦ ମଧ୍ୟରେ ନଗର ସିଭିଲ ନ୍ୟାୟାଳୟର ନ୍ୟାୟାଧୀଶ, ଅତିରିକ୍ତ ଜିଲ୍ଲା ନ୍ୟାୟାଧୀଶ, ସଂଯୁକ୍ତ ଜିଲ୍ଲା ନ୍ୟାୟାଧୀଶ, ସହାୟକ ଜିଲ୍ଲା ନ୍ୟାୟାଧୀଶ, ଲଘୁବାଦ ନ୍ୟାୟାଳୟର ମୁଖ୍ୟ ପ୍ରେସିଡେନ୍ସି ମାଜିଷ୍ଟ୍ରେଟ, ସେସନ ନ୍ୟାୟାଧୀଶ, ଅତିରିକ୍ତ ସେସନ ନ୍ୟାୟାଧୀଶ ଏବଂ ସହାୟକ ସେସନ ନ୍ୟାୟାଧୀଶ ଅନ୍ତର୍ଗତ ଅଟନ୍ତି ।

(ଖ) "ନ୍ୟାୟିକ ସେବା" ପଦ ବୋଲନ୍ତେ ଜିଲ୍ଲା ନ୍ୟାୟାଧୀଶ ପଦ ଓ ଜିଲ୍ଲା ନ୍ୟାୟାଧୀଶ ଠାରୁ ନ୍ୟୂନ ଅନ୍ୟ ସିଭିଲ ନ୍ୟାୟିକ ପଦମାନଙ୍କର ପୂରଣ ନିମିତ୍ତ ଉଦ୍ଦିଷ୍ଟ ବ୍ୟକ୍ତିମାନଙ୍କୁ ହିଁ ନେଇ ଗଠିତ ସେବାକୁ ବୁଝାଏ ।

**କୌଣସି ଶ୍ରେଣୀର ବା ଶ୍ରେଣୀମାନଙ୍କର ମାଜିଷ୍ଟ୍ରେଟ୍‌ମାନଙ୍କ ପ୍ରତି ଏହି ଅଧ୍ୟାୟର ଉପବନ୍ଧମାନଙ୍କର ପ୍ରୟୋଗ ।**

୨୩୭ । ରାଜ୍ୟପାଳ ଲୋକ ଅଧିସୂଚନା ଦ୍ୱାରା ନିଦେଶ ଦେଇ ପାରିବେ ଯେ ଏହି ଅଧ୍ୟାୟର ପୂର୍ବଗାମୀ ଉପବନ୍ଧମାନ ଏବଂ ତଦଧୀନ ପ୍ରଣୀତ ନିୟାମାବଳୀ ସେହି ରାଜ୍ୟର ନ୍ୟାୟିକ ସେବାରେ ନିଯୁକ୍ତ ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ଯେପରି ଲାଗୁ ହୁଏ ରାଜ୍ୟର କୌଣସି ଏକ ବା ଅଧିକ ଶ୍ରେଣୀର ମାଜିଷ୍ଟ୍ରେଟ୍‌ମାନଙ୍କ ସମ୍ବନ୍ଧରେ ସେହି ଅଧିସୂଚନାରେ ବିନିର୍ଦ୍ଦିଷ୍ଟ ହେବା ବ୍ୟତିରେକୀ ଓ ରୂପଭେଦର ବଶବର୍ତ୍ତୀ ରହି ରାଜ୍ୟପାଳ ସେଥି ନିମିତ୍ତ ଯେଉଁ ତାରିଖ ନିୟତ କରିବେ ସେହି ତାରିଖ ଠାରୁ ସେପରି ଲାଗୁ ହେବ ।

# ଭାଗ ୭

୨୩୮ । ପ୍ରଥମ ଅନୁସୂଚୀ ର ଭାଗ (ଖ) ର ରାଜ୍ୟ ସଂବିଧାନ (ସପ୍ତମ ସଂଶୋଧନ) ଅଧିନିୟମ, ୧୯୫୬ର ଧାରା ୨୯ ଓ ଅନୁସୂଚୀ ଦ୍ୱାରା ନିରସିତ

# ଭାଗ ୮

## ସଂଘ ରାଜ୍ୟକ୍ଷେତ୍ର

ସଂଘ ରାଜ୍ୟକ୍ଷେତ୍ରମାନଙ୍କର ପ୍ରଶାସନ ।

୨୩୯ । (୧) ସଂସଦ କର୍ତ୍ତୃକ ବିଧି ଦ୍ୱାରା ଅନ୍ୟଥା ଉପବନ୍ଧ କରାଯାଇଥିବା ବ୍ୟତିରେକେ ପ୍ରତ୍ୟେକ ସଂଘ ରାଜ୍ୟକ୍ଷେତ୍ର ରାଷ୍ଟ୍ରପତି ଯେଉଁ ପର୍ଯ୍ୟନ୍ତ ଉଚିତ ବିବେଚନା କରିବେ ସେହି ପର୍ଯ୍ୟନ୍ତ ଜଣେ ପ୍ରଶାସକଙ୍କ ଜରିଆରେ ରାଷ୍ଟ୍ରପତିଙ୍କ ଦ୍ୱାରା ପ୍ରଶାସିତ ହେବ ଏବଂ ସେହି ପ୍ରଶାସକ ରାଷ୍ଟ୍ରପତିଙ୍କ ଦ୍ୱାରା ତଥା ତାଙ୍କ ଦ୍ୱାରା ବିନିର୍ଦ୍ଦିଷ୍ଟ ପଦାଭିଧାନରେ ନିଯୁକ୍ତ ହେବେ ।

(୨) ଭାଗ ୬ରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ ରାଷ୍ଟ୍ରପତି କୌଣସି ରାଜ୍ୟର ରାଜ୍ୟପାଳଙ୍କୁ କୌଣସି ସଂଲଗ୍ନ ସଂଘ ରାଜ୍ୟକ୍ଷେତ୍ରର ପ୍ରଶାସକ ରୂପେ ନିଯୁକ୍ତ କରି ପାରିବେ ଏବଂ ଯେଉଁଠାରେ ରାଜ୍ୟପାଳ ଏପରି ଭାବରେ ନିଯୁକ୍ତ ହୋଇଥିବେ ସେଠାରେ ସେ ମନ୍ତ୍ରୀ ପରିଷଦଠାରୁ ସ୍ୱାଧୀନ ଭାବରେ ନିଜର କୃତ୍ୟମାନ ସଂପାଦନ କରିବେ ।

କେତେକ ସଂଘ ରାଜ୍ୟ-କ୍ଷେତ୍ର ପାଇଁ ସ୍ଥାନୀୟ ବିଧାନମଣ୍ଡଳ ବା ମନ୍ତ୍ରୀ ପରିଷଦ ବା ଉଭୟର ସୃଷ୍ଟି ।

୨୩୯କ । ସଂସଦ ବିଧି ଦ୍ୱାରା ହିମାଚଳ ପ୍ରଦେଶ, ଗୋଆ, ଦାମନ ଓ ଦିଉ, ପଣ୍ଡିଚେରୀ ଏବଂ ମିଜୋରାମ ଓ ଅରୁଣାଚଳ ପ୍ରଦେଶ ସଂଘ ରାଜ୍ୟକ୍ଷେତ୍ରମାନଙ୍କ ମଧ୍ୟରୁ କୌଣସିଟି ନିମିତ୍ତ—

(କ) ସଂଘ ରାଜ୍ୟକ୍ଷେତ୍ରର ବିଧାନ ମଣ୍ଡଳ ରୂପେ କାର୍ଯ୍ୟ କରିବା ପାଇଁ ହୁଏତ ନିର୍ବାଚିତ ଅଥବା ଭାଗତଃ ମନୋନୀତ ଏବଂ ଭାଗତଃ ନିର୍ବାଚିତ ଏକ ନିକାୟର, ଅଥବା

(ଖ) ଏକ ମନ୍ତ୍ରୀ ପରିଷଦର,

ଅଥବା ଉଭୟର ପ୍ରତ୍ୟେକଟି ପାଇଁ ବିଧି ଦ୍ୱାରା ଯେପରି ବିନିର୍ଦ୍ଦିଷ୍ଟ ହୋଇଥାଏ ସେପରି ଗଠନ, କ୍ଷମତା ଓ କୃତ୍ୟ ସହିତ ସୃଷ୍ଟି କରି ପାରିବ ।

(୨) ଖଣ୍ଡ (୧) ରେ ନିର୍ଦ୍ଦିଷ୍ଟ ହୋଇଥିବା କୌଣସି ବିଧିରେ ଏହି ସଂବିଧାନକୁ ସଂଶୋଧିତ କରୁଥିବା ବା କରିବାର ପ୍ରଭାବ ଥିବା ଯେ କୌଣସି ଉପବନ୍ଧ ଥିବା ସତ୍ତ୍ୱେ ତାହା ଅନୁଚ୍ଛେଦ ୩୬୮ ର ପ୍ରୟୋଜନ ନିମିତ୍ତ ଏହି ସଂବିଧାନର ସଂଶୋଧନ ରୂପେ ବିବେଚିତ ହେବ ନାହିଁ ।

ବିଧାନମଣ୍ଡଳର ବିରତି ସମୟରେ ଅର୍ଡିନାନ୍ସ ପ୍ରଖ୍ୟାପିତ କରିବା ପାଇଁ ପ୍ରଶାସକଙ୍କ କ୍ଷମତା ।

୨୩୯ଖ । (୧) ଯେଉଁ ସମୟରେ ଅନୁଚ୍ଛେଦ ୨୩୯ କ ର ଖଣ୍ଡ (୧)ରେ ନିର୍ଦ୍ଦିଷ୍ଟ କୌଣସି ସଂଘ ରାଜ୍ୟ-କ୍ଷେତ୍ରର ବିଧାନମଣ୍ଡଳ ସତ୍ରାବସ୍ଥାରେ ରହିଥିବ ସେହି ସମୟ ବ୍ୟତିରେକେ ଯଦି କୌଣସି ସମୟରେ ତାହାର ପ୍ରଶାସକଙ୍କର ହୃଦ୍‌ବୋଧ ହୁଏ ଯେ ଏପରି ପରିସ୍ଥିତି ବିଦ୍ୟମାନ ଯହିଁରେ କି ସେ ତୁରନ୍ତ କାର୍ଯ୍ୟ କରିବା ଆବଶ୍ୟକ ଅଟେ ତେବେ ସେ ପରିସ୍ଥିତିର ଆବଶ୍ୟକତା ଅନୁସାରେ ଅର୍ଡିନାନ୍ସ ପ୍ରଖ୍ୟାପିତ କରିପାରିବେ:

ପରନ୍ତୁ ସେଥି ସକାଶେ ରାଷ୍ଟ୍ରପତିଙ୍କଠାରୁ ଅନୁଦେଶ ପ୍ରାପ୍ତ ହୋଇଥିବା ସ୍ଥଳ ଭିନ୍ନ ଅନ୍ୟଥା ସେପରି କୌଣସି ଅର୍ଡିନାନ୍ସ ପ୍ରଶାସକଙ୍କ ଦ୍ୱାରା ପ୍ରଖ୍ୟାପିତ ହେବ ନାହିଁ :

ଅଧିକନ୍ତୁ ଯେଉଁଠାରେ ଉକ୍ତ ବିଧାନ ମଣ୍ଡଳର ବିଘଟନ ହୋଇଥାଏ ଅଥବା ଅନୁଚ୍ଛେଦ ୨୩୯ ର ଖଣ୍ଡ (୧)ରେ ନିର୍ଦ୍ଦିଷ୍ଟ ହୋଇଥିବା ମତେ ସେପରି କୌଣସି ବିଧି ଅନୁଯାୟୀ କରାଯାଇଥିବା କୌଣସି କାର୍ଯ୍ୟାନୁଷ୍ଠାନ ହେତୁ ଏହାର କାର୍ଯ୍ୟକାରିତା ନିଲମ୍ବିତ ହୋଇଥାଏ ସେପରି ସ୍ଥଳେ ସେପରି ବିଘଟନ ବା ନିଲମ୍ବନ କାଳ ମଧ୍ୟରେ ପ୍ରଶାସକ କୌଣସି ଅର୍ଡିନାନ୍ସ ପ୍ରଖ୍ୟାପିତ କରିବେ ନାହିଁ ।

(୨) ରାଷ୍ଟ୍ରପତିଙ୍କଠାରୁ ମିଳିଥିବା ଅନୁଦେଶ ଅନୁସାରେ ଏହି ଅନୁଚ୍ଛେଦ ଅନୁଯାୟୀ ପ୍ରଖ୍ୟାପିତ କୌଣସି ଅର୍ଡିନାନ୍ସ ସଂଘ ରାଜ୍ୟକ୍ଷେତ୍ରର ବିଧାନ ମଣ୍ଡଳର ଏପରି ଏକ ଅଧିନିୟମ ରୂପେ ବିବେଚିତ ହେବ, ଯାହାକି ଅନୁଚ୍ଛେଦ ୨୩୯କ ର ଖଣ୍ଡ (୧) ରେ ନିର୍ଦ୍ଦେଶିତ ସେପରି କୌଣସି ବିଧିରେ ସେଥି ନିମିତ୍ତ ଥିବା ଉପବନ୍ଧମାନ ପାଳନ କରାଯାଇ ଯଥାବିଧି ଅଧିନିୟମିତ ହୋଇଅଛି, କିନ୍ତୁ ସେପରି ପ୍ରତ୍ୟେକ ଅର୍ଡିନାନ୍ସ—

(କ) ସଂଘର ରାଜ୍ୟକ୍ଷେତ୍ରର ବିଧାନମଣ୍ଡଳରେ ଉପସ୍ଥାପିତ କରାଯିବ ଓ ବିଧାନମଣ୍ଡଳର ପୁନଃ ସମ୍ମେଳନ ଠାରୁ ଛଅ ସପ୍ତାହର ଅବସାନ ହେଲେ ଅଥବା ଯଦି ସେହି କାଳର ଅବସାନ ପୂର୍ବରୁ ଏହାକୁ ଅନୁମୋଦନ କରି ବିଧାନମଣ୍ଡଳ ଦ୍ୱାରା କୌଣସି ସଂକଳ୍ପ ପାରିତ ହୁଏ ତେବେ ସେପରି ସଂକଳ୍ପ ପାରିତ ହେଲେ ଆଉ କାର୍ଯ୍ୟକାରୀ ହେବ ନାହିଁ;

(ଖ) ରାଷ୍ଟ୍ରପତିଙ୍କଠାରୁ ସେଥି ନିମିତ୍ତ ଅନୁଦେଶ ପ୍ରାପ୍ତ ହେବା ପରେ ଯେ କୌଣସି ସମୟରେ ପ୍ରଶାସକଙ୍କ ଦ୍ୱାରା ପ୍ରତ୍ୟାହାର କରାଯାଇପାରିବ ।

(୩) ଯଦି ଏବଂ ଯେ ପର୍ଯ୍ୟନ୍ତ ଏହି ଅନୁଚ୍ଛେଦ ଅଧୀନରେ କୌଣସି ଅର୍ଡିନାନ୍ସ ଏପରି କୌଣସି ଉପବଂଧ କରେ ଯାହାକି ଅନୁଚ୍ଛେଦ ୨୩୯ କ ର ଖଣ୍ଡ (୧) ରେ ନିର୍ଦ୍ଦେଶିତ ହୋଇଥିବା ମତେ ସେପରି କୌଣସି ବିଧିରେ ସେହି ନିମିତ୍ତ ଥିବା କୌଣସି ଉପବଂଧ ପାଳନ କରାଯିବା ପରେ ସଂଘ ବା ରାଜ୍ୟକ୍ଷେତ୍ରର ବିଧାନ ମଣ୍ଡଳ ଦ୍ୱାରା କୌଣସି ଅଧିନିୟମରେ ଅଧିନିୟମିତ ହୋଇଥିଲେ ବିଧିମାନ୍ୟ ହୋଇ ନ ଥାନ୍ତା ତେବେ ତାହା ସେ ପର୍ଯ୍ୟନ୍ତ ଶୂନ୍ୟ ହେବ ।

କେତେକ ସଂଘ ରାଜ୍ୟକ୍ଷେତ୍ର ପାଇଁ ରାଷ୍ଟ୍ରପତିଙ୍କର ବିନିୟମ ପ୍ରଣୟନ କ୍ଷମତା ।

୨୪୦ । (୧) ରାଷ୍ଟ୍ରପତି ନିମ୍ନଲିଖିତ ସଂଘ ରାଜ୍ୟମାନଙ୍କର ଶାନ୍ତି, ପ୍ରଗତି ଓ ସୁଶାସନ ନିମିତ୍ତ ବିନିୟମ ପ୍ରଣୟନ କରି ପାରିବେ,—

(କ) ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଂଜ;

(ଖ) ଲକ୍ଷାଦ୍ୱୀପ;

(ଗ) ଦାଦରା ଓ ନଗର ହାଭେଲୀ;

(ଘ) ଗୋଆ, ଦାମନ ଓ ଦିଉ ;

(ଙ) ପଣ୍ଡିଚେରୀ;

(ଚ) ମିଜୋରାମ;

(ଛ) ଅରୁଣାଚଳ ପ୍ରଦେଶ:

ପରନ୍ତୁ ଯେବେ ଅନୁଚ୍ଛେଦ ୨୩୯ (କ) ଅଧୀନରେ ଗୋଆ, ଦାମନ ଓ ଦିଉ, ପଣ୍ଡିଚେରୀ, ମିଜୋରାମ ବା ଅରୁଣାଚଳ ପ୍ରଦେଶ ସଂଘ ରାଜ୍ୟକ୍ଷେତ୍ରର ବିଧାନ ମଣ୍ଡଳ ରୂପେ କାର୍ଯ୍ୟ କରିବା ନିମିତ୍ତ କୌଣସି ନିକାୟ ସୃଷ୍ଟି କରାଯାଏ ତେବେ ସେହି ବିଧାନ ମଣ୍ଡଳର ପ୍ରଥମ ବୈଠକ ପାଇଁ ନିୟତ କରାଯାଇଥିବା ତାରିଖଠାରୁ ରାଷ୍ଟ୍ରପତି ସେହି ରାଜ୍ୟକ୍ଷେତ୍ରର ଶାନ୍ତି, ପ୍ରଗତି ଓ ସୁଶାସନ ନିମିତ୍ତ କୌଣସି ବିନିୟମ ପ୍ରଣୟନ କରିବେ ନାହିଁ :

ପୁନଶ୍ଚ ଯେତେବେଳେ ଗୋଆ, ଦାମନ ଓ ଦିଉ, ପଣ୍ଡିଚେରୀ, ମିଜୋରାମ ଓ ଅରୁଣାଚଳ ସଂଘ ରାଜ୍ୟକ୍ଷେତ୍ର ପାଇଁ ଏକ ବିଧାନମଣ୍ଡଳ ଭାବେ କାର୍ଯ୍ୟ କରୁଥିବା ନିକାୟର ବିଘଟନ ହୁଏ ଅଥବା ଅନୁଚ୍ଛେଦ ୨୩୯ କ ର ଖଣ୍ଡ (୧) ରେ ନିର୍ଦ୍ଦିଷ୍ଟ କୌଣସି ବିଧି ଅନୁଯାୟୀ କରାଯାଇଥିବା କୌଣସି କାର୍ଯ୍ୟାନୁଷ୍ଠାନ ହେତୁ ସେପରି ବିଧାନମଣ୍ଡଳ ଭାବେ ସେପରି ନିକାୟର କାର୍ଯ୍ୟକାରିତା ନିଲମ୍ବିତ ହୋଇଥାଏ ସେପରି ସ୍ଥଳେ ରାଷ୍ଟ୍ରପତି ସେପରି ବିଘଟନ ଅଥବା ନିଲମ୍ବନ କାଳ ମଧ୍ୟରେ ସେହି ସଂଘ ରାଜ୍ୟକ୍ଷେତ୍ରର ଶାନ୍ତି, ପ୍ରଗତି ଓ ସୁଶାସନ ନିମିତ୍ତ ବିନିୟମ ପ୍ରଣୟନ କରିପାରିବେ ।

(୨) ଏ ରୂପେ ପ୍ରଣୀତ କୌଣସି ବିନିୟମ ସଂସଦ ଦ୍ୱାରା ପ୍ରଣୀତ ଯେ କୌଣସି ଅଧିନିୟମକୁ ବା ସଂଘ ରାଜ୍ୟକ୍ଷେତ୍ର ପ୍ରତି ଲାଗୁ ହେଉଥିବା ଅନ୍ୟ କୌଣସି ବିଧିକୁ ନିରସିତ ବା ସଂଶୋଧିତ କରିପାରିବ ଏବଂ ତାହା ରାଷ୍ଟ୍ରପତିଙ୍କ ଦ୍ୱାରା ପ୍ରଖ୍ୟାପିତ ହେଲେ ସେହି ରାଜ୍ୟକ୍ଷେତ୍ର ପ୍ରତି ଲାଗୁ ହେଉଥିବା ସଂସଦର ଅଧିନିୟମର ଯେଉଁ ବଳ ଓ ପ୍ରଭାବ ଥାଏ ତାହାର ସେହି ବଳ ଓ ପ୍ରଭାବ ରହିବ ।

ସଂଘ ରାଜ୍ୟକ୍ଷେତ୍ର-ମାନଙ୍କ ନିମିତ୍ତ ଉଚ୍ଚ ନ୍ୟାୟାଳୟ ।

୨୪୧ । (୧) ସଂସଦ ବିଧି ଦ୍ୱାରା କୌଣସି ସଂଘ ରାଜ୍ୟକ୍ଷେତ୍ର ନିମିତ୍ତ ଉଚ୍ଚ ନ୍ୟାୟାଳୟ ଗଠନ କରି ପାରିବ ଅଥବା ସେପରି କୌଣସି ରାଜ୍ୟକ୍ଷେତ୍ରରେ କୌଣସି ନ୍ୟାୟାଳୟକୁ ଏହି ସଂବିଧାନର ସମସ୍ତ ବା କୌଣସି ପ୍ରୟୋଜନ ନିମିତ୍ତ ଉଚ୍ଚ ନ୍ୟାୟାଳୟ ବୋଲି ଘୋଷଣା କରିପାରିବ ।

(୨) ଭାଗ ୬ର ଅଧ୍ୟାୟ ୫ର ଉପବଂଧମାନ ଏହି ସଂବିଧାନର ଅନୁଚ୍ଛେଦ ୨୧୪ ରେ ନିର୍ଦ୍ଦିଷ୍ଟ କୌଣସି ଉଚ୍ଚ ନ୍ୟାୟାଳୟ ସଂବଂଧରେ ଯେପରି ଲାଗୁ ହୁଏ ଖଣ୍ଡ (୧) ରେ ନିର୍ଦ୍ଦିଷ୍ଟ ପ୍ରତ୍ୟେକ ଉଚ୍ଚ ନ୍ୟାୟାଳୟ ସଂବଂଧରେ ମଧ୍ୟ ସଂସଦ ବିଧି ଦ୍ୱାରା ଯେଉଁ ରୂପ ଭେଦ ଓ ବ୍ୟତିରେକୀମାନ ଉପବଂଧିତ କରେ ତହିଁର ବଶବର୍ତ୍ତୀ ରହି ସେହିପରି ଲାଗୁ ହେବ ।

(୩) ଏହି ସଂବିଧାନର ଉପବନ୍ଧମାନଙ୍କର ତଥା ଏହି ସଂବିଧାନ ଦ୍ୱାରା ବା ଅଧୀନରେ ସମୁଚିତ ବିଧାନ ମଣ୍ଡଳକୁ ପ୍ରଦତ୍ତ କ୍ଷମତାର ଆଧାର ଉପରେ ସେହି ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ କୌଣସି ବିଧିର ଉପବନ୍ଧ-ମାନଙ୍କର ବଶବର୍ତ୍ତୀ ରହି, ସଂବିଧାନ (ସପ୍ତମ ସଂଶୋଧନ) ଅଧିନିୟମ, ୧୯୫୬ର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ କୌଣସି ସଂଘ ରାଜ୍ୟକ୍ଷେତ୍ର ସମ୍ବନ୍ଧରେ ଅଧିକାରିତା ପ୍ରୟୋଗ କରୁଥିବା ପ୍ରତ୍ୟେକ ଉଚ୍ଚ ନ୍ୟାୟାଳୟ ଦ୍ୱାରା ଏପରି ପ୍ରାରମ୍ଭ ପରେ ସେହି ରାଜ୍ୟକ୍ଷେତ୍ର ସମ୍ବନ୍ଧରେ ସେହିପରି ଅଧିକାରିତା ପ୍ରୟୋଗ କରାଯିବ ବା ଚାଲୁ ରହିବ ।

(୪) ଏହି ଅନୁଚ୍ଛେଦର କୌଣସି ବିଷୟ କୌଣସି ରାଜ୍ୟର ଉଚ୍ଚ ନ୍ୟାୟାଳୟର ଅଧିକାରିତାକୁ କୌଣସି ସଂଘ ରାଜ୍ୟକ୍ଷେତ୍ର ବା ତାହାର କୌଣସି ଭାଗ ଉପରେ ବିସ୍ତାର କରିବା ଅଥବା ତହିଁରୁ ଅପବର୍ଜିତ କରିବା ନିମିତ୍ତ ସଂସଦର ଥିବା କ୍ଷମତାର ଅନ୍ତୀକରଣ କରୁନାହିଁ ।

୨୪୨ । ସଂବିଧାନ (ସପ୍ତମ ସଂଶୋଧନ) ଅଧିନିୟମ, ୧୯୫୬ର ଧାରା ୨୯ ଏବଂ ଅନୁସୂଚୀ ଦ୍ୱାରା ନିରସିତ ।

# ଭାଗ ୯

୨୪୩ । ପ୍ରଥମ ଅନୁସୂଚୀର ଭାଗ (ଘ) ରେ ଥିବା ରାଜ୍ୟକ୍ଷେତ୍ର ତଥା ସେହି ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ନ ହୋଇଥିବା ରାଜ୍ୟକ୍ଷେତ୍ର ସଂବିଧାନ (ସପ୍ତମ ସଂଶୋଧନ) ଅଧିନିୟମ, ୧୯୫୬ ର ଧାରା ୨୯ ଓ ଅନୁସୂଚୀ ଦ୍ୱାରା ନିରସିତ ।

# ଭାଗ ୧୦

## ଅନୁସୂଚିତ ଏବଂ ଜନଜାତି କ୍ଷେତ୍ର

**ଅନୁସୂଚିତ କ୍ଷେତ୍ର ଏବଂ ଜନଜାତି କ୍ଷେତ୍ର-ମାନଙ୍କର ପ୍ରଶାସନ ।**

୨୪୪ । (୧) ଆସାମ ଓ ମେଘାଳୟ ରାଜ୍ୟ ଭିନ୍ନ ଅନ୍ୟ ଯେ କୌଣସି ରାଜ୍ୟରେ ଥିବା ଅନୁସୂଚିତ କ୍ଷେତ୍ର ଏବଂ ଅନୁସୂଚିତ ଜନଜାତିମାନଙ୍କର ପ୍ରଶାସନ ଓ ନିୟନ୍ତ୍ରଣ ନିମିତ୍ତ ପଞ୍ଚମ ଅନୁସୂଚୀର ଉପବନ୍ଧମାନ ଲାଗୁ ହେବ ।

(୨) ଆସାମ ଓ ମେଘାଳୟ ରାଜ୍ୟ ଓ ମିଜୋରାମ ସଂଘ ରାଜ୍ୟକ୍ଷେତ୍ରରେ ଥିବା ଜନଜାତି କ୍ଷେତ୍ରର ପ୍ରଶାସନ ନିମିତ୍ତ ଷଷ୍ଠ ଅନୁସୂଚୀର ଉପବନ୍ଧମାନ ଲାଗୁ ହେବ ।

**ଆସାମର କେତେକ ଜନଜାତି କ୍ଷେତ୍ରକୁ ନେଇ ଗୋଟିଏ ସ୍ୱାୟତ୍ତଶାସୀ ରାଜ୍ୟର ଗଠନ ଓ ସେଥିନିମିତ୍ତ ଉଭୟ ସ୍ଥାନୀୟ ବିଧାନମଣ୍ଡଳ ବା ମନ୍ତ୍ରୀ ପରିଷଦର ସୃଷ୍ଟି ।**

୨୪୪ କ । (୧) ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ, ସଂସଦ ବିଧି ଦ୍ୱାରା ଆସାମ ରାଜ୍ୟ ମଧ୍ୟରେ ଷଷ୍ଠ ଅନୁସୂଚୀର ପାରା ୨୦ ରେ ସଂଲଗ୍ନ ସାରଣୀର ଭାଗ (୧) ରେ ଉଲ୍ଲିଖିତ ସମସ୍ତ ବା କୌଣସି ଜନଜାତି କ୍ଷେତ୍ରକୁ (ହୁଏତ ସଂପୂର୍ଣ୍ଣ ଭାବେ ବା ଆଂଶିକ ଭାବେ) ସମାବିଷ୍ଟ କରି ଗୋଟିଏ ସ୍ୱାୟତ୍ତଶାସୀ ରାଜ୍ୟ ଗଠନ କରିପାରିବ ଏବଂ ସେଥି ନିମିତ୍ତ—

(କ) ସ୍ୱାୟତ୍ତଶାସୀ ରାଜ୍ୟର ବିଧାନମଣ୍ଡଳ ରୂପେ କାର୍ଯ୍ୟ କରିବା ପାଇଁ ହୁଏତ ନିର୍ବାଚିତ, କିମ୍ବା ଆଂଶିକଭାବେ ନାମ ନିର୍ଦ୍ଦେଶିତ ଏବଂ ଆଂଶିକଭାବେ ନିର୍ବାଚିତ ଏକ ନିକାୟ, ଅଥବା

(ଖ) ଏକ ମନ୍ତ୍ରୀ ପରିଷଦ,

ଅଥବା ଉଭୟ ସୃଷ୍ଟି କରିପାରିବ ଏବଂ ବିଧି ଦ୍ୱାରା ଯେପରି ବିନିର୍ଦ୍ଦିଷ୍ଟ ହେବ ପ୍ରତ୍ୟେକର ସେପରି ଗଠନ, କ୍ଷମତା ଓ କୃତ୍ୟ ନିମିତ୍ତ ବ୍ୟବସ୍ଥା ରହିବ ।

(୨) ଖଣ୍ଡ (୧) ରେ ନିର୍ଦ୍ଦେଶିତ ହୋଇଥିବା ମତେ ସେପରି କୌଣସି ବିଧି, ବିଶେଷତଃ—

(କ) ସ୍ୱାୟତ୍ତଶାସୀ ରାଜ୍ୟର ବିଧାନମଣ୍ଡଳର ସେହି ରାଜ୍ୟର ସମସ୍ତ ବା କୌଣସି ଭାଗ ନିମିତ୍ତ ରାଜ୍ୟ ସୂଚୀରେ ଓ ସମବର୍ତ୍ତୀ ସୂଚୀରେ ନିର୍ଦ୍ଦେଶିତ ଯେଉଁ ବିଷୟମାନଙ୍କ ସଂବଧରେ ହୁଏତ ଆସାମ ରାଜ୍ୟର ବିଧାନମଣ୍ଡଳକୁ ଅପବର୍ଜିତ କରି ବା ଅନ୍ୟଥା ବିଧି ପ୍ରଣୟନ କରିବାର କ୍ଷମତା ରହିବ ତାହା ବିନିର୍ଦ୍ଦିଷ୍ଟ କରିପାରିବ ;

(ଖ) କେଉଁ ସବୁ ବିଷୟ ପ୍ରତି ସ୍ୱାୟତ୍ତଶାସୀ ରାଜ୍ୟର କାର୍ଯ୍ୟ ପାଳିକା କ୍ଷମତାର ବିସ୍ତାର ରହିବ ତାହା ନିର୍ଦ୍ଦିଷ୍ଟ କରି ପାରିବ ;

(ଗ) ଆସାମ ରାଜ୍ୟଦ୍ୱାରା ଯେଉଁ କର ବସାଯାଇଥିବ ତାହାର ଆଗମ ଯେଉଁ ପର୍ଯ୍ୟନ୍ତ ସ୍ୱାୟତ୍ତଶାସୀ ରାଜ୍ୟ ପ୍ରତି ଆରୋପଣୀୟ ହୁଏ ସେହି ପର୍ଯ୍ୟନ୍ତ ସେହି ସ୍ୱାୟତ୍ତଶାସୀ ରାଜ୍ୟ ପ୍ରତି ସମର୍ପିତ ହେବାପାଇଁ ଉପବନ୍ଧିତ କରି ପାରିବ ;

(ଘ) ଏହି ସଂବିଧାନର କୌଣସି ଅନୁଚ୍ଛେଦରେ ଏକ ରାଜ୍ୟ ପ୍ରତି ଥିବା କୌଣସି ନିର୍ଦ୍ଦେଶ କହିଲେ ତହିଁରେ ସ୍ୱାୟତ୍ତଶାସୀ ରାଜ୍ୟ ପ୍ରତି କୌଣସି ଏକ ନିର୍ଦ୍ଦେଶ ମଧ୍ୟ ଅନ୍ତର୍ଭୁକ୍ତ ହେବ ବୋଲି ଅର୍ଥ କରାଯିବ ବୋଲି ଉପବନ୍ଧିତ କରିପାରିବ ;

(ଙ) ଆବଶ୍ୟକ ବୋଧ ହେବା ମତେ ସେପରି ପରିପୂରକ, ଆନୁଷଙ୍ଗିକ ଓ ପାରିଣାମିକ ଉପବଂଧମାନ କରିପାରିବ ।

(୩) ଉପରୋକ୍ତ ପ୍ରକାରେ ସେପରି କୌଣସି ବିଧିର କୌଣସି ସଂଶୋଧନ ଯେତେଦୂର ପର୍ଯ୍ୟନ୍ତ ଖଣ୍ଡ (୨) ର ଉପଖଣ୍ଡ (କ) ବା ଉପଖଣ୍ଡ (ଖ) ରେ ବିନିର୍ଦ୍ଦିଷ୍ଟ କୌଣସି ଘଟଣା ସଂପର୍କରେ ହୋଇଥିବ ସେତେଦୂର ପର୍ଯ୍ୟନ୍ତ ସେହି ସଂଶୋଧନ ପ୍ରଭାବୀ ହେବ ନାହିଁ ଯେପର୍ଯ୍ୟନ୍ତ କି ସଂସଦର ଉଭୟ ଗୃହରେ ଉପସ୍ଥିତ ଥିବା ଓ ଭୋଟ ଦେଉଥିବା ସଦସ୍ୟମାନଙ୍କର ଅନ୍ୟୂନ ଦୁଇ ତୃତୀୟାଂଶଙ୍କ ଦ୍ୱାରା ତାହା ପାରିତ ନ ହୋଇଛି ।

(୪) ଏହି ଅନୁଚ୍ଛେଦରେ ନିର୍ଦ୍ଦିଷ୍ଟ ହୋଇଥିବା ସେପରି କୌଣସି ବିଧିରେ ଏହି ସଂବିଧାନକୁ ସଂଶୋଧିତ କରୁଥିବା ବା ସଂଶୋଧନର ପ୍ରଭାବ ଥିବା ଭଳି କୌଣସି ଉପବଂଧ ଥିବା ସତ୍ତ୍ୱେ ତାହା ଅନୁଚ୍ଛେଦ ୩୬୮ର ପ୍ରୟୋଜନ ନିମିତ୍ତ ଏହି ସଂବିଧାନର ସଂଶୋଧନ ରୂପେ ବିବେଚିତ ହେବ ନାହିଁ ।

# ଭାଗ ୧୧

## ସଂଘ ଏବଂ ରାଜ୍ୟମାନଙ୍କ ମଧ୍ୟରେ ସମ୍ବନ୍ଧ

### ଅଧ୍ୟାୟ ୧—ବିଧାୟୀ ସମ୍ବନ୍ଧ

### ବିଧାୟିନୀ କ୍ଷମତାସମୂହର ବିତରଣ

ସଂସଦ ଦ୍ୱାରା ଓ ରାଜ୍ୟମାନଙ୍କର ବିଧାନ ମଣ୍ଡଳମାନଙ୍କ ଦ୍ୱାରା ପ୍ରଣୀତ ବିଧିମାନଙ୍କର ବିସ୍ତାର ।

୨୪୫ । (୧) ଏହି ସଂବିଧାନର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, ସଂସଦ ଭାରତର ସମଗ୍ର ରାଜ୍ୟକ୍ଷେତ୍ର ବା କୌଣସି ଭାଗ ନିମିତ୍ତ ବିଧି ପ୍ରଣୟନ କରି ପାରିବ ଏବଂ ରାଜ୍ୟର ବିଧାନମଣ୍ଡଳ ସମଗ୍ର ରାଜ୍ୟ ବା ତାହାର କୌଣସି ଭାଗ ନିମିତ୍ତ ବିଧି ପ୍ରଣୟନ କରିପାରିବ ।

(୨) ସଂସଦ ଦ୍ୱାରା ପ୍ରଣୀତ କୌଣସି ବିଧି ତାହାର ରାଜ୍ୟକ୍ଷେତ୍ରାତୀତ ପ୍ରବର୍ତ୍ତନ ରହୁଥିବା ଆଧାରଉପରେ ଅବିଧିମାନ୍ୟ ବିବେଚିତ ହେବ ନାହିଁ ।

ସଂସଦ ଦ୍ୱାରା ଓ ରାଜ୍ୟମାନଙ୍କର ବିଧାନମଣ୍ଡଳମାନଙ୍କ ଦ୍ୱାରା ପ୍ରଣୀତ ବିଧିମାନଙ୍କର ବିଷୟବସ୍ତୁ ।

୨୪୬ । (୧) ଖଣ୍ଡ (୨) ଓ (୩) ରେ ଯାହା କିଛି ଥିବା ସତ୍ତ୍ୱେ, ସପ୍ତମ ଅନୁସୂଚୀରେ ପ୍ରଥମ ସୂଚୀରେ ପ୍ରଗଣିତ (ଏହି ସଂବିଧାନରେ "ସଂଘସୂଚୀ" ନାମରେ ନିର୍ଦ୍ଦେଶିତ) ଯେ କୌଣସି ବିଷୟ ସଂପର୍କରେ ବିଧି ପ୍ରଣୟନ କରିବା ପାଇଁ ସଂସଦର ଅନନ୍ୟ କ୍ଷମତା ରହିଅଛି ।

(୨) ଖଣ୍ଡ (୩) ରେ ଯାହା କିଛି ଥିବା ସତ୍ତ୍ୱେ , ସପ୍ତମ ଅନୁସୂଚୀର ତୃତୀୟ ସୂଚୀରେ ପ୍ରଗଣିତ (ଏହି ସଂବିଧାନରେ "ସମବର୍ତ୍ତୀ ସୂଚୀ" ନାମରେ ନିର୍ଦ୍ଦେଶିତ) ଯେ କୌଣସି ବିଷୟ ସଂପର୍କରେ ବିଧି ପ୍ରଣୟନ କରିବା ପାଇଁ ସଂସଦର ଏବଂ ଖଣ୍ଡ (୧) ର ବଶବର୍ତ୍ତୀ ରହି, ଯେ କୌଣସି ରାଜ୍ୟର ବିଧାନମଣ୍ଡଳର ମଧ୍ୟ କ୍ଷମତା ରହିଅଛି ।

(୩) ସପ୍ତମ ଅନୁସୂଚୀର ଦ୍ୱିତୀୟ ସୂଚୀରେ ପ୍ରଗଣିତ (ଏହି ସଂବିଧାନରେ "ରାଜ୍ୟ ସୂଚୀ" ନାମରେ ନିର୍ଦ୍ଦେଶିତ) ଯେ କୌଣସି ବିଷୟ ସଂପର୍କରେ ଖଣ୍ଡ (୧) ଓ (୨)ର ବଶବର୍ତ୍ତୀ ରହି, କୌଣସି ରାଜ୍ୟର ବିଧାନ ମଣ୍ଡଳର ସେହି ରାଜ୍ୟ ବା ତାହାର କୌଣସି ଭାଗ ନିମିତ୍ତ ବିଧି ପ୍ରଣୟନ କରିବାପାଇଁ ଅନନ୍ୟ କ୍ଷମତା ରହିଅଛି ।

(୪) କୌଣସି ବିଷୟ ରାଜ୍ୟସୂଚୀରେ ପ୍ରଗଣିତ ହୋଇଥିବା ସତ୍ତ୍ୱେ ସେ ବିଷୟ ସଂପର୍କରେ କୌଣସି ରାଜ୍ୟର ଅନ୍ତର୍ଗତ ହୋଇ ନ ଥିବା ଭାରତ ରାଜ୍ୟ କ୍ଷେତ୍ରର କୌଣସି ଭାଗ ନିମିତ୍ତ ବିଧିପ୍ରଣୟନ କରିବାପାଇଁ ସଂସଦର କ୍ଷମତା ରହିଅଛି ।

କେତେକ ଅତିରିକ୍ତ ନ୍ୟାୟାଳୟ ସ୍ଥାପନ ନିମିତ୍ତ ଉପବନ୍ଧ କରିବା ପାଇଁ ସଂସଦର କ୍ଷମତା ।

୨୪୭ । ଏହି ଅଧ୍ୟାୟରେ ଯାହା କିଛି ଥିବା ସତ୍ତ୍ୱେ, ସଂଘ ସୂଚୀରେ ପ୍ରଗଣିତ ବିଷୟ ସଂପର୍କରେ ସଂସଦ ପ୍ରଣୀତ ବିଧି ଅଥବା କୌଣସି ବିଦ୍ୟମାନ ବିଧିର ଉନ୍ନତତର ପ୍ରଶାସନ ନିମିତ୍ତ ସଂସଦ କୌଣସି ଅତିରିକ୍ତ ନ୍ୟାୟାଳୟ ସ୍ଥାପନ ନିମିତ୍ତ ବିଧି ଦ୍ୱାରା ଉପବନ୍ଧ କରିପାରିବ ।

ଅବଶିଷ୍ଟ ବିଧାନ କ୍ଷମତା ।

୨୪୮ । (୧) ସମବର୍ତ୍ତୀ ସୂଚୀ ବା ରାଜ୍ୟସୂଚୀରେ ପ୍ରଗଣିତ ହୋଇ ନ ଥିବା ଯେ କୌଣସି ବିଷୟ ସଂପର୍କରେ କୌଣସି ବିଧି ପ୍ରଣୟନ କରିବା ପାଇଁ ସଂସଦର ଅନନ୍ୟ କ୍ଷମତା ରହିଅଛି ।

(୨) ସେହି ସୂଚୀମାନଙ୍କ ମଧ୍ୟରୁ କୌଣସିଟିରେ ଉଲ୍ଲିଖିତ ନ ଥିବା କରର ଆରୋପଣ ନିମିତ୍ତ କୌଣସି ବିଧି ପ୍ରଣୟନ କରିବାର କ୍ଷମତା ସେହି କ୍ଷମତାର ଅନ୍ତର୍ଭୁକ୍ତ ହେବ ।

ରାଷ୍ଟ୍ରୀୟହିତ ନିମିତ୍ତ ରାଜ୍ୟ-ସୂଚୀର ବିଷୟ ସଂପର୍କରେ ବିଧି ପ୍ରଣୟନ କରିବାପାଇଁ ସଂସଦର କ୍ଷମତା ।

୨୪୯ । (୧) ଏହି ଅଧ୍ୟାୟର ପୂର୍ବବର୍ତ୍ତୀ ଉପବନ୍ଧମାନଙ୍କରେ ଯାହା କିଛି ଥିବା ସତ୍ତ୍ୱେ, ଯଦି ରାଜ୍ୟ-ସଭା ଉପସ୍ଥିତ ଥିବା ଏବଂ ଭୋଟ ଦେଇଥିବା ସଦସ୍ୟମାନଙ୍କ ଅନ୍ୟୂନ ଦ୍ୱିତୃତୀୟାଂଶ ସଂଖ୍ୟାଦ୍ୱାରା ସମର୍ଥିତ ସଂକଳ୍ପ ଦ୍ୱାରା ଘୋଷଣା କରିଥାଏ ଯେ ସଂସଦ ରାଷ୍ଟ୍ରୀୟ ହିତ ଦୃଷ୍ଟିରୁ ରାଜ୍ୟ ସୂଚୀରେ ପ୍ରଗଣିତ ତଥା ଏହି ସଂକଳ୍ପରେ ଉଲ୍ଲିଖିତ କୌଣସି ବିଷୟ ସଂପର୍କରେ ବିଧି ପ୍ରଣୟନ କରିବା ଆବଶ୍ୟକ ଏବଂ ସମୀଚୀନ ତେବେ ସେ ସଂକଳ୍ପ ପ୍ରବୃତ୍ତ ରହିଥିବା ପର୍ଯ୍ୟନ୍ତ ସେହି ବିଷୟ ସଂପର୍କରେ ଭାରତର ସମଗ୍ର ରାଜ୍ୟକ୍ଷେତ୍ର ବା କୌଣସି ଭାଗ ନିମିତ୍ତ ସଂସଦ ବିଧି ପ୍ରଣୟନ କରିବା ବିଧି ସଂଗତ ହେବ ।

(୨) ଖଣ୍ଡ (୧) ଅଧୀନରେ ପାରିତ ସଂକଳ୍ପ ଏକ ବର୍ଷରୁ ଅନଧିକ ଯେଉଁ କାଳାବଧି ସେହି ସଂକଳ୍ପରେ ବିନିର୍ଦ୍ଦିଷ୍ଟ ହୋଇଥିବ ସେହି କାଳାବଧି ପର୍ଯ୍ୟନ୍ତ ପ୍ରବୃତ୍ତ ରହିବ :

ପରନ୍ତୁ ଯଦି ଏବଂ ଯେତେଥର ସେହି ସଙ୍କଳ୍ପର ପ୍ରବର୍ତ୍ତନ ଚାଲୁ ରଖାଯିବା ପାଇଁ ଅନୁମୋଦନ କରାଯାଇ ଖଣ୍ଡ (୧)ରେ ଉପବନ୍ଧିତ ରୀତିରେ ସଙ୍କଳ୍ପ ପାରିତ ହୁଏ ତେବେ ସେହି ସଙ୍କଳ୍ପ ଅନ୍ୟଥା ଏହି ଖଣ୍ଡ ଅଧୀନରେ ଯେଉଁ ତାରିଖଠାରୁ ପ୍ରବୃତ୍ତ ନ ରହିଥାନ୍ତା ସେହି ତାରିଖଠାରୁ ଆହୁରି ଏକବର୍ଷ କାଳ ପର୍ଯ୍ୟନ୍ତ ଏହାର ପ୍ରବର୍ତ୍ତନ ଚାଲୁ ରହିବ ।

(୩) ଖଣ୍ଡ (୧) ଅଧୀନରେ ସଙ୍କଳ୍ପ ପାରିତ ହୋଇ ନ ଥିଲେ ସଂସଦ ଯେଉଁ ବିଧି ପ୍ରଣୟନ କରିବାକୁ ସକ୍ଷମ ହୋଇ ନ ଥାନ୍ତା ସେପରି ବିଧିରେ ଯେତେଦୂର ପର୍ଯ୍ୟନ୍ତ ଅକ୍ଷମତା ଥିବ ସେ ପର୍ଯ୍ୟନ୍ତ ସେହି ବିଧି ସଙ୍କଳ୍ପ ପ୍ରବର୍ତ୍ତନରହିତ ହେବାର ଛଅମାସ କାଳାବିଧିର ଅବସାନପରେ ପ୍ରଭାବରହିତ ହେବ, ମାତ୍ର ଉକ୍ତ କାଳାବଧିର ଅବସାନ ପୂର୍ବରୁ କରାଯାଇଥିବା ବା କରା ନ ଯାଇଥିବା ବିଷୟ ତହିଁରୁ ବାଦ ଦିଆଯିବ ।

ଜରୁରୀକାଳୀନ ଉଦ୍‌ଘୋଷଣା ପ୍ରବର୍ତ୍ତନ ଥିବା ବେଳେ ରାଜ୍ୟ-ସୂଚୀର ବିଷୟ ସଂପର୍କରେ ବିଧି ପ୍ରଣୟନ କରିବା ନିମିତ୍ତ ସଂସଦର କ୍ଷମତା ।

୨୫୦ । (୧) ଏହି ଅଧ୍ୟାୟରେ ଯାହା କିଛି ଥିବା ସତ୍ତ୍ୱେ, ଜରୁରୀ କାଳୀନ ଉଦ୍‌ଘୋଷଣା ପ୍ରବର୍ତ୍ତିତ ଥିବା ସମୟରେ ରାଜ୍ୟ ସୂଚୀରେ ପ୍ରଗଣିତ ବିଷୟ ସଂପର୍କରେ ଭାରତର ସମଗ୍ର ରାଜ୍ୟକ୍ଷେତ୍ର ବା କୌଣସି ଭାଗ ନିମିତ୍ତ ବିଧି ପ୍ରଣୟନ କରିବା ପାଇଁ ସଂସଦର କ୍ଷମତା ରହିବ ।

(୨) ଜରୁରୀ କାଳୀନ ଉଦ୍‌ଘୋଷଣା କରାଯାଇ ନ ଥିଲେ ସଂସଦ ଯେଉଁ ବିଧି ପ୍ରଣୟନ କରିବା ପାଇଁ ସକ୍ଷମ ହୋଇ ନ ଥାନ୍ତା ସଂସଦ ଦ୍ୱାରା ପ୍ରଣୀତ ସେପରି କୌଣସି ବିଧିରେ ଯେତେଦୂର ପର୍ଯ୍ୟନ୍ତ ଅକ୍ଷମତା ଥିବ ସେହି ପର୍ଯ୍ୟନ୍ତ ସେହି ବିଧି ଉଦ୍‌ଘୋଷଣା ପ୍ରବର୍ତ୍ତନ ରହିତ ହେବାର ଛଅ ମାସ କାଳାବଧିର ଅବସାନ ପରେ ପ୍ରଭାବରହିତ ହେବ, ମାତ୍ର ଉକ୍ତ କାଳାବଧିର ଅବସାନ ପୂର୍ବରୁ କରାଯାଇଥିବା ବା ନ କରାଯାଇଥିବା ବିଷୟ ତହିଁରୁ ଛାଡ଼ି ଦିଆଯିବ ।

ଅନୁଚ୍ଛେଦ ୨୪୯ ଓ ୨୫୦ ଅଧୀନରେ ସଂସଦ ଦ୍ୱାରା ପ୍ରଣୀତ ବିଧି ଏବଂ ରାଜ୍ୟ ବିଧାନ ମଣ୍ଡଳ ମାନଙ୍କ-ଦ୍ୱାରା ପ୍ରଣୀତ ବିଧି ମଧ୍ୟରେ ଅସଙ୍ଗତି ।

୨୫୧ । ଏହି ସଂବିଧାନ ଅଧୀନରେ ବିଧି ପ୍ରଣୟନ କରିବା ପାଇଁ ରାଜ୍ୟର ବିଧାନ ମଣ୍ଡଳର ଯେଉଁ କ୍ଷମତା ଅଛି ସେହି କ୍ଷମତା ଅନୁଚ୍ଛେଦ ୨୪୯ ଓ ୨୫୦ର କୌଣସି ବିଷୟ ଦ୍ୱାରା ନିର୍ବନ୍ଧିତ ହେବ ନାହିଁ, ମାତ୍ର ଯଦି କୌଣସି ରାଜ୍ୟର ବିଧାନ ମଣ୍ଡଳ ଦ୍ୱାରା ପ୍ରଣୀତ ବିଧିର କୌଣସି ଉପବଂଧ ଉକ୍ତ ଦୁଇ ଅନୁଚ୍ଛେଦ ମଧ୍ୟରୁ କୌଣସିଟି ଅଧୀନରେ ଯେଉଁ ବିଧି ପ୍ରଣୟନ କରିବା ପାଇଁ ସଂସଦର କ୍ଷମତା ଅଛି ସଂସଦ ଦ୍ୱାରା ପ୍ରଣୀତ ସେହି ବିଧିର କୌଣସି ଉପବନ୍ଧର ବିରୁଦ୍ଧ ହୁଏ ତେବେ ସଂସଦ ଦ୍ୱାରା ପ୍ରଣୀତ ବିଧି ତାହା ରାଜ୍ୟ ବିଧାନ ମଣ୍ଡଳ ଦ୍ୱାରା ପ୍ରଣୀତ ବିଧିର ପୂର୍ବରୁ ପାରିତ ହୋଇଥାଉ ବା ପରେ ପାରିତ ହୋଇଥାଉ, ଅଭିଭାବୀ ହେବ ଏବଂ ସଂସଦ ପ୍ରଣୀତ ବିଧିର ପ୍ରଭାବ ଥିବା ସମୟ ପର୍ଯ୍ୟନ୍ତହିଁ ରାଜ୍ୟ ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ ବିଧି ତହିଁରେ ଯେତେଦୂର ପର୍ଯ୍ୟନ୍ତ ବିରୋଧ ଥିବ ସେତେଦୂର ପର୍ଯ୍ୟନ୍ତ ପ୍ରବର୍ତ୍ତନରହିତ ହେବ ।

ଦୁଇ ବା ଅଧିକ ରାଜ୍ୟର ସମ୍ମତିରେ ସେମାନଙ୍କ ପାଇଁ ବିଧାନ ପ୍ରଣୟନ ନିମିତ୍ତ ସଂସଦର କ୍ଷମତା ଏବଂ ଅନ୍ୟ କୌଣସି ରାଜ୍ୟ ଦ୍ୱାରା ସେପରି ବିଧାନର ପରିଗ୍ରହଣ ।

୨୫୨ । (୧) ଯଦି ଦୁଇ ବା ଅଧିକ ରାଜ୍ୟର ବିଧାନମଣ୍ଡଳକୁ ପ୍ରତୀତ ହୁଏ ଯେ ଅନୁଚ୍ଛେଦ ୨୪୯ ଓ ୨୫୦ରେ ଉପବନ୍ଧିତ ହୋଇଥିବା ଭିନ୍ନ ଅନ୍ୟଥା ଯେଉଁ ସମସ୍ତ ବିଷୟ ସଂପର୍କରେ ସଂସଦର ରାଜ୍ୟମାନଙ୍କ ନିମିତ୍ତ ବିଧି ପ୍ରଣୟନ କରିବାର କ୍ଷମତା ନାହିଁ ସେହି ବିଷୟମାନଙ୍କ ମଧ୍ୟରୁ କୌଣସି ବିଷୟ ସଂସଦ କର୍ତ୍ତୃକ ବିଧିଦ୍ୱାରା ବିନିୟମିତ ହେବା ବାଂଛନୀୟ ଏବଂ ଯଦି ସେହି ରାଜ୍ୟମାନଙ୍କର ବିଧାନମଣ୍ଡଳର ସମସ୍ତ ସଦନ ଦ୍ୱାରା ସେହି ଉଦ୍ଦେଶ୍ୟରେ ସଙ୍କଳ୍ପ ପାରିତ ହୁଏ ତେବେ ସେହି ବିଷୟ ତଦନୁସାରେ ବିନିୟମିତ କରିବା ନିମିତ୍ତ ଏକ ଅଧିନିୟମ ପାରିତ କରିବା ସଂସଦ ପକ୍ଷେ ବିଧି ସଙ୍ଗତ ହେବ ଏବଂ ଏପରି ପାରିତ କୌଣସି ଅଧିନିୟମ ସେହି ରାଜ୍ୟମାନଙ୍କ ପ୍ରତି ଲାଗୁ ହେବ ଏବଂ ପରେ ଅନ୍ୟ ଯେଉଁ ରାଜ୍ୟର ବିଧାନମଣ୍ଡଳର ସଦନରେ କିମ୍ବା ସେଠାରେ ଦୁଇ ସଦନ ଥିଲେ ପ୍ରତ୍ୟେକ ସଦନରେ ଏଥି ନିମିତ୍ତ ପାରିତ ସଙ୍କଳ୍ପ ଦ୍ୱାରା ତାହା ପରିଗୃହୀତ ହୁଏ ସେହି ରାଜ୍ୟ ପ୍ରତି ତାହା ଲାଗୁ ହେବ ।

(୨) ସଂସଦ ଦ୍ୱାରା ଏପରି ପାରିତ କୌଣସି ଅଧିନିୟମ ସେହି ରୀତିରେ ପାରିତ ବା ପରିଗୃହୀତ ହୋଇଥିବା ସଂସଦର କୌଣସି ଅଧିନିୟମ ଦ୍ୱାରା ସଂଶୋଧିତ ବା ନିରସିତ ହୋଇପାରିବ, ମାତ୍ର ଯେଉଁ ରାଜ୍ୟ ପ୍ରତି ତାହା ଲାଗୁ ହେଉଥିବ ସେହି ରାଜ୍ୟ ସଂପର୍କରେ ତାହା ସେହି ରାଜ୍ୟର ବିଧାନମଣ୍ଡଳର କୌଣସି ଅଧିନିୟମ ଦ୍ୱାରା ସଂଶୋଧିତ ବା ନିରସିତ ହେବନାହିଁ ।

ଅନ୍ତର୍ଜାତୀୟ କରାରମାନଙ୍କୁ ପ୍ରଭାବୀ କରିବା ନିମିତ୍ତ ବିଧାନ ।

୨୫୩ । ଏହି ଅଧ୍ୟାୟର ପୂର୍ବୋକ୍ତ ଉପବନ୍ଧମାନଙ୍କରେ ଯାହା କିଛି ଥିବା ସତ୍ତ୍ୱେ, ଅନ୍ୟ କୌଣସି ଦେଶ ବା ଦେଶମାନଙ୍କର ସହିତ ସନ୍ଧି, କରାର ବା ଚୁକ୍ତିକୁ ଅଥବା କୌଣସି ଅନ୍ତର୍ଜାତୀୟ ସମ୍ମେଳନ, ସଂସ୍ଥା ବା ଅନ୍ୟ ନିକାୟରେ କୃତ ବିନିଶ୍ଚୟକୁ ପରିପାଳନ କରିବା ନିମିତ୍ତ ଭାରତର ସମଗ୍ର ରାଜ୍ୟକ୍ଷେତ୍ର ବା କୌଣସି ଭାଗ ପାଇଁ ବିଧି ପ୍ରଣୟନ କରିବା ନିମିତ୍ତ ସଂସଦର କ୍ଷମତା ରହିଅଛି ।

ସଂସଦ ପ୍ରଣୀତ ବିଧି ଏବଂ ରାଜ୍ୟ ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ ବିଧି ମଧ୍ୟରେ ଅସଙ୍ଗତି ।

୨୫୪ । (୧) ଯଦି କୌଣସି ରାଜ୍ୟର ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ ବିଧିର କୌଣସି ଉପବଂଧ ସଂସଦ ଯେଉଁ ବିଧିର ଅଧିନିୟମନ ପାଇଁ ସକ୍ଷମ ଅଟେ ସଂସଦ ପ୍ରଣୀତ ସେପରି ବିଧିର କୌଣସି ଉପବନ୍ଧର ଅଥବା ସମବର୍ତ୍ତୀ ସୂଚୀରେ ପ୍ରଗଣିତ କୌଣସି ବିଷୟ ସେପରି ବିଧିର କୌଣସି ବିଷୟ ସଂପର୍କରେ ବିଦ୍ୟମାନ ବିଧିର କୌଣସି ଉପବନ୍ଧର ବିରୁଦ୍ଧ ହୁଏ ତେବେ ସେହି ରାଜ୍ୟର ବିଧାନମଣ୍ଡଳ ଦ୍ୱାରା ବିଧି ପ୍ରଣୀତ ହେବାର ପୂର୍ବରୁ ବା ପରେ ପାରିତ ହୋଇଥିବା ସଂସଦ ପ୍ରଣୀତ ବିଧି ଅଥବା, ଯଥାସ୍ଥିତି, ବିଦ୍ୟମାନ ବିଧି, ଖଣ୍ଡ (୨) ରଉପବଂଧମାନଙ୍କ ବଶବର୍ତ୍ତୀ ରହି ଅଭିଭାବୀ ହେବ ଏବଂ ରାଜ୍ୟର ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ ବିଧିରେ ଯେତେ ଦୂର ପର୍ଯ୍ୟନ୍ତ ବିରୋଧ ଥିବ ସେହି ପର୍ଯ୍ୟନ୍ତ ତାହା ଶୂନ୍ୟ ହେବ ।

(୨) ଯଦି ରାଜ୍ୟର ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ ସମବର୍ତ୍ତୀ ସୂଚୀରେ ପ୍ରଗଣିତ କୌଣସି ବିଷୟ ସଂପର୍କୀୟ ବିଧିରେ ଥିବା କୌଣସି ଉପବଂଧ ସେହି ବିଷୟ ସଂପର୍କରେ ସଂସଦ ଦ୍ୱାରା ପୂର୍ବରୁ ପ୍ରଣୀତ କୌଣସି ବିଧିର ବା କୌଣସି ବିଦ୍ୟମାନ ବିଧିର ଉପବନ୍ଧମାନଙ୍କର ବିରୁଦ୍ଧ ହୁଏ ତେବେ ଯଦି ସେହି ରାଜ୍ୟର ବିଧାନମଣ୍ଡଳ ଦ୍ୱାରା ସେହିପରି ପ୍ରଣୀତ ବିଧି ରାଷ୍ଟ୍ରପତିଙ୍କ ବିଚାର ପାଇଁ ଆରକ୍ଷିତ ହୋଇଥାଏ ତଥା ତାଙ୍କର ଅନୁମତି ପ୍ରାପ୍ତ ହୋଇଥାଏ ତେବେ ସେହି ବିଧି ସେହି ରାଜ୍ୟରେ ଅଭିଭାବୀ ହେବ :

ପରନ୍ତୁ ରାଜ୍ୟର ବିଧାନମଣ୍ଡଳ ଦ୍ୱାରା ଏପରି ପ୍ରଣୀତ ବିଧିର ପରିବର୍ଦ୍ଧନ, ସଂଶୋଧନ, ପରିବର୍ତ୍ତନ ଅଥବା ନିରସନ କରୁଥିବା କୌଣସି ବିଧି ସମେତ ଏପରି ବିଷୟ ସଂପର୍କରେ କୌଣସି ବିଧିକୁ କୌଣସି ସମୟରେ ଅଧିନିୟମିତ କରିବାରେ ଏହି ଖଣ୍ଡର କୌଣସି ବିଷୟ ସଂସଦକୁ ବାଧା ଦେବ ନାହିଁ ।

ସୁପାରିଶ ଏବଂ ପୂର୍ବ ମଞ୍ଜୁରୀର ଆବଶ୍ୟକତାମାନ ପ୍ରକ୍ରିୟାଗତ ବିଷୟରୂପେ ହିଁ ବିବେଚିତ ହେବ ।

୨୫୫ । ଯଦି ସଂସଦର ବା କୌଣସି ରାଜ୍ୟ ବିଧାନମଣ୍ଡଳର କୌଣସି ଅଧିନିୟମକୁ,—

(କ) ରାଜ୍ୟପାଳଙ୍କର ସୁପାରିଶ ଆବଶ୍ୟକ ଥିବା ସ୍ଥଳେ ରାଜ୍ୟପାଳଙ୍କର ବା ରାଷ୍ଟ୍ରପତିଙ୍କର,

(ଖ) ରାଜପ୍ରମୁଖଙ୍କର ସୁପାରିଶ ଆବଶ୍ୟକ ଥିବା ସ୍ଥଳେ ରାଜପ୍ରମୁଖଙ୍କର ବା ରାଷ୍ଟ୍ରପତିଙ୍କର,

(ଗ) ରାଷ୍ଟ୍ରପତିଙ୍କର ସୁପାରିଶ ବା ପୂର୍ବ ମଞ୍ଜୁରୀ ଆବଶ୍ୟକ ଥିବା ସ୍ଥଳେ ରାଷ୍ଟ୍ରପତିଙ୍କର,

ଅନୁମତି ପ୍ରଦତ୍ତ ହୋଇଥାଏ ତେବେ ସେହି ଅଧିନିୟମ ଏବଂ ସେପରି କୌଣସି ଅଧିନିୟମର କୌଣସି ଉପବନ୍ଧ ଏହି ସଂବିଧାନ ଦ୍ୱାରା ଆପେକ୍ଷିତ କୌଣସି ସୁପାରିଶ ବା ପୂର୍ବ ମଞ୍ଜୁରୀ ପାଇ ନ ଥିବା କାରଣରୁ ହିଁ ଅବିଧିମାନ୍ୟ ବିବେଚିତ ହେବ ନାହିଁ ।

## ଅଧ୍ୟାୟ ୨-ପ୍ରଶାସନକ ସଂବଂଧ

### ସାଧାରଣ

**ସଂଘ ଏବଂ ରାଜ୍ୟମାନଙ୍କ ନିମିତ୍ତ ବାଧ୍ୟତା ।**

୨୫୬ । ପ୍ରତ୍ୟେକ ରାଜ୍ୟର କାର୍ଯ୍ୟପାଳିକା କ୍ଷମତା ଏପରି ଭାବରେ ପ୍ରୟୋଗ କରାଯିବ ଯେପରିକି ସେହି ରାଜ୍ୟ ପ୍ରତି ଲାଗୁ ହେଉଥିବା ସଂସଦ ପ୍ରଣୀତ ବିଧି ଏବଂ ବିଦ୍ୟମାନ ବିଧିମାନଙ୍କର ପାଳନ ସୁନିଶ୍ଚିତ ହେବ ଏବଂ ସଂଘର କାର୍ଯ୍ୟପାଳିକା କ୍ଷମତାର ଏପରି ବିସ୍ତାର ହେବ, ଯଦ୍ଦ୍ୱାରାକି ଭାରତ ସରକାର ସେହି ଉଦ୍ଦେଶ୍ୟରେ ଯେପରି ଆବଶ୍ୟକ ମନେ କରନ୍ତି କୌଣସି ରାଜ୍ୟକୁ ସେପରି ନିଦେଶ ଦିଆଯାଇ ପାରିବ ।

**କେତେକ ସ୍ଥଳରେ ସଂଘଦ୍ୱାରା ରାଜ୍ୟମାନଙ୍କର ନିୟନ୍ତ୍ରଣ ।**

୨୫୭ । (୧) ପ୍ରତ୍ୟେକ ରାଜ୍ୟର କାର୍ଯ୍ୟପାଳିକା କ୍ଷମତା ଏପରି ଭାବରେ ପ୍ରୟୋଗ କରାଯିବ ଯେପରିକି ତାହା ସଂଘର କାର୍ଯ୍ୟପାଳିକା କ୍ଷମତାର ପ୍ରୟୋଗରେ ଅନ୍ତରାୟ ବା ପ୍ରତିକୂଳ ନ ହୁଏ ଏବଂ ସଂଘର କାର୍ଯ୍ୟପାଳିକା କ୍ଷମତାର ଏପରି ବିସ୍ତାର ହେବ ଯଦ୍ଦ୍ୱାରାକି ଭାରତ ସରକାର ସେହି ଉଦ୍ଦେଶ୍ୟରେ ଯେପରି ଆବଶ୍ୟକ ମନେ କରନ୍ତି କୌଣସି ରାଜ୍ୟକୁ ସେପରି ନିଦେଶ ଦିଆଯାଇ ପାରିବ ।

(୨) ଏପରି ଯାତାୟତ ବ୍ୟବସ୍ଥାର ନିର୍ମାଣ ଓ ରକ୍ଷାଣାବେକ୍ଷଣ ନିମିତ୍ତ କୌଣସି ରାଜ୍ୟକୁ ନିଦେଶ ପ୍ରଦାନ କରିବା ପାଇଁ ମଧ୍ୟ ସଂଘର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ହେବ ଯହିଁରେକି ରାଷ୍ଟ୍ରୀୟ ଓ ସେନା ସଂପର୍କୀୟ ଗୁରୁତ୍ୱ ଅଛି ବୋଲି ସେହି ନିଦେଶରେ ଘୋଷିତ ହୋଇଥିବ :

ପରନ୍ତୁ ରାଜପଥ ବା ଜଳପଥକୁ ରାଷ୍ଟ୍ରୀୟ ରାଜପଥ ବା ରଷ୍ଟ୍ରୀୟ ଜଳପଥ ବୋଲି ଘୋଷଣା କରିବା ନମିତ୍ତ ସଂସଦର କ୍ଷମତାକୁ ବା ସେପରି ଘୋଷିତ ସ୍ଥଳପଥ ବା ଜଳପଥ ସମ୍ବନ୍ଧୀୟ ସଂଘର କ୍ଷମତାକୁ ଅଥବା ନୌସେନା , ସେନା ଏବଂ ବାୟୁସେନା ସମ୍ବନ୍ଧୀ କର୍ମଶାଳା ସଂପର୍କୀୟ ସଂଘର କୃତ୍ୟମାନଙ୍କର ଅଙ୍ଗରୂପେ ଯାତାୟତ ବ୍ୟବସ୍ଥାର ନିର୍ମାଣ ଓ ରକ୍ଷଣାବେକ୍ଷଣ ନିମିତ୍ତ ସଂଘର କ୍ଷମତାକୁ ଏହି ଖଣ୍ଡର କୌଣସି ବିଷୟ ନିର୍ବନ୍ଧିତ କରୁଅଛି ବୋଲି ବିବେଚିତ ହେବ ନାହିଁ ।

(୩) ରାଜ୍ୟ ମଧ୍ୟରେ ଥିବା ରେଳପଥର ସଂରକ୍ଷଣ ନିମିତ୍ତ କି ଉପାୟ ଅବଲମ୍ବନ କରିବାକୁ ହେବ ସେ ବିଷୟରେ ରାଜ୍ୟକୁ ନିଦେଶ ଦେବା ପାଇଁ ମଧ୍ୟ ସଂଘର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ରହିବ ।

(୪) ଖଣ୍ଡ (୨) ଅଧୀନରେ ଯାତାୟତ ବ୍ୟବସ୍ଥାର ନିର୍ମାଣ ବା ରକ୍ଷଣାବେକ୍ଷଣ ସଂପର୍କରେ ଅଥବା ଖଣ୍ଡ (୩) ଅଧୀନରେ ରେଳପଥର ସଂରକ୍ଷଣ ନିମିତ୍ତ ଉପାୟ ଅବଲମ୍ବନ ସଂପର୍କରେ ରାଜ୍ୟକୁ ଦିଆଯାଇଥିବା ନିଦେଶ ପାଳନ କରିବାରେ ଯଦି ସେପରି ନିଦେଶ ଦିଆଯାଇ ନ ଥିଲେ ରାଜ୍ୟର ସାଧାରଣ କର୍ତ୍ତବ୍ୟ ନିର୍ବହନରେ ଯାହା ଖର୍ଚ୍ଚ ହୋଇ ଥାଆନ୍ତା ତହିଁରୁ ଅଧିକ ଖର୍ଚ୍ଚ ହୁଏ ତେବେ ରାଜ୍ୟର ସେହି ଅତିରିକ୍ତ ଖର୍ଚ୍ଚ ବାବଦ ଯେଉଁ ଧନ ରାଶି ପାଇଁ ଉଭୟ ସହମତ ହେବେ ସେହି ଧନ ରାଶି ଅଥବା ଏପରି ସହମତିର ଅଭାବରେ ଭାରତର ମୁଖ୍ୟନ୍ୟାୟାଧିପତିଙ୍କ ଦ୍ୱାରା ନିଯୁକ୍ତ ମଧ୍ୟସ୍ଥଙ୍କ ଦ୍ୱାରା ସ୍ଥିରୀକୃତ ଧନରାଶି ଭାରତ ସରକାର ସେହି ରାଜ୍ୟକୁ ଦେବେ ।

୨୫୭କ । ନିରସିତ

**କେତେକ ସ୍ଥଳରେ ରାଜ୍ୟମାନଙ୍କୁ କ୍ଷମତା ପ୍ରଦାନ ଆଦି ନିମିତ୍ତ ସଂଘର କ୍ଷମତା[1] ।**

୨୫୮ । (୧) ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ ଯେଉଁ ବିଷୟପ୍ରତି ସଂଘର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ଥାଏ ସେହି ବିଷୟ ସମ୍ବନ୍ଧୀ କୃତ୍ୟମାନ ରାଷ୍ଟ୍ରପତି କୌଣସି ରାଜ୍ୟ ସରକାରଙ୍କ ସମ୍ମତିରେ ସେହି ସରକାର ଉପରେ ବା ତାହାର ଅଫିସରମାନଙ୍କ ଉପରେ ସସର୍ତ୍ତ ବା ବିନା ସର୍ତ୍ତରେ ନ୍ୟସ୍ତ କରି ପାରିବେ ।

(୨) ରାଜ୍ୟ ପ୍ରତି ଲାଗୁ ହେଉଥିବା ସଂସଦ ପ୍ରଣୀତ କୌଣସି ବିଧି ରାଜ୍ୟର ବିଧାନମଣ୍ଡଳ ବିଧି ପ୍ରଣୟନ କରିପାରିବାର କୌଣସି କ୍ଷମତା ନ ଥିବା କୌଣସି ବିଷୟ ସଂପର୍କରେ ହୋଇଥିବା ସତ୍ତ୍ୱେ ରାଜ୍ୟ ଉପରେ ବା ତାହାର ଅଫିସର ଓ ପ୍ରାଧିକାରୀମାନଙ୍କ ଉପରେ କ୍ଷମତା ପ୍ରଦାନ ଓ କର୍ତ୍ତବ୍ୟ ଆରୋପ କରି ପାରିବ ଅଥବା କ୍ଷମତା ପ୍ରଦାନ ଓ କର୍ତ୍ତବ୍ୟ ଆରୋପଣ ନିମିତ୍ତ ପ୍ରାଧିକୃତ କରି ପାରିବ ।

(୩) ଯେବେ ଏହି ଅନୁଚ୍ଛେଦ ବଳରେ କୌଣସି ରାଜ୍ୟ ଉପରେ ବା ତାହାର ଅଫିସର ବା ପ୍ରାଧିକାରୀମାନଙ୍କ ଉପରେ କ୍ଷମତା ଓ କର୍ତ୍ତବ୍ୟ ପ୍ରଦତ୍ତ ବା ଆରୋପିତ ହୋଇଥାଏ ତେବେ ସେହି କ୍ଷମତା ଓ କର୍ତ୍ତବ୍ୟର ପ୍ରୟୋଗ ସଂପର୍କରେ ରାଜ୍ୟ ଦ୍ୱାରା କରାଯାଇଥିବା ଅତିରିକ୍ତ ପ୍ରଶାସନିକ ଖର୍ଚ୍ଚ ବାବଦ ଯେଉଁ ଧନ ରାଶି ପାଇଁ ଉଭୟ ସହମତ ହେବେ ସେହି ଧନରାଶି ଅଥବା ଏପରି ସହମତିର ଅଭାବରେ ଭାରତର ମୁଖ୍ୟ ନ୍ୟାୟାଧିପତିଙ୍କ ଦ୍ୱାରା ନିଯୁକ୍ତ ମଧ୍ୟସ୍ଥଙ୍କ ଦ୍ୱାରା ସ୍ଥିରୀକୃତ ଧନରାଶି ଭାରତ ସରକାର ସେହି ରାଜ୍ୟକୁ ଦେବେ ।

ସଂଘଠାରେ କୃତ୍ୟମାନ ନ୍ୟସ୍ତ କରିବା ନିମିତ୍ତ ରାଜ୍ୟମାନଙ୍କର କ୍ଷମତା ।

୨୫୮କ । ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ, ଯେଉଁ ବିଷୟ ପ୍ରତି ରାଜ୍ୟର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ଥାଏ ସେହି ବିଷୟ ସମ୍ବନ୍ଧୀ କୃତ୍ୟମାନ ରାଜ୍ୟର ରାଜ୍ୟପାଳ ଭାରତ ସରକାରଙ୍କ ସମ୍ମତିରେ ସେହି ସରକାର ଉପରେ ବା ତାହାର ଅଫିସରଙ୍କ ଉପରେ ସସର୍ତ୍ତ ବା ବିନା ସର୍ତ୍ତରେ ନ୍ୟସ୍ତ କରିପାରିବେ ।

୨୫୯ । ନିରସିତ ।

ଭାରତ ବାହାରେ ଥିବା ରାଜ୍ୟକ୍ଷେତ୍ର ସଂବଂଧରେ ସଂଘର ଅଧିକାରିତା ।

୨୬୦ । ଭାରତ ସରକାର ଭାରତ ରାଜ୍ୟକ୍ଷେତ୍ରର ଭାଗ ନ ହୋଇଥିବା ରାଜ୍ୟକ୍ଷେତ୍ରର ସରକାରଙ୍କ ସହିତ କରାର କରି ସେହି ରାଜ୍ୟକ୍ଷେତ୍ରର ସରକାରଙ୍କଠାରେ ନିହିତ ବିଧାୟୀ କାର୍ଯ୍ୟପାଳିକା ବା ନ୍ୟାୟିକ କୃତ୍ୟମାନ ଗ୍ରହଣ କରି ପାରିବେ, ମାତ୍ର ଏପରି ପ୍ରତ୍ୟେକ କରାର ବିଦେଶୀୟ ଅଧିକାରିତାର ପ୍ରୟୋଗ ସଂପର୍କରେ ତତ୍‌ସମୟ ପ୍ରବୃତ୍ତ ବିଧିର ବଶବର୍ତ୍ତୀ ହେବ ଏବଂ ତଦନୁସାରେ ଶାସିତ ହେବ ।

ସାର୍ବଜନିକ କାର୍ଯ୍ୟ, ଅଭିଲେଖ ଏବଂ ନ୍ୟାୟିକ କାର୍ଯ୍ୟବାହୀ ।

୨୬୧ । (୧) ସଂଘର ଏବଂ ପ୍ରତ୍ୟେକ ରାଜ୍ୟର ସାର୍ବଜନିକ କାର୍ଯ୍ୟ, ଅଭିଲେଖ ଏବଂ ନ୍ୟାୟିକ କାର୍ଯ୍ୟବାହୀମାନଙ୍କ ପ୍ରତି ଭାରତ ରାଜ୍ୟକ୍ଷେତ୍ରରେ ସର୍ବତ୍ର ପୂର୍ଣ୍ଣ ଶ୍ରଦ୍ଧା ଓ ପ୍ରତ୍ୟୟ ରଖାଯିବ ।

(୨) ସଂସଦ ପ୍ରଣୀତ ବିଧି ଦ୍ୱାରା ଯେପରି ଉପବନ୍ଧିତ କରାଯାଏ ସେପରି ରୀତିରେ ଓ ସେପରି ସର୍ତ୍ତରେ ଖଣ୍ଡ (୧) ରେ ନିର୍ଦ୍ଦିଷ୍ଟ କାର୍ଯ୍ୟ, ଅଭିଲେଖ ବା କାର୍ଯ୍ୟବାହୀମାନ ପ୍ରମାଣିତ ହେବ ତଥା ସେମାନଙ୍କର ଫଳାଫଳ ନିର୍ଦ୍ଧାରିତ ହେବ ।

(୩) ଭାରତ ରାଜ୍ୟକ୍ଷେତ୍ରର ଯେ କୌଣସି ଭାଗରେ ଥିବା ସିଭିଲ ନ୍ୟାୟାଳୟ ଦ୍ୱାରା ଦିଆଯାଇଥିବା ବା ପାରିତ ହୋଇଥିବା ଅନ୍ତିମ ନିର୍ଣ୍ଣୟ ବା ଆଦେଶ ସେହି ରାଜ୍ୟକ୍ଷେତ୍ର ଅନ୍ତର୍ଗତ ଯେ କୌଣସି ସ୍ଥାନରେ ବିଧି ଅନୁସାରେ ନିଷ୍ପାଦନ ଯୋଗ୍ୟ ହେବ ।

## ଜଳ ସମ୍ବନ୍ଧୀୟ ବିବାଦ

ଅନ୍ତର୍ରାଜ୍ୟସ୍ଥ ନଦୀ ବା ନଦୀ ଉପତ୍ୟକାର ଜଳ ସଂବଂଧୀୟ ବିବାଦ ମାନଙ୍କର ନ୍ୟାୟ ନିର୍ଣ୍ଣୟନ ।

୨୬୨ । (୧) ଯେ କୌଣସି ଅନ୍ତର୍ରାଜ୍ୟସ୍ଥ ନଦୀ ବା ନଦୀ ଉପତ୍ୟକାର ବା ତହିଁରେ ଜଳର ବ୍ୟବହାର ବଣ୍ଟନ ବା ନିୟନ୍ତ୍ରଣ ସମ୍ବନ୍ଧୀୟ ଯେ କୌଣସି ବିବାଦ ବା ଆପତ୍ତିର ନ୍ୟାୟ ନିର୍ଣ୍ଣୟନ କରିବା ନିମିତ୍ତ ସଂସଦ ବିଧି ଦ୍ୱାରା ଉପବନ୍ଧ କରି ପାରିବ ।

(୨) ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ ଉଚ୍ଚତମ ନ୍ୟାୟାଳୟ ବା ଅନ୍ୟ କୌଣସି ନ୍ୟାୟାଳୟ ଖଣ୍ଡ (୧) ରେ ଯେପରି ନିର୍ଦ୍ଦିଷ୍ଟ ହୋଇଅଛି ସେପରି କୌଣସି ବିବାଦ ବା ଆପତ୍ତି ସଂପର୍କରେ ଅଧିକାରିତା ପ୍ରୟୋଗ କରିବ ନାହିଁ ବୋଲି ସଂସଦ ବିଧି ଦ୍ୱାରା ଉପବନ୍ଧ କରି ପାରିବ ।

## ରାଜ୍ୟମାନଙ୍କ ମଧ୍ୟରେ ସମନ୍ୱୟ

ଏକ ଅନ୍ତର୍ରାଜ୍ୟ ପରିଷଦ ସଂବଂଧରେ ଉପବଂଧ ।

୨୬୩ । ଯଦି କୌଣସି ସମୟରେ ରାଷ୍ଟ୍ରପତିଙ୍କୁ ପ୍ରତୀତ ହୁଏ ଯେ,—

(କ) ରାଜ୍ୟମାନଙ୍କ ମଧ୍ୟରେ ବିବାଦ ଉପୁଜିଥିଲେ ତାହାର ଯାଞ୍ଚ କରିବା ଏବଂ ସେ ବିଷୟରେ ମନ୍ତ୍ରଣା ଦେବା,

(ଖ) କେତେକ ଅଥବା ସମସ୍ତ ରାଜ୍ୟର ବା ସଂଘ ଏବଂ ଏକ ବା ଅଧିକ ରାଜ୍ୟର ସାଧାରଣ ହିତ ଥିବା ବିଷୟମାନଙ୍କର ଅନୁସନ୍ଧାନ ଓ ଆଲୋଚନା କରିବା, ଅଥବା

(ଗ) ଏପରି କୌଣସି ବିଷୟରେ ସୁପାରିଶ କରିବା ଏବଂ ବିଶେଷତଃ ସେହି ବିଷୟ ସମ୍ବନ୍ଧୀୟ ନୀତି ଓ କାର୍ଯ୍ୟବାହୀରେ ଉନ୍ନତତର ସମନ୍ୱୟ ଲାଗି ସୁପାରିଶ କରିବା,

ଏହି କର୍ତ୍ତବ୍ୟମାନ ନ୍ୟସ୍ତ କରାଯାଇ ଏକ ପରିଷଦ ସ୍ଥାପନ କରାଗଲେ ସାର୍ବଜନିକ ହିତ ସାଧିତ ହେବ ତେବେ ଏକ ଆଦେଶ ଦ୍ୱାରା ଏପରି ପରିଷଦ ସ୍ଥାପନ କରିବା ଏବଂ ଏହି ପରିଷଦ ଯେଉଁ କର୍ତ୍ତବ୍ୟ ସଂପାଦନ କରିବ ତହିଁର ପ୍ରକାର ଏବଂ ତହିଁର ସଂଗଠନ ଓ ପ୍ରକ୍ରିୟା ନିର୍ଦ୍ଦିଷ୍ଟ କରିବା ରାଷ୍ଟ୍ରପତିଙ୍କ ପକ୍ଷରେ ବିଧି ସଂଗତ ହେବ ।

# ଭାଗ ୧୨

## ବିତ୍ତ, ସଂପତ୍ତି, ସଂବିଦା ଓ ବାଦ

### ଅଧ୍ୟାୟ ୧-ବିତ୍ତ

#### ସାଧାରଣ

ନିର୍ବଚନ ।

୨୬୪ । ଏହି ଭାଗରେ 'ବିତ୍ତ କମିଶନ' ବୋଲନ୍ତେ ଅନୁଚ୍ଛେଦ ୨୮୦ ଅଧୀନରେ ଗଠିତ ବିତ୍ତ କମିଶନଙ୍କୁ ବୁଝାଇବ ।

ବିଧିର ପ୍ରାଧିକାର ବିନା କର ଆରୋପିତ ନ ହେବା ।

୨୬୫ । ବିଧିର ପ୍ରାଧିକାର ବିନା କୌଣସି କର ଆରୋପିତ ବା ସଂଗୃହୀତ ହେବ ନାହିଁ ।

ଭାରତ ଓ ରାଜ୍ୟମାନଙ୍କର ସଂଚିତ ନିଧି ଓ ସାର୍ବଜନିକ ହିସାବ ।

୨୬୬ । (୧) ଅନୁଚ୍ଛେଦ ୨୬୭ର ଉପବଂଧମାନଙ୍କର ତଥା କେତେକ କର ଓ ଶୁଳ୍କର ନୀଟ ଆଗମ ପୂର୍ଣ୍ଣତଃ ବା ଭାଗତଃ ରାଜ୍ୟମାନଙ୍କୁ ସମର୍ପଣ କରାଯିବା ସଂପର୍କରେ ଏହି ଅଧ୍ୟାୟରେ ଥିବା ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, ଭାରତ ସରକାରଙ୍କ ଦ୍ୱାରା ପ୍ରାପ୍ତ ସମସ୍ତ ରାଜସ୍ୱ ସେହି ସରକାରଙ୍କ ଦ୍ୱାରା ସରକାରୀ ହୁଣ୍ଡିପ୍ରଦାନ ଯୋଗେ ଉଠା ଯାଇଥିବା ସମସ୍ତ ଋଣ ବା କର୍ମ ନିର୍ବାହକ ଅଗ୍ରୀମ ଏବଂ ଋଣ ପରିଶୋଧ ଆକାରରେ ସେହି ସରକାରଙ୍କ ଦ୍ୱାରା ପ୍ରାପ୍ତ ସମସ୍ତ ଧନକୁ ନେଇ "ଭାରତର ସଞ୍ଚିତ ନିଧି" ନାମରେ ଅଭିହିତ ଏକ ସଞ୍ଚିତ ନିଧି ଗଠିତ ହେବ ଏବଂ କୌଣସି ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରାପ୍ତ ସମସ୍ତ ରାଜସ୍ୱ ସେହି ସରକାରଙ୍କ ଦ୍ୱାରା ସରକାରୀ ହୁଣ୍ଡି ପ୍ରଦାନ ଯୋଗେ ଉଠାଯାଇଥିବା ସମସ୍ତ ଋଣ ବା କର୍ମନିର୍ବାହକ ଅଗ୍ରୀମ ଏବଂ ଋଣ ପରିଶୋଧ ଆକାରରେ ସେହି ସରକାରଙ୍କ ଦ୍ୱାରା ପ୍ରାପ୍ତ ସମସ୍ତ ଧନକୁ ନେଇ "ରାଜ୍ୟର ସଞ୍ଚିତ ନିଧି" ନାମରେ ଅଭିହିତ ଏକ ସଞ୍ଚିତ ନିଧି ଗଠିତ ହେବ ।

(୨) ଭାରତ ସରକାରଙ୍କ ଦ୍ୱାରା ବା ତାଙ୍କ ତରଫରୁ ଅଥବା ରାଜ୍ୟ ସରକାରଙ୍କ ଦ୍ୱାରା ବା ତାଙ୍କ ତରଫରୁ ପ୍ରାପ୍ତ ଅନ୍ୟାନ୍ୟ ସମସ୍ତ ସାଧାରଣ ଧନ, ଯଥାସ୍ଥିତି, ଭାରତର ସାର୍ବଜନିକ ହିସାବରେ ବା ରାଜ୍ୟର ସାର୍ବଜନିକ ହିସାବରେ ଜମା କରାଯିବ ।

(୩) ବିଧି ଅନୁସାରେ ହୋଇଥିବା ବ୍ୟତିରେକେ ଏବଂ ଏହି ସଂବିଧାନରେ ଉପବନ୍ଧିତ ପ୍ରୟୋଜନ ଏବଂ ରୀତି ବ୍ୟତିରେକେ ଭାରତର ସଞ୍ଚିତ ନିଧିରୁ ବା ରାଜ୍ୟର ସଞ୍ଚିତ ନିଧିରୁ କୌଣସି ଧନ ବିନିଯୋଗ କରାଯିବ ନାହିଁ ।

ଆକସ୍ମିକତା ନିଧି ।

୨୬୭ । (୧) ସଂସଦ ବିଧି ଦ୍ୱାରା ଅଗ୍ରଦାୟ ରୂପେ "ଭାରତର ଆକସ୍ମିକତା ନିଧି" ନାମରେ ଅଭିହିତ ଏକ ଆକସ୍ମିକତା ନିଧି ସ୍ଥାପନ କରିପାରିବ ଯହିଁରେକି ସେହି ବିଧି ଦ୍ୱାରା ନିର୍ଦ୍ଧାରିତ ଗଚ୍ଛିତ ଧନରାଶି ଥରକୁ ଥର ଗଚ୍ଛିତ କରାଯାଉଥିବ ଏବଂ ଅନୁଚ୍ଛେଦ ୧୧୫ ବା ଅନୁଚ୍ଛେଦ ୧୧୬ ଅଧୀନରେ ଅନବେକ୍ଷିତ ବ୍ୟୟର ସଂସଦ କର୍ତ୍ତୃକ ବିଧି ଦ୍ୱାରା ପ୍ରାଧିକରଣ ଲଂବିତ ଥିବା ଅବସ୍ଥାରେ ସେପରି ବ୍ୟୟ ନିର୍ବାହ ପ୍ରୟୋଜନରେ ରାଷ୍ଟ୍ରପତି ଏହି ନିଧିରୁ ଅଗ୍ରିମ ଧନ ଦେବାରେ ସମର୍ଥ ହେବା ପାଇଁ ଏହି ନିଧି ତାଙ୍କ ହାତରେ ରହିବ ।

(୨) ରାଜ୍ୟର ବିଧାନମଣ୍ଡଳ ବିଧି ଦ୍ୱାରା ଅଗ୍ରଦାୟ ରୂପେ "ରାଜ୍ୟର ଆକସ୍ମିକତା ନିଧି" ନାମରେ ଅଭିହିତ ଏକ ଆକସ୍ମିକତା ନିଧି ସ୍ଥାପନ କରି ପାରିବ ଯହିଁରେକି ସେପରି ବିଧି ଦ୍ୱାରା ନିର୍ଦ୍ଧାରିତ ଧନରାଶି ଥରକୁ ଥର ଗଚ୍ଛିତ କରାଯିବ ଏବଂ ଅନୁଚ୍ଛେଦ ୨୦୫ ବା ଅନୁଚ୍ଛେଦ ୨୦୬ ଅଧୀନରେ ଅନବେକ୍ଷିତ ବ୍ୟୟର ରାଜ୍ୟର ବିଧାନମଣ୍ଡଳ କର୍ତ୍ତୃକ ବିଧି ଦ୍ୱାରା ପ୍ରାଧିକରଣ ଲଂବିତ ଥିବା ଅବସ୍ଥାରେ ସେପରି ବ୍ୟୟ ନିର୍ବାହ ପ୍ରୟୋଜନରେ ରାଜ୍ୟପାଳ ସେହି ନିଧିରୁ ଅଗ୍ରିମ ଧନ ଦେବାରେ ସମର୍ଥ ହେବାପାଇଁ ଉକ୍ତ ନିଧି ତାଙ୍କ ହାତରେ ରହିବ ।

## ସଂଘ ଓ ରାଜ୍ୟମାନଙ୍କମଧ୍ୟରେ ରାଜସ୍ୱ ବଣ୍ଟନ

ସଂଘ ଦ୍ୱାରା ଆରୋପିତ ହେବା, ମାତ୍ର ରାଜ୍ୟମାନଙ୍କ ଦ୍ୱାରା ସଂଗୃହୀତ ଏବଂ ବିନିଯୋଗ କରାଯିବା ଶୁଳ୍କମାନ ।

୨୬୮ । (୧) ସଂଘସୂଚୀରେ ଉଲ୍ଲିଖିତ ହୋଇଥିବା ଷ୍ଟାମ୍ପ ଶୁଳ୍କ ତଥା ପ୍ରସାଧନ ସାମଗ୍ରୀ ଉପରେ ଉତ୍ପାଦନ ଶୁଳ୍କ ଭାରତ ସରକାରଙ୍କ ଦ୍ୱାରା ଆରୋପିତ କରାଯିବ, ମାତ୍ର ଏପରି ଶୁଳ୍କ—

(କ) ଯଦି କୌଣସି ସଂଘ ରାଜ୍ୟକ୍ଷେତ୍ର ମଧ୍ୟରେ ଆରୋପଣୀୟ ହୋଇଥାଏ, ତେବେ ଭାରତ ସରକାରଙ୍କ ଦ୍ୱାରା, ଏବଂ

(ଖ) ଅନ୍ୟାନ୍ୟ ସ୍ଥଳେ ଯେଉଁ ରାଜ୍ୟମାନଙ୍କ ମଧ୍ୟରେ ଯଥାକ୍ରମେ ଏହି ଶୁଳ୍କମାନ ଆରୋପଣୀୟ ହୋଇଥାଏ ସେହି ରାଜ୍ୟମାନଙ୍କ ଦ୍ୱାରା,

ସଂଗୃହୀତ ହେବ ।

(୨) କୌଣସି ବିତ୍ତୀୟ ବର୍ଷରେ କୌଣସି ରାଜ୍ୟ ମଧ୍ୟରେ ଆରୋପଣୀୟ ଏପରି କୌଣସି ଶୁଳ୍କର ଆଗମ ଭାରତର ସଞ୍ଚିତ ଭାଗ ହେବ ନାହିଁ, ମାତ୍ର ସେହି ରାଜ୍ୟକୁ ସମର୍ପିତ ହେବ ।

ସଂଘ ଦ୍ୱାରା ଆରୋପିତ ଓ ସଂଗୃହୀତ ହେବା, ମାତ୍ର ରାଜ୍ୟମାନଙ୍କୁ ସମର୍ପିତ ହେବା କର ।

୨୬୯ । (୧) ନିମ୍ନଲିଖିତ ଶୁଳ୍କ ଓ କରମାନ ଭାରତ ସରକାରଙ୍କ ଦ୍ୱାରା ଆରୋପିତ ଓ ସଂଗୃହୀତ ହେବ, ମାତ୍ର ଦ୍ୱିତୀୟ ଖଣ୍ଡରେ ଉପବନ୍ଧିତ ରୀତିରେ ରାଜ୍ୟମାନଙ୍କୁ ସମର୍ପିତ ହେବ, ଯଥା :—

(କ) କୃଷିଭୂମି ଭିନ୍ନ ଅନ୍ୟ ସଂପତ୍ତିରେ ଉତ୍ତରାଧିକାର ସଂପର୍କୀୟ ଶୁଳ୍କ;

(ଖ) କୃଷି ଭୂମି ଭିନ୍ନ ଅନ୍ୟ ସଂପତ୍ତି ସଂପର୍କୀୟ ସଂପଦା ଶୁଳ୍କ;

(ଗ) ରେଳ, ସମୁଦ୍ର ଓ ଆକାଶମାର୍ଗରେ ବାହିତ ବସ୍ତୁ ବା ଯାତ୍ରୀମାନଙ୍କ ଉପରେ ସୀମାକର;

(ଘ) ରେଳପଥରେ ଯାତ୍ରୀ ଭଡ଼ା ଓ ମାଲ ଭଡ଼ା ଉପରେ କର;

(ଙ) ଷ୍ଟକ ଏକ୍ସ୍‌ଚେଞ୍ଜ ଓ ବାୟଦା ବଜାର କାରବାର ଉପରେ ଷ୍ଟାମ୍ପ ଶୁଳ୍କ ଭିନ୍ନ ଅନ୍ୟ କର;

(ଚ) ସଂବାଦ ପତ୍ରର କ୍ରୟ ବିକ୍ରୟ ଉପରେ ପ୍ରକାଶିତ ବିଜ୍ଞାପନମାନଙ୍କ ଉପରେ କର;

(ଛ) ସଂବାଦ ପତ୍ର ଭିନ୍ନ ଅନ୍ୟ ମାଲର କ୍ରୟ ବା ବିକ୍ରୟ ଆନ୍ତର୍ରାଜ୍ୟିକ ବ୍ୟାପାର ବା ବାଣିଜ୍ୟ କ୍ରମେ ହୋଇଥିବା ସ୍ଥଳେ ଏପରି ମାଲର କ୍ରୟ ବା ବିକ୍ରୟ ଉପରେ କର ।

(୨) ସଂଘ ରାଜ୍ୟକ୍ଷେତ୍ରମାନଙ୍କରୁ ପ୍ରାପ୍ତ ଆଗମରୂପେ ଗୃହୀତ ଆଗମ ବ୍ୟତିରେକେ କୌଣସି ବିତ୍ତୀୟ ବର୍ଷ ମଧ୍ୟରେ ଏପରି କୌଣସି ଶୁଳ୍କ ବା କରର ନୀଟ ଆଗମ ଭାରତର ସଞ୍ଚିତ ନିଧିର ଭାଗ ହେବ ନାହିଁ, ମାତ୍ର ଯେଉଁ ରାଜ୍ୟମାନଙ୍କରେ ସେହି ଶୁଳ୍କ ବା କର ସେହି ବର୍ଷ ଆରୋପଣୀୟ ହୋଇଥାଏ ସେହି ରାଜ୍ୟମାନଙ୍କୁ ସମର୍ପଣ କରାଯିବ ଏବଂ ସଂସଦ କର୍ତ୍ତୃକ ବିଧି ଦ୍ୱାରା ବିତରଣର ଯେଉଁ ନୀତି ନିର୍ଦ୍ଧାରିତ କରାଯାଏ ତଦନୁସାରେ ସେହି ରାଜ୍ୟମାନଙ୍କ ମଧ୍ୟରେ ବିତରଣ କରାଯିବ ।

(୩) ଆନ୍ତର୍ରାଜ୍ୟିକ ବ୍ୟାପାର ବା ବାଣିଜ୍ୟ କ୍ରମରେ ମାଲର କେଉଁ ସମୟରେ କ୍ରୟ ବା ବିକ୍ରୟ ସଂପାଦିତ ହୁଏ ତହିଁର ନିର୍ଦ୍ଧାରଣ ନିମିତ୍ତ ସଂସଦ ବିଧି ଦ୍ୱାରା ନୀତି ପ୍ରଣୟନ କରି ପାରିବ ।

ସଂଘଦ୍ୱାରା ଆରୋପିତ ଓ ସଂଗୃହୀତ ହେବା ଏବଂ ସଂଘ ଓ ରାଜ୍ୟମାନଙ୍କ ମଧ୍ୟରେ ବିତରଣ କରାଯିବା କରମାନ ।

୨୭୦ । (୧) କୃଷି ଆୟ ଭିନ୍ନ ଅନ୍ୟ ଆୟ ଉପରେ କର ଭାରତ ସରକାରଙ୍କ ଦ୍ୱାରା ଆରୋପିତ ଏବଂ ସଂଗୃହୀତ ହେବ, ଏବଂ ଖଣ୍ଡ (୨) ରେ ଉପବନ୍ଧିତ ରୀତିରେ ସଂଘ ଏବଂ ରାଜ୍ୟମାନଙ୍କ ମଧ୍ୟରେ ବିତରଣ କରାଯିବ ।

(୨) କେନ୍ଦ୍ର ଶାସିତ ଅଞ୍ଚଳମାନଙ୍କରୁ ପ୍ରାପ୍ତ ଅଥବା ସଂଘର ଉପଲବ୍ଧି ସଂପର୍କରେ ଦେୟ କର ରୂପେ ପ୍ରାପ୍ତ ଆଗମ ରୂପେ ଗୃହୀତ ଆଗମ ବ୍ୟତିରେକେ କୌଣସି ବିତ୍ତୀୟ ବର୍ଷରେ ଏପରି କୌଣସି କରର ନୀଟ ଆଗମରୁ ଯେଉଁ ଶତକଡ଼ା ବିହିତ ହେବ ସେହି ଶତକଡ଼ା ଭାରତର ସଞ୍ଚିତ ନିଧିର ଭାଗ ହେବ ନାହିଁ ମାତ୍ର ଯେଉଁ ରାଜ୍ୟମାନଙ୍କରେ ସେହି କର ସେହି ବର୍ଷ ଆରୋପଣୀୟ ହୋଇଥାଏ ସେହି ରାଜ୍ୟମାନଙ୍କୁ ସମର୍ପଣ କରାଯିବ ଏବଂ ବିହିତ କରାଯିବା ରୀତିରେ ଓ ସମୟ ଠାରୁ ସେହି ରାଜ୍ୟମାନଙ୍କ ମଧ୍ୟରେ ବିତରଣ କରାଯିବ ।

(୩) ଖଣ୍ଡ (୨) ର ପ୍ରୟୋଜନ ନିମିତ୍ତ ସଂଘର ଉପଲବ୍ଧି ସଂପର୍କରେ ଦେୟ କରର ନୀଟ ଆଗମ ହୋଇ ନ ଥିବା ଆୟ କରର ଅବଶିଷ୍ଟ ନୀଟ ଆଗମର ଯେଉଁ ଶତକଡ଼ା ବିହିତ ହେବ ସେହି ଶତକଡ଼ା ପ୍ରତ୍ୟେକ ବିତ୍ତୀୟ ବର୍ଷରେ ସଂଘ ରାଜ୍ୟ କ୍ଷେତ୍ର ମାନଙ୍କର ପ୍ରାପ୍ୟ ଆଗମ ରୂପେ ବିବେଚିତ ହେବ ।

(୪) ଏହି ଅନୁଚ୍ଛେଦରେ—

(କ) "ଆୟକର" ମଧ୍ୟରେ ନିଗମକର ଅନ୍ତର୍ଭୁକ୍ତ ନୁହେଁ ;

(ଖ) "ବିହିତ"ର ଅର୍ଥ,

(/) ବିତ୍ତ କମିଶନ ଗଠିତ ନ ହେବା ପର୍ଯ୍ୟନ୍ତ ରାଷ୍ଟ୍ରପତିଙ୍କ କର୍ତ୍ତୃକ ଆଦେଶ ଦ୍ୱାରା ବିହିତ ହେବା, ଏବଂ

(୵) ବିତ୍ତ କମିଶନ ଗଠିତ ହେବା ପରେ ବିତ୍ତ କମିଶନର ସୁପାରିଶକୁ ବିଗ୍ଚର କରାଯିବା ପରେ ରାଷ୍ଟ୍ରପତିଙ୍କ କର୍ତ୍ତୃକ ଆଦେଶ ଦ୍ୱାରା ବିହିତ ହେବା;

(ଗ) "ସଂଘର ଉପଲବ୍ଧି" କହିଲେ ଭାରତର ସଞ୍ଚିତ ନିଧିରୁ ଦେୟ ଯେଉଁ ଉପଲବ୍ଧି ଓ ପେନ୍‌ସନ୍ ସଂପର୍କରେ ଆୟକର ଧାର୍ଯ୍ୟ ହୁଏ ସେହି ସମସ୍ତ ଉପଲବ୍ଧି ଓ ପେନ୍‌ସନ୍ ତହିଁରେ ଅନ୍ତର୍ଭୁକ୍ତ ହେବ ।

ସଂଘର ପ୍ରୟୋଜନାର୍ଥ କେତେକ ଶୁଳ୍କ ଏବଂ କର ଉପରେ ଅଧିଭାର ।

୨୭୧ । ଅନୁଚ୍ଛେଦ ୨୬୯ ଏବଂ ୨୭୦ ରେ ଯାହା କିଛି ଥିବା ସତ୍ତ୍ୱେ ସଂସଦ ସଂଘର ପ୍ରୟୋଜନ ନିମିତ୍ତ ଯେ କୌଣସି ସମୟରେ ଅଧିଭାର ଦ୍ୱାରା ସେହି ଅନୁଚ୍ଛେଦରେ ସୂଚିତ ଯେ କୌଣସି ଶୁଳ୍କ ବା କର ବୃଦ୍ଧି କରି ପାରିବ ଏବଂ ଏପରି କୌଣସି ଅଧିଭାରର ମୋଟ ଆଗମ ଭାରତର ସଂଚିତ ନିଧିର ଭାଗ ହେବ ।

ସଂଘ ଦ୍ୱାରା ଆରୋପିତ ଓ ସଂଗୃହୀତ ହେବା ଏବଂ ସଂଘ ଓ ରାଜ୍ୟମାନଙ୍କ ମଧ୍ୟରେ ବିତରିତ ହୋଇ ପାରିବା କରମାନ ।

୨୭୨ । ସଂଘ ସୂଚୀରେ ଉଲ୍ଲିଖିତ ଭେଷଜୀୟ ପ୍ରସାଧନ ସାମଗ୍ରୀ ଉପରେ ଉତ୍ପାଦନ ଶୁଳ୍କ ଭିନ୍ନ ସଂଘର ଅନ୍ୟ ଉତ୍ପାଦନ ଶୁଳ୍କ ଭାରତ ସରକାରଙ୍କ ଦ୍ୱାରା ଆରୋପିତ ଓ ସଂଗୃହୀତ ହେବ, ମାତ୍ର ଯଦି ସଂସଦ ବିଧି ଦ୍ୱାରା ଉପବନ୍ଧିତ କରେ ତେବେ ଯେଉଁ ରାଜ୍ୟମାନଙ୍କ ପ୍ରତି ଶୁଳ୍କ ଆରୋପଣ କରୁଥିବା ବିଧିର ବିସ୍ତାର ଥାଏ ସେହି ରାଜ୍ୟମାନଙ୍କୁ ଭାରତରେ ସଞ୍ଚିତ ନିଧିରୁ ସେହି ଶୁଳ୍କର ନୀଟ ଆଗମର ମୋଟ ବା କୌଣସି ଭାଗ ସହ ସମାନ ଧନରାଶି ପ୍ରଦତ୍ତ ହେବ ଏବଂ ସେହି ଧନରାଶି ସେହି ବିଧି ଦ୍ୱାରା ପ୍ରଣୀତ ବିତରଣର ନୀତି ଅନୁସାରେ ରାଜ୍ୟମାନଙ୍କ ମଧ୍ୟରେ ବିତରଣ କରାଯିବ ।

ଝୋଟ ଏବଂ ଝୋଟ ପ୍ରସ୍ତୁତ ଦ୍ରବ୍ୟ ଉପରେ ରପ୍ତାନୀ ଶୁଳ୍କ ବଦଳରେ ଅନୁଦାନ ।

୨୭୩ । (୧) ଆସାମ, ବିହାର, ଓଡ଼ିଶା ଓ ପଶ୍ଚିମ ବଙ୍ଗ ରାଜ୍ୟମାନଙ୍କୁ ଝୋଟ ଏବଂ ଝୋଟ ପ୍ରସ୍ତୁତ ଦ୍ରବ୍ୟ ଉପରେ ରପ୍ତାନୀ ଶୁଳ୍କର କେତେକ ବର୍ଷର ନୀଟ ଆଗମର କୌଣସି ଭାଗର ସମନୁଦେଶନ ବଦଳରେ ବିହିତ ହେବା ଧନରାଶି ପ୍ରତ୍ୟେକ ବର୍ଷ ସେହି ରାଜ୍ୟମାନଙ୍କର ରାଜସ୍ୱର ସହାୟକ ଅନୁଦାନ ରୂପେ ଭାରତର ସଞ୍ଚିତ ନିଧି ଉପରେ ଭାରିତ ହେବ ।

(୨) ଯେଉଁ ପର୍ଯ୍ୟନ୍ତ ଝୋଟ ବା ଝୋଟ ପ୍ରସ୍ତୁତ ଦ୍ରବ୍ୟ ଉପରେ ଭାରତ ସରକାରଙ୍କ ଦ୍ୱାରା ରପ୍ତାନୀ ଶୁଳ୍କ ଆରୋପିତ ହେଉଥାଏ ସେ ପର୍ଯ୍ୟନ୍ତ ଅଥବା ଏହି ସଂବିଧାନର ପ୍ରାରମ୍ଭର ଦଶ ବର୍ଷ ପର୍ଯ୍ୟନ୍ତ, ଏଥି ମଧ୍ୟରୁ ଯେଉଁଟି ପ୍ରଥମେ ପଡ଼ିବ ସେ ପର୍ଯ୍ୟନ୍ତ ଏପରି ବିହିତ ଧନରାଶି ଭାରତର ସଞ୍ଚିତ ନିଧି ଉପରେ ଭାରିତ ହେଉଥିବ ।

(୩) "ବିହିତ" ପଦର ଅନୁଚ୍ଛେଦ ୨୭୦ ରେ ଯେଉଁ ଅର୍ଥ ରହିଅଛି ଏହି ଅନୁଚ୍ଛେଦରେ ସେହି ଅର୍ଥ ହେବ ।

ରାଜ୍ୟମାନେ ହିତବଦ୍ଧ ଥିବା କରକୁ ପ୍ରଭାବିତ କରୁଥିବା ବିଧେୟକ ନିମିତ୍ତ ରାଷ୍ଟ୍ରପତିଙ୍କ ପୂର୍ବ ସୁପାରିଶର ଆବଶ୍ୟକତା ।

୨୭୪। (୧) ଏପରି କୌଣସି ବିଧେୟକ ବା ସଂଶୋଧନ ଯାହାକି ରାଜ୍ୟମାନେ ହିତବଦ୍ଧ ଥିବା କୌଣସି କର ବା ଶୁଳ୍କକୁ ଆରୋପ ବା ଅଦଳ ବଦଳ କରୁଥାଏ ଅଥବା ଯାହା ଭାରତୀୟ ଆୟକର ସମ୍ବନ୍ଧୀୟ ଅଧି-ନିୟମିତିମାନଙ୍କର ପ୍ରୟୋଜନ ନିମିତ୍ତ ଯଥା ସଂଜ୍ଞାକୃତ "କୃଷି ଆୟ" ପଦର ଅର୍ଥରେ ଅଦଳ ବଦଳ କରୁଥାଏ ଅଥବା ଯାହା ଏହି ଅଧ୍ୟାୟର ପୂର୍ବବର୍ତ୍ତୀ ଉପବନ୍ଧମାନଙ୍କ ମଧ୍ୟରୁ କୌଣସିଟିର ବଶବର୍ତ୍ତୀ ରହି ରାଜ୍ୟମାନଙ୍କ ମଧ୍ୟରେ ଯେଉଁ ନୀତି ଉପରେ ଧନ ବିତରିତ ହୁଏ ବା ବିତରଣୀୟ ହେଉଥାଏ ସେହି ନୀତିମାନଙ୍କ ଉପରେ ପ୍ରଭାବ ପକାଉଥାଏ ଅଥବା ଯାହାକି ସଂଘର ପ୍ରୟୋଜନ ନିମିତ୍ତ ଏହି ଅଧ୍ୟାୟର ପୂର୍ବବର୍ତ୍ତୀ ଉପବନ୍ଧମାନଙ୍କରେ ଉଲ୍ଲିଖିତ ହୋଇଥିବା ମତେ କୌଣସି ଅଧିକାର ଆରୋପ କରୁଥାଏ ରାଷ୍ଟ୍ରପତିଙ୍କ ସୁପାରିଶ ବ୍ୟତିରେକେ ସଂସଦର ଉଭୟ ସଦନ ମଧ୍ୟରୁ କୌଣସିଟିରେ ପୁରଃସ୍ଥାପିତ ବା ଆଗତ କରାଯିବ ନାହିଁ ।

(୨) ଏହି ଅନୁଚ୍ଛେଦରେ "ରାଜ୍ୟମାନେ ହିତବଦ୍ଧ ଥିବା କର ବା ଶୁଳ୍କ" ଏହି ପଦାବଳୀର ଅର୍ଥ—

(କ) ଯେଉଁ କର ବା ଶୁଳ୍କର ନୀଟ ଆଗମର ମୋଟ ବା କୌଣସି ଭାଗ କୌଣସି ରାଜ୍ୟକୁ ସମନୁ-ଦେଶିତ ହୋଇଥାଏ ସେପରି କର ବା ଶୁଳ୍କ; କିମ୍ବା

(ଖ) ଯେଉଁ କରର ବା ଶୁଳ୍କର ନୀଟ ଆଗମକୁ ନିର୍ଦ୍ଦେଶ କରି ଧନରାଶି ତତ୍ ସମୟ ନିମିତ୍ତ ଭାରତର ସଞ୍ଚିତ ନିଧିରୁ କୌଣସି ରାଜ୍ୟକୁ ଦେୟ ଅଟେ ସେହି କର ବା ଶୁଳ୍କ ।

କେତେକ ରାଜ୍ୟକୁ ସଂଘରୁ ଅନୁଦାନ ।

୨୭୫। (୧) ଯେଉଁ ରାଜ୍ୟମାନଙ୍କ ନିମିତ୍ତ ସାହାଯ୍ୟର ଆବଶ୍ୟକତା ଅଛି ବୋଲି ସଂସଦ ନିର୍ଦ୍ଧାରଣ କରେ ସେହି ରାଜ୍ୟମାନଙ୍କର ରାଜସ୍ୱର ସହାୟକ ଅନୁଦାନ ରୂପେ ସଂସଦ ବିଧି ଦ୍ୱାରା ଯେଉଁ ଧନରାଶି ଉପବନ୍ଧିତ କରିବ ତାହା ପ୍ରତିବର୍ଷ ଭାରତର ସଞ୍ଚିତ ନିଧି ଉପରେ ଭାରିତ ହେବ, ଏବଂ ବିଭିନ୍ନ ରାଜ୍ୟମାନଙ୍କ ନିମିତ୍ତ ଭିନ୍ନ ଭିନ୍ନ ଧନରାଶି ସ୍ଥିର କରାଯାଇପାରିବ:

ପରନ୍ତୁ କୌଣସି ରାଜ୍ୟର ଅନୁସୂଚୀତ ଜନଜାତିମାନଙ୍କ କଲ୍ୟାଣର ଅଭିବୃଦ୍ଧି ଉଦ୍ଦେଶ୍ୟରେ ବା ତହିଁର ଅନୁସୂଚିତ କ୍ଷେତ୍ରର ପ୍ରଶାସନ ସ୍ତର ସେହି ରାଜ୍ୟର ଅବଶିଷ୍ଟ କ୍ଷେତ୍ରର ପ୍ରଶାସନ ସ୍ତର ପର୍ଯ୍ୟନ୍ତ ଉନ୍ନତ କରିବା ଉଦ୍ଦେଶ୍ୟରେ ଭାରତ ସରକାରଙ୍କ ଅନୁମୋଦନ ସହ ସେହି ରାଜ୍ୟ ଯେଉଁ ବିକାଶ ଯୋଜନା ଗ୍ରହଣ କରିବ ସେହି ଯୋଜନାର ଖର୍ଚ୍ଚ ବହନ ପାଇଁ ସେହି ରାଜ୍ୟକୁ ସମର୍ଥ କରିବା ନିମିତ୍ତ ଆବଶ୍ୟକ ମୂଳ ଧନରାଶି ଓ ଆବର୍ତ୍ତକ ଧନରାଶି ସେହି ରାଜ୍ୟର ରାଜସ୍ୱର ସହାୟକ ଅନୁଦାନ ରୂପେ ଭାରତର ସଞ୍ଚିତ ନିଧିରୁ ପ୍ରଦତ୍ତ ହେବ:

ପୁନଶ୍ଚ, ଆସାମ ରାଜ୍ୟର ରାଜସ୍ୱର ସହାୟକ ଅନୁଦାନ ରୂପେ—

(କ) ଷଷ୍ଠ ଅନୁସୂଚୀର ବିଂଶ ପାରାଗ୍ରାଫ୍‌ରେ ସଂଲଗ୍ନ ସାରଣୀର ଭାଗ (୧)ରେ ବିନିର୍ଦ୍ଦିଷ୍ଟ ଜନଜାତି କ୍ଷେତ୍ରର ପ୍ରଶାସନ ସମ୍ବନ୍ଧରେ ଏହି ସଂବିଧାନ ପ୍ରାରମ୍ଭର ଅବ୍ୟବହିତ ପୂର୍ବ ଦୁଇବର୍ଷ ମଧ୍ୟରେ ରାଜସ୍ୱର ବ୍ୟୟର ହାରାହାରି ଆଧିକ୍ୟ, ଏବଂ

(ଖ) ଉକ୍ତ କ୍ଷେତ୍ରର ପ୍ରଶାସନ ସ୍ତର ସେହି ରାଜ୍ୟର ଅବଶିଷ୍ଟ କ୍ଷେତ୍ରର ପ୍ରଶାସନ ସ୍ତର ପର୍ଯ୍ୟନ୍ତ ଉନ୍ନତ କରିବା ଉଦ୍ଦେଶ୍ୟରେ ଭାରତ ସରକାରଙ୍କ ଅନୁମୋଦନ ସହ ସେହି ରାଜ୍ୟଦ୍ୱାରା ଯେଉଁ ବିକାଶ ଯୋଜନା ଗୃହୀତ ହେବ ତାହାର ଖର୍ଚ୍ଚ,

ସହିତ ସମାନ ମୂଳଧନ ରାଶି ଏବଂ ଆବର୍ତ୍ତକ ଧନରାଶି ଭାରତର ସଞ୍ଚିତ ନିଧିରୁ ପ୍ରଦତ୍ତ ହେବ ।

(୧ କ) ଅନୁଚ୍ଛେଦ ୨୪୪ କ ଅନୁଯାୟୀ ସ୍ୱାୟତ୍ତଶାସୀ ରାଜ୍ୟର ଗଠନ ଦିନ ଓ ସେହି ଦିନଠାରୁ —

(i) ଖଣ୍ଡ (୧)ର ଦ୍ୱିତୀୟ ପରନ୍ତୁକର ଖଣ୍ଡ (କ) ଅନୁଯାୟୀ ଦେୟ କୌଣସି ଧନରାଶି ସ୍ୱାୟତ୍ତଶାସୀ ରାଜ୍ୟରେ ନିର୍ଦ୍ଦିଷ୍ଟ ସମସ୍ତ ଜନଜାତି କ୍ଷେତ୍ର ତହିଁରେ ସମାବିଷ୍ଟ ହୋଇଥିବା ସ୍ଥଳେ ସ୍ୱାୟତ୍ତଶାସୀ ରାଜ୍ୟକୁ ଦିଆଯିବ ଏବଂ ଯଦି ସ୍ୱାୟତ୍ତଶାସୀ ରାଜ୍ୟରେ ସେ ସମସ୍ତ ଜନଜାତି କ୍ଷେତ୍ର ମଧ୍ୟରୁ କେବଳ କେତେକ କ୍ଷେତ୍ର ସମାବିଷ୍ଟ ହୋଇଥାଏ ତାହାହେଲେ ରାଷ୍ଟ୍ରପତି ଦେଇଥିବା ଆଦେଶ ଦ୍ୱାରା ଯେପରି ବିନିର୍ଦ୍ଦିଷ୍ଟ କରିବେ ସେହି ମତେ ତାହା ଆସାମ ରାଜ୍ୟ ଓ ସ୍ୱାୟତ୍ତଶାସୀ ରାଜ୍ୟ ମଧ୍ୟରେ ବିଭାଜିତ ହେବ ;

(ଗ) ସେହି ରାଜ୍ୟର ପ୍ରଶାସନ ସ୍ତର ଆସାମ ରାଜ୍ୟର ଅବଶିଷ୍ଟର ପ୍ରଶାସନ ସ୍ତର ପର୍ଯ୍ୟନ୍ତ ଉନ୍ନତ କରିବା ଉଦ୍ଦେଶ୍ୟରେ ଭାରତ ସରକାରଙ୍କ ଅନୁମୋଦନ କ୍ରମେ ସ୍ୱାୟତ୍ତଶାସୀ ରାଜ୍ୟ ଯେଉଁ ବିକାଶ ଯୋଜନା ଗ୍ରହଣ କରିବ ତାହାର ଖର୍ଚ୍ଚ ସହିତ ସମାନ ହେଉଥିବା ଭଳି ମୂଳ ଓ ଆବର୍ତ୍ତକ ଧନରାଶି ସ୍ୱାୟତ୍ତଶାସୀ ରାଜ୍ୟର ରାଜସ୍ୱର ସହାୟକ ଅନୁଦାନ ରୂପେ ଭାରତର ସଞ୍ଚିତ ନିଧିରୁ ପ୍ରଦତ୍ତ ହେବ ।

(୨) ଯେଉଁ ପର୍ଯ୍ୟନ୍ତ ଖଣ୍ଡ (୧) ଅଧୀନରେ ସଂସଦ ଦ୍ୱାରା ଉପବନ୍ଧ କରାଯାଇ ନ ଥାଏ ସେ ପର୍ଯ୍ୟନ୍ତ ସେହି ଖଣ୍ଡ ଅଧୀନରେ ସଂସଦକୁ ପ୍ରଦତ୍ତ କ୍ଷମତା ରାଷ୍ଟ୍ରପତିଙ୍କ କର୍ତ୍ତୃକ ଆଦେଶ ଦ୍ୱାରା ପ୍ରଯୋକ୍ତବ୍ୟ ହେବ ଏବଂ ଏହି ଖଣ୍ଡ ଅଧୀନରେ ରାଷ୍ଟ୍ରପତିଙ୍କ ଦ୍ୱାରା ପ୍ରଦତ୍ତ ଯେ କୌଣସି ଆଦେଶ ସଂସଦ ଦ୍ୱାରା ଏପରି ପ୍ରଣୀତ ଉପବନ୍ଧର ବଶବର୍ତ୍ତୀ ହୋଇ ପ୍ରଭାବୀ ହେବ :

ପରନ୍ତୁ ବିତ୍ତ କମିଶନ ଗଠିତ ହେବା ପରେ ବିତ୍ତ କମିଶନର ସୁପାରିଶ ବିଚାର କରା ନ ଯାଇ ଏହି ଖଣ୍ଡ ଅଧୀନରେ ରାଷ୍ଟ୍ରପତିଙ୍କ ଦ୍ୱାରା କୌଣସି ଆଦେଶ ପ୍ରଦତ୍ତ ହେବ ନାହିଁ ।

ବୃତ୍ତି, ବ୍ୟାପାର, ଆଜୀବିକା ଓ ନିଯୋଜନ ଉପରେ କର ।

୨୭୬ । (୧) ଅନୁଚ୍ଛେଦ ୨୪୬ରେ ଯାହା କିଛି ଥିବା ସତ୍ତ୍ୱେ, କୌଣସି ରାଜ୍ୟ କିମ୍ବା ତାହାର ଅନ୍ତର୍ଗତ ନଗର ପାଳିକା, ଜିଲ୍ଲାବୋର୍ଡ, ଲୋକାଲ ବୋର୍ଡ ବା ଅନ୍ୟ ସ୍ଥାନୀୟ ପ୍ରାଧୀକାରୀଙ୍କ ହିତ ଦୃଷ୍ଟେ ବୃତ୍ତି, ବ୍ୟାପାର, ଆଜୀବିକା ବା ନିଯୋଜନ ସମ୍ପର୍କରେ କର ସମ୍ବନ୍ଧରେ ସେହି ରାଜ୍ୟର ବିଧାନ ମଣ୍ଡଳର କୌଣସି ବିଧି ଏହି କାରଣରୁ ଅବିଧିମାନ୍ୟ ହେବ ନାହିଁ ଯେ ତାହା ଆୟ ଉପରେ କର ସମ୍ବନ୍ଧୀୟ ଅଟେ ।

(୨) କୌଣସି ଏକ ବ୍ୟକ୍ତି ସମ୍ପର୍କରେ ବୃତ୍ତି, ବ୍ୟାପାର, ଆଜୀବିକା ଏବଂ ନିଯୋଜନ ଉପରେ ରାଜ୍ୟ କିମ୍ବା ରାଜ୍ୟସ୍ଥ କୌଣସି ଏକ ନଗର ପାଳିକା, ଜିଲ୍ଲାବୋର୍ଡ, ଲୋକାଲବୋର୍ଡ ବା ଅନ୍ୟ ସ୍ଥାନୀୟ ପ୍ରାଧିକାରୀଙ୍କୁ ଦେୟ କରର ମୋଟ ପରିମାଣ ବାର୍ଷିକ ଦୁଇଶତ ପଚାଶ ଟଙ୍କାରୁ ଅଧିକ ହେବ ନାହିଁ :

ପରନ୍ତୁ, ଯଦି ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବ ବିତ୍ତୀୟ ବର୍ଷରେ କୌଣସି ରାଜ୍ୟ ଦ୍ୱାରା ବା ସେପରି କୌଣସି ନଗର ପାଳିକା, ବୋର୍ଡ ବା ପ୍ରାଧିକାରୀ ଦ୍ୱାରା ବୃତ୍ତି, ବ୍ୟାପାର, ଆଜୀବିକା ବା ନିଯୋଜନ ଉପରେ ଧାର୍ଯ୍ୟ କରର ହାର ବା ସର୍ବୋଚ୍ଚ ହାର ବାର୍ଷିକ ଦୁଇଶତ ପଚାଶ ଟଙ୍କାରୁ ଅଧିକ ଥାଏ ତେବେ ସଂସଦ କର୍ତ୍ତୃକ ବିଧି ଦ୍ୱାରା ଅନ୍ୟଥା ଉପବନ୍ଧିତ ହେବା ପର୍ଯ୍ୟନ୍ତ ସେପରି କର ଆରୋପିତ ହୋଇପାରିବ ଏବଂ ସଂସଦ ଦ୍ୱାରା ଏପରି ପ୍ରଣୀତ ଯେ କୌଣସି ବିଧି ହୁଏତ ସାଧାରଣ ଭାବରେ ଅଥବା କୌଣସି ବିନିର୍ଦ୍ଦିଷ୍ଟ ରାଜ୍ୟ, ନଗର ପାଳିକା ବୋର୍ଡ ବା ପ୍ରାଧିକାରୀଙ୍କ ସମ୍ବନ୍ଧରେ ପ୍ରଣୀତ ହୋଇ ପାରିବ ।

(୩) ବୃତ୍ତି, ବ୍ୟାପାର, ଆଜୀବିକା ଏବଂ ନିଯୋଜନ ଉପରେ କର ସମ୍ପର୍କରେ ପୂର୍ବୋକ୍ତ ମତେ ବିଧି ପ୍ରଣୟନ ପାଇଁ ରାଜ୍ୟର ବିଧାନ ମଣ୍ଡଳର କ୍ଷମତାର ଏପରି ଅର୍ଥ କରାଯିବ ନାହିଁ, ଯଦ୍ଦ୍ୱାରାକି ବୃତ୍ତି, ବ୍ୟାପାର, ଆଜୀବିକା ଏବଂ ନିଯୋଜନରୁ ପ୍ରୋଦ୍‌ଭୂତ ବା ପ୍ରାପ୍ତ ଆୟକର ସମ୍ପର୍କରେ ବିଧି ପ୍ରଣୟନ ପାଇଁ ସଂସଦର କ୍ଷମତା କୌଣସି ରୂପେ ସୀମା ବଦ୍ଧ ହେବ ।

ବ୍ୟାବୃତ୍ତି

୨୭୭ । ଯେଉଁ ସବୁ କର, ଶୁଳ୍କ, ସେସ୍ ବା ଫିସ୍ ଏହି ସମ୍ବିଧାନ ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ କୌଣସି ରାଜ୍ୟର ସରକାରଙ୍କ ଦ୍ୱାରା ଅଥବା କୌଣସି ନଗର ପାଳିକା ବା ଅନ୍ୟ ସ୍ଥାନୀୟ ପ୍ରାଧିକାରୀ ବା ନିକାୟ ଦ୍ୱାରା ସେହି ରାଜ୍ୟ, ନଗର ପାଳିକା କିମ୍ବା ଜିଲ୍ଲା ବା ଅନ୍ୟାନ୍ୟ ସ୍ଥାନୀୟ କ୍ଷେତ୍ରର ପ୍ରୟୋଜନାର୍ଥ ବିଧି ସଙ୍ଗତ ଭାବରେ ଆରୋପିତ ହେଉଥିଲା ସେହି ସବୁକର, ଶୁଳ୍କ, ସେସ୍ ବା ଫିସ୍ ସଂଘସୂଚୀରେ ବର୍ଣ୍ଣିତ ଥିବା ସତ୍ତ୍ୱେ ସଂସଦ କର୍ତ୍ତୃକ ବିଧିଦ୍ୱାରା ଅନ୍ୟଥା ଉପବନ୍ଧିତ ହେବା ପର୍ଯ୍ୟନ୍ତ ଆରୋପିତ ହେଉଥିବ ଏବଂ ସେହି ଉଦ୍ଦେଶ୍ୟରେ ବିନିଯୋଜିତ ହେଉଥିବ ।

୨୭୮ । ନିରସିତ ।

ନୀଟ ଆଗମର ଗଣନା ଇତ୍ୟାଦି ।

୨୭୯ । (୧) ଏହି ଅଧ୍ୟାୟର ପୂର୍ବଗାମୀ ଉପବଂଧମାନଙ୍କରେ କୌଣସି କର ବା ଶୁଳ୍କ ସମ୍ବନ୍ଧରେ ନୀଟ ଆଗମର ଅର୍ଥ କର ବା ଶୁଳ୍କର ଆଗମରୁ ଆଦାୟ ବାବଦ ଖର୍ଚ୍ଚକୁ ବିୟୋଗ କଲେ ଯାହା ଅବଶିଷ୍ଟ ରହିବ ସେହି ଆଗମ ଅଟେ ଏବଂ ସେହି ଉପବନ୍ଧମାନଙ୍କର ପ୍ରୟୋଜନ ନିମିତ୍ତ କୌଣସି କର ବା ଶୁଳ୍କର କୌଣସି ଭାଗର ନୀଟ ଆଗମ ଭାରତର କମ୍ପ୍ଟ୍ରୋଲର ଓ ଅଡିଟର ଜେନେରାଲଙ୍କ ଦ୍ୱାରା ଅଭିନିଶ୍ଚିତ ତଥା ପ୍ରମାଣିତ କରାଯିବ ଏବଂ ତାଙ୍କର ସାର୍ଟିଫିକେଟ୍ ଚୂଡ଼ାନ୍ତ ହେବ ।

(୨) ପୂର୍ବୋକ୍ତ ତଥା ଏହି ଅଧ୍ୟାୟର ଅନ୍ୟ ସମସ୍ତ ଅଭିବ୍ୟକ୍ତ ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, ଯେଉଁ ସ୍ଥଳରେ ଏହି ଭାଗ ଅଧୀନରେ କୌଣସି ଶୁଳ୍କ ବା କରର ଆଗମ କୌଣସି ରାଜ୍ୟକୁ ସମର୍ପିତ ହୁଏ ବା ହୋଇପାରେ ସେଠାରେ କେଉଁ ରୀତିରେ ଆଗମର ଗଣନା କରାଯିବ ସେଥି ନିମିତ୍ତ, କେଉଁ ସମୟ ଠାରୁ ବା ସମୟରେ ଏବଂ କେଉଁ ରୀତିରେ କୌଣସି ସଂଦାୟ କରାଯିବ ସେଥିନିମିତ୍ତ, ଏକ ବିତ୍ତୀୟ ବର୍ଷ ବା ଅନ୍ୟ ବିତ୍ତୀୟ ବର୍ଷ ମଧ୍ୟରେ ସମାୟୋଜନ ନିମିତ୍ତ ଏବଂ ଅନ୍ୟ କୌଣସି ଆନୁଷଙ୍ଗିକ ଅଥବା ସହାୟକ ବିଷୟ ନିମିତ୍ତ ସଂସଦ ପ୍ରଣୀତ କୌଣସି ବିଧି ବା ରାଷ୍ଟ୍ରପତିଙ୍କର କୌଣସି ଆଦେଶ ଦ୍ୱାରା ଉପବନ୍ଧ କରାଯାଇ ପାରିବ ।

ବିତ୍ତ କମିଶନ

୨୮୦ । (୧) ଏହି ସଂବିଧାନର ପ୍ରାରମ୍ଭରୁ ଦୁଇବର୍ଷ ମଧ୍ୟରେ ଏବଂ ତତ୍ପରେ ପ୍ରତି ପଞ୍ଚମ ବର୍ଷର ଅବସାନରେ ଅଥବା ତତ୍ପୂର୍ବରୁ ଯେଉଁ ସମୟ ରାଷ୍ଟ୍ରପତି ଆବଶ୍ୟକ ମନେ କରନ୍ତି ସେହି ସମୟରେ ରାଷ୍ଟ୍ରପତି ଆଦେଶ ଦ୍ୱାରା ଗୋଟିଏ ବିତ୍ତ କମିଶନ ଗଠନ କରିବେ ଏବଂ ତାହା ରାଷ୍ଟ୍ରପତିଙ୍କ ଦ୍ୱାରା ନିଯୁକ୍ତ ଜଣେ ସଭାପତି ଓ ଅନ୍ୟ ଚାରିଜଣ ସଦସ୍ୟଙ୍କୁ ନେଇ ଗଠିତ ହେବ ।

(୨) କମିଶନର ସଦସ୍ୟ ରୂପେ ନିଯୁକ୍ତ ହେବା ନିମିତ୍ତ ଯେଉଁ ଯୋଗ୍ୟତା ଆବଶ୍ୟକ ଏବଂ ଯେଉଁ ରୀତିରେ ସଦସ୍ୟମାନେ ବଛାଯିବେ ତାହା ସଂସଦ ବିଧି ଦ୍ୱାରା ନିର୍ଦ୍ଧାରିତ କରି ପାରିବ ।

(୩)(କ) ଯେଉଁ କର ସମୂହ ଏହି ଅଧ୍ୟାୟ ଅଧୀନରେ ସଂଘ ଏବଂ ରାଜ୍ୟମାନଙ୍କ ମଧ୍ୟରେ ବିଭକ୍ତ କରାଯିବ ବା କରାଯାଇ ପାରିବ ସେମାନଙ୍କ ମଧ୍ୟରେ ସେ ସବୁର ନୀଟ ଆଗମର ବିତରଣ ଏବଂ ସେହି ଆଗମର ତତ୍ସମ୍ବନ୍ଧୀୟ ଅଂଶର ରାଜ୍ୟମାନଙ୍କ ମଧ୍ୟରେ ଆବଣ୍ଟନ ସଂପର୍କରେ,

(ଖ) ଯେଉଁ ନୀତିମାନ ଭାରତର ସଞ୍ଚିତ ନିଧିରୁ ରାଜ୍ୟମାନଙ୍କ ରାଜସ୍ୱ ପାଇଁ ସହାୟକ ଅନୁଦାନ ନିୟନ୍ତ୍ରିତ କରିବ ତତ୍ ସଂପର୍କରେ,

(ଗ) ସୁସ୍ଥ ବିତ୍ତୀୟ ହିତ ଦୃଷ୍ଟିରୁ ରାଷ୍ଟ୍ରପତିଙ୍କ ଦ୍ୱାରା କମିଶନଙ୍କୁ ନିର୍ଦ୍ଦେଶିତ ଅନ୍ୟ କୌଣସି ବିଷୟ ସଂପର୍କରେ,

ରାଷ୍ଟ୍ରପତିଙ୍କୁ ସୁପାରିଶ କରିବା କମିଶନର କର୍ତ୍ତବ୍ୟ ହେବ ।

(୪) କମିଶନ ନିଜର ପ୍ରକ୍ରିୟା ନିର୍ଦ୍ଧାରଣ କରିବ ଏବଂ ସଂସଦ ବିଧିଦ୍ୱାରା ତାହାଠାରେ ଯେପରି କ୍ଷମତା ନ୍ୟସ୍ତ କରିବ ନିଜର କୃତ୍ୟ ସଂପାଦନ କରିବାରେ ତାହାର ସେପରି କ୍ଷମତା ରହିବ ।

ବିତ୍ତ କମିଶନର ସୁପାରିଶ ।

୨୮୧ । ରାଷ୍ଟ୍ରପତି ଏହି ସଂବିଧାନର ଉପବନ୍ଧମାନଙ୍କ ଅଧୀନରେ ବିତ୍ତ କମିଶନ ଦ୍ୱାରା କରାଯାଇଥିବା ପ୍ରତ୍ୟେକ ସୁପାରିଶକୁ ତହିଁ ଉପରେ କରାଯାଇଥିବା କାର୍ଯ୍ୟାନୁଷ୍ଠାନ ବ୍ୟାଖ୍ୟାତ୍ମକ ଜ୍ଞାପନ ସହ ସଂସଦର ପ୍ରତ୍ୟେକ ସଦନ ସମକ୍ଷରେ ଉପସ୍ଥାପିତ କରାଇବେ ।

## ବିବିଧ ବିତ୍ତୀୟ ଉପବନ୍ଧ

ସଂଘ ବା ରାଜ୍ୟ ଦ୍ୱାରା ସ୍ୱରାଜସ୍ୱରୁ କରାଯିବା ବ୍ୟୟ ।

୨୮୨ । ଯେଉଁ ସାର୍ବଜନିକ ପ୍ରୟୋଜନ ନିମିତ୍ତ, ଯଥାସ୍ଥିତି, ସଂସଦ ବା ରାଜ୍ୟର ବିଧାନମଣ୍ଡଳ ବିଧି ପ୍ରଣୟନ କରିପାରେ, ସେପରି ନ ହୋଇ ଥିବା କୌଣସି ସାର୍ବଜନିକ ପ୍ରୟୋଜନ ନିମିତ୍ତ ମଧ୍ୟ ସଂଘ ବା ରାଜ୍ୟ କୌଣସି ଅନୁଦାନ ପ୍ରଦାନ କରି ପାରିବ ।

ସଂଚିତ ନିଧି, ଆକସ୍ମିକତା ନିଧି ଓ ସାର୍ବଜନିକ ହିସାବରେ ଜମାଥିବା ଧନର ଅଭିରକ୍ଷା ଇତ୍ୟାଦି ।

୨୮୩ । (୧) ଭାରତର ସଞ୍ଚିତ ନିଧିର ଏବଂ ଆକସ୍ମିକତା ନିଧିର ଅଭିରକ୍ଷା, ସେପରି ନିଧିମାନଙ୍କୁ ଧନ ସନ୍ଦାୟ, ତହିଁରୁ ଧନ ନିଷ୍କାସନ, ଭାରତ ସରକାରଙ୍କ ଦ୍ୱାରା ବା ତାଙ୍କ ଉଦ୍ଦେଶ୍ୟରେ ପ୍ରାପ୍ତ ସେପରି ନିଧିରେ ଜମାଥିବା ଧନ ଭିନ୍ନ ଅନ୍ୟ ସାର୍ବଜନିକ ଧନର ଅଭିରକ୍ଷା, ଭାରତର ସାର୍ବଜନିକ ହିସାବକୁ ତାହାର ପ୍ରଦାନ ଓ ସେହି ହିସାବରୁ ଧନ ନିଷ୍କାସନ ଏବଂ ପୂର୍ବୋକ୍ତ ବିଷୟମାନଙ୍କର ସହ ସଂପୃକ୍ତ ବା ତତ୍‌ସହାୟକ ଅନ୍ୟ ସମସ୍ତ ବିଷୟ ସଂସଦ ପ୍ରଣୀତ ବିଧି ଦ୍ୱାରା ବିନିୟମିତ ହେବ ଏବଂ ଯେ ପର୍ଯ୍ୟନ୍ତ ଏଥି ନିମିତ୍ତ ଉପବନ୍ଧ ଏପରି ପ୍ରଣୀତ ହୋଇ ନ ଥାଏ ସେ ପର୍ଯ୍ୟନ୍ତ ରାଷ୍ଟ୍ରପତିଙ୍କ ପ୍ରଣୀତ ନିୟମାବଳୀ ଦ୍ୱାରା ବିନିୟମିତ ହେବ ।

(୨) ରାଜ୍ୟର ସଞ୍ଚିତ ନିଧିର ଏବଂ ରାଜ୍ୟର ଆକସ୍ମିକତା ନିଧିର ଅଭିରକ୍ଷା, ସେପରି ନିଧିମାନଙ୍କୁ ଧନ ସନ୍ଦାୟ, ତହିଁରୁ ଧନ ନିଷ୍କାସନ, ରାଜ୍ୟ ସରକାରଙ୍କ ଦ୍ୱାରା ବା ତାଙ୍କ ଉଦ୍ଦେଶ୍ୟରେ ପ୍ରାପ୍ତ ସେପରି ନିଧିରେ ଜମାଥିବା ଧନ ଭିନ୍ନ ଅନ୍ୟ ସାର୍ବଜନିକ ଧନର ଅଭିରକ୍ଷା, ରାଜ୍ୟର ସାର୍ବଜନିକ ହିସାବକୁ ତାହାର ପ୍ରଦାନ ଓ ସେହି ହିସାବରୁ ଧନ ନିଷ୍କାସନ ଏବଂ ପୂର୍ବୋକ୍ତ ବିଷୟମାନଙ୍କ ସହ ସଂପୃକ୍ତ ବା ତତ୍ ସହାୟକ ଅନ୍ୟ ସମସ୍ତ ବିଷୟ ରାଜ୍ୟର ବିଧାନମଣ୍ଡଳ ପ୍ରଣୀତ ବିଧି ଦ୍ୱାରା ବିନିୟମିତ ହେବ, ଏବଂ ଯେ ପର୍ଯ୍ୟନ୍ତ ଏଥି ନିମିତ୍ତ ଉପବନ୍ଧ ଏପରି ପ୍ରଣୀତ ହୋଇ ନ ଥାଏ ସେ ପର୍ଯ୍ୟନ୍ତ ରାଜ୍ୟର ରାଜ୍ୟପାଳଙ୍କ ଦ୍ୱାରା ପ୍ରଣୀତ ନିୟମାବଳୀ ଦ୍ୱାରା ବିନିୟମିତ ହେବ ।

ଲୋକସେବକ ଓ ନ୍ୟାୟାଳୟ-ଦ୍ୱାରା ପ୍ରାପ୍ତ ବାଦୀମାନଙ୍କ-ଦ୍ୱାରା ଜମା କରାଯିବା ଧନ ଓ ଅନ୍ୟ ଧନର ଅଭିରକ୍ଷା ।

୨୮୪ । (କ) ଯଥାସ୍ଥିତି, ଭାରତ ସରକାର ବା ରାଜ୍ୟ ସରକାରଦ୍ୱାରା ଉତ୍‌ଥାପିତ ବା ପ୍ରାପ୍ତ ରାଜସ୍ୱ ବା ସାର୍ବଜନିକ ଧନ ଭିନ୍ନ ସଂଘ ବା ରାଜ୍ୟର ବିଷୟ ସଂପର୍କରେ ନିଯୁକ୍ତ କୌଣସି ଅଫିସର ସେହି ସାମର୍ଥ୍ୟ ବଳରେ ପ୍ରାପ୍ତ କରିବା, ବା ତାଙ୍କଠାରେ ଜମା କରାଯିବା ସମସ୍ତ ଧନ,

(ଖ) କୌଣସି ବାଦ, ବିଷୟ, ହିସାବ ବା ବ୍ୟକ୍ତି ସଂପର୍କରେ ଭାରତ ରାଜ୍ୟକ୍ଷେତ୍ର ଅନ୍ତର୍ଗତ କୌଣସି ନ୍ୟାୟାଳୟ ଦ୍ୱାରା ପ୍ରାପ୍ତ ବା ତହିଁରେ ଜମା କରାଯିବା ସମସ୍ତ ଧନ,

ଯଥାସ୍ଥିତି, ଭାରତର ସାର୍ବଜନିକ ହିସାବକୁ ବା ରାଜ୍ୟର ସାର୍ବଜନିକ ହିସାବକୁ ପ୍ରଦାନ କରାଯିବ ।

ସଂଘର ସମ୍ପତ୍ତିରୁ ରାଜ୍ୟ କର ଛାଡ଼ ।

୨୮୫ । (୧) ସଂସଦ ବିଧି ଦ୍ୱାରା ଯେତେଦୂର ପର୍ଯ୍ୟନ୍ତ ଅନ୍ୟଥା ଉପବନ୍ଧିତ କରେ ତତ୍‌ବ୍ୟତିରେକେ ସଂଘର ସଂପତ୍ତି ରାଜ୍ୟଦ୍ୱାରା ବା ରାଜ୍ୟ ଅନ୍ତର୍ଗତ କୌଣସି ପ୍ରାଧିକାରୀଙ୍କ ଦ୍ୱାରା ଆରୋପିତ ସମସ୍ତ କରରୁ ଛାଡ଼ ପାଇବ ।

(୨) ସଂଘର ଯେଉଁ ସଂପତ୍ତି କୌଣସି କର ପାଇଁ ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଦାୟୀ ଥିଲା ବା ଦାୟୀ ବୋଲି ବିବେଚିତ ହେଉଥିଲା କୌଣସି ରାଜ୍ୟରେ ଉକ୍ତ କର ବସାଯିବା, ଚାଲୁ ରହିଥିବା ପର୍ଯ୍ୟନ୍ତ ଉକ୍ତ ରାଜ୍ୟରେ ସେହି କର ବସାଇବା ନିମିତ୍ତ ଖଣ୍ଡ (୧)ର କୌଣସି ବିଷୟ, ସଂସଦ ବିଧି ଦ୍ୱାରା ଅନ୍ୟଥା ଉପବନ୍ଧିତ ନ କରିବା ପର୍ଯ୍ୟନ୍ତ ରାଜ୍ୟ ଭିତରର କୌଣସି ପ୍ରାଧିକାରୀଙ୍କୁ ବାଧା ଦେବ ନାହିଁ ।

ମାଲ କ୍ରୟ ବା ବିକ୍ରୟ ଉପରେ କର ଆରୋପଣ ସମ୍ପର୍କରେ ନିର୍ବନ୍ଧନ ।

୨୮୬ । (୧) ମାଲର କ୍ରୟ ବା ବିକ୍ରୟ—

(କ) ରାଜ୍ୟ ବାହାରେ ହେଉଥିବା ଅବସ୍ଥାରେ, ଅଥବା

(ଖ) ଭାରତର ରାଜ୍ୟକ୍ଷେତ୍ର ଭିତରକୁ ବସ୍ତୁର ଆମଦାନୀ ବା ବାହାରକୁ ରପ୍ତାନୀ ହେଉଥିବା ଅବସ୍ଥାରେ,

ସେପରି କ୍ରୟ ବା ବିକ୍ରୟ ଉପରେ ରାଜ୍ୟର କୌଣସି ବିଧି କର ଆରୋପଣ କରିବ ନାହିଁ ଅଥବା କର ଆରୋପଣ ନିମିତ୍ତ ପ୍ରାଧିକାର ଦେବ ନାହିଁ ।

(୨) ଖଣ୍ଡ (୧) ରେ ଉଲ୍ଲିଖିତ ପ୍ରକାରମାନଙ୍କ ମଧ୍ୟରୁ କୌଣସି ପ୍ରକାରର ମାଲର କ୍ରୟ ବା ବିକ୍ରୟ କେଉଁ ସମୟରେ ସଂପାଦିତ ହୁଏ ତାହା ନିର୍ଦ୍ଧାରିତ କରିବା ନିମିତ୍ତ ସଂସଦ ବିଧିଦ୍ୱାରା ନୀତି ପ୍ରସ୍ତୁତ କରି ପାରିବ ।

(୩) ଯେତେଦୂର ପର୍ଯ୍ୟନ୍ତ କୌଣସି ରାଜ୍ୟର କୌଣସି ବିଧି ଆନ୍ତର୍ରାଜ୍ୟିକ ବ୍ୟାପାର ବା ବାଣିଜ୍ୟରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ବୋଲି ସଂସଦ କର୍ତ୍ତୃକ ବିଧି ଦ୍ୱାରା ଘୋଷିତ ହେଉଥିବା ମାଲର କ୍ରୟ ବା ବିକ୍ରୟ ଉପରେ କୌଣସି କର ଆରୋପ କରୁଥାଏ ବା ଆରୋପଣକୁ ପ୍ରାଧିକୃତ କରୁଥାଏ ସେହି ପର୍ଯ୍ୟନ୍ତ ସେହି ବିଧି ସେହି କରର ଉଦ୍‌ଗ୍ରହଣ ବ୍ୟବସ୍ଥା, ହାର ଏବଂ ଅନ୍ୟାନ୍ୟ ଭାର ସଂପର୍କରେ ସଂସଦ ବିଧିଦ୍ୱାରା ଯେପରି ନିର୍ବନ୍ଧନ ଓ ସର୍ତ୍ତମାନ ବିନିର୍ଦ୍ଦିଷ୍ଟ କରିବ ତହିଁର ବଶବର୍ତ୍ତୀ ହେବ ।

ବିଦ୍ୟୁତ୍‌ଶକ୍ତି ଉପରେ କର ଛାଡ଼ ।

୨୮୭ । ସଂସଦ ବିଧିଦ୍ୱାରା ଯେତେଦୂର ପର୍ଯ୍ୟନ୍ତ ଅନ୍ୟଥା ଉପବନ୍ଧିତ କରେ ତଦବ୍ୟତିରେକେ ରାଜ୍ୟର କୌଣସି ବିଧି,—

(କ) ଭାରତ ସରକାରଙ୍କ ଦ୍ୱାରା ଉପଭୁକ୍ତ ଅଥବା ଭାରତ ସରକାରଙ୍କ ଉପଭୋଗ ପାଇଁ ସେହି ସରକାରଙ୍କୁ ବିକ୍ରୀତ, ଅଥବା

(ଖ) କୌଣସି ରେଳପଥର ନିର୍ମାଣ, ରକ୍ଷଣାବେକ୍ଷଣ ବା ସଞ୍ଚାଳନରେ ଭାରତ ସରକାରଙ୍କ ଦ୍ୱାରା ବା ସେହି ରେଳପଥ ସଞ୍ଚାଳନ କରୁଥିବା କୌଣସି ରେଳ କଂପାନୀ ଦ୍ୱାରା ଉପଭୋଗ କରାଯାଇଥିବା ଅଥବା କୌଣସି ରେଳପଥର ନିର୍ମାଣ, ରକ୍ଷଣାବେକ୍ଷଣ ବା ସଞ୍ଚାଳନରେ ସରକାରଙ୍କ ଦ୍ୱାରା ବା ସେହି ରେଳପଥ ସଞ୍ଚାଳନ କରୁଥିବା କୌଣସି ରେଳ କଂପାନୀ ଦ୍ୱାରା ଉପଭୋଗ କରାଯାଇଥିବା ଅଥବା କୌଣସି ରେଳପଥର ନିର୍ମାଣ, ରକ୍ଷଣାବେକ୍ଷଣ ବା ସଞ୍ଚାଳନରେ ଉପଭୋଗ ପାଇଁ ସେହି ସରକାରଙ୍କୁ ବା ସେପରି କୌଣସି ରେଳ କଂପାନୀକୁ ବିକ୍ରୀତ,

ବିଦ୍ୟୁତ ଶକ୍ତିର (ସେହି ଶକ୍ତି କୌଣସି ସରକାରଙ୍କ ଦ୍ୱାରା ଉତ୍ପାଦିତ ହେଉଥାଉ ବା ଅନ୍ୟ ବ୍ୟକ୍ତି ଦ୍ୱାରା ହେଉଥାଉ) ଉପଭୋଗ ବା ବିକ୍ରୟ ଉପରେ କୌଣସି କର ଆରୋପଣ କରିବ ନାହିଁ ଏବଂ ବିଦ୍ୟୁତ ଶକ୍ତିର ବିକ୍ରୟ ଉପରେ ଆରୋପଣ କରୁଥିବା ବା ଆରୋପଣ ନିମିତ୍ତ ପ୍ରାଧିକାର ଦେଉଥିବା ଏପରି କୌଣସି ବିଧି ଏହା ସୁନିଶ୍ଚିତ କରିବ ଯେ ପ୍ରଚୁର ମାତ୍ରାରେ ବିଦ୍ୟୁତ ଶକ୍ତିର ଅନ୍ୟ ଉପଭୋକ୍ତା ଯେଉଁ ମୂଲ୍ୟ ଦିଅନ୍ତି ସେହି ମୂଲ୍ୟରୁ କରର ପରିମାଣ ବାଦ ଦିଆଗଲେ ଯାହା ହେବ ଭାରତ ସରକାରଙ୍କୁ ତାଙ୍କର ଉପଭୋଗ ପାଇଁ ଅଥବା କୌଣସି ରେଳ ପଥର ନିର୍ମାଣ, ରକ୍ଷଣାବେକ୍ଷଣ ବା ସଞ୍ଚାଳନରେ ଉପରୋକ୍ତ ଏପରି କୌଣସି ରେଳ କଂପାନୀକୁ ତାଙ୍କର ଉପଭୋଗ ପାଇଁ ବିକ୍ରୀତ ବିଦ୍ୟୁତ ଶକ୍ତିର ମୂଲ୍ୟ ତହିଁରୁ ଅଧିକ ହେବ ନାହିଁ ।

କେତେକ ସ୍ଥଳରେ ଜଳ ଏବଂ ବିଦ୍ୟୁତ୍-ଶକ୍ତି ସମ୍ପର୍କରେ ରାଜ୍ୟ ମାନଙ୍କ ଦ୍ୱାରା ଧାର୍ଯ୍ୟ କର ଛାଡ଼ ।

୨୮୮ । (୧) ରାଷ୍ଟ୍ରପତି ଆଦେଶଦ୍ୱାରା ଯେତେଦୂର ପର୍ଯ୍ୟନ୍ତ ଅନ୍ୟଥା ଉପବନ୍ଧିତ କରିବେ ତଦ୍‌ବ୍ୟତିରେକେ କୌଣସି ଅନ୍ତର୍ରାଜ୍ୟ ନଦୀ ବା ନଦୀ ଉପତ୍ୟକାର ନିୟନ୍ତ୍ରଣ ବା ବିକାଶ ସଂପର୍କରେ କୌଣସି ବିଦ୍ୟମାନ ବିଧି ଦ୍ୱାରା ଅଥବା ସଂସଦ ପ୍ରଣୀତ କୌଣସି ବିଧିଦ୍ୱାରା ପ୍ରତିଷ୍ଠିତ କୌଣସି ପ୍ରାଧିକାରୀ ଦ୍ୱାରା ସଞ୍ଚିତ, ଉତ୍‌ପାଦିତ ଉପଭୁକ୍ତ, ବଣ୍ଟିତ ବା ବିକ୍ରୀତ କୌଣସି ଜଳ ବା ବିଦ୍ୟୁତଶକ୍ତି ଉପରେ ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ପ୍ରବୃତ୍ତ ଥିବା ରାଜ୍ୟର କୌଣସି ବିଧି କର ଆରୋପଣ କରିବ ନାହିଁ ଅଥବା ଆରୋପିତ କରିବାପାଇଁ ଅଗ୍ରାଧିକାର ଦେବ ନାହିଁ ।

ସ୍ପଷ୍ଟୀକରଣ :— ଏହି ସଂବିଧାନ ପ୍ରାରମ୍ଭର ଅବ୍ୟହିତ ପୂର୍ବରୁ ରାଜ୍ୟ ଦ୍ୱାରା ପାରିତ ବା ପ୍ରଣୀତ ହୋଇଥିବା ଏବଂ ପୂର୍ବରୁ ନିରସିତ ହୋଇ ନ ଥିବା ବିଧି ବା ତହିଁର ଭାଗ ସେହି ସମୟରେ ପୂର୍ଣ୍ଣତଃ ବା ବିଶେଷ କ୍ଷେତ୍ରମାନଙ୍କରେ ପ୍ରବର୍ତ୍ତିତ ନ ଥିଲେ ମଧ୍ୟ ସେହି ବିଧି ଏହି ଖଣ୍ଡରେ "ରାଜ୍ୟର ପ୍ରବୃତ୍ତ ବିଧି" ଅଭିବ୍ୟକ୍ତିର ଅନ୍ତର୍ଭୁକ୍ତ ହେବ ।

(୨) ରାଜ୍ୟର ବିଧାନମଣ୍ଡଳ ବିଧିଦ୍ୱାରା ଖଣ୍ଡ (୧)ରେ ଉଲ୍ଲିଖିତ ହୋଇଥିବା କୌଣସି କର ଆରୋପଣ କରି ପାରିବ ବା ଆରୋପିତ କରିବା ପାଇଁ ପ୍ରାଧିକାର ଦେଇ ପାରିବ, ମାତ୍ର ଏପରି କୌଣସି ବିଧି ରାଷ୍ଟ୍ରପତିଙ୍କର ବିଚାର ପାଇଁ ଆରକ୍ଷିତ କରାଯିବା ପରେ ତାଙ୍କର ଅନୁମତିପ୍ରାପ୍ତ ହୋଇ ନ ଥିଲେ ପ୍ରଭାବୀ ହେବନାହିଁ ଏବଂ ଯଦି ଏପରି କୌଣସି ବିଧି କୌଣସି ପ୍ରାଧିକାରୀ ଦ୍ୱାରା ସେହି ବିଧି ଅଧୀନରେ ପ୍ରଣୀତ କରାଯିବା ନିୟମ ବା ଆଦେଶ ସାହାଯ୍ୟରେ ଏପରି କରର ହାର ଏବଂ ଅନ୍ୟ ପ୍ରାସଙ୍ଗିକ ବିଷୟ ନିର୍ଦ୍ଧାରଣ କରିବା ପାଇଁ ଉପବନ୍ଧ କରେ ତେବେ ସେହି ବିଧି ଏପରି କୌଣସି ନିୟମ ବା ଆଦେଶ ପ୍ରଣୟନ ପାଇଁ ରାଷ୍ଟ୍ରପତିଙ୍କ ପୂର୍ବ ସମ୍ମତି ନିମିତ୍ତ ଉପବନ୍ଧ କରିବ ।

ସଂଘର କର ଆରୋପଣରୁ ରାଜ୍ୟର ସମ୍ପତ୍ତି ଏବଂ ଆୟର ଛାଡ଼ ।

୨୮୯ । (୧) ରାଜ୍ୟର ସଂପତ୍ତି ଏବଂ ଆୟ ସଂଘର କର ଆରୋପଣରୁ ଛାଡ଼ ପାଇବ ।

(୨) ରାଜ୍ୟ ସରକାରଙ୍କ ଦ୍ୱାରା ବା ତାଙ୍କ ତରଫରୁ କରାଯାଇଥିବା କୌଣସି ପ୍ରକାରର ବ୍ୟାପାର ବା କାରବାର ସଂପର୍କରେ ଅଥବା ସଂପୃକ୍ତ କୌଣସି କାର୍ଯ୍ୟ ସଂପର୍କରେ କିମ୍ବା ସେହି ବ୍ୟାପାର ବା କାରବାର ପ୍ରୟୋଜନରେ ବ୍ୟବହାର ବା ଅଧିଭୋଗ କରାଯିବା କୌଣସି ସଂପତ୍ତି ସଂପର୍କରେ ଅଥବା ସେହି ସଂପର୍କରେ

ପ୍ରାପ୍ତ ବା ଉଦ୍‌ଭୂତ କୌଣସି ଆୟ ସଂପର୍କରେ ସଂସଦ ବିଧି ଦ୍ୱାରା ଯଦି ଓ ଯେତେଦୂର ପର୍ଯ୍ୟନ୍ତ କର ଆରୋପଣ କରିବା ବା କର ଆରୋପଣ କରିବା ପାଇଁ ପ୍ରାଧିକାର ଦେବାର ଉପବନ୍ଧ କରେ ତେବେ ସଂଘ ସେତେଦୂର ପର୍ଯ୍ୟନ୍ତ ତାହା କରିବା ନିମିତ୍ତ ଖଣ୍ଡ (୧) ର କୌଣସି ବିଷୟ ବାଧା ଦେବ ନାହିଁ ।

(୩) ଯେଉଁ ବ୍ୟାପାର ବା କାରବାର ଅଥବା ଯେଉଁ ଶ୍ରେଣୀର ବ୍ୟାପାର ବା କାରବାର ସରକାରଙ୍କର ସାଧାରଣ କୃତ୍ୟମାନଙ୍କ ଆନୁଷଙ୍ଗିକ ବୋଲି ସଂସଦ ବିଧି ଦ୍ୱାରା ଘୋଷଣା କରେ ତାହା ପ୍ରତି ଖଣ୍ଡ (୨)ର କୌଣସି ବିଷୟ ଲାଗୁ ହେବନାହିଁ ।

କେତେକ ବ୍ୟୟ ଓ ପେନସନ ସମ୍ପର୍କରେ ସମାଯୋଜନ ।

୨୯୦ । ଯେଉଁଠାରେ ଏହି ସଂବିଧାନର ଉପବନ୍ଧମାନଙ୍କ ଅଧୀନରେ କୌଣସି ନ୍ୟାୟାଳୟ ବା କମିଶନ ବ୍ୟୟ ଅଥବା ସଂବିଧାନ ପ୍ରାରମ୍ଭର ପୂର୍ବରୁ ଭାରତରେ ବ୍ରିଟିଶ ସମ୍ରାଟଙ୍କ ଅଧୀନରେ ବା ସେହି ପ୍ରାରମ୍ଭର ପରେ ସଂଘ ବା ରାଜ୍ୟର କାର୍ଯ୍ୟ ସଂପର୍କରେ ସେବା କରିଥିବା ବ୍ୟକ୍ତିଙ୍କୁ ବା ତାଙ୍କ ସଂପର୍କରେ ଦେୟ ପେନସନ ଭାରତର ସଞ୍ଚିତ ନିଧି ବା ରାଜ୍ୟର ସଞ୍ଚିତ ନିଧି ଉପରେ ଭାରିତ ହୋଇଥାଏ ସେଠାରେ–

(କ) ଭାରତର ସଞ୍ଚିତ ନିଧି ଉପରେ ଭାରିତ ହୋଇଥିବା ସ୍ଥଳେ ଯଦି ସେହି ନ୍ୟାୟାଳୟ ବା କମିଶନ କୌଣସି ରାଜ୍ୟର କୌଣସି ପୃଥକ ଆବଶ୍ୟକତା ପୂରଣ କରୁଥାଏ ବା ସେହି ବ୍ୟକ୍ତି କୌଣସି ରାଜ୍ୟର କାର୍ଯ୍ୟ ସଂପର୍କରେ ପୂର୍ଣ୍ଣତଃ ବା ଭାଗତଃ ସେବା କରିଥାନ୍ତି, ଅଥବା

(ଖ) ରାଜ୍ୟର ସଞ୍ଚିତ ନିଧି ଉପରେ ଭାରିତ ହୋଇଥିବା ସ୍ଥଳେ ଯଦି ସେହି ନ୍ୟାୟାଳୟ ବା କମିଶନ ସଂଘର ବା ଅନ୍ୟ ରାଜ୍ୟର କୌଣସି ପୃଥକ ଆବଶ୍ୟକତା ପୂରଣ କରୁଥାଏ ଅଥବା ସେହି ବ୍ୟକ୍ତି ସଂଘ ବା ଅନ୍ୟ ରାଜ୍ୟର କାର୍ଯ୍ୟ ସଂପର୍କରେ ପୂର୍ଣ୍ଣତଃ ବା ଭାଗତଃ ସେବା କରିଥାନ୍ତି,

ତେବେ ସେହି ବ୍ୟୟ ବା ପେନସନ ସଂପର୍କରେ ଯେତିକି କରାର କରାଯାଇଥାଏ ସେତିକି ବା କରାର ନଥିଲେ ଭାରତର ମୁଖ୍ୟ ନ୍ୟାୟାଧିପତିଙ୍କ ଦ୍ୱାରା ନିଯୁକ୍ତ ମଧ୍ୟସ୍ଥଙ୍କ ଦ୍ୱାରା ଯେତିକି ନିର୍ଦ୍ଧାରିତ କରାଯାଏ ସେତିକି ଅଂଶ-ଦାନ ସେହି ରାଜ୍ୟର ସଞ୍ଚିତ ନିଧି, ଅଥବା, ଯଥାସ୍ଥିତି, ଭାରତର ସଞ୍ଚିତ ନିଧି ବା ସେହି ଅନ୍ୟ ରାଜ୍ୟର ସଞ୍ଚିତ ନିଧି ଉପରେ ଭାରିତ ହେବ ଏବଂ ତାହା ତହିଁରୁ ପ୍ରଦାନ କରାଯିବ ।

କେତେକ ଦେବସ୍ୱ ନିଧିକୁ ବାର୍ଷିକ ଦେୟ।

୨୯୦ କ । ଛୟାଳିଶ ଲକ୍ଷ ପଚାଶ ହଜାର ଟଙ୍କାର ଏକ ଧନରାଶି ପ୍ରତ୍ୟେକ ବର୍ଷ କେରଳ ରାଜ୍ୟର ସଞ୍ଚିତ ନିଧି ଉପରେ ଭାରିତ ହୋଇ ତ୍ରିବାଙ୍କୁଡ଼ ଦେବସ୍ୱ ନିଧିକୁ ଦିଆଯିବ ଏବଂ ତେର ଲକ୍ଷ ପଚାଶ ହଜାର ଟଙ୍କାର ଏକ ଧନରାଶି ପ୍ରତ୍ୟେକ ବର୍ଷ ତାମିଲନାଡୁ ରାଜ୍ୟର ସଞ୍ଚିତନିଧି ଉପରେ ଭାରିତ ହୋଇ ତ୍ରିବାଙ୍କୁଡ଼ କୋଚିନ ରାଜ୍ୟରୁ ୧୯୫୬ ନଭେମ୍ବର ପହିଲା ଦିନ ସେହି ରାଜ୍ୟକୁ ଅନ୍ତରିତ ହୋଇଥିବା ରାଜ୍ୟକ୍ଷେତ୍ର ମଧ୍ୟରେ ଥିବା ହିନ୍ଦୁ ମନ୍ଦିର ଓ ପବିତ୍ର ସ୍ଥାନମାନଙ୍କର ରକ୍ଷଣାବେକ୍ଷଣ ନିମିତ୍ତ ସେହି ରାଜ୍ୟରେ ସ୍ଥାପିତ ଦେବସ୍ୱ ନିଧିକୁ ଦିଆଯିବ ।

୨୯୧ । ନିରସିତ

## ଅଧ୍ୟାୟ ୬-ଉଧାର ଗ୍ରହଣ

ଭାରତ ସରକାରଙ୍କ ଦ୍ୱାରା ଉଧାର ଗ୍ରହଣ ।

୨୯୨ । ଭାରତର ସଂଚିତନିଧିର ପ୍ରତିଭୂତିରେ ସଂସଦ ବିଭିନ୍ନ ସମୟରେ ବିଧି ଦ୍ୱାରା କୌଣସି ସୀମା ନିୟତ କଲେ ସେହି ସୀମା ମଧ୍ୟରେ ଉଧାର ଗ୍ରହଣ କରିବା ନିମିତ୍ତ ଏବଂ ସେପରି କୌଣସି ସୀମା ନିୟତ କରାଗଲେ ସେହି ସୀମା ମଧ୍ୟରେ ପ୍ରତ୍ୟାଭୂତି ଦେବା ନିମିତ୍ତ ସଂଘର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ରହିବ ।

ରାଜ୍ୟମାନଙ୍କ ଦ୍ୱାରା ଉଧାର ଗ୍ରହଣ ।

୨୯୩ । (୧) ଏହି ଅନୁଚ୍ଛେଦର ଉପବଂଧମାନଙ୍କର ବଶବର୍ତ୍ତୀ ରହି କୌଣସି ରାଜ୍ୟର ବିଧାନମଣ୍ଡଳ ବିଭିନ୍ନ ସମୟରେ ବିଧି ଦ୍ୱାରା କୌଣସି ସୀମା ନିୟତ କଲେ ସେହି ସୀମା ମଧ୍ୟରେ ରାଜ୍ୟର ସଂଚିତ ନିଧିର ପ୍ରତିଭୂତି ଉପରେ ଭାରତର ରାଜ୍ୟକ୍ଷେତ୍ର ଭିତରେ ଉଧାର ଗ୍ରହଣ କରିବା ନିମିତ୍ତ ଏବଂ ସେପରି କୌଣସି ସୀମା ନିୟତ କରାଗଲେ ସେହି ସୀମା ମଧ୍ୟରେ ପ୍ରତ୍ୟାଭୂତି ଦେବା ନିମିତ୍ତ ସେହି ରାଜ୍ୟର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ରହିବ ।

(୨) ସଂସଦ ପ୍ରଣୀତ ବିଧି ଦ୍ୱାରା ବା ଅଧୀନରେ ଯେପରି ବିହିତ ହୁଏ ସେପରି ସର୍ତ୍ତର ବଶବର୍ତ୍ତୀ ରହି ଭାରତ ସରକାର କୌଣସି ରାଜ୍ୟକୁ ଋଣ ଦେଇ ପାରିବେ ବା ଅନୁଚ୍ଛେଦ ୨୯୨ ଅଧୀନରେ ନିୟତ-କୌଣସି ସୀମାର ଉଲଂଘନ ନ କରି କୌଣସି ରାଜ୍ୟ ଦ୍ୱାରା ନିଆଯିବା ଋଣ ସଂପର୍କରେ ପ୍ରତ୍ୟାଭୂତି ଦେଇ ପାରିବେ, ଏବଂ ସେପରି ଋଣ ଦେବାର ପ୍ରୟୋଜନରେ ଆବଶ୍ୟକ ଧନରାଶି ଭାରତର ସଂଚିତ ନିଧି ଉପରେ ଭାରିତ ହେବ ।

(୩) କୌଣସି ରାଜ୍ୟକୁ ଭାରତ ସରକାର ବା ତାଙ୍କର ପୂର୍ବବର୍ତ୍ତୀ ସରକାର ଦେଇଥିବା କୌଣସି ଋଣର କୌଣସି ଭାଗ ଅଥବା ଭାରତ ସରକାର ବା ତାଙ୍କର ପୂର୍ବବର୍ତ୍ତୀ ସରକାରଙ୍କ ଦ୍ୱାରା ପ୍ରତ୍ୟାଭୂତି ଦିଆଯାଇଥିବା କୌଣସି ଋଣର ଭାଗ ବାକି ରହିଥିଲେ ସେହି ରାଜ୍ୟ ଭାରତ ସରକାରଙ୍କ ବିନା ସମ୍ମତିରେ କୌଣସି ଋଣ ଉଠାଇ ପାରିବ ନାହିଁ ।

(୪) ଖଣ୍ଡ(୩) ଅଧୀନରେ ସମ୍ମତି, ଭାରତ ସରକାର କୌଣସି ସର୍ତ୍ତ ଆରୋପଣ କରିବା ଉଚିତ ମନେ କଲେ ସେହି ସର୍ତ୍ତର ବଶବର୍ତ୍ତୀ ରହି ଦିଆଯାଇ ପାରିବ ।

## ଅଧ୍ୟାୟ ୩-ସମ୍ପତ୍ତି, ଚୁକ୍ତି, ଅଧିକାର, ଦାୟିତ୍ୱ, ବାଧ୍ୟତା ଏବଂ ବାଦ

କେତେକ ସ୍ଥଳରେ ସମ୍ପତ୍ତି, ଆସ୍ତି, ଅଧିକାର, ଦାୟିତ୍ୱ ଏବଂ ବାଧ୍ୟତାର ଉତ୍ତରାଧିକାର ।

୨୯୪ । ଏହି ସଂବିଧାନର ପ୍ରାରମ୍ଭ ପୂର୍ବରୁ ପାକିସ୍ଥାନ ଡୋମିନିୟନ ଅଥବା ପଶ୍ଚିମ ବଙ୍ଗ, ପୂର୍ବବଙ୍ଗ, ପଶ୍ଚିମ ପଂଜାବ, ପୂର୍ବ ପଂଜାବ ପ୍ରଦେଶ ମାନଙ୍କର ସୃଷ୍ଟି କାରଣରୁ କୌଣସି ସମାୟୋଜନ କରାଯାଇଥିଲେ ବା କରାଯିବାକୁ ଥିଲେ ତହିଁର ବଶବର୍ତ୍ତୀ ରହି ଏହି ସଂବିଧାନର ପ୍ରାରମ୍ଭଠାରୁ,—

(କ) ଯେଉଁ ସଂପତ୍ତି ଓ ଆସ୍ତି ଏହି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତ ଡୋମିନିୟନ ସରକାରଙ୍କ ପ୍ରୟୋଜନ ନିମିତ୍ତ ସମ୍ରାଟଙ୍କଠାରେ ନିହିତ ଥିଲା ଏବଂ ଯେଉଁ ସଂପତ୍ତି ଓ ଆସ୍ତି ଏହି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ପ୍ରତ୍ୟେକ ରାଜ୍ୟପାଳଙ୍କ ପ୍ରଦେଶ ସରକାରଙ୍କ ପ୍ରୟୋଜନ ନିମିତ୍ତ ସମ୍ରାଟଙ୍କ ଠାରେ ନିହିତ ଥିଲା ସେ ସମସ୍ତ ଯଥାକ୍ରମେ ସଂଘ ଏବଂ ତତ୍‌ସ୍ଥାନୀ ରାଜ୍ୟମାନଙ୍କଠାରେ ନିହିତ ହେବ;

(ଖ) ଭାରତ ଡୋମିନିୟନ ସରକାର ଏବଂ ପ୍ରତ୍ୟେକ ରାଜ୍ୟପାଳ ପ୍ରଦେଶ ସରକାରଙ୍କର ସମସ୍ତ ଅଧିକାର, ଦାୟିତ୍ୱ, ଓ ବାଧ୍ୟତା ହୁଏତ ତାହା କୌଣସି ଚୁକ୍ତିରୁ ଉଦ୍‌ଭୂତ ହୋଇଥାଉ ବା ଅନ୍ୟଥା ହୋଇଥାଉ, ଯଥାକ୍ରମେ ଭାରତ ସରକାର ଏବଂ ପ୍ରତ୍ୟେକ ତତ୍‌ସ୍ଥାନୀ ରାଜ୍ୟ ସରକାରଙ୍କର ଅଧିକାର, ଦାୟିତ୍ୱ ଓ ବାଧ୍ୟତା ହେବ ।

ଅନ୍ୟାନ୍ୟ ସ୍ଥଳରେ ସମ୍ପତ୍ତି, ଆସ୍ତି, ଅଧିକାର, ଦାୟିତ୍ୱ ଓ ବାଧ୍ୟତାର ଉତ୍ତରାଧିକାର ।

୨୯୫ । (୧) ଏହି ସଂବିଧାନର ପ୍ରାରମ୍ଭଠାରୁ,—

(କ) ଯେଉଁ ସମସ୍ତ ସଂପତ୍ତି ଓ ଆସ୍ତି ଏପରି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ପ୍ରଥମ ଅନୁସୂଚୀର ଭାଗ-ଖ ରେ ବିନିର୍ଦ୍ଦିଷ୍ଟ ରାଜ୍ୟର ତତ୍‌ସ୍ଥାନୀ କୌଣସି ଦେଶୀୟ ରାଜ୍ୟଠାରେ ନିହିତ ଥିଲା ସେହି ସଂପତ୍ତି ଓ ଆସ୍ତି ଏପରି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ ପ୍ରୟୋଜନ ନିମିତ୍ତ ଧାରଣ କରାଯାଇଥିଲା ତାହା ଯଦି ସେପରି ପ୍ରାରମ୍ଭପରେ ସଂଘ ସୂଚୀରେ ପ୍ରଗଣିତ କୌଣସି ବିଷୟ ସଂବଧରେ ସଂଘର ପ୍ରୟୋଜନ ହୁଏ ତେବେ ଭାରତ ସରକାର ସେହି ରାଜ୍ୟର ସରକାରଙ୍କ ସହିତ ସେହି ସଂପର୍କରେ କରିଥିବା ଚୁକ୍ତିର ବଶବର୍ତ୍ତୀ ରହି ସଂଘଠାରେ ତାହା ସବୁ ନିହିତ ହେବ ;

(ଖ) ପ୍ରଥମ ଅନୁସୂଚୀର ଭାଗ ଖ ରେ ବିନିର୍ଦ୍ଦିଷ୍ଟ ରାଜ୍ୟର ତତ୍‌ସ୍ଥାନୀ କୌଣସି ଦେଶୀୟ ରାଜ୍ୟ ସରକାରଙ୍କର ସମସ୍ତ ଅଧିକାର, ଦାୟିତ୍ୱ ଓ ବାଧ୍ୟତା କୌଣସି ଚୁକ୍ତିରୁ ଉଦ୍‌ଭୁତ ହୋଇଥାଉ ବା ଅନ୍ୟଥା ହୋଇଥାଉ ଯଦି ଏହି ପ୍ରାରମ୍ଭ ପୂର୍ବରୁ ଯେଉଁ ପ୍ରୟୋଜନ ନିମିତ୍ତ ସେହି ଅଧିକାର ଅର୍ଜିତ ହୋଇଥିଲା ଅଥବା ସେହି ଦାୟିତ୍ୱ ବା ବାଧ୍ୟତା ଗ୍ରହଣ କରା-ଯାଇଥିଲା ସେ ସବୁ ଏପରି ପ୍ରାରମ୍ଭପରେ ସଂଘ ସୂଚୀରେ ପ୍ରଗଣିତ କୌଣସି ବିଷୟ ସଂବଂଧରେ ଭାରତ ସରକାରଙ୍କ ପ୍ରୟୋଜନ ହୁଏ ତେବେ ଭାରତ ସରକାର ସେହି ରାଜ୍ୟର ସରକାରଙ୍କ ସହିତ ସେ ସଂପର୍କରେ କରିଥିବା ଚୁକ୍ତିର ବଶବର୍ତ୍ତୀ ରହି ସେ ସବୁ ଭାରତ ସରକାରଙ୍କର ଅଧିକାର, ଦାୟିତ୍ୱ ଓ ବାଧ୍ୟତା ହେବ ।

(୨) ଉପରୋକ୍ତ ଭାବରେ ବଶବର୍ତ୍ତୀ ରହି ପ୍ରଥମ ଅନୁସୂଚୀର ଭାଗ ଖ ରେ ବିନିର୍ଦ୍ଦିଷ୍ଟ ପ୍ରତ୍ୟେକ ରାଜ୍ୟର ସରକାର ଏହି ସଂବିଧାନର ପ୍ରାରମ୍ଭଠାରୁ ଖଣ୍ଡ (୧)ରେ ନିର୍ଦ୍ଦିଷ୍ଟ ହୋଇଥିବା ଭିନ୍ନ ଅନ୍ୟ ସମସ୍ତ ସଂପତ୍ତି ଓ ଆସ୍ତି ତଥା କୌଣସି ଚୁକ୍ତିରୁ ବା ଅନ୍ୟଥା ଉଦ୍‌ଭୂତ ସମସ୍ତ ଅଧିକାର, ଦାୟିତ୍ୱ ଓ ବାଧ୍ୟତା ବିଷୟରେ ତତ୍‌ସ୍ଥାନୀ ଦେଶୀୟ ରାଜ୍ୟ ସରକାରଙ୍କର ଉତ୍ତରାଧୀକାରୀ ହେବେ ।

ରାଜଗାମୀ, ବ୍ୟପଗତ ବା ସ୍ୱାମୀ ହୀନତ୍ୱ ହେବାରେ ପ୍ରୋଦ୍‌ଭୂତ ସମ୍ପତ୍ତି ।

୨୯୬ । ଏହାପରେ ଯେପରି ଉପବଂଧିତ ହୋଇଅଛି ତହିଁର ବଶବର୍ତ୍ତୀ ରହି ଏହି ସଂବିଧାନର ପ୍ରବର୍ତ୍ତନ ହୋଇ ନଥିଲେ ଭାରତ ରାଜ୍ୟକ୍ଷେତ୍ରର ଯେଉଁ ସଂପତ୍ତି ରାଜଗାମୀ ବା ବ୍ୟପଗତ ହେବାରେ ଅଥବା ଅଧିକାରଯୁକ୍ତ ସ୍ୱାମୀ ଅଭାବରୁ ସ୍ୱାମୀହୀନ ଭାବରେ, ଯଥାସ୍ଥିତି, ସମ୍ରାଟଙ୍କୁ ବା ଦେଶୀୟ ରାଜ୍ୟର ଶାସକଙ୍କୁ ପ୍ରୋଦ୍‌ଭୂତ ହୋଇଥାନ୍ତା ସେହି ସଂପତ୍ତି କୌଣସି ରାଜ୍ୟରେ ଅବସ୍ଥିତ ହୋଇଥିଲେ ସେହି ରାଜ୍ୟରେ ନିହିତ ହେବ ଏବଂ ଅନ୍ୟ ଯେ କୌଣସି ସ୍ଥଳରେ ସଂଘଠାରେ ନିହିତ ହେବ :

ପରନ୍ତୁ ଯେବେ କୌଣସି ସଂପତ୍ତି ଯେଉଁ ତାରିଖରେ ସମ୍ରାଟଙ୍କୁ ବା ଦେଶୀୟ ରାଜ୍ୟର ଶାସକଙ୍କୁ ପ୍ରୋଦ୍‌ଭୂତ ହୋଇଥାନ୍ତା ସେହି ତାରିଖରେ ଭାରତ ସରକାର ଅଥବା କୌଣସି ରାଜ୍ୟର ସରକାରଙ୍କର ଦଖଲରେ ଥିଲା ବା ନିୟନ୍ତ୍ରଣାଧୀନ ଥିଲା ତେବେ ଯେଉଁ ପ୍ରୟୋଜନ ନିମିତ୍ତ ସେହି ସଂପତ୍ତି ସେହି ସମୟରେ ବ୍ୟବହୃତ ହେଉଥିଲା ବା ଧାରଣ କରାଯାଇଥିଲା ସେହି ପ୍ରୟୋଜନ ସଂଘର ବା ରାଜ୍ୟର ହୋଇଥିଲେ ତଦନୁସାରେ ତାହା ସଂଘଠାରେ ବା ସେହି ରାଜ୍ୟଠାରେ ନିହିତ ହେବ ।

ସ୍ପଷ୍ଟୀକରଣ:—ଅନୁଚ୍ଛେଦ ୩୬୩ରେ "ଶାସକ" ଓ "ଦେଶୀୟ ରାଜ୍ୟ" ପଦମାନଙ୍କର ଯେଉଁ ଅର୍ଥ ରହିଅଛି, ଏହି ଅନୁଚ୍ଛେଦରେ ସେହି ଅର୍ଥ କରାଯିବ ।

ରାଜ୍ୟକ୍ଷେତ୍ରୀୟ ଜଳପ୍ରାଙ୍ଗଣ ବା ମହାଦ୍ୱୀପୀୟ ମଗ୍ନ ତଟଭୂମୀସ୍ଥିତ ମୂଲ୍ୟବାନ ପଦାର୍ଥମାନ ଏବଂ ଅନନ୍ୟ ଆର୍ଥିକକ୍ଷେତ୍ରର ବିଭବମାନ ସଂଘଠାରେ ନିହିତ ହେବ ।

୨୯୭ । (୧) ଭାରତର ରାଜ୍ୟକ୍ଷେତ୍ରୀୟ ଜଳପ୍ରାଙ୍ଗଣରେ ବା ମହାଦ୍ୱୀପୀୟ ମଗ୍ନ ତଟଭୂମିରେ ଅଥବା ଅନନ୍ୟ ଆର୍ଥିକ କ୍ଷେତ୍ର ମଧ୍ୟରେ ସମୁଦ୍ର ତଳେ ଥିବା ସମସ୍ତ ଭୂମି, ଖଣିଜ ଦ୍ରବ୍ୟ ଓ ଅନ୍ୟାନ୍ୟ ମୂଲ୍ୟବାନ ପଦାର୍ଥ ସଂଘଠାରେ ନିହିତ ହେବ ଏବଂ ସଂଘର ପ୍ରୟୋଜନ ନିମିତ୍ତ ଧାରଣ କରାଯିବ ।

(୨) ଭାରତର ଅନନ୍ୟ ଆର୍ଥିକ କ୍ଷେତ୍ରର ଅନ୍ୟ ସମସ୍ତ ସମ୍ବଳ ମଧ୍ୟ ସଂଘଠାରେ ନିହିତ ହେବ ଏବଂ ସଂଘର ପ୍ରୟୋଜନ ନିମିତ୍ତ ଧାରଣ କରାଯିବ ।

(୩) ସଂସଦ ଦ୍ୱାରା ପ୍ରଣୀତ ବିଧି ଦ୍ୱାରା ବା ଅଧୀନରେ ବିଭିନ୍ନ ସମୟରେ ଯେପରି ବିନିର୍ଦ୍ଦିଷ୍ଟ ହେବ ଭାରତର ରାଜ୍ୟକ୍ଷେତ୍ରୀୟ ଜଳ ପ୍ରାଙ୍ଗଣର, ମହାଦ୍ୱୀପୀୟ ମଗ୍ନ ତଟ ଭୂମିର, ଅନନ୍ୟ ଆର୍ଥିକ କ୍ଷେତ୍ରର ଓ ଅନ୍ୟ ସମୁଦ୍ରୀୟ କ୍ଷେତ୍ରର ସୀମା ତଦନୁସାରେ ହେବ ।

ବ୍ୟାପାର ଆଦି ଚଳାଇବାର କ୍ଷମତା ।

୨୯୮ । କୌଣସି ବ୍ୟାପାର ବା କାରବାର ଚଳାଇବା ପାଇଁ ଏବଂ ଯେ କୌଣସି ପ୍ରୟୋଜନ ନିମିତ୍ତ ସଂପତ୍ତିର ଅର୍ଜନ, ଧାରଣ, ବ୍ୟୟନ କରିବା ଏବଂ ଚୁକ୍ତି କରିବା ପାଇଁ ସଂଘର ଏବଂ ପ୍ରତ୍ୟେକ ରାଜ୍ୟର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ରହିବ :

ପରନ୍ତୁ,—

(କ) ଯେତେଦୂର ପର୍ଯ୍ୟନ୍ତ ସେହି ବ୍ୟାପାର ବା କାରବାର ବା ସେହି ପ୍ରୟୋଜନ ଏପରି ହୋଇ ନ ଥାଏ ଯାହା ସଂପର୍କରେ କି ସଂସଦ ବିଧି ପ୍ରଣୟନ କରିପାରେ ସେହି ପର୍ଯ୍ୟନ୍ତ ସଂଘର ଉକ୍ତ କାର୍ଯ୍ୟପାଳିକା କ୍ଷମତା ପ୍ରତ୍ୟେକ ରାଜ୍ୟରେ ସେହି ରାଜ୍ୟଦ୍ୱାରା ପ୍ରଣୀତ ବିଧାନର ବଶବର୍ତ୍ତୀ ହେବ ; ଏବଂ

(ଖ) ଯେତେଦୂର ପର୍ଯ୍ୟନ୍ତ ସେହି ବ୍ୟାପାର ବା କାରବାର ବା ସେହି ପ୍ରୟୋଜନ ଏପରି ହୋଇ ନ ଥାଏ ଯେଉଁ ବିଷୟରେ କି ସେହି ରାଜ୍ୟର ବିଧାନମଣ୍ଡଳ ବିଧି ପ୍ରଣୟନ କରିପାରେ ସେହି ପର୍ଯ୍ୟନ୍ତ ପ୍ରତ୍ୟେକ ରାଜ୍ୟର ଉକ୍ତ କାର୍ଯ୍ୟପାଳିକା କ୍ଷମତା ସଂସଦ ଦ୍ୱାରା ପ୍ରଣୀତ ବିଧାନର ବଶବର୍ତ୍ତୀ ହେବ ।

ଚୁକ୍ତି

୨୯୯ । (୧) ସଂଘ ବା ରାଜ୍ୟର କାର୍ଯ୍ୟପାଳିକା କ୍ଷମତାର ପ୍ରୟୋଗରେ କରାଯିବା ସମସ୍ତ ଚୁକ୍ତି, ଯଥାସ୍ଥିତି, ରାଷ୍ଟ୍ରପତିଙ୍କ ଦ୍ଵାରା ବା ସେହି ରାଜ୍ୟର ରାଜ୍ୟପାଳଙ୍କ ଦ୍ଵାରା କରାଯାଇଅଛି ବୋଲି ଅଭିବ୍ୟକ୍ତ ହେବ ଏବଂ ସେହି କ୍ଷମତାର ପ୍ରୟୋଗରେ କରାଯିବା ସେପରି ସମସ୍ତ ସଂବିଦା ଓ ସମ୍ପତ୍ତି ସଂବଂଧୀ ହସ୍ତାନ୍ତରଣ ପତ୍ର, ରାଷ୍ଟ୍ରପତିଙ୍କ ବା ରାଜ୍ୟପାଳଙ୍କ ତରଫରୁ ତାଙ୍କ ଦ୍ଵାରା ନିର୍ଦ୍ଦେଶିତ ବା ପ୍ରାଧିକୃତ ହେବା ବ୍ୟକ୍ତିଙ୍କ ଦ୍ଵାରା ଓ ରୀତିରେ ନିଷ୍ପାଦିତ ହେବ ।

(୨) ରାଷ୍ଟ୍ରପତି ବା ରାଜ୍ୟପାଳ ଏହି ସଂବିଧାନର ପ୍ରୟୋଜନ ନିମିତ୍ତ ଅଥବା ଏହା ପୂର୍ବରୁ ପ୍ରବର୍ତ୍ତନରେ ଥିବା ଭାରତ ସରକାରଙ୍କ ସଂବଂଧୀୟ କୌଣସି ଅଧିନିୟମର ପ୍ରୟୋଜନ ନିମିତ୍ତ କରାଯାଇଥିବା ବା ନିଷ୍ପାଦିତ ହୋଇଥିବା କୌଣସି ଚୁକ୍ତି ବା ହସ୍ତାନ୍ତରଣ ପତ୍ର ପାଇଁ ରାଷ୍ଟ୍ରପତି ବା ରାଜ୍ୟପାଳ ବ୍ୟକ୍ତିଗତ ଭାବରେ ଦାୟୀ ହେବେ ନାହିଁ ଅଥବା ସେମାନଙ୍କ ମଧ୍ୟରୁ କାହାରି ତରଫରୁ ସେପରି କୌଣସି ଚୁକ୍ତି ବା ହସ୍ତାନ୍ତରଣ ପତ୍ର କରିଥିବା ବା ନିଷ୍ପାଦନ କରିଥିବା କୌଣସି ବ୍ୟକ୍ତି ତହିଁ ସଂପର୍କରେ ବ୍ୟକ୍ତିଗତ ଭାବରେ ଦାୟୀ ହେବେ ନାହିଁ ।

ବାଦ ଏବଂ କାର୍ଯ୍ୟବାହୀ ।

୩୦୦ । (୧) ଭାରତ ସଂଘ ନାମରେ ଭାରତ ସରକାର ବାଦ ଆଣି ପାରିବେ ଅଥବା ତାଙ୍କ ବିରୁଦ୍ଧରେ ସେହି ନାମରେ ବାଦ ଅଣାଯାଇ ପାରିବ ଏବଂ କୌଣସି ରାଜ୍ୟ ନାମରେ ସେହି ରାଜ୍ୟର ସରକାର ବାଦ ଆଣିପାରିବେ ଅଥବା ତାଙ୍କ ବିରୁଦ୍ଧରେ ସେହି ନାମରେ ବାଦ ଅଣାଯାଇ ପାରିବ ଏବଂ ଏହି ସଂବିଧାନ ଅଧିନିୟମିତ ହୋଇ ନ ଥିଲେ ଯେଉଁ ପ୍ରକାର ବାଦ ଭାରତ ଡୋମିନିୟନ ଏବଂ ତତ୍‌ସ୍ଥାନୀ ପ୍ରଦେଶ ବା ତତ୍‌ସ୍ଥାନୀ ଦେଶୀୟ ରାଜ୍ୟ ଆଣି ପାରିଥାନ୍ତା ଅଥବା ତାହା ବିରୁଦ୍ଧରେ ଅଣାଯାଇ ପାରିଥାନ୍ତା ଏହି ସଂବିଧାନ ଦ୍ଵାରା ପ୍ରଦତ୍ତ କ୍ଷମତା ବଳରେ ସଂସଦ ବା ସେପରି ରାଜ୍ୟର ବିଧାନମଣ୍ଡଳ ଯେଉଁ ଅଧିନିୟମ ପ୍ରଣୟନ କରିବ ତହିଁର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ଭାରତ ସରକାର ବା ରାଜ୍ୟର ସରକାର ନିଜ ନିଜ ସମ୍ପର୍କୀୟ ବିଷୟ ସମ୍ବନ୍ଧରେ ଏପରି ବାଦ ଆଣି ପାରିବେ ବା ତାଙ୍କ ବିରୁଦ୍ଧରେ ଏପରି ବାଦ ଅଣାଯାଇ ପାରିବ ।

(୨) ଏହି ସଂବିଧାନର ପ୍ରାରମ୍ଭରେ–

(କ) ଯଦି ଭାରତ ଡୋମିନିୟନ ଏକ ପକ୍ଷ ଥାଇ କୌଣସି ବୈଧିକ କାର୍ଯ୍ୟବାହୀ ଲମ୍ବିତ ଥାଏ ତେବେ ସେହି କାର୍ଯ୍ୟବାହୀରେ ଉକ୍ତ ଡୋମିନିୟନ ସ୍ଥାନରେ ଭାରତ ସଙ୍ଘ ପ୍ରତିସ୍ଥାପିତ ହେଲା ବୋଲି ବିବେଚିତ ହେବ ; ଏବଂ

(ଖ) ଯଦି କୌଣସି ପ୍ରଦେଶ ବା କୌଣସି ଦେଶୀୟ ରାଜ୍ୟ ଏକ ପକ୍ଷ ଥାଇ କୌଣସି ବୈଧିକ କାର୍ଯ୍ୟବାହୀ ଲମ୍ବିତ ଥାଏ, ତେବେ ସେହି କାର୍ଯ୍ୟବାହୀରେ ସେହି ପ୍ରଦେଶ ବା ସେହି ଦେଶୀୟ ରାଜ୍ୟ ସ୍ଥାନରେ ତତ୍‌ସ୍ଥାନୀୟ ରାଜ୍ୟ ପ୍ରତିସ୍ଥାପିତ ହେଲା ବୋଲି ବିବେଚିତ ହେବ ।

## ଅଧ୍ୟାୟ ୪–ସମ୍ପତ୍ତି ପ୍ରତି ଅଧିକାର

ବିଧିର ପ୍ରାଧିକାର ବିନା ବ୍ୟକ୍ତିମାନେ ସଂପତ୍ତିରୁ ବଞ୍ଚିତ ନ ହେବା ।

୩୦୦ କ । ବିଧିର ପ୍ରାଧିକାର ବିନା କୌଣସି ବ୍ୟକ୍ତି ତାହାଙ୍କ ସମ୍ପତ୍ତିରୁ ବଞ୍ଚିତ ହେବେ ନାହିଁ ।

# ଭାଗ ୧୩

## ଭାରତର ରାଜ୍ୟକ୍ଷେତ୍ର ମଧ୍ୟରେ ବ୍ୟାପାର, ବାଣିଜ୍ୟ ଏବଂ ସମାଗମ

ବ୍ୟାପାର, ବାଣିଜ୍ୟ ଓ ସମାଗମର ସ୍ୱତନ୍ତ୍ରତା ।

୩୦୧ । ଏହି ଭାଗର ଉପବନ୍ଧମାନଙ୍କର ବଶବର୍ତ୍ତୀତାରେ ବ୍ୟାପାର, ବାଣିଜ୍ୟ ଓ ସମାଗମ ଭାରତ ରାଜ୍ୟକ୍ଷେତ୍ରରେ ସର୍ବତ୍ର ଅବାଧ ହେବ ।

ବ୍ୟାପାର, ବାଣିଜ୍ୟ ଓ ସମାଗମ ଉପରେ ନିର୍ବନ୍ଧନ ଆରୋପଣ ଲାଗି ସଂସଦର କ୍ଷମତା ।

୩୦୨ । ସଂସଦ ବିଧି ଦ୍ୱାରା ଏକ ରାଜ୍ୟ ଏବଂ ଅନ୍ୟ ରାଜ୍ୟମଧ୍ୟରେ ଅଥବା ଭାରତ ରାଜ୍ୟକ୍ଷେତ୍ରର ଯେ କୌଣସି ଅଂଶରେ ବ୍ୟାପାର, ବାଣିଜ୍ୟ ଓ ସମାଗମର ସ୍ୱତନ୍ତ୍ରତା ଉପରେ ଲୋକ ହିତ ଲାଗି ଯେପରି ଆବଶ୍ୟକ ହେବ, ସେପରି ନିର୍ବନ୍ଧନ ଆରୋପ କରିପାରିବ ।

ବ୍ୟାପାର ଏବଂ ବାଣିଜ୍ୟ ବିଷୟରେ ସଂଘ ଏବଂ ରାଜ୍ୟମାନଙ୍କର ବିଧାୟିନୀ କ୍ଷମତା ଉପରେ ନିର୍ବନ୍ଧନ ।

୩୦୩ । (୧) ଅନୁଚ୍ଛେଦ ୩୦୨ରେ ଯାହା କିଛି ଥିବା ସତ୍ତ୍ୱେ, ସପ୍ତମ ଅନୁସୂଚୀର କୌଣସି ସୂଚୀରେ ବ୍ୟାପାର ଓ ବାଣିଜ୍ୟ ସମ୍ପର୍କୀୟ କୌଣସି ପ୍ରବିଷ୍ଟି ଥିବା ଯୋଗୁଁ ଏକ ରାଜ୍ୟକୁ ଅନ୍ୟ ରାଜ୍ୟଠାରୁ ଅଧିମାନ ଦେଉଥିବା ବା ଦେବାଲାଗି ପ୍ରାଧିକୃତ କରୁଥିବା କୌଣସି ବିଧିର ପ୍ରଣୟନ ଲାଗି ସଂସଦର ବା ରାଜ୍ୟ ବିଧାନ ମଣ୍ଡଳର କ୍ଷମତା ରହିବ ନାହିଁ ।

(୨) ଖଣ୍ଡ (୧) ର କୌଣସି ବିଷୟ କୌଣସି ଅଧିମାନ ଦେଉଥିବା ବା ଦେବାଲାଗି ପ୍ରାଧିକୃତ କରୁଥିବା ଅଥବା କୌଣସି ବିଭେଦ କରୁଥିବା ବା କରିବା ଲାଗି ପ୍ରାଧିକୃତ କରୁଥିବା ବିଧିର ପ୍ରଣୟନରେ ସଂସଦକୁ ବାଧା ଦେବ ନାହିଁ ଯଦି ସେହି ବିଧି ଦ୍ୱାରା ଘୋଷଣା କରାଯାଏ ଯେ ଭାରତ ରାଜ୍ୟକ୍ଷେତ୍ରର କୌଣସି ଅଂଶରେ ପଦାର୍ଥମାନଙ୍କର ଦୁର୍ଲଭତା ଯୋଗୁ ଉଦ୍‌ଭୂତ କୌଣସି ପରିସ୍ଥିତିର ସମାଧାନର ପ୍ରୟୋଜନାର୍ଥ ସେପରି କରାଯିବା ଆବଶ୍ୟକ ।

ରାଜ୍ୟମାନଙ୍କ ମଧ୍ୟରେ ବ୍ୟାପାର, ବାଣିଜ୍ୟ ଓ ସମାଗମ ଉପରେ ନିର୍ବନ୍ଧନ ।

୩୦୪ । ଅନୁଚ୍ଛେଦ ୩୦୧ ବା ଅନୁଚ୍ଛେଦ ୩୦୩ରେ ଯାହା କିଛି ଥିବା ସତ୍ତ୍ୱେ, ରାଜ୍ୟର ବିଧାନମଣ୍ଡଳ ବିଧି ଦ୍ୱାରା–

(କ) ଅନ୍ୟ ରାଜ୍ୟରୁ ବା ସଂଘ ରାଜ୍ୟକ୍ଷେତ୍ରରୁ ଆୟାତ ହେଉଥିବା ବସ୍ତୁମାନଙ୍କ ଉପରେ ଏପରି କର ଆରୋପ କରିପାରିବ ଯାହାକି ସେହି ରାଜ୍ୟରେ ନିର୍ମିତ ବା ଉତ୍ପନ୍ନ ସେପରି ବସ୍ତୁମାନଙ୍କ ପ୍ରତି ପ୍ରଯୁଜ୍ୟ ହେଉଥିବ ମାତ୍ର ତାହା ଏପରି ହେବନାହିଁ ଯଦ୍ଦ୍ୱାରାକି ଆୟାତ ହେଉଥିବା ବସ୍ତୁ ଓ ସେପରି ନିର୍ମିତ ବା ଉତ୍ପନ୍ନ ବସ୍ତୁ ମଧ୍ୟରେ ବିଭେଦ ସୃଷ୍ଟି ହେବ ; ଏବଂ

(ଖ) ସେହି ରାଜ୍ୟ ସହିତ ବା ସେହି ରାଜ୍ୟ ମଧ୍ୟରେ ବ୍ୟାପାର, ବାଣିଜ୍ୟ ବା ସମାଗମର ସ୍ୱତନ୍ତ୍ରତା ଉପରେ ଲୋକହିତ ଲାଗି ଯେପରି ଆବଶ୍ୟକ ହେବ ସେପରି ଯୁକ୍ତିଯୁକ୍ତ ନିର୍ବନ୍ଧନ ଆରୋପ କରିପାରିବ :

ପରନ୍ତୁ ଖଣ୍ଡ (ଖ) ର ପ୍ରୟୋଜନ ଲାଗି କୌଣସି ବିଧେୟକ ବା ସଂଶୋଧନ ପୂର୍ବ ମଂଜୁରୀ ବିନା ରାଜ୍ୟର ବିଧାନମଣ୍ଡଳରେ ପୁରଃସ୍ଥାପିତ ବା ପ୍ରସ୍ତାବିତ କରାହେବ ନାହିଁ ।

ବିଦ୍ୟମାନ ବିଧିମାନଙ୍କର ଏବଂ ରାଜ୍ୟ ଏକାଧିପତ୍ୟ ନିମିତ୍ତ ଉପବନ୍ଧ କରୁଥିବା ବିଧିମାନଙ୍କର ରକ୍ଷଣ ।

୩୦୫ । ଅନୁଚ୍ଛେଦ ୩୦୧ ଓ ୩୦୩ରେ ଥିବା କୌଣସି ବିଷୟ କୌଣସି ବିଦ୍ୟମାନ ବିଧିର ଉପବନ୍ଧମାନଙ୍କୁ ରାଷ୍ଟ୍ରପତି ଯେଉଁ ମାତ୍ରାରେ ଆଦେଶ ଦ୍ୱାରା ଅନ୍ୟଥା ନିର୍ଦେଶ ଦେବେ ତଦ୍‌ଭିନ୍ନ ଅନ୍ୟ ପ୍ରକାରେ ପ୍ରଭାବିତ କରିବ ନାହିଁ ଏବଂ ଅନୁଚ୍ଛେଦ ୩୦୧ରେ ଥିବା କୌଣସି ବିଷୟ ସଂବିଧାନ (ଚତୁର୍ଥ ସଂଶୋଧନ) ଅଧିନିୟମ ୧୯୫୫ର ପ୍ରାରମ୍ଭ ପୂର୍ବରୁ ବିଦ୍ୟମାନ ଥିବା କୌଣସି ବିଧି ଯେତେଦୂର ପର୍ଯ୍ୟନ୍ତ ଅନୁଚ୍ଛେଦ ୧୯ର ଖଣ୍ଡ (୬)ର ଉପଖଣ୍ଡ (ii)ରେ ନିର୍ଦ୍ଦିଷ୍ଟ ହୋଇଥିବା ଭଳି କୌଣସି ବିଷୟ ସହିତ ସମ୍ବନ୍ଧିତ ହୋଇଥାଏ କିମ୍ବା ସେପରି କୌଣସି ବିଷୟ ସଂବଧରେ ସଂସଦକୁ ବା କୌଣସି ରାଜ୍ୟର ବିଧାନମଣ୍ଡଳକୁ କୌଣସି ବିଧି ପ୍ରଣୟନ କରିବାରୁ ବାରଣ କରୁଥାଏ ସେହି ପର୍ଯ୍ୟନ୍ତ ସେହି ବିଧିର ପ୍ରବର୍ତ୍ତନକୁ ପ୍ରଭାବିତ କରିବ ନାହିଁ ।

୩୦୬ । ନିରସିତ ।

୩୦୧ ଠାରୁ ୩୦୪ ପର୍ଯ୍ୟନ୍ତ ଅନୁଛେଦମାନଙ୍କର ପ୍ରୟୋଜନ ସମ୍ପାଦନ ପାଇଁ ପ୍ରାଧିକାରୀଙ୍କର ନିଯୁକ୍ତି ।

୩୦୭ । ସଂସଦ ଅନୁଛେଦ ୩୦୧, ୩୦୨,୩୦୩,ଓ ୩୦୪ର ପ୍ରୟୋଜନ ସଂପାଦନ ଲାଗି ଯେପରି ସମୁଚିତ ବିବେଚନା କରିବ ବିଧିଦ୍ୱାରା ସେପରି ପ୍ରାଧିକାରୀ ନିଯୁକ୍ତ କରିପାରିବ ଏବଂ ଯେପରି ଆବଶ୍ୟକ ମନେ କରିବ ସେପରି କ୍ଷମତା ଏବଂ ସେପରି କର୍ତ୍ତବ୍ୟ ନିଯୁକ୍ତ ପ୍ରାଧିକାରୀଙ୍କୁ ପ୍ରଦାନ କରି ପାରିବ ।

# ଭାଗ ୧୪

## ସଂଘ ଓ ରାଜ୍ୟମାନଙ୍କ ଅଧୀନରେ ସେବା

### ଅଧ୍ୟାୟ ୧—ସେବା

ନିର୍ବାଚନ

୩୦୮ । ପ୍ରସଙ୍ଗକ୍ରମେ ଅନ୍ୟଥା ଆବଶ୍ୟକ ହେଉ ନ ଥିଲେ ଏହି ଭାଗରେ "ରାଜ୍ୟ" ପଦ ମଧ୍ୟରେ ଜାମ୍ମୁ ଓ କାଶ୍ମୀର ରାଜ୍ୟ ଅନ୍ତର୍ଗତ ନୁହେଁ ।

ସଂଘ ବା ରାଜ୍ୟର ସେବା କରୁଥିବା ବ୍ୟକ୍ତିମାନଙ୍କର ଭର୍ତ୍ତି ଓ ସେବାର ସର୍ତ୍ତ ।

୩୦୯ । ଏହି ସଂବିଧାନର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ସମୁଚିତ ବିଧାନମଣ୍ଡଳର ଅଧିନିୟମ ସଂଘ ବା କୌଣସି ରାଜ୍ୟର କାର୍ଯ୍ୟ ସମ୍ବନ୍ଧୀୟ ଲୋକ ସେବା ଓ ପଦରେ ବିଷୟରେ ଭର୍ତ୍ତି ହେବା ବିଷୟ ଏବଂ ସେଥିରେ ନିଯୁକ୍ତ ବ୍ୟକ୍ତିମାନଙ୍କର ସେବାର ସର୍ତ୍ତାବଳୀ ବିନିୟମିତ କରିପାରିବ :

ପରନ୍ତୁ ଏହି ଅନୁଚ୍ଛେଦ ଅଧୀନରେ ସମୁଚିତ ବିଧାନମଣ୍ଡଳ ଦ୍ୱାରା ବା ଅଧୀନରେ ଏଥି ନିମିତ୍ତ ଉପବନ୍ଧ ପ୍ରଣୀତ ନହେବା ପର୍ଯ୍ୟନ୍ତ ସଂଘର କାର୍ଯ୍ୟ ସମ୍ବନ୍ଧୀୟ ସେବା ଓ ପଦ ବିଷୟରେ ରାଷ୍ଟ୍ରପତି ବା ସେ ଯାହାଙ୍କୁ ନିର୍ଦ୍ଦେଶ ଦେବେ ସେହି ବ୍ୟକ୍ତି ଏବଂ ରାଜ୍ୟର କାର୍ଯ୍ୟ ସଂବଂଧୀୟ ସେବା ଓ ପଦ ବିଷୟରେ ରାଜ୍ୟର ରାଜ୍ୟପାଳ ବା ସେ ଯାହାଙ୍କୁ ନିର୍ଦ୍ଦେଶ ଦେବେ ସେହି ବ୍ୟକ୍ତି ସେହି ସେବା ଓ ପଦ ପାଇଁ ଭର୍ତ୍ତି ହେବା ବିଷୟ ଏବଂ ସେଥିରେ ନିଯୁକ୍ତ ବ୍ୟକ୍ତିମାନଙ୍କର ସେବାର ସର୍ତ୍ତାବଳୀ ବିନିୟମିତ କରିବା ଲାଗି ନିୟମ ପ୍ରଣୟନ କରିବାକୁ ସକ୍ଷମ ହେବେ ଏବଂ ଏପରି ପ୍ରଣୀତ କୌଣସି ନିୟମ ସେପରି କୌଣସି ଅଧିନିୟମର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ପ୍ରଭାବୀ ହେବ ।

ସଂଘ ବା ରାଜ୍ୟର ସେବା କରୁଥିବା ବ୍ୟକ୍ତିମାନଙ୍କର ପଦାବଧି ।

୩୧୦ । (୧) ଏହି ସଂବିଧାନରେ ଅଭିବ୍ୟକ୍ତ ରୂପେ ଉପବଂଧିତ ହୋଇଥିବା ବିଷୟ ବ୍ୟତିରେକେ, ସଂଘର ପ୍ରତିରକ୍ଷା ସେବା ବା ସିଭିଲ ସେବା ବା ଅଖିଳ ଭାରତୀୟ ସେବାର ସଦସ୍ୟ ଅଥବା ସଂଘ ଅଧୀନରେ ପ୍ରତିରକ୍ଷା ସମ୍ବନ୍ଧୀୟ କୌଣସି ପଦ ବା କୌଣସି ସିଭିଲ ପଦ ଧାରଣ କରୁଥିବା ପ୍ରତ୍ୟେକ ବ୍ୟକ୍ତି ରାଷ୍ଟ୍ରପତିଙ୍କର ସନ୍ତୋଷାବଧି ପଦ ଧାରଣ କରିବେ ଏବଂ ରାଜ୍ୟର ସିଭିଲ ସେବାର ସଦସ୍ୟ ହୋଇଥିବା କିମ୍ବା ରାଜ୍ୟ ଅଧୀନରେ ସିଭିଲ ପଦ ଧାରଣ କରୁଥିବା ପ୍ରତ୍ୟେକ ବ୍ୟକ୍ତି ରାଜ୍ୟପାଳଙ୍କର ସନ୍ତୋଷାବଧି ପଦ ଧାରଣ କରିବେ ।

(୨) ସଂଘ ବା ରାଜ୍ୟର ଅଧୀନରେ ସୈନିକ ପଦଧାରୀ କୌଣସି ବ୍ୟକ୍ତି ରାଷ୍ଟ୍ରପତିଙ୍କ କିମ୍ବା, ଯଥାସ୍ଥିତି, ରାଜ୍ୟପାଳଙ୍କ ସନ୍ତୋଷାବଧି ପଦଧାରଣ କରୁଥିବା ସତ୍ତ୍ୱେ, ଯଦି ସଂବିଦା ଦ୍ୱାରା ପ୍ରତିରକ୍ଷା ସେବା କିମ୍ବା ଅଖିଳ ଭାରତୀୟ ସେବା କିମ୍ବା ସଂଘ ବା ରାଜ୍ୟର ସିଭିଲ ସେବାର ସଦସ୍ୟ ହୋଇ ନଥିବା କୌଣସି ବ୍ୟକ୍ତି ଏହି ସଂବିଧାନ ଅଧୀନରେ ସେପରି ପଦ ଧାରଣ କରିବା ଲାଗି ନିଯୁକ୍ତ ହୁଅନ୍ତି ଏବଂ ଯଦି, ଯଥାସ୍ଥିତି, ରାଷ୍ଟ୍ରପତି ବା ରାଜ୍ୟପାଳ, ବିଶେଷ ଯୋଗ୍ୟତା ଥିବା ବ୍ୟକ୍ତିଙ୍କର ସେବା ପ୍ରାପ୍ତ କରିବା ନିମିତ୍ତ ତାହା ଆବଶ୍ୟକ ମନେ କରନ୍ତି ତାହାହେଲେ ସେହି ପଦ କରାର କରାଯାଇଥିବା କାଳର ଅବସାନ ପୂର୍ବରୁ ଶେଷ କରି ଦିଆଗଲେ କିମ୍ବା ତାଙ୍କର କୌଣସି ଅସଦାଚାର ସଙ୍ଗେ ଅସମ୍ପୃକ୍ତ କାରଣ ବଶତଃ ତାଙ୍କ ପଦ ରିକ୍ତ କରିବା ପାଇଁ ଆବଶ୍ୟକ କରାଗଲେ ତାଙ୍କୁ କ୍ଷତିପୂରଣ ଦିଆଯିବା ଲାଗି ଚୁକ୍ତିରେ ଉପବଂଧିତ ହୋଇପାରିବ ।

ସଂଘ ବା ରାଜ୍ୟ ଅଧୀନରେ ସିଭିଲ ପଦବୀରେ ନିଯୁକ୍ତ ବ୍ୟକ୍ତି-ମାନଙ୍କର ପଦଚ୍ୟୁତି, ଦୂରୀକରଣ ବା ପଦହ୍ରାସ ।

୩୧୧ । (୧) ସଂଘର ସିଭିଲ ସେବା ବା ଅଖିଳ ଭାରତୀୟ ସେବା ବା ରାଜ୍ୟର ସିଭିଲ ସେବାର ସଦସ୍ୟ ହୋଇଥିବା କୌଣସି ବ୍ୟକ୍ତି କିମ୍ବା ସଂଘ ବା ରାଜ୍ୟ ଅଧୀନରେ ସିଭିଲ ପଦଧାରଣ କରୁଥିବା କୌଣସି ବ୍ୟକ୍ତି ତାଙ୍କୁ ନିଯୁକ୍ତ କରିଥିବା ପ୍ରାଧିକାରୀଙ୍କର ଅଧୀନସ୍ଥ କୌଣସି ପ୍ରାଧିକାରୀଙ୍କ ଦ୍ୱାରା ପଦଚ୍ୟୁତ ବା ଦୂରୀକୃତ ହେବେ ନାହିଁ ।

(୨) ପୂର୍ବୋକ୍ତ ପ୍ରକାରର କୌଣସି ବ୍ୟକ୍ତିଙ୍କୁ ପଦଚ୍ୟୁତ ବା ପଦରୁ ଦୂରୀକୃତ ଅଥବା ପଦହ୍ରାସ କରାଯିବ ନାହିଁ ଯେ ପର୍ଯ୍ୟନ୍ତ କି ତାଙ୍କ ସଂପର୍କରେ ଏପରି ଯାଞ୍ଚ କରା ନ ଯାଇଥାଏ ଯହିଁରେ କି ତାଙ୍କ ବିରୁଦ୍ଧରେ ଥିବା ଦୋଷାରୋପ ତାହାଙ୍କୁ ଅବଗତ କରାଇ ଦିଆଯାଇଥିବ ଏବଂ ସେହି ଦୋଷାରୋପ ସମ୍ବନ୍ଧରେ ଶୁଣାଣିର ଯୁକ୍ତି ଯୁକ୍ତ ସୁଯୋଗ ତାହାଙ୍କୁ ଦିଆଯାଇଥିବ :

ପରନ୍ତୁ ଯେଉଁଠାରେ ଏପରି ଯାଞ୍ଚ ପରେ ତାଙ୍କ ଉପରେ ଏପରି କୌଣସି ଶାସ୍ତି ଆରୋପ କରାଯିବା ପ୍ରସ୍ତାବିତ ହୁଏ ସେଠାରେ ଏପରି ଶାସ୍ତି ସେହି ଯାଞ୍ଚ ସମୟରେ ଦିଆଯାଇଥିବା ସାକ୍ଷ୍ୟର ଆଧାର ଉପରେ

ଆରୋପ କରାଯାଇପାରିବ ଏବଂ ସେହି ବ୍ୟକ୍ତିଙ୍କୁ ପ୍ରସ୍ତାବିତ ଶାସ୍ତି ବିରୁଦ୍ଧରେ ଅଭ୍ୟାବେଦନ କରିବା ପାଇଁ ସୁଯୋଗ ଦେବା ଆବଶ୍ୟକ ହେବ ନାହିଁ:

ଅଧିକନ୍ତୁ—

(କ) ଯେଉଁଠାରେ କୌଣସି ବ୍ୟକ୍ତି ଏପରି ଆଚରଣ ଯୋଗୁଁ ପଦଚ୍ୟୁତ ବା ଦୂରୀକୃତ ଅଥବା ପଦହ୍ରାସ ହୋଇଥାନ୍ତି, ଯାହା ସମ୍ପର୍କରେ କି ଆପରାଧିକ ଆରୋପ କରାଯାଇ ତହିଁରେ ସେ ସିଦ୍ଧଦୋଷ ହୋଇଥାନ୍ତି, କିମ୍ବା

(ଖ) ଯେଉଁଠାରେ କୌଣସି ବ୍ୟକ୍ତିଙ୍କୁ ପଦଚ୍ୟୁତ ବା ପଦରୁ ଦୂରୀକୃତ କରିବା ପାଇଁ ବା ତାହାଙ୍କୁ ପଦହ୍ରାସ କରିବା ପାଇଁ କ୍ଷମତା ପାଇଥିବା ପ୍ରାଧିକାରୀ ନିଜେ କାରଣ ଲିପିବଦ୍ଧ କରନ୍ତି ଏବଂ ତାଙ୍କର ହୃଦବୋଧ ହୁଏ ଯେ ସେହି ବ୍ୟକ୍ତିଙ୍କୁ କାରଣ ଦର୍ଶାଇବା ପାଇଁ ସୁଯୋଗ ଦେବା ଯୁକ୍ତିଯୁକ୍ତ ଭାବରେ ସମ୍ଭବପର ନୁହେଁ, କିମ୍ବା

(ଗ) ଯେଉଁଠାରେ, ଯଥାସ୍ଥିତି, ରାଷ୍ଟ୍ରପତି ବା ରାଜ୍ୟପାଳଙ୍କର ହୃଦବୋଧ ହୁଏ ଯେ ରାଜ୍ୟର ସୁରକ୍ଷା ଦୃଷ୍ଟେ ସେହି ବ୍ୟକ୍ତିଙ୍କୁ ଏପରି ସୁଯୋଗ ଦେବା ଇଷ୍ଟକର ନୁହେଁ,

ସେଠାରେ ଏହି ଖଣ୍ଡ ଲାଗୁ ହେବ ନାହିଁ ।

(୩) ଯଦି ପୂର୍ବୋକ୍ତ ବିଧିମତେ କୌଣସି ବ୍ୟକ୍ତି ସମ୍ପର୍କରେ ଏହି ପ୍ରଶ୍ନ ଉଠେ ଯେ ଖଣ୍ଡ (୨) ରେ ନିର୍ଦ୍ଦେଶିତ ହୋଇଥିବା ମତେ ଏପରି ଯାଞ୍ଚ କରିବା ଯୁକ୍ତିଯୁକ୍ତ ଭବରେ ସମ୍ଭବପର କି ନୁହେଁ ତାହାହେଲେ ସେହି ବ୍ୟକ୍ତିଙ୍କୁ ପଦଚ୍ୟୁତ ବା ଦୂରୀକୃତ ଅଥବା ପଦହ୍ରାସ କରିବା ପାଇଁ ଯେଉଁ ପ୍ରାଧିକାରୀଙ୍କର କ୍ଷମତା ଥିବ ସେହି ପ୍ରାଧିକାରୀ ସେ ବିଷୟରେ ଯାହା ବିନିଶ୍ଚୟ କରିବେ ତାହା ଅନ୍ତିମ ହେବ ।

**ଅଖିଳ ଭାରତୀୟ ସେବା ।**

୩୧୨ । (୧) ଭାଗ ୬ର ଅଧ୍ୟାୟ ୬ରେ ବା ଭାଗ ୧୧ରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ରାଜ୍ୟ ପରିଷଦ ଯଦି ତହିଁରେ ଉପସ୍ଥିତ ଥିବା ଓ ଭୋଟ ଦେଇଥିବା ସଦସ୍ୟମାନଙ୍କର ଅନ୍ୟୂନ ଦ୍ୱିତୃତୀୟାଂଶଙ୍କ ଦ୍ୱାରା ସମର୍ଥିତ ସଙ୍କଳ୍ପ ଦ୍ୱାରା ଘୋଷଣା କରେ ଯେ ରାଷ୍ଟ୍ରୀୟ ହିତ ଦୃଷ୍ଟିରୁ ଏପରି କରାଯିବା ଆବଶ୍ୟକ ଓ ଇଷ୍ଟକର ଅଟେ ତାହା ହେଲେ ସଂସଦ ବିଧି ଦ୍ୱାରା ସଂଘ ଓ ରାଜ୍ୟମାନଙ୍କ ପାଇଁ ସମ୍ମିଳିତ ଏକ ବା ଅଧିକ ଅଖିଳ ଭାରତୀୟ ସେବା (ଅଖିଳ ଭାରତୀୟ ନ୍ୟାୟିକ ସେବା ସମେତ) ସୃଷ୍ଟି କରିବା ଲାଗି ଉପବନ୍ଧ କରି ପାରିବ ଏବଂ ଏହି ଅଧ୍ୟାୟର ବଶବର୍ତ୍ତୀ ରହି ସେପରି ସେବା ଲାଗି ନିଯୁକ୍ତିକୁ ଏବଂ ତହିଁରେ ନିଯୁକ୍ତ ବ୍ୟକ୍ତିମାନଙ୍କର ସେବାର ସର୍ତ୍ତାବଳୀକୁ ବିନିୟମିତ କରି ପାରିବ ।

(୨) ଏହି ସଂବିଧାନର ପ୍ରାରମ୍ଭରେ ଭାରତ ପ୍ରଶାସନ ସେବା, ଭାରତ ପୁଲିସ ସେବା ନାମରେ ଜ୍ଞାତ ସେବାମାନ ଏହି ଅନୁଚ୍ଛେଦ ଅନୁସାରେ ସଂସଦ ଦ୍ୱାରା ସୃଷ୍ଟ ସେବା ବୋଲି ବିବେଚିତ ହେବ ।

(୩) ଖଣ୍ଡ (୧)ରେ ନିର୍ଦ୍ଦିଷ୍ଟ ଅଖିଳ ଭାରତୀୟ ନ୍ୟାୟିକ ସେବାରେ ଅନୁଚ୍ଛେଦ ୨୩୬ରେ ଯଥା ସଂଜ୍ଞାକୃତ ଜିଲା ନ୍ୟାୟାଧୀଶ ପଦ ଠାରୁ ନ୍ୟୂନ କୌଣସି ପଦ ଅନ୍ତର୍ଗତ ହେବ ନାହିଁ ।

(୪) ଉପରୋକ୍ତ ଅଖିଳ ଭାରତୀୟ ନ୍ୟାୟିକ ସେବା ସୃଷ୍ଟି କରିବା ନିମିତ୍ତ ଉପବନ୍ଧ କରୁଥିବା ବିଧିରେ ସେହି ବିଧିକୁ ପ୍ରଭାବୀ କରିବା ନିମିତ୍ତ ଯେପରି ଆବଶ୍ୟକ ହେବ ଭାଗ ୬ର ଅଧ୍ୟାୟ ୬ର ସଂଶୋଧନ ନିମିତ୍ତ ସେପରି ଉପବନ୍ଧ ତହିଁରେ ରହି ପାରିବ ଏବଂ ଏପରି କୌଣସି ବିଧି ଅନୁଚ୍ଛେଦ ୩୬୮ର ପ୍ରୟୋଜନାର୍ଥ ଏହି ସଂବଧାନର ସଂଶୋଧନ ବୋଲି ବବେଚିତ ହେବ ନାହିଁ ।

କେତେକ ସେବାର ଅଫିସରମାନଙ୍କର ସେବା ସର୍ତ୍ତାବଳୀର ପରିବର୍ତ୍ତନ ବା ପ୍ରତିସଂହରଣ ନିମିତ୍ତ ସଂସଦର କ୍ଷମତା ।

୩୧୨କ । (୧) ସଂସଦ ବିଧିଦ୍ୱାରା—

(କ) ଯେଉଁ ବ୍ୟକ୍ତିମାନେ ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ସ ବା ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ସ ଇନ୍ କାଉନସିଲ୍ ଦ୍ୱାରା ଏହି ସଂବିଧାନର ପ୍ରାରମ୍ଭ ପୂର୍ବରୁ ଭାରତରେ ସମ୍ରାଟଙ୍କ ଅଧୀନରେ କୌଣସି ସିଭିଲ ସେବାରେ ନିଯୁକ୍ତ ହୋଇ ଏହି ସଂବିଧାନ (ଅଷ୍ଟବିଂଶ ସଂଶୋଧନ) ଅଧିନିୟମ, ୧୯୭୨ର ପ୍ରାରମ୍ଭ ସମୟରେ ବା ତତ୍‌ପରେ ଭାରତ ସରକାରଙ୍କ ଅଧୀନରେ ବା କୌଣସି ରାଜ୍ୟ ସରକାରଙ୍କ ଅଧୀନରେ କୌଣସି ସେବା ବା ପଦରେ ଥାଇ କାର୍ଯ୍ୟ କରୁଥିବେ ସେହି ବ୍ୟକ୍ତିମାନଙ୍କର ପରିତୋଷିକ, ଛୁଟି ଓ ପେନ୍‌ସନକୁ ଏବଂ ଶୃଙ୍ଖଳାଗତ ବିଷୟ ସମ୍ବନ୍ଧୀୟ ଅଧିକାରକୁ ହୁଏତ ଭୂତଲକ୍ଷୀ ଭାବେ ବା ଭବିଷ୍ୟଲକ୍ଷୀ ଭାବେ ପରିବର୍ତ୍ତିତ ବା ପ୍ରତିସଂହୃତ କରିପାରିବ;

(ଖ) ଯେଉଁ ବ୍ୟକ୍ତିମାନେ ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ସ ବା ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ସ୍ ଇନ୍ କାଉନ୍‌ସିଲ ଦ୍ୱାରା ଏହି ସଂବିଧାନର ପ୍ରାରମ୍ଭ ପୂର୍ବରୁ ଭାରତର ସମ୍ରାଟଙ୍କ ଅଧୀନରେ କୌଣସି ସିଭିଲ ସେବାରେ ନିଯୁକ୍ତ ହୋଇ ଏହି ସଂବିଧାନ (ଅଷ୍ଟବିଂଶ ସଂଶୋଧନ) ଅଧିନିୟମ, ୧୯୭୨ର ପ୍ରାରମ୍ଭ ପୂର୍ବରୁ ସେବା ନିବୃତ୍ତ ବା ଅନ୍ୟଥା ସେବା ରହିତ ହୋଇଥାନ୍ତି ସେହି ବ୍ୟକ୍ତିମାନଙ୍କର ପେନ୍‌ସନ ସଂପର୍କୀୟ ସେବା ସର୍ତ୍ତାବଳୀକୁ ହୁଏତ ଭୂତଲକ୍ଷୀ ବା ଭବିଷ୍ୟଲକ୍ଷୀ ଭାବେ ପରିବର୍ତ୍ତିତ ବା ପ୍ରତିସଂହୃତ କରିପାରିବ :

ପରନ୍ତୁ ଏପରି କୌଣସି ବ୍ୟକ୍ତି ଯେ କି ଉଚ୍ଚତମ ନ୍ୟାୟାଳୟର ବା କୌଣସି ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧୀପତି ବା ଅନ୍ୟ ନ୍ୟାୟାଧୀଶ, ଭାରତର କଂପ୍‌ଟ୍ରୋଲର ଓ ଅଡିଟର ଜେନେରାଲ, ୟୁନିୟନ ବା କୌଣସି ରାଜ୍ୟ ପବ୍ଲିକ ସର୍ଭିସ୍ କମିଶନର ଅଧ୍ୟକ୍ଷ୍ୟ ବା ମୁଖ୍ୟ ନିର୍ବାଚନ କମିଶନର ପଦ ଧାରଣ କରିଥିବେ ବା ଧାରଣ କରିଥିଲେ ତାହାଙ୍କ ସ୍ଥଳେ ଉପଖଣ୍ଡ (କ) ବା ଉପଖଣ୍ଡ (ଖ) ରେ ଥିବା କୌଣସ ବିଷୟ ସଂସଦକୁ ସେହି ବ୍ୟକ୍ତି ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ସ୍ ବା ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ସ ଇନ୍ କାଉନ୍‌ସିଲଙ୍କ ଦ୍ୱାରା ସମ୍ରାଟଙ୍କ ଅଧୀନରେ ଭାରତର କୌଣସି ସିଭିଲ ସେବାରେ ନିଯୁକ୍ତ ହୋଇଥିବା ହେତୁ ସେହି ସେବାସର୍ତ୍ତାବଳୀ ତାଙ୍କ ପ୍ରତି ଯେତେଦୂର ପ୍ରଯୁଜ୍ୟ ହେଉଥିବ ତଦ୍‌ବ୍ୟତିରେକେ ସେହି ସେବା ସର୍ତ୍ତାବଳୀ ତାଙ୍କର ନିଯୁକ୍ତି ପରେ ତାହାଙ୍କୁ ଅନନୁକୂଳ ହେଲଭଳି ପରିବର୍ତ୍ତିତ ବା ପ୍ରତିସଂହୃତ କରିବା ପାଇଁ କ୍ଷମତା ଦେଉଅଛି ବୋଲି ଅର୍ଥ କରାଯିବ ନାହିଁ ।

(୨) ଏହି ଅନୁଚ୍ଛେଦରେ ଥିବା କୌଣସି ବିଷୟ ଏହି ଅନୁଚ୍ଛେଦ ଅଧୀନରେ ସଂସଦ କର୍ତ୍ତୃକ ବିଧି-ଦ୍ୱାରା ଯେଉଁ ପର୍ଯ୍ୟନ୍ତ ଉପବନ୍ଧିତ ହୋଇଥିବ ତଦ୍‌ବ୍ୟତିରେକେ ଉପଖଣ୍ଡ (୧) ରେ ଉଲ୍ଲିଖିତ ବ୍ୟକ୍ତି-ମାନଙ୍କର ସେବା ସର୍ତ୍ତାବଳୀକୁ ବିନିୟମିତ କରିବା ନିମିତ୍ତ କୌଣସି ବିଧାନ ମଣ୍ଡଳର ବା ଅନ୍ୟ କୌଣସି ପ୍ରାଧିକାରୀଙ୍କର ଏହି ସଂବିଧାନ ଅଧୀନରେ ଥିବା କୌଣସି କ୍ଷମତାକୁ ପ୍ରଭାବିତ କରିବ ନାହିଁ ।

(୩) ଉଚ୍ଚତମ ନ୍ୟାୟାଳୟ ବା ଅନ୍ୟ କୌଣସି ନ୍ୟାୟାଳୟର ନିମ୍ନୋକ୍ତ ବିଷୟ ଉପରେ ଅଧିକାରିତା ରହିବ ନାହିଁ—

(କ) ଖଣ୍ଡ (୧) ରେ ଉଲ୍ଲିଖିତ କୌଣସି ବ୍ୟକ୍ତି ଦ୍ୱାରା କରାଯାଇଥିବା ବା ସଂପାଦିତ ହୋଇଥିବା କୌଣସି ପ୍ରସଂବିଦା, କରାର, ଦଲିଲର କୌଣସି ଉପବନ୍ଧ ବା ତହିଁର କୌଣସି ପୃଷ୍ଠାଙ୍କନରୁ ଉଦ୍‌ଭୂତ କିମ୍ବା ଭାରତର ସମ୍ରାଟଙ୍କ ଅଧୀନରେ କୌଣସି ସିଭିଲ ସେବାରେ ଏପରି ବ୍ୟକ୍ତିଙ୍କର ନିଯୁକ୍ତି ସମ୍ପର୍କରେ କିମ୍ବା ଭାରତ ଡୋମିନିୟନ ସରକାରଙ୍କ ବା ତହିଁର କୌଣସି ପ୍ରଦେଶର ସରକାରଙ୍କ ଅଧୀନରେ କୌଣସି ସେବାରେ ତାଙ୍କର କାର୍ଯ୍ୟ ଚାଲୁ ରଖିବା ସମ୍ପର୍କରେ ସେହି ବ୍ୟକ୍ତିଙ୍କୁ ପଠାଯାଇଥିବା କୌଣସି ଚିଠିରୁ ଉଦ୍‌ଭୂତ କୌଣସି ବିବାଦ;

(ଖ) ଅନୁଚ୍ଛେଦ ୩୧୪ ମୂଳତଃ ଅଧିନିୟମିତ ହୋଇଥିବାମତେ ତଦ୍‌ଧୀନ କୌଣସି ଅଧିକାର, ଦାୟିତ୍ୱ ବା ଆଭାର ସମ୍ପର୍କୀୟ କୌଣସି ବିବାଦ ।

(୪) ମୂଳତଃ ଅଧିନିୟମିତ ହୋଇଥିବା ମତେ ଅନୁଚ୍ଛେଦ ୩୧୪ ରେ ବା ଏହି ସଂବିଧାନର ଅନ୍ୟ କୌଣସି ଉପବନ୍ଧରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ଏହି ଅନୁଚ୍ଛେଦର ଉପବନ୍ଧମାନ ପ୍ରଭାବୀ ହେବ ।

ଅନ୍ତର୍ବର୍ତ୍ତୀ ଉପବଂଧ ।

୩୧୩ । ଏହି ସଂବିଧାନ ଅନୁଯାୟୀ ଏଥିଲାଗି ଅନ୍ୟ ଉପବନ୍ଧ ପ୍ରଣୀତ ନହେବା ପର୍ଯ୍ୟନ୍ତ ଏହି ସଂବିଧାନ ପ୍ରାରମ୍ଭର ଅବ୍ୟବହିତ ପୂର୍ବେ ପ୍ରବୃତ୍ତ ଏବଂ ଅଖିଳ ଭାରତୀୟ ସେବା କିମ୍ବା ସଂଘ ବା ରାଜ୍ୟ ଅଧୀନସ୍ଥ ସେବା ବା ପଦ ରୂପେ ଏହି ସଂବିଧାନ ପ୍ରାରମ୍ଭର ପରେ ପ୍ରବର୍ତ୍ତମାନ କୌଣସି ଲୋକସେବା ବା କୌଣସି ପଦ ପ୍ରତି ପ୍ରଯୁଜ୍ୟ ସମସ୍ତ ବିଧି ଯେତେଦୂର ଏହି ସଂବିଧାନର ଉପବନ୍ଧମାନଙ୍କ ସହିତ ସଂଗତ ସେତେ ଦୂର ପ୍ରବୃତ୍ତ ହୋଇ ରହିବ ।

୩୧୪ । ନିରସିତ ।

## ଅଧ୍ୟାୟ-୨ ପବ୍ଲିକ ସର୍ଭିସ୍ କମିଶନ

ସଂଘ ଏବଂ ରାଜ୍ୟମାନଙ୍କ ଲାଗି ପବ୍ଲିକ ସର୍ଭିସ କମିଶନ ।

୩୧୫ । (୧) ଏହି ଅନୁଚ୍ଛେଦର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ସଂଘ ପାଇଁ ଗୋଟିଏ ପବ୍ଲିକ ସର୍ଭିସ କମିଶନ ଓ ପ୍ରତ୍ୟେକ ରାଜ୍ୟପାଇଁ ଗୋଟିଏ ଲେଖାଏଁ ପବ୍ଲିକ ସର୍ଭିସ କମିଶନ ରହିବ ।

(୨) ଦୁଇ ବା ଅଧିକ ରାଜ୍ୟ ଏପରି କରାର କରି ପାରିବେ ଯେ ସେହି ରାଜ୍ୟମାନଙ୍କ ନିମନ୍ତେ ଗୋଟିଏ ପବ୍ଲିକ ସର୍ଭିସ କମିଶନ ରହିବ ଏବଂ ଯଦି ସେହି ରାଜ୍ୟମାନଙ୍କ ମଧ୍ୟରୁ ପ୍ରତ୍ୟେକର ବିଧାନ ମଣ୍ଡଳର ସଦନ ଦ୍ୱାରା ବା ଯେଉଁଠାରେ ଦୁଇଟି ସଦନ ଥିବ ସେଠାରେ ପ୍ରତେକ ସଦନଦ୍ୱାରା ସେ ଉଦ୍ଦେଶ୍ୟରେ ଏକ ସଂକଳ୍ପ ପାରିତ ହୁଏ ତାହାହେଲେ ସଂସଦ ସେହି ରାଜ୍ୟମାନଙ୍କର ଆବଶ୍ୟକତା ପୂରଣ କରିବା ନିମିତ୍ତ ଗୋଟିଏ ସଂଯୁକ୍ତ ରାଜ୍ୟ ପବ୍ଲିକ ସର୍ଭିସ କମିଶନ (ଏହି ଅଧ୍ୟାୟରେ ସଂଯୁକ୍ତ କମିଶନ ବୋଲି ନିର୍ଦ୍ଦିଷ୍ଟ) ର ନିଯୁକ୍ତି ଲାଗି ବିଧି ଦ୍ୱାରା ଉପବନ୍ଧ କରିପାରିବ ।

(୩) ପୂର୍ବୋକ୍ତ ଏପରି ଯେ କୌଣସି ବିଧିର ପ୍ରୟୋଜନମାନ କାର୍ଯ୍ୟକାରୀ କରିବା ନିମିତ୍ତ ଯେପରି ଆବଶ୍ୟକ ବା ବାଞ୍ଛନୀୟ ହେବ ସେ ବିଧିରେ ସେପରି ପ୍ରାସଙ୍ଗିକ ଓ ଆନୁଷଙ୍ଗିକ ଉପବନ୍ଧମାନ ଅନ୍ତର୍ବିଷ୍ଟ ହୋଇପାରିବ ।

(୪) ଯଦି କୌଣସି ରାଜ୍ୟର ରାଜ୍ୟପାଳ ସଂଘ ପାଇଁଥିବା ପବ୍ଲିକ ସର୍ଭିସ କମଶନକୁ ସେପରି ପ୍ରାର୍ଥନା କରନ୍ତି ତାହାହେଲେ ସେହି କମିଶନ ରାଷ୍ଟ୍ରପତିଙ୍କ ଅନୁମୋଦନ କ୍ରମେ ସେହି ରାଜ୍ୟର ସମସ୍ତ ବା କୌଣସି ଆବଶ୍ୟକତା ପୂରଣ କରିବା ପାଇଁ ସମ୍ମତ ହୋଇ ପାରିବ ।

(୫) ପ୍ରସଙ୍ଗ ଅନ୍ୟଥା ଆବଶ୍ୟକ ନ କଲେ ଏହି ସଂବିଧାନରେ ୟୁନିଅନ ପବ୍ଲିକ ସର୍ଭିସ କମିଶନ ବା କୌଣସି ରାଜ୍ୟର ପବ୍ଲିକ ସର୍ଭିସ କମିଶନ ପ୍ରତି ନିର୍ଦ୍ଦେଶ ପ୍ରଶ୍ନଗତ କୌଣସି ବିଷୟ ସମ୍ବନ୍ଧରେ ସଂଘର ବା, ଯଥାସ୍ଥିତି, ରାଜ୍ୟର ଆବଶ୍ୟକତା ପୂରଣ କରୁଥିବା କମିଶନ ପ୍ରତି ନିର୍ଦ୍ଦେଶ ବୋଲି ଅର୍ଥ କରାଯିବ ।

ସଦସ୍ୟମାନଙ୍କର ନିଯୁକ୍ତି ଓ ପଦାବଧି ।

୩୧୬ । (୧) ପବ୍ଲିକ ସର୍ଭିସ କମିଶନର ଅଧ୍ୟକ୍ଷ ଓ ଅନ୍ୟ ସଦସ୍ୟମାନେ ୟୁନିୟନ କମିଶନ ବା ସଂଯୁକ୍ତ କମିଶନ ସ୍ଥଳେ ରାଷ୍ଟ୍ରପତିଙ୍କ ଦ୍ୱାରା ଏବଂ ରାଜ୍ୟ କମିଶନ ସ୍ଥଳେ ରାଜ୍ୟର ରାଜ୍ୟପାଳଙ୍କ ଦ୍ୱାରା ନିଯୁକ୍ତ ହେବେ :

ପରନ୍ତୁ ପ୍ରତ୍ୟେକ ପବ୍ଲିକ ସର୍ଭିସ କମିଶନର ସଦସ୍ୟମାନଙ୍କ ମଧ୍ୟରୁ ଅର୍ଦ୍ଧେକର ଯଥା ସମ୍ଭବ ନିକଟତମ ସଦସ୍ୟ ଏପରି ବ୍ୟକ୍ତି ହୋଇଥିବେ ଯେଉଁମାନେ କି ସେମାନଙ୍କର ନିଜ ନିଜ ନିଯୁକ୍ତି ତାରିଖକୁ ଭାରତ ସରକାର ବା କୌଣସି ରାଜ୍ୟ ସରକାର ଅଧୀନରେ ଅନ୍ତତଃ ଦଶବର୍ଷ କାଳ ପଦଧାରଣ କରିଥିବେ ଏବଂ ଉକ୍ତ ଦଶ ବର୍ଷ କାଳାବଧି ଗଣନା କରିବା ବେଳେ କୌଣସି ବ୍ୟକ୍ତି ଏହି ସଂବିଧାନର ପ୍ରାରମ୍ଭ ପୂର୍ବରୁ ଭାରତରେ ସମ୍ରାଟଙ୍କ ଅଧୀନରେ ବା କୌଣସି ଦେଶୀୟ ରାଜ୍ୟ ଅଧୀନରେ ଯେତେକାଳ ପଦ ଧାରଣ କରିଥିବେ ତାହା ତହିଁରେ ଅନ୍ତର୍ଭୁକ୍ତ ହେବ ।

(୧କ) ଯଦି କମିଶନର ଅଧ୍ୟକ୍ଷ ପଦ ରିକ୍ତ ହୋଇଯାଏ କିମ୍ବା ଯଦି ଏପରି କୌଣସି ଅଧ୍ୟକ୍ଷ ଅନୁପସ୍ଥିତି କାରଣରୁ ବା ଅନ୍ୟ କୌଣସି କାରଣରୁ ତାଙ୍କ ପଦର କର୍ତ୍ତବ୍ୟ ପାଳନ କରିବାରେ ଅସମର୍ଥ ହୁଅନ୍ତି ତାହା ହେଲେ, ଯଥାସ୍ଥିତି, ରିକ୍ତ ପଦରେ ଖଣ୍ଡ (୧) ଅଧୀନରେ ନିଯୁକ୍ତ କୌଣସି ବ୍ୟକ୍ତି ନିଜର କର୍ତ୍ତବ୍ୟ ଭାର ଗ୍ରହଣ କରିବା ପର୍ଯ୍ୟନ୍ତ କିମ୍ବା ଅଧ୍ୟକ୍ଷ ନିଜର କର୍ତ୍ତବ୍ୟ ପୁନର୍ଗ୍ରହଣ କରିବା ପର୍ଯ୍ୟନ୍ତ ୟୁନିୟନ କମିଶନ ବା ସଂଯୁକ୍ତ କମିଶନ ସ୍ଥଳେ ରାଷ୍ଟ୍ରପତି ଏବଂ ରାଜ୍ୟ କମିଶନ ସ୍ଥଳେ ରାଜ୍ୟପାଳ କମିଶନର ଅନ୍ୟ ସଦସ୍ୟମାନଙ୍କ ମଧ୍ୟରୁ ଯେଉଁ ସଦସ୍ୟଙ୍କୁ ଏହି ପ୍ରୟୋଜନାର୍ଥ ନିଯୁକ୍ତ କରିବେ ସେହି କର୍ତ୍ତବ୍ୟମାନ ସେହି ସଦସ୍ୟଙ୍କ ଦ୍ୱାରା ପାଳନ କରାଯିବ ।

(୨) କୌଣସି ପବ୍ଲିକ ସର୍ଭିସ କମିଶନର ସଦସ୍ୟ ତାଙ୍କର ପଦ ଗ୍ରହଣ ଦିନଠାରୁ ଛଅବର୍ଷ କାଳ ପର୍ଯ୍ୟନ୍ତ କିମ୍ବା ସେ ୟୁନିୟନ କମିଶନର ହୋଇଥିଲେ ପଞ୍ଚଷଠି ବର୍ଷ ବୟସ ପ୍ରାପ୍ତ ହେବା ପର୍ଯ୍ୟନ୍ତ ଓ ରାଜ୍ୟ କମିଶନ ବା ସଂଯୁକ୍ତ କମିଶନ ହୋଇଥିଲେ ବାଷଠି ବର୍ଷ ବୟସ ପ୍ରାପ୍ତ ହେବା ପର୍ଯ୍ୟନ୍ତ ଏଥି ମଧ୍ୟରୁ ଯେଉଁଟି ପୂର୍ବତର ହେବ ସେହି ପର୍ଯ୍ୟନ୍ତ ପଦ ଧାରଣ କରିବେ :

ପରନ୍ତୁ—

(କ) ପବ୍ଲିକ ସର୍ଭିସ କମିଶନର କୌଣସି ସଦସ୍ୟ ୟୁନିୟନ କମିଶନ ବା ସଂଯୁକ୍ତ କମିଶନର ହୋଇଥିଲେ ରାଷ୍ଟ୍ରପତିଙ୍କୁ, ଏବଂ ରାଜ୍ୟ କମିଶନ ହୋଇଥିଲେ ରାଜ୍ୟର ରାଜ୍ୟପାଳଙ୍କୁ ସଂବୋଧିତ ସ୍ୱହସ୍ତାଙ୍କିତ ଲେଖଦ୍ୱାରା ତାଙ୍କର ପଦ ତ୍ୟାଗ କରିପାରିବେ ;

(ଖ) ପବ୍ଲିକ ସର୍ଭିସ କମିଶନର କୌଣସି ସଦସ୍ୟ ଅନୁଚ୍ଛେଦ ୩୧୭ର ଖଣ୍ଡ (୧) ବା ଖଣ୍ଡ (୨)ରେ ଉପବନ୍ଧିତ ରୀତି ଅନୁସାରେ ତାଙ୍କ ପଦରୁ ଦୂରୀକୃତ ହୋଇପାରିବେ ।

(୩) ପବ୍ଲିକ ସର୍ଭିସ କମିଶନର ସଦସ୍ୟ ରୂପେ ପଦଧାରଣ କରୁଥିବା କୌଣସି ବ୍ୟକ୍ତି ତାଙ୍କ ପଦର କାର୍ଯ୍ୟକାଳର ଅବସାନ ପରେ ସେହି ପଦରେ ପୁନର୍ନିଯୁକ୍ତି ପାଇଁ ଅପାତ୍ର ହେବେ ।

ପବ୍ଲିକ ସର୍ଭିସ କମିଶନର କୌଣସି ସଦସ୍ୟଙ୍କର ଦୂରୀକରଣ ଓ ସାମୟିକ କର୍ମଚ୍ୟୁତି ।

୩୧୭ । (୧) ଖଣ୍ଡ (୩)ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, ପବ୍ଲିକ ସର୍ଭିସ କମିଶନର ସଭାପତି ବା ଅନ୍ୟ କୌଣସି ସଦସ୍ୟ ଅସଦାଚରଣ କାରଣରୁ କେବଳ ରାଷ୍ଟ୍ରପତିଙ୍କ ଆଦେଶ ଦ୍ୱାରା ତାଙ୍କ ପଦରୁ ଦୂରୀକୃତ ହେବେ ଏବଂ ଉଚ୍ଚତମ ନ୍ୟାୟାଳୟ ରାଷ୍ଟ୍ରପତିଙ୍କଠାରୁ ନିର୍ଦ୍ଦେଶ ପାଇ ଅନୁଚ୍ଛେଦ ୧୪୫ ଅନୁଯାୟୀ ସେଥିଲାଗି ବିହିତ ପ୍ରକ୍ରିୟା ଅନୁସାରେ ଅନୁସନ୍ଧାନ କରି ଯଥାସ୍ଥିତି ସଭାପତି ବା ସେପରି କୌଣସି ସଦସ୍ୟ ସେପରି କୌଣସି କାରଣ ଯୋଗୁ ଦୂରୀକୃତ କରାଯିବା ଉଚିତ ବୋଲି ରିପୋର୍ଟ ଦେବାପରେ ହିଁ ସେହି ଆଦେଶ ଦିଆଯିବ ।

(୨) କମିଶନର ସଭାପତି ବା ଅନ୍ୟ ସଦସ୍ୟଙ୍କ ବିଷୟ ଖଣ୍ଡ (୧) ଅନୁଯାୟୀ ଉଚ୍ଚତମ ନ୍ୟାୟାଳୟକୁ ନିର୍ଦ୍ଦେଶ କରାଯାଇଥିବା ସ୍ଥଳେ ରାଷ୍ଟ୍ରପତି ସେହି ନିର୍ଦ୍ଦେଶ ଉପରେ ଉଚ୍ଚତମ ନ୍ୟାୟାଳୟର ରିପୋର୍ଟ ପାଇସାରି ଆଦେଶ ନଦେବା ପର୍ଯ୍ୟନ୍ତ ସଂଘ କମିଶନ ବା ସଂଯୁକ୍ତ କମିଶନ ହୋଇଥିଲେ ରାଷ୍ଟ୍ରପତି ଏବଂ ରାଜ୍ୟ କମିଶନ ହୋଇଥିଲେ ରାଜ୍ୟପାଳ ସଭାପତି ବା ସଦସ୍ୟଙ୍କୁ ସେହି ପଦରୁ ସାମୟିକ ଭାବେ କର୍ମଚ୍ୟୁତ କରିପାରିବେ ।

(୩) ଖଣ୍ଡ (୧)ରେ ଯାହା କିଛି ଥିବା ସତ୍ତ୍ୱେ, ଯଦି ସଭାପତି ବା ଅନ୍ୟ କୌଣସି ସଦସ୍ୟ—

(କ) ଦିବାଳିଆ ବୋଲି ନ୍ୟାୟନିର୍ଣ୍ଣୀତ ହୁଅନ୍ତି, ଅଥବା

(ଖ) ତାଙ୍କ ପଦର କାର୍ଯ୍ୟକାଳ ମଧ୍ୟରେ ପଦର ବହିର୍ଗତ କୌଣସି ବୈତନିକ କର୍ମରେ ବ୍ୟାପୃତ ହୋଇଥାନ୍ତି, ଅଥବା

(ଗ) ଶାରୀରିକ ବା ମାନସିକ ଦୌର୍ବଲ୍ୟ ହେତୁ ରାଷ୍ଟ୍ରପତିଙ୍କ ବିବେଚନାରେ ସେହି ପଦରେ ରହିବା ଲାଗି ଅଯୋଗ୍ୟ ହୁଅନ୍ତି,

ତାହାହେଲେ ସେହି ସଭାପତିଙ୍କୁ ବା ସେପରି ଅନ୍ୟ ସଦସ୍ୟଙ୍କୁ ରାଷ୍ଟ୍ରପତି ଆଦେଶ ଦ୍ୱାରା ପଦରୁ ଦୂରୀକୃତ କରିପାରିବେ ।

(୪) ଯଦି ପବ୍ଲିକ ସର୍ଭିସ କମିଶନର ସଭାପତି ବା ଅନ୍ୟ କୌଣସି ସଦସ୍ୟ କୌଣସି ନିଗମିତ ସମବାୟର ସଦସ୍ୟ ରୂପେ ଏବଂ ତାହାର ଅନ୍ୟ ସଦସ୍ୟମାନଙ୍କ ସହିତ ମିଳିତ ଭାବରେ ଯେତିକି ହେବାର କଥା ତହିଁରୁ ଅନ୍ୟଥା ଭାରତ ସରକାର ବା ରାଜ୍ୟସରକାରଙ୍କ ଦ୍ୱାରା ବା ତାଙ୍କ ତରଫରୁ କରାଯାଇଥିବା କୌଣସି ଚୁକ୍ତି ବା କରାରରେ କୌଣସି ପ୍ରକାରେ ସଂପୃକ୍ତ ବା ହିତବଦ୍ଧ ହୋଇଥାନ୍ତି ବା ହୁଅନ୍ତି, କିମ୍ବା ତହିଁର ଲାଭରୁ ବା ତହିଁରୁ ଉତ୍ପନ୍ନ ହିତ ବା ଉପଲବ୍ଧିରୁ ଅଂଶ ଗ୍ରହଣ କରନ୍ତି ତାହାହେଲେ ସେ ଖଣ୍ଡ (୧)ର ପ୍ରୟୋଜନ ଲାଗି ଅସଦାଚରଣରେ ଅପରାଧୀ ବୋଲି ବିବେଚିତ ହେବେ ।

କମିଶନର ସଦସ୍ୟ ଓ କର୍ମଚାରୀମାନଙ୍କ ସେବାର ସର୍ତ୍ତ ସଂବଂଧରେ ବିନିୟମ ପ୍ରଣୟନ ଲାଗି କ୍ଷମତା ।

୩୧୮ । ୟୁନିୟନ କମିଶନ ବା ସଂଯୁକ୍ତ କମିଶନ ସମ୍ବନ୍ଧରେ ରାଷ୍ଟ୍ରପତି ଏବଂ ରାଜ୍ୟ କମିଶନ ସମ୍ବନ୍ଧରେ ରାଜ୍ୟପାଳ ବିନିୟମ ଦ୍ୱାରା—

(କ) କମିଶନର ସଦସ୍ୟମାନଙ୍କର ସଂଖ୍ୟା ଓ ସେବାସର୍ତ୍ତ ନିର୍ଦ୍ଧାରଣ କରିପାରିବେ ; ଏବଂ

(ଖ) କମିଶନ କର୍ମଚାରୀବୃନ୍ଦଙ୍କର ସଦସ୍ୟ ସଂଖ୍ୟା ଏବଂ ସେମାନଙ୍କର ସେବାସର୍ତ୍ତ ସମ୍ବନ୍ଧରେ ଉପବନ୍ଧ କରିପାରିବେ :

ପରନ୍ତୁ ପବ୍ଲିକ ସର୍ଭିସ କମିଶନର ସଦସ୍ୟଙ୍କ ସେବାର ସର୍ତ୍ତାବଳୀ ତାଙ୍କର ନିଯୁକ୍ତି ପରେ ତାଙ୍କୁ ଅସୁବିଧାଜନକ ହେଲାଭଳି ପରିବର୍ତ୍ତନ କରାଯିବ ନାହିଁ ।

କମିଶନର ସଦସ୍ୟମାନେ ସେପରି ସଦସ୍ୟ ହେବାରୁ ବିରତ ହେବାପରେ ସେମାନଙ୍କର ପଦ ଧାରଣ ସମ୍ବନ୍ଧରେ ବାରଣ ।

୩୧୯ । ପଦ ଧାରଣରୁ ବିରତ ହେଲାପରେ—

(କ) ୟୁନିୟନ ପବ୍ଲିକ୍ ସର୍ଭିସ୍ କମିଶନର ସଭାପତି ଭାରତ ସରକାରଙ୍କ ଅଧୀନରେ ବା କୌଣସି ରାଜ୍ୟ ସରକାରଙ୍କ ଅଧୀନରେ ପୁନର୍ନିୟୋଜନ ଲାଗି ଅପାତ୍ର ହେବେ ;

(ଖ) ରାଜ୍ୟ ପବ୍ଲିକ୍ ସର୍ଭିସ କମିଶନର ସଭାପତି ୟୁନିୟନ ପବ୍ଲିକ୍ ସର୍ଭିସ କମିଶନର ସଭାପତି ବା ଅନ୍ୟ କୌଣସି ସଦସ୍ୟରୂପେ ବା ଅନ୍ୟ କୌଣସି ରାଜ୍ୟର ପବ୍ଲିକ୍ ସର୍ଭିସ କମିଶନର ସଭାପତି ରୂପେ ନିଯୁକ୍ତ ହେବା ଲାଗି ପାତ୍ର ହେବେ, ମାତ୍ର ଭାରତ ସରକାରଙ୍କ ଅଧୀନରେ ବା କୌଣସି ରାଜ୍ୟ ସରକାରଙ୍କ ଅଧୀନରେ ଅନ୍ୟ କୌଣସି ନିୟୋଜନ ଲାଗି ପାତ୍ର ହେବେ ନାହିଁ ;

(ଗ) ୟୁନିୟନ ପବ୍ଲିକ ସର୍ଭିସ୍ କମିଶନର ସଭାପତିଙ୍କ ବ୍ୟତୀତ ଅନ୍ୟ କୌଣସି ସଦସ୍ୟ ୟୁନିୟନ ପବ୍ଲିକ୍ ସର୍ଭିସ କମିଶନର ସଭାପତି ରୂପେ ବା ରାଜ୍ୟ ପବ୍ଲିକ୍ ସର୍ଭିସ କମିଶନର ସଭାପତି ରୂପେ ନିଯୁକ୍ତ ହେବା ଲାଗି ପାତ୍ର ହେବେ, ମାତ୍ର ଭାରତ ସରକାରଙ୍କ ଅଧୀନରେ ଅନ୍ୟ କୌଣସି ନିୟୋଜନ ଲାଗି ପାତ୍ର ହେବେ ନାହିଁ ;

(ଘ) ରାଜ୍ୟ ପବ୍ଲିକ୍ ସର୍ଭିସ କମିଶନର ସଭାପତିଙ୍କ ବ୍ୟତୀତ ଅନ୍ୟ କୌଣସି ସଦସ୍ୟ ୟୁନିୟନ ପବ୍ଲିକ୍ ସର୍ଭିସ କମିଶନର ସଭାପତି ବା ଅନ୍ୟ କୌଣସି ସଦସ୍ୟରୂପେ କିମ୍ବା ସେହି ରାଜ୍ୟର ବା ଅନ୍ୟ ରାଜ୍ୟର ପବ୍ଲିକ୍ ସର୍ଭିସ କମିଶନର ସଭାପତି ରୂପେ ନିଯୁକ୍ତ ହେବା ଲାଗି ପାତ୍ର ହେବେ, ମାତ୍ର ଭାରତ ସରକାରଙ୍କ ଅଧୀନରେ ବା କୌଣସି ରାଜ୍ୟ ସରକାରଙ୍କ ଅଧୀନରେ ଅନ୍ୟ କୌଣସି ନିୟୋଜନ ଲାଗି ପାତ୍ର ହେବେ ନାହିଁ ।

ପବ୍ଲିକ ସର୍ଭିସ୍ କମିଶନମାନଙ୍କର କୃତ୍ୟ ।

୩୨୦ । (୧) ୟୁନିୟନ ଓ ରାଜ୍ୟ ପବ୍ଲିକ୍ ସର୍ଭିସ୍ କମିଶନମାନଙ୍କର ଏହା କର୍ତ୍ତବ୍ୟ ହେବ ଯେ ସେମାନେ ଯଥାକ୍ରମେ ସଂଘ ସେବା ଓ ରାଜ୍ୟସେବାର ନିଯୁକ୍ତି ଲାଗି ପରୀକ୍ଷାର ପରିଚାଳନା କରିବେ ।

(୨) ଯଦି ଦୁଇ ବା ଅଧିକ ରାଜ୍ୟ ଏପରି କରିବା ନିମିତ୍ତ ୟୁନିୟନ ପବ୍ଲିକ୍ ସର୍ଭିସ କମିଶନଙ୍କୁ ଅନୁରୋଧ କରନ୍ତି ତାହାହେଲେ ତାହାର ଏହା ମଧ୍ୟ କର୍ତ୍ତବ୍ୟ ହେବ ଯେ ଯେଉଁ ସେବା ନିମିତ୍ତ ବିଶେଷ ଯୋଗ୍ୟତା ସମ୍ପନ୍ନ ପ୍ରାର୍ଥୀ ଆବଶ୍ୟକ ସେପରି କୌଣସି ସେବାରେ ମିଳିତ ଭାବରେ ଭର୍ତ୍ତି କରିବାର ଯୋଜନା ପ୍ରଣୟନ ଓ ପ୍ରବର୍ତ୍ତନ କରିବାରେ ସେ ସେହି ରାଜ୍ୟମାନଙ୍କର ସହାୟତା କରିବ ।

(୩) ଯଥାସ୍ଥିତି, ସ୍ମନିୟନ ପବ୍ଳିକ୍ ସର୍ଭିସ କମିଶନ ବା ରାଜ୍ୟ ପବ୍ଳିକ୍ ସର୍ଭିସ କମିଶନ ସହିତ,

(କ) ସିଭିଲ ସେବାରେ ଓ ସିଭିଲ ପଦ ପାଇଁ ଭର୍ତ୍ତି କରାଇବାର ପ୍ରଣାଳୀ ସମ୍ବନ୍ଧୀୟ ସମସ୍ତ ବିଷୟରେ,

(ଖ) ସିଭିଲ ସେବା ଓ ପଦରେ ନିଯୁକ୍ତ କରିବାରେ ଏବଂ ଏକ ସେବାରୁ ଅନ୍ୟ ସେବାକୁ ଉର୍ଦ୍ଧ୍ୱ ଓ ପରିବର୍ତ୍ତନ ଲାଗି ପ୍ରାର୍ଥୀମାନଙ୍କର ଉପଯୁକ୍ତତା ସମ୍ବନ୍ଧରେ କେଉଁ ନୀତି ଅନୁସରଣ କରାଯିବ ସେ ବିଷୟରେ,

(ଗ) ଭାରତ ସରକାର ବା କୌଣସି ସରକାରଙ୍କ ଅଧୀନରେ ସିଭିଲ ସାମର୍ଥ୍ୟରେ ସେବା କରୁଥିବା ବ୍ୟକ୍ତିଙ୍କ ଉପରେ ପ୍ରଭାବ ପକାଉଥିବା ସମସ୍ତ ଅନୁଶାସନ ବିଷୟରେ ଏବଂ ଏପରି ବିଷୟ ସଂପର୍କୀୟ ସ୍ମାରକୀ ବା ଆବେଦନ ସମ୍ବନ୍ଧରେ,

(ଘ) ଭାରତ ସରକାର ବା କୌଣସି ରାଜ୍ୟ ସରକାରଙ୍କ ଅଧୀନରେ କିମ୍ବା ଭାରତର ସମ୍ରାଟଙ୍କ ଅଧୀନରେ କିମ୍ବା କୌଣସି ଦେଶୀୟ ରାଜ୍ୟ ସରକାରଙ୍କ ଅଧୀନରେ ସିଭିଲ ସାମର୍ଥ୍ୟରେ ସେବା କରୁଥିବା କିମ୍ବା କରିଥିବା କୌଣସି ବ୍ୟକ୍ତିଙ୍କ ଦ୍ୱାରା ବା ତାଙ୍କ ସମ୍ବନ୍ଧରେ ଯଦି କୌଣସି ଦାବୀ ହୁଏ ଯେ ତାଙ୍କର କର୍ତ୍ତବ୍ୟ ସଂପାଦନରେ କୃତ ବା କରାଯିବା ନିମନ୍ତେ ଅଭିପ୍ରେତ କାର୍ଯ୍ୟ ସମ୍ବନ୍ଧରେ ତାଙ୍କ ବିରୁଦ୍ଧରେ ଅନୁଷ୍ଠିତ ବୈଧିକ କାର୍ଯ୍ୟବାହୀରେ ନିଜ ପ୍ରତିରକ୍ଷା ପାଇଁ ତାଙ୍କ ଦ୍ୱାରା କରାଯାଇଥିବା କୌଣସି ଖର୍ଚ୍ଚ ଭାରତର ସଞ୍ଚିତ ନିଧିରୁ ବା, ଯଥାସ୍ଥିତି, ରାଜ୍ୟର ସଞ୍ଚିତ ନିଧିରୁ ପ୍ରଦତ୍ତ ହେବା ଉଚିତ ତାହାହେଲେ ସେହି ଦାବୀ ବିଷୟରେ,

(ଙ) ଭାରତ ସରକାର ବା କୌଣସି ରାଜ୍ୟ ସରକାର ବା ଭାରତରେ ସମ୍ରାଟଙ୍କ ଅଧୀନରେ କିମ୍ବା କୌଣସି ଦେଶୀୟ ରାଜ୍ୟ ସରକାରଙ୍କ ଅଧୀନରେ ସିଭିଲ ସାମର୍ଥ୍ୟରେ ସେବା କରୁଥିବା ସମୟରେ କୌଣସି ବ୍ୟକ୍ତିଙ୍କର ହୋଇଥିବା ଅନିଷ୍ଟ ସମ୍ବନ୍ଧରେ କୌଣସି ପେନସନ ପ୍ରଦାନ ଲାଗି କୌଣସି ଦାବୀ ବିଷୟରେ ଏବଂ ସେପରି କୌଣସି ପ୍ରଦାନର ଧନରାଶି ସମ୍ବନ୍ଧୀୟ କୌଣସି ପ୍ରଶ୍ନ ବିଷୟରେ,

ପରାମର୍ଶ କରାଯିବ ଏବଂ ସେମାନଙ୍କୁ ଏପରି ଭାବରେ ନିର୍ଦ୍ଦେଶ କରାଯାଇ ଥିବା ବିଷୟ ସମ୍ବନ୍ଧରେ ଏବଂ, ଯଥାସ୍ଥିତି, ରାଷ୍ଟ୍ରପତି କିମ୍ବା ରାଜ୍ୟର ରାଜ୍ୟପାଳ ଅନ୍ୟ କୌଣସି ବିଷୟ ନିର୍ଦ୍ଦେଶ କଲେ ସେ ବିଷୟ ସମ୍ବନ୍ଧରେ ପରାମର୍ଶ ଦେବା ପବ୍ଲିକ୍ ସର୍ଭିସ କମିଶନର କର୍ତ୍ତବ୍ୟ ହେବ :

ପରନ୍ତୁ ଅଖିଳଭାରତୀୟ ସେବା ସଂପର୍କରେ ଆଉ ମଧ୍ୟ ସଂଘର କାର୍ଯ୍ୟ ସହିତ ସଂପୃକ୍ତ ଅନ୍ୟାନ୍ୟ ସେବା ଓ ପଦ ସଂପର୍କରେ ରାଜ୍ୟପାଳ କୌଣସି ବିଶିଷ୍ଟ ଶ୍ରେଣୀର ମାମଲାରେ ବା କୌଣସି ବିଶେଷ ପରିସ୍ଥିତିରେ କେଉଁ ସବୁ ବିଷୟରେ ପବ୍ଲିକ୍ ସର୍ଭିସ କମିଶନ ସହିତ ପରାମର୍ଶ କରାଯିବା ଆବଶ୍ୟକ ହେବ ନାହିଁ ତାହା ବିନିର୍ଦ୍ଦିଷ୍ଟ କରି ବିନିୟମ ପ୍ରଣୟନ କରିପାରିବେ ।

(୪) ଅନୁଚ୍ଛେଦ ୧୬ର ଖଣ୍ଡ (୪) ରେ ନିର୍ଦ୍ଦିଷ୍ଟ ଉପବନ୍ଧମାନ କେଉଁ ରୀତିରେ ପ୍ରଣୀତ ହେବ ବା ଅନୁଚ୍ଛେଦ ୩୩୫ର ଉପବନ୍ଧମାନ କେଉଁ ରୀତିରେ ପ୍ରଭାବୀ କରାଯିବ ସେ ବିଷୟରେ ପବ୍ଲିକ୍ ସର୍ଭିସ କମିଶନ ସହିତ ପରାମର୍ଶ କରାଯିବ । ଖଣ୍ଡ (୩) ର କୌଣସି ବିଷୟ ଯୋଗୁଁ ଆବଶ୍ୟକ ହେବ ନାହିଁ ।

(୫) ଖଣ୍ଡ (୩) ର ପରନ୍ତୁକ ଅନୁଯାୟୀ ରାଷ୍ଟ୍ରପତି ବା ରାଜ୍ୟର ରାଜ୍ୟପାଳଙ୍କ ଦ୍ୱାରା ପ୍ରଣୀତ ବିନିୟମ-ମାନ ପ୍ରଣୀତ ହେବା ପରେ ଯେତେ ଶୀଘ୍ର ସମ୍ଭବ ସଂସଦର ପ୍ରତ୍ୟେକ ସଦନ ଅଥବା ଯଥାସ୍ଥିତି ରାଜ୍ୟର ବିଧାନ ମଣ୍ଡଳର ସଦନ ବା ପ୍ରତ୍ୟେକ ସଦନ ସମକ୍ଷରେ ୧୪ ଦିନର ଅନ୍ୟୂନ କାଳ ପର୍ଯ୍ୟନ୍ତ ଉପସ୍ଥାପିତ କରାଯିବ ଏବଂ ଯେଉଁ ସତ୍ର ମଧ୍ୟରେ ଏପରି ଉପସ୍ଥାପିତ କରାଯିବ ସେହି ସତ୍ର ମଧ୍ୟରେ ସଂସଦର ଉଭୟ ସଦନ ଅଥବା ରାଜ୍ୟର ବିଧାନ ମଣ୍ଡଳର ସଦନ ବା ଉଭୟ ସଦନ ନିରସନ ଆକାରରେ ହେଉ ବା ସଂଶୋଧନ ଆକାରରେ ହେଉ ତହିଁରେ କୌଣସି ରୂପ ଭେଦ କଲେ ଏହା ସେପରି ରୂପ ଭେଦର ବଶବର୍ତ୍ତୀ ହେବ ।

ପବ୍ଲିକ ସର୍ଭିସ କମିଶନର କୃତ୍ୟମାନ ବିସ୍ତାର କରିବାର କ୍ଷମତା ।

୩୨୧ । ୟୁନିୟନ ପବ୍ଲିକ୍ ସର୍ଭିସ କମିଶନ ବା ରାଜ୍ୟ ପବ୍ଲିକ୍ ସର୍ଭିସ କମିଶନ ସଂଘର ବା ରାଜ୍ୟର ସେବାମାନଙ୍କ ବିଷୟରେ ଏବଂ କୌଣସି ସ୍ଥାନୀୟ ପ୍ରାଧୀକାରୀ ଅଥବା ବିଧି ଦ୍ୱାରା ରଚିତ ଅନ୍ୟ ନିଗମ ନିକାୟ ବା କୌଣସି ସାର୍ବଜନିକ ସଂସ୍ଥାର ସେବାମାନଙ୍କ ବିଷୟରେ ଅତିରିକ୍ତ କୃତ୍ୟ ସମ୍ପାଦନ କରିବା ଲାଗି ଯଥାସ୍ଥିତି, ସଂସଦ ଦ୍ୱାରା ପ୍ରଣୀତ ବା ରାଜ୍ୟ ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ କୌଣସି ଅଧିନିୟମ ଉପବନ୍ଧ କରିପାରିବ ।

ପବ୍ଲିକ ସର୍ଭିସ କମିଶନର ବ୍ୟୟ ।

୩୨୨ । ପବ୍ଲିକ୍ ସର୍ଭିସ୍ କମିଶନର ସଦସ୍ୟମାନଙ୍କୁ ବା କର୍ମଚାରୀମାନଙ୍କୁ ବା ସେମାନଙ୍କ ସମ୍ବନ୍ଧରେ ଦେୟ କୌଣସି ବେତନ, ଭତ୍ତା ଓ ନିବୃତ୍ତି ବେତନ ସମେତ ସଂଘର ବା କୌଣସି ରାଜ୍ୟର ପବ୍ଲିକ ସର୍ଭିସ କମିଶନର ବ୍ୟୟ, ଯଥାସ୍ଥିତି, ଭାରତର ସଞ୍ଚିତ ନିଧି ବା ରାଜ୍ୟର ସଞ୍ଚିତ ନିଧି ଉପରେ ଭରିତ ହେବ ।

ପବ୍ଲିକ ସର୍ଭିସ କମିଶନ-ମାନଙ୍କର ରିପୋର୍ଟ ।

୩୨୩ । (୧) ୟୁନିୟନ କମିଶନର ଏହା କର୍ତ୍ତବ୍ୟ ହେବ ଯେ ସେ କମିଶନ ଦ୍ୱାରା କରାଯାଇଥିବା କାର୍ଯ୍ୟ ବିଷୟରେ ପ୍ରତି ବର୍ଷ ରାଷ୍ଟ୍ରପତିଙ୍କୁ ଏକ ରିପୋର୍ଟ ଅର୍ପଣ କରିବ ଏବଂ ଏପରି ରିପୋର୍ଟ ପାଇ ରାଷ୍ଟ୍ରପତି ଯଦି କୌଣସି ଘଟଣାରେ କମିଶନର ପରାମର୍ଶ ଗ୍ରହଣ କରାଯାଇ ନ ଥାଏ ତାହାହେଲେ ସେପରି ଗ୍ରହଣ ନ କରାଯିବାର କାରଣ ଦର୍ଶାଇଥିବା ଜ୍ଞାପନ ସହ ସେହି ରିପୋର୍ଟର ଏକ ପ୍ରତିଲିପି ସଂସଦର ପ୍ରତ୍ୟେକ ସଦନ ସମକ୍ଷରେ ଉପସ୍ଥାପିତ କରାଇବେ ।

(୨) ରାଜ୍ୟ କମିଶନର ଏହା କର୍ତ୍ତବ୍ୟ ହେବ ଯେ ସେ କମିଶନ ଦ୍ୱାରା କରାଯାଇଥିବା କାର୍ଯ୍ୟ ବିଷୟରେ ପ୍ରତି ବର୍ଷ ରାଜ୍ୟର ରାଜ୍ୟପାଳଙ୍କୁ ଏକ ରିପୋର୍ଟ ଦେବ ଏବଂ ସଂଯୁକ୍ତ କମିଶନର ଏହା କର୍ତ୍ତବ୍ୟ ହେବ ଯେ ସେହି କମିଶନ ଯେଉଁ ରାଜ୍ୟମାନଙ୍କର ଆବଶ୍ୟକତା ପୂରଣ କରୁଥିବ ସେପରି ପ୍ରତ୍ୟେକ ରାଜ୍ୟର ରାଜ୍ୟପାଳଙ୍କୁ ସେ ରାଜ୍ୟ ସମ୍ବନ୍ଧରେ କମିଶନ ଦ୍ୱାରା କରାଯାଇଥିବା କାର୍ଯ୍ୟ ବିଷୟରେ ପ୍ରତି ବର୍ଷ ଏକ ରିପୋର୍ଟ ଦେବ ଏବଂ ଏ ଉଭୟ ମଧ୍ୟରୁ ଯେ କୌଣସି କ୍ଷେତ୍ରରେ ଏପରି ରିପୋର୍ଟ ପାଇ ରାଜ୍ୟପାଳ, ଯଦି କୌଣସି ଘଟଣାରେ କମିଶନର ପରାମର୍ଶ ଗ୍ରହଣ କରାଯାଇ ନ ଥାଏ ତାହାହେଲେ ସେପରି ଗ୍ରହଣ ନ କରାଯିବାର କାରଣ ଦର୍ଶାଇ ଥିବା ଜ୍ଞାପନ ସହ ସେହି ରିପୋର୍ଟର ଏକ ପ୍ରତିଲିପି ସେହି ରାଜ୍ୟର ବିଧାନ ମଣ୍ଡଳ ସମକ୍ଷରେ ଉପସ୍ଥାପିତ କରାଇବେ ।

# ଭାଗ ୧୪ କ

## ଟ୍ରିବୁନାଲ

ପ୍ରଶାସନିକ ଟ୍ରିବ୍ୟୁନାଲ ।

୩୨୩କ । (୧) ସଂଘର ବା କୌଣସି ରାଜ୍ୟର ବା ଭାରତ ରାଜ୍ୟକ୍ଷେତ୍ର ଭିତରେ ଥିବା କିମ୍ବା ଭାରତ ସରକାରଙ୍କ ନିୟନ୍ତ୍ରଣରେ ଥିବା କୌଣସି ସ୍ଥାନୀୟ ବା ଅନ୍ୟ ପ୍ରାଧିକାରୀଙ୍କର ଅଥବା ସରକାରଙ୍କ ସ୍ୱାମିତ୍ୱ ବା ନିୟନ୍ତ୍ରଣରେ ଥିବା କୌଣସି ନିଗମର କାର୍ଯ୍ୟ ସହିତ ସଂବଂଧିତ ଲୋକ ସେବାରେ ଓ ପଦରେ ନିଯୁକ୍ତ ବ୍ୟକ୍ତିମାନଙ୍କର ଭର୍ତ୍ତି ତଥା ସେବା ସର୍ତ୍ତ ସଂପର୍କୀୟ ବିବାଦ ଓ ପରିବାଦର ନ୍ୟାୟ ନିର୍ଣ୍ଣୟନ ବା ବିଚାରଣ ପ୍ରଶାସନିକ ଟ୍ରିବ୍ୟୁନାଲ ଦ୍ୱାରା କରାଯିବା ନିମିତ୍ତ ସଂସଦ ବିଧି ଦ୍ୱାରା ଉପବନ୍ଧ କରି ପାରିବ ।

(୨) ଖଣ୍ଡ (୧) ଅଧୀନରେ ପ୍ରଣୀତ ବିଧିରେ—

(କ) ସଂଘ ନିମିତ୍ତ ଏକ ପ୍ରଶାସନିକ ଟ୍ରିବ୍ୟୁନାଲ ଏବଂ ପ୍ରତ୍ୟେକ ରାଜ୍ୟ ପାଇଁ ଅଥବା ଦୁଇ ବା ଅଧିକ ରାଜ୍ୟ ପାଇଁ ଏକ ପୃଥକ ପ୍ରଶାସନିକ ଟ୍ରିବ୍ୟୁନାଲ ସ୍ଥାପନ କରାଯିବା ପାଇଁ ଉପବନ୍ଧ କରାଯାଇ ପାରିବ ;

(ଖ) ଉକ୍ତ ଟ୍ରିବ୍ୟୁନାଲମାନଙ୍କ ମଧ୍ୟରୁ ପ୍ରତ୍ୟେକ ଦ୍ୱାରା ଯେଉଁ ଅଧିକାରିତା, କ୍ଷମତା (ଅବମାନନା ନିମିତ୍ତ ଦଣ୍ଡ ଦେବାର କ୍ଷମତା ସମେତ) ଓ ପ୍ରାଧିକାର ପ୍ରୟୋଗ କରାଯାଇ ପାରିବ ତାହା ବିନିର୍ଦ୍ଦିଷ୍ଟ କରାଯାଇ ପାରିବ ;

(ଗ) ଉକ୍ତ ଟ୍ରିବ୍ୟୁନାଲମାନଙ୍କ ଦ୍ୱାରା ଅନୁସରଣ କରାଯିବା ପ୍ରକ୍ରିୟା (ପରିସୀମା ଓ ସାକ୍ଷ୍ୟର ନିୟମାବଳୀ ସଂପର୍କୀୟ ଉପବନ୍ଧ ସମେତ) ଉପବନ୍ଧିତ କରାଯାଇ ପାରିବ ;

(ଘ) ଖଣ୍ଡ (୧) ରେ ନିର୍ଦ୍ଦିଷ୍ଟ ବିବାଦ ବା ପରିବାଦ ସଂପର୍କରେ, ଅନୁଚ୍ଛେଦ ୧୩୬ ଅଧୀନରେ ଉଚ୍ଚତମ ନ୍ୟାୟାଳୟରେ ଥିବା ଅଧିକାରିତା ଭିନ୍ନ ଅନ୍ୟ ସମସ୍ତ ନ୍ୟାୟାଳୟର ଅଧିକାରିତାର ଅପବର୍ଜନ କରାଯାଇ ପାରିବ ;

(ଙ) ପ୍ରଶାସନିକ ଟ୍ରିବ୍ୟୁନାଲ ସ୍ଥାପନ କରାଯିବାର ଅବ୍ୟବହିତ ପୂର୍ବରୁ କୌଣସି ନ୍ୟାୟାଳୟ ବା ଅନ୍ୟ ପ୍ରାଧିକାରୀଙ୍କ ସମକ୍ଷରେ ଲମ୍ବିତଥିବା ମାମଲାମାନ ଯେଉଁ ବାଦର କାରଣ ଉପରେ ଆଧାରିତ ହୋଇଥିବ ବାଦର କାରଣ ସେହି ପ୍ରଶାସନିକ ଟ୍ରିବ୍ୟୁନାଲ ସ୍ଥାପନ କରାଯିବା ପରେ ଉଦ୍‌ଭୂତ ହୋଇଥିଲେ ଉକ୍ତ ବାଦ ବା କାର୍ଯ୍ୟବାହୀ ଯେଉଁ ଟ୍ରିବ୍ୟୁନାଲର ଅଧିକାରିତା ମଧ୍ୟରେ ଆସନ୍ତା ସେହି ସବୁ ମାମଲା ସେପରି ପ୍ରତ୍ୟେକ ଟ୍ରିବ୍ୟୁନାଲଠାକୁ ଅନ୍ତରିତ ହେବା ପାଇଁ ଉପବନ୍ଧ କରାଯାଇ ପାରିବ ;

(ଚ) ରାଷ୍ଟ୍ରପତିଙ୍କ ଦ୍ୱାରା ଅନୁଚ୍ଛେଦ ୩୭୧ଘ ର ଖଣ୍ଡ (୩) ଅଧୀନରେ କରାଯାଇଥିବା ଯେ କୌଣସି ଆଦେଶକୁ ନିରସିତ ବା ସଂଶୋଧିତ କରାଯାଇ ପାରିବ ;

(ଛ) ଟ୍ରିବ୍ୟୁନାଲମାନ ସକ୍ରିୟ ରୂପେ କାର୍ଯ୍ୟ କରିବା ଓ ମାମଲାମାନ ତୁରନ୍ତ ଫଏସଲା କରିବା ନିମିତ୍ତ ଏବଂ ସେହି ସବୁ ଟ୍ରିବ୍ୟୁନାଲର ଆଦେଶମାନଙ୍କର ପ୍ରବର୍ତ୍ତନ ନିମିତ୍ତ ସଂସଦ ଯେପରି ଆବଶ୍ୟକ ମନେ କରିବ ସେପରି ଅନୁପୂରକ, ପ୍ରାସଙ୍ଗିକ ଓ ପାରିଣାମିକ ଉପବନ୍ଧମାନ (ଫିସ ସମ୍ବନ୍ଧୀୟ ଉପବନ୍ଧ ସମେତ) ରହିପାରିବ ।

(୩) ଏହି ସଂବିଧାନର ଅନ୍ୟ କୌଣସି ଉପବନ୍ଧରେ ବା ତତ୍‌ସମୟ ପ୍ରବୃତ୍ତ ଅନ୍ୟ କୌଣସି ବିଧିରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ଏହି ଅନୁଚ୍ଛେଦର ଉପବନ୍ଧମାନ ପ୍ରଭାବୀ ହେବ ।

ଅନ୍ୟ ବିଷୟ ନିମିତ୍ତ ଟ୍ରିବ୍ୟୁନାଲ ।

୩୨୩ ଖ । (୧) ଖଣ୍ଡ (୨) ରେ ବିନିର୍ଦ୍ଦିଷ୍ଟ ହୋଇଥିବା ଯେଉଁ ବିଷୟମାନଙ୍କ ସଂପର୍କରେ ସମୁଚିତ ବିଧାନ ମଣ୍ଡଳର ବିଧି ପ୍ରଣୟନ କରିବା କ୍ଷମତା ଥାଏ ସେହି ସମସ୍ତ ବିଷୟ ବା ତନ୍ମଧ୍ୟରୁ କୌଣସି ବିଷୟ ସମ୍ବନ୍ଧିତ ଯେ କୌଣସି ବିବାଦ, ପରିବାଦ ବା ଅପରାଧର ନ୍ୟାୟ ନିର୍ଣ୍ଣୟନ ବା ବିଚାର ଟ୍ରିବ୍ୟୁନାଲ ଦ୍ୱାରା କରାଯିବା ନିମିତ୍ତ ସେହି ବିଧାନ ମଣ୍ଡଳ ଉପବନ୍ଧିତ କରି ପାରିବ ।

(୨) ଖଣ୍ଡ (୧) ରେ ନିର୍ଦ୍ଦିଷ୍ଟ ବିଷୟମାନ ନିମ୍ନଲିଖିତ ଅଟେ, ଯଥା:—

(କ) କୌଣସି କରର ଉଦ୍‌ଗ୍ରହଣ, ନିର୍ଦ୍ଧାରଣ, ସଂଗ୍ରହଣ ଓ ପ୍ରବର୍ତ୍ତନ ;

(ଖ) ବିଦେଶୀ ମୁଦ୍ରା, ବହିଃ ଶୁଳ୍କ ସୀମାନ୍ତ ବାହାରେ ଆମଦାନୀ ଓ ରପ୍ତାନୀ;

(ଗ) ଔଦ୍ୟୋଗିକ ଓ ଶ୍ରମିକ ବିବାଦ ;

(ଘ) ଅନୁଚ୍ଛେଦ ୩୧ କ ରେ ଯଥା ସଂଜ୍ଞାକୃତ ସଂପଦା ବା ତହିଁରେ ଥିବା କୌଣସି ଅଧିକାର ରାଜ୍ୟ ଅର୍ଜନ କରିବା ଦ୍ୱାରା କିମ୍ବା ସେପରି କୌଣସି ଅଧିକାରର ସମାପ୍ତି ବା ରୂପାନ୍ତର ଦ୍ୱାରା ଅଥବା କୃଷି ଭୂମିର ସର୍ବୋଚ୍ଚ ସୀମା ନିର୍ଦ୍ଧାରଣ ଦ୍ୱାରା ବା ଅନ୍ୟ କୌଣସି ପ୍ରକାରେ ଭୂ-ସଂସ୍କାର ;

(ଙ) ନଗର ସଂପତ୍ତିର ସର୍ବୋଚ୍ଚ ସୀମା ;

(ଚ) ସଂସଦର ଉଭୟ ସଦନକୁ ବା ରାଜ୍ୟ ବିଧାନ ମଣ୍ଡଳର ସଦନ ବା ଉଭୟ ସଦନକୁ ନିର୍ବାଚନ, କିନ୍ତୁ ଅନୁଚ୍ଛେଦ ୩୨୯ ଓ ଅନୁଚ୍ଛେଦ ୩୨୯ କ ରେ ନିର୍ଦ୍ଦିଷ୍ଟ ବିଷୟକୁ ଛାଡ଼ି ;

(ଛ) ଯେଉଁ ସବୁ ଖାଦ୍ୟ ଦ୍ରବ୍ୟ (ଖାଦ୍ୟୋପଯୋଗୀ ତୈଳ ବୀଜ ଓ ତେଲ ସମେତ) ଓ ଅନ୍ୟ ଦ୍ରବ୍ୟକୁ ରାଷ୍ଟ୍ରପତି ଲୋକ ଅଧିସୂଚନା ଦ୍ୱାରା ଏହି ଅନୁଚ୍ଛେଦର ପ୍ରୟୋଜନ ନିମିତ୍ତ ଅତ୍ୟାବଶ୍ୟକ ଦ୍ରବ୍ୟ ବୋଲି ଘୋଷିତ କରିବେ ସେହି ସବୁ ଦ୍ରବ୍ୟର ଉତ୍ପାଦନ, ସଂଗ୍ରହ, ଯୋଗାଣ ଓ ବିତରଣ ଏବଂ ସେହି ସବୁ ଦ୍ରବ୍ୟର ମୂଲ୍ୟ ନିୟନ୍ତ୍ରଣ ;

(ଜ) (କ) ଠାରୁ (ଛ) ପର୍ଯ୍ୟନ୍ତ ଉପଖଣ୍ଡମାନଙ୍କରେ ବିନିର୍ଦ୍ଦିଷ୍ଟ ବିଷୟମାନଙ୍କ ମଧ୍ୟରୁ କୌଣସି ବିଷୟ ସମ୍ବନ୍ଧୀୟ ବିଧିମାନଙ୍କ ବିରୁଦ୍ଧରେ ଅପରାଧମାନ ଏବଂ ସେହି ବିଷୟମାନଙ୍କ ମଧ୍ୟରୁ କୌଣସି ବିଷୟ ବାବଦ ଫିସ ;

(ଝ) (କ) ଠାରୁ (ଜ) ପର୍ଯ୍ୟନ୍ତ ଉପଖଣ୍ଡମାନଙ୍କରେ ବିନିର୍ଦ୍ଦିଷ୍ଟ ବିଷୟମାନଙ୍କ ମଧ୍ୟରୁ କୌଣସି ବିଷୟର ଆନୁସଙ୍ଗିକ କୌଣସି ବିଷୟ ।

(୩) ଖଣ୍ଡ (୧) ଅଧୀନରେ ପ୍ରଣୀତ ବିଧିରେ—

(କ) ଟ୍ରିବୁନାଲମାନଙ୍କର ପଦାନୁକ୍ରମର ସ୍ଥାପନା ନିମିତ୍ତ ଉପବନ୍ଧ କରାଯାଇ ପାରିବ ;

(ଖ) ଉକ୍ତ ଟ୍ରିବୁନାଲମାନଙ୍କ ମଧ୍ୟରୁ ପ୍ରତ୍ୟେକ ଦ୍ୱାରା ଯେଉଁ ଅଧିକାରିତା, କ୍ଷମତା (ଅବମାନନା ନିମିତ୍ତ ଦଣ୍ଡ ଦେବା କ୍ଷମତା ସମେତ) ଏବଂ ପ୍ରାଧିକାର ପ୍ରୟୋଗ କରାଯାଇ ପାରିବ ତାହା ବିନିର୍ଦ୍ଦିଷ୍ଟ ହୋଇ ପାରିବ ;

(ଗ) ଉକ୍ତ ଟ୍ରିବୁନାଲମାନଙ୍କ ଦ୍ୱାରା ଅନୁସରଣ କରାଯିବା ପ୍ରକ୍ରିୟା (ପରିସୀମା ଓ ସାକ୍ଷ୍ୟର ନିୟମାବଳୀ ବିଷୟକ ଉପବନ୍ଧ ସମେତ) ଉପବନ୍ଧିତ କରାଯାଇ ପାରିବ ;

(ଘ) ଉକ୍ତ ଟ୍ରିବୁନାଲର ଅଧିକାରିତା ମଧ୍ୟରେ ଆସୁଥିବା ସମସ୍ତ ବା କୌଣସି ବିଷୟ ସଂପର୍କରେ, ଅନୁଚ୍ଛେଦ ୧୩୬ ଅଧୀନରେ ଉଚ୍ଚତମ ନ୍ୟାୟାଳୟର ଥିବା ଅଧିକାରିତା ଭିନ୍ନ ଅନ୍ୟ ସମସ୍ତ ନ୍ୟାୟାଳୟର ଅଧିକାରିତାର ଅପବର୍ଜନ କରାଯାଇପାରିବ ;'

(ଙ) ଟ୍ରିବୁନାଲ ସ୍ଥାପନ କରାଯିବାର ଅବ୍ୟବହିତ ପୂର୍ବରୁ କୌଣସି ନ୍ୟାୟାଳୟ ବା ଅନ୍ୟ କୌଣସି ପ୍ରାଧିକାରୀଙ୍କ ସମକ୍ଷରେ ଥିବା ମାମଲମାନ ଯେଉଁ ବାଦର କାରଣ ଉପରେ ଆଧାରିତ ହୋଇଥିବ ସେହି ବାଦର କାରଣ ସେହି ଟ୍ରିବୁନାଲ ସ୍ଥାପନ କରାଯିବା ପରେ ଉଦ୍‌ଭୂତ ହୋଇଥିଲେ ଉକ୍ତ ବାଦ ବା କାର୍ଯ୍ୟବାହୀ ଯେଉଁ ଟ୍ରିବୁନାଲର ଅଧିକାରିତା ମଧ୍ୟରେ ଆସନ୍ତା ସେହି ସବୁ ମାମଲା ସେପରି ପ୍ରତ୍ୟେକ ଟ୍ରିବୁନାଲଠାକୁ ଅନ୍ତରିତ ହେବା ପାଇଁ ଉପବନ୍ଧ କରାଯାଇ ପାରିବ ;

(ଚ) ଟ୍ରିବ୍ୟୁନାଲମାନ ସକ୍ରିୟ ରୂପେ କାର୍ଯ୍ୟ କରିବା ଓ ମାମଲାମାନ ତୁରନ୍ତ ଫଏସଲା କରିବା ନିମିତ୍ତ ଏବଂ ସେହି ସବୁ ଟ୍ରିବ୍ୟୁନାଲର ଆଦେଶମାନଙ୍କର ପ୍ରବର୍ତ୍ତନ ନିମିତ୍ତ ସମୁଚିତ ବିଧାନମଣ୍ଡଳ ଯେପରି ଆବଶ୍ୟକ ମନେ କରିବ ସେପରି ଅନୁପୂରକ, ପ୍ରାସଙ୍ଗିକ ଓ ପାରିଣାମିକ ଉପବନ୍ଧମାନ (ଫିସ ସମ୍ବନ୍ଧୀୟ ଉପବନ୍ଧ ସମେତ) ରହି ପାରିବ ।

(୪) ଏହି ସଂବିଧାନର ଅନ୍ୟ କୌଣସି ଉପବନ୍ଧରେ ବା ତତ୍‌ସମୟ ପ୍ରବୃତ୍ତ ଅନ୍ୟ କୌଣସି ବିଧିରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ଏହି ଅନୁଚ୍ଛେଦର ଉପବନ୍ଧମାନ ପ୍ରଭାବୀ ହେବ ।

ସ୍ପଷ୍ଟୀକରଣ :—ଏହି ଅନୁଚ୍ଛେଦରେ କୌଣସି ବିଷୟ ସମ୍ବନ୍ଧରେ "ସମୁଚିତ ବିଧାନମଣ୍ଡଳ" ର ଅର୍ଥ, ଯଥାସ୍ଥିତି, ସଂସଦ ବା ଭାଗ ୧୧ର ଉପବନ୍ଧମାନଙ୍କ ଅନୁସରଣରେ ଏପରି ବିଷୟ ସହିତ ସମ୍ବନ୍ଧିତ ବିଧି ପ୍ରଣୟନ କରିବା ନିମିତ୍ତ ସକ୍ଷମ ରାଜ୍ୟ ବିଧାନ ମଣ୍ଡଳ ।

# ଭାଗ ୧୫

## ନିର୍ବାଚନ

ନିର୍ବାଚନ କମିଶନଠାରେ ନିର୍ବାଚନ-ମାନଙ୍କର ଅଧୀକ୍ଷଣ, ନିର୍ଦ୍ଦେଶନ ଓ ନିୟନ୍ତ୍ରଣର ନିଧାନ ।

୩୨୪ । (୧) ଏହି ସଂବିଧାନ ଅଧୀନରେ ସଂସଦର ଓ ପ୍ରତ୍ୟେକ ରାଜ୍ୟର ବିଧାନମଣ୍ଡଳ ସକାଶେ ନିର୍ବାଚନ ନିମିତ୍ତ ନାମାବଳୀ ପ୍ରସ୍ତୁତ କରିବାର ଅଧୀକ୍ଷଣ, ନିର୍ଦ୍ଦେଶ ଓ ନିୟନ୍ତ୍ରଣ ଏବଂ ସେହି ସମସ୍ତ ନିର୍ବାଚନର ତଥା ରାଷ୍ଟ୍ରପତି ଓ ଉପରାଷ୍ଟ୍ରପତି ପଦମାନଙ୍କ ପାଇଁ ନିର୍ବାଚନର ସଞ୍ଚାଳନ ଏକ କମିଶନଠାରେ ନିହିତ ହେବ (ଯୋହାକି ଏହି ସମ୍ବିଧାନରେ "ନିର୍ବାଚନ କମିଶନ" ନାମରେ ନିର୍ଦ୍ଦିଷ୍ଟ ଅଟେ) ।

(୨) ମୁଖ୍ୟ ନିର୍ବାଚନ କମିଶନର ତଥା ରାଷ୍ଟ୍ରପତି ବିଭିନ୍ନ ସମୟରେ ଯଦି କେତେକ ଅନ୍ୟ ନିର୍ବାଚନ କମିଶନର ନିୟତ କରନ୍ତି ତାହା ହେଲେ ସେମାନଙ୍କୁ ନେଇ ନିର୍ବାଚନ କମିଶନ ଗଠିତ ହେବ ଏବଂ ମୁଖ୍ୟ ନିର୍ବାଚନ କମିଶନର ଓ ଅନ୍ୟ କମିଶନର ମାନଙ୍କର ନିଯୁକ୍ତି ସଂସଦ ଦ୍ୱାରା ଏଥିଲାଗି ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ରାଷ୍ଟ୍ରପତିଙ୍କ ଦ୍ୱାରା କରାଯିବ ।

(୩) ଅନ୍ୟ କୌଣସି ନିର୍ବାଚନ କମିଶନର ଏହି ଭାଗରେ ନିଯୁକ୍ତ କରାଗଲେ ମୁଖ୍ୟ ନିର୍ବାଚନ କମିଶନର ନିର୍ବାଚନ କମିଶନର ସଭାପତି ରୂପେ କାର୍ଯ୍ୟ କରିବେ ।

(୪) ଲୋକସଭା ଏବଂ ପ୍ରତ୍ୟେକ ରାଜ୍ୟର ବିଧାନ ସଭାର ପ୍ରତ୍ୟେକ ସାଧାରଣ ନିର୍ବାଚନ ପୂର୍ବରୁ ଏବଂ ବିଧାନ ପରିଷଦ ଥିବା ପ୍ରତ୍ୟେକ ରାଜ୍ୟର ବିଧାନପରିଷଦ ସକାଶେ ପ୍ରଥମ ସାଧାରଣ ନିର୍ବାଚନର ପ୍ରତ୍ୟେକ ଦ୍ୱିବାର୍ଷିକ ନିର୍ବାଚନର ପୂର୍ବରୁ ରାଷ୍ଟ୍ରପତି ନିର୍ବାଚନ କମିଶନ ସହିତ ପରାମର୍ଶ କରିବା ପରେ ଖଣ୍ଡ (୧) ଦ୍ୱାରା ନିର୍ବାଚନ କମିଶନକୁ ପ୍ରଦତ୍ତ କୃତ୍ୟମାନଙ୍କର ସଂପାଦନରେ କମିଶନକୁ ସାହାଯ୍ୟ କରିବା ଲାଗି ଯେପରି ଆବଶ୍ୟକ ବିବେଚନା କରିବେ ସେପରି ଆଞ୍ଚଳିକ କମିଶନର ମଧ୍ୟ ନିଯୁକ୍ତ କରି ପାରିବେ ।

(୫) ସଂସଦ ଦ୍ୱାରା ପ୍ରଣିତ କୌଣସି ବିଧିର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, ରାଷ୍ଟ୍ରପତି ନିୟମଦ୍ୱାରା ଯେପରି ବିହିତ କରିବେ ନିର୍ବାଚନ କମିଶନରମାନଙ୍କର ଓ ଆଞ୍ଚଳିକ କମିଶନରମାନଙ୍କର ସେବାର ସର୍ତ୍ତ ଓ ପଦାବଧି ସେପରି ହେବ :

ପରନ୍ତୁ ଯେଉଁ ଯେଉଁ କାରଣରୁ ଓ ଯେଉଁ ରୀତିରେ ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶଙ୍କୁ ଦୂରୀକୃତ କରାଯାଇ ପାରିବ ସେପରି କାରଣ ଓ ସେପରି ରୀତି ବିନା ମୁଖ୍ୟ ନିର୍ବାଚନ କମିଶନରଙ୍କୁ ତାଙ୍କ ପଦରୁ ଦୂରୀକୃତ କରାଯିବ ନାହିଁ ଏବଂ ମୁଖ୍ୟ ନିର୍ବାଚନ କମିଶନରଙ୍କର ନିଯୁକ୍ତି ପରେ ତାଙ୍କର ସେବା ସର୍ତ୍ତରେ ତାଙ୍କର ଅନନୁକୂଳ ହେଲାଭଳି କୌଣସି ପରିବର୍ତ୍ତନ କରାଯିବ ନାହିଁ :

ଅଧିକନ୍ତୁ ମୁଖ୍ୟ ନିର୍ବାଚନ କମିଶନରଙ୍କର ବିନା ସୁପାରିଶରେ କୌଣସି ଅନ୍ୟ ନିର୍ବାଚନ କମିଶନରଙ୍କୁ ବା ଆଞ୍ଚଳିକ କମିଶନରଙ୍କୁ ତାଙ୍କ ପଦରୁ ଦୂରୀକୃତ କରାଯିବ ନାହିଁ ।

(୬) ନିର୍ବାଚନ କମିଶନ ପ୍ରାର୍ଥନା କଲେ ରାଷ୍ଟ୍ରପତି ବା କୌଣସି ରାଜ୍ୟର ରାଜ୍ୟପାଳ ଖଣ୍ଡ (୧) ଦ୍ୱାରା ନିର୍ବାଚନ କମିଶନଠାରେ ନ୍ୟସ୍ତ କୃତ୍ୟମାନଙ୍କର ସଂପାଦନ ସକାଶେ ଯେପରି ଆବଶ୍ୟକ ହେବ ସେପରି କର୍ମଚାରୀ ବୃନ୍ଦ ନିର୍ବାଚନ କମିଶନ ବା ପ୍ରାଦେଶିକ କମିଶନରଙ୍କୁ ପ୍ରାପ୍ତ କରାଇବେ ।

ଧର୍ମ, ମୂଳବଂଶ, ଜାତି ବା ଲିଂଗର ଆଧାର ଉପରେ କୌଣସି ବ୍ୟକ୍ତି ନିର୍ବାଚକ ନାମାବଳୀର ଅନ୍ତର୍ଭୁକ୍ତ ହେବା ବିଷୟରେ ଅପାତ୍ର ନହେବା ଏବଂ କୌଣସି ବିଶେଷ ନିର୍ବାଚନ ନାମାବଳୀରେ ଅନ୍ତର୍ଭୁକ୍ତ ହେବା ସକାଶେ ଦାବୀ ନ କରିବା ।

୩୨୫ । ସଂସଦର ପ୍ରତ୍ୟେକ କିମ୍ବା କୌଣସି ରାଜ୍ୟର ବିଧାନ ମଣ୍ଡଳର ସଦନ ବା ପ୍ରତ୍ୟେକ ସଦନ ନିମିତ୍ତ ନିର୍ବାଚନ ସକାଶେ ପ୍ରତ୍ୟେକ ପ୍ରାଦେଶିକ ନିର୍ବାଚନ କ୍ଷେତ୍ର ଲାଗି ଗୋଟିଏ ସାଧାରଣ ନାମାବଳୀ ହେବ ଏବଂ କେବଳ ଧର୍ମ, ମୂଳବଂଶ, ଜାତି, ଲିଙ୍ଗ କିମ୍ବା ଏଥି ମଧ୍ୟସ୍ଥ କୌଣସିଟିର ଆଧାର ଉପରେ କୌଣସି ବ୍ୟକ୍ତି ସେପରି କୌଣସି ନାମାବଳୀରେ ଅନ୍ତର୍ଭୁକ୍ତ ହେବା ସକାଶେ ଅପାତ୍ର ହେବେ ନାହିଁ କିମ୍ବା ସେପରି କୌଣସି ନିର୍ବାଚନ କ୍ଷେତ୍ର ସକାଶେ କୌଣସି ବିଶେଷ ନିର୍ବାଚନ ନାମାବଳୀରେ ଅନ୍ତର୍ଭୁକ୍ତ ହେବାଲାଗି ଦାବୀ କରିବେ ନାହିଁ ।

ଲୋକସଭା ଓ ରାଜ୍ୟର ବିଧାନମଣ୍ଡଳ—ଲାଗି ବୟସ୍କ ଭୋଟାଧିକାର ଭିତ୍ତିରେ ନିର୍ବାଚନ ହେବା ।

୩୨୬ । ଲୋକସଭା ଏବଂ ପ୍ରତ୍ୟେକ ରାଜ୍ୟର ବିଧାନସଭା ସକାଶେ ନିର୍ବାଚନ ବୟସ୍କ ଭୋଟାଧିକାର ଭିତ୍ତିରେ ହେବ, ଅର୍ଥାତ ଯେଉଁ ବ୍ୟକ୍ତି ଭାରତର ନାଗରିକ ହୋଇଥିବେ ଏବଂ ସମୁଚିତ ବିଧାନମଣ୍ଡଳ କର୍ତ୍ତୃକ ପ୍ରଣୀତ ବିଧିଦ୍ୱାରା ବା ଅଧୀନରେ ଯେଉଁ ତାରିଖ ନିୟତ କରାଯାଇଥିବ ସେହି ତାରିଖରେ ଅନ୍ୟୁନ ଏକୋଇଶ ବର୍ଷ ବୟସ୍କ ହୋଇଥିବେ ଏବଂ ଏହି ସଂବିଧାନ ବା ସମୁଚିତ ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ କୌଣସି ବିଧିର ଅଧୀନରେ ଅନିବାସ, ଚିତ୍ତବିକୃତ ଅପରାଧ କିମ୍ବା ଭ୍ରଷ୍ଟ ବା ଅବୈଧ ଆଚାର ଯୋଗୁ ଅଯୋଗ୍ୟ କରାଯାଇ ନ ଥିବେ ସେପରି ପ୍ରତ୍ୟେକ ବ୍ୟକ୍ତି ସେପରି କୌଣସି ନିର୍ବାଚନରେ ଭୋଟ ଦାତାରୂପେ ପଞ୍ଜୀବଦ୍ଧ ହେବାଲାଗି ହକ୍‌ଦାର ହେବେ ।

ବିଧାନମଣ୍ଡଳମାନଙ୍କ ସକାଶେ ନିର୍ବାଚନ ବିଷୟରେ ଉପବନ୍ଧ ପ୍ରଣୟନ ଲାଗି ସଂସଦର କ୍ଷମତା ।

୩୨୭ । ଏହି ସଂବିଧାନର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ସଂସଦ ଭିନ୍ନ ଭିନ୍ନ ସମୟରେ ବିଧିଦ୍ୱାରା ସଂସଦର ପ୍ରତ୍ୟେକ ସଦନ ବା କୌଣସି ରାଜ୍ୟର ବିଧାନମଣ୍ଡଳର ସଦନ ବା ପ୍ରତ୍ୟେକ ସଦନ ସକାଶେ ନିର୍ବାଚନ ସହିତ ସଂଘବଦ୍ଧ ଭାବେ ବା ସଂପୃକ୍ତ ସମସ୍ତ ବିଷୟ ସଂବଂଧରେ ଏବଂ ତତ୍‌ସହ ନିର୍ବାଚକ ନାମାବଳୀର ପ୍ରଣୟନ ଓ ନିର୍ବାଚନ କ୍ଷେତ୍ରର ପରିସୀମନ ଏବଂ ସେପରି ସଦନ ବା ସଦନମାନଙ୍କର ସମ୍ୟକ ଗଠନ କରାଇବା ସକାଶେ ଆବଶ୍ୟକ ସମସ୍ତ ବିଷୟ ସଂବନ୍ଧରେ ମଧ୍ୟ ଉପବଂଧ କରିପାରିବ ।

କୌଣସି ରାଜ୍ୟର ବିଧାନମଣ୍ଡଳର ସେପରି ବିଧାନମଣ୍ଡଳ ସକାଶେ ନିର୍ବାଚନ ସଂବନ୍ଧରେ ଉପବନ୍ଧ ପ୍ରଣୟନ କରିବା ଲାଗି କ୍ଷମତା ।

୩୨୮ । କୌଣସି ରାଜ୍ୟର ବିଧାନମଣ୍ଡଳର ସଦନ ବା ପ୍ରତ୍ୟେକ ସଦନ ସକାଶେ ନିର୍ବାଚନ ସହିତ ସଂବଦ୍ଧ ବା ସଂସକ୍ତ ସମସ୍ତ ବିଷୟ ସମ୍ବନ୍ଧରେ ଏବଂ ତତ୍‌ସହ ନିର୍ବାଚନ ନାମାବଳୀର ପ୍ରଣୟନ ଓ ସେପରି ସଦନ ବା ସଦନମାନଙ୍କର ସମ୍ୟକ ଗଠନ କରାଇବା ସକାଶେ ଆବଶ୍ୟକ ଅନ୍ୟ ସବୁ ବିଷୟରେ ମଧ୍ୟ ସେହି ରାଜ୍ୟର ବିଧାନମଣ୍ଡଳ ଭିନ୍ନ ଭିନ୍ନ ସମୟରେ ଏହି ସଂବିଧାନର ଉପବଂଧମାନଙ୍କର ବଶବର୍ତ୍ତୀ ରହି, ସଂସଦ ଏଥିସକାଶେ ଯେଉଁ ପର୍ଯ୍ୟନ୍ତ ଉପବଂଧ ପ୍ରଣୟନ କରି ନ ଥିବ ସେହି ପର୍ଯ୍ୟନ୍ତ ବିଧିଦ୍ୱାରା ଉପବଂଧ ପ୍ରଣୟନ କରି ପାରିବ ।

**ନିର୍ବାଚନ ବିଷୟରେ ନ୍ୟାୟାଳୟର ହସ୍ତକ୍ଷେପକୁ ବାରଣ କରିବା ।**

୩୨୯ । ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ,—

(କ) ଅନୁଚ୍ଛେଦ ୩୨୭ ବା ଅନୁଚ୍ଛେଦ ୩୨୮ ଅଧୀନରେ ପ୍ରଣୀତ ବା ପ୍ରଣୟନ ସକାଶେ ଅଭିପ୍ରେତ ନର୍ବାଚନ କ୍ଷେତ୍ରର ପରିସୀମନ ବା ସେପରି ନର୍ବାଚନ କ୍ଷେତ୍ରମାନଙ୍କ ସ୍ଥାନ ବଣ୍ଟନ ସହିତ ସଂବଂଧିତ କୌଣସି ବିଧିର ବିଧିମାନ୍ୟତା ଉପରେ କୌଣସି ନ୍ୟାୟାଳୟରେ ଆପତ୍ତି କରାଯିବ ନାହିଁ ;

(ଖ) ସମୁଚିତ ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ କୌଣସି ବିଧିଦ୍ୱାରା ବା ଅଧୀନରେ ଯେପରି ଉପବଂଧିତ ହୋଇଥିବ ସେପରି ପ୍ରାଧିକାରୀଙ୍କ ସମକ୍ଷରେ ନିର୍ବାଚନ ଆବେଦନପତ୍ର ଉପସ୍ଥାପିତ କରାଯିବା ଭିନ୍ନ ଅନ୍ୟଥା ସଂସଦର ପ୍ରତ୍ୟେକ ସଦନର କିମ୍ବା ରାଜ୍ୟର ବିଧାନ-ମଣ୍ଡଳର ସଦନ ବା ପ୍ରତ୍ୟେକ ସଦନର କୌଣସି ନିର୍ବାଚନ ବିଷୟରେ ଆପତ୍ତି କରାଯିବନାହିଁ । ନିରସିତ

୩୨୯ କ । ନିରସିତ ।

# ଭାଗ ୧୬

## କେତେକ ଶ୍ରେଣୀ ସଂପର୍କରେ ବିଶେଷ ଉପବନ୍ଧ

ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତିଙ୍କ ନିମିତ୍ତ ଲୋକ ସଭାରେ ସ୍ଥାନ ସଂରକ୍ଷଣ ।

୩୩୦ । (୧) ଲୋକସଭାରେ—

(କ) ଅନୁସୂଚିତ ଜାତିଙ୍କ ନିମିତ୍ତ,

(ଖ) (i) ଆସାମର ଜନଜାତି କ୍ଷେତ୍ରରେ,

(ii) ନାଗାଲାଣ୍ଡରେ,

(iii) ମେଘାଳୟରେ,

(iv) ଅରୁଣାଚଳ ପ୍ରଦେଶରେ, ଏବଂ

(v) ମିଜୋରାମରେ,

ଥିବା ଅନୁସୂଚିତ ଜନଜାତି ଭିନ୍ନ ଅନ୍ୟ ଜନଜାତିଙ୍କ ନିମିତ୍ତ, ଏବଂ

(ଗ) ଆସାମର ସ୍ୱାୟତ୍ତଶାସୀ ଜିଲ୍ଲାମାନଙ୍କରେ ଅନୁସୂଚିତ ଜନଜାତିଙ୍କ ନିମିତ୍ତ, ସ୍ଥାନ ସଂରକ୍ଷିତ ରହିବ ।

(୨) କୌଣସି ରାଜ୍ୟ ବା ସଂଘ ରାଜ୍ୟକ୍ଷେତ୍ରମାନଙ୍କରେ କିମ୍ବା ସେହି ରାଜ୍ୟ ବା ସଂଘ ରାଜ୍ୟକ୍ଷେତ୍ରର କୌଣସି ଭାଗରେ ଥିବା ଯେଉଁ ଅନୁସୂଚିତ ଜାତି ବା ଅନୁସୂଚିତ ଜନଜାତିଙ୍କ ସଂବନ୍ଧରେ ସ୍ଥାନ ଏପରି ସଂରକ୍ଷିତ ହୋଇଥିବ ସେମାନଙ୍କ ଜନସଂଖ୍ୟାର ସେହି ରାଜ୍ୟ ବା ସଂଘ ରାଜ୍ୟକ୍ଷେତ୍ରର ମୋଟ ଜନସଂଖ୍ୟା ସହିତ ଯେଉଁ ଅନୁପାତ ଥିବ, ଯଥାସ୍ଥିତି, ସେହି ରାଜ୍ୟ ବା ସଂଘ ରାଜ୍ୟକ୍ଷେତ୍ରରେ ଅନୁସୂଚିତ ଜନଜାତିଙ୍କ ନିମିତ୍ତ ଖଣ୍ଡ (୨) ଅଧୀନରେ ସଂରକ୍ଷିତ ସ୍ଥାନ ସଂଖ୍ୟାର ସେହି ରାଜ୍ୟ ବା ସଂଘ ରାଜ୍ୟକ୍ଷେତ୍ର ପ୍ରତି ଲୋକସଭା ନିମିତ୍ତ ଆବଣ୍ଟନରେ ପ୍ରଦତ୍ତ ମୋଟ ସ୍ଥାନ ସଂଖ୍ୟା ସହିତ ଯଥା ସଂଭବ ସେହି ଅନୁପାତ ରହିବ ।

(୩) ଖଣ୍ଡ (୨)ରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ଆସାମର ସ୍ୱାୟତ୍ତଶାସୀ ଜିଲ୍ଲାମାନଙ୍କ ଅନୁସୂଚିତ ଜନଜାତିମାନଙ୍କର ଜନସଂଖ୍ୟାର ସେହି ରାଜ୍ୟର ମୋଟ ଜନସଂଖ୍ୟା ସହିତ ଯେଉଁ ଅନୁପାତ ଥିବ ଲୋକସଭାରେ ସେହି ରାଜ୍ୟପ୍ରତି ଆବଣ୍ଟିତ ମୋଟ ସ୍ଥାନ ସଂଖ୍ୟାର ଅନ୍ୟୁନ ସେହି ଅନୁପାତରେ ସ୍ଥାନ ଉକ୍ତ ସ୍ୱାୟତ୍ତଶାସୀ ଜିଲ୍ଲାମାନଙ୍କପାଇଁ ଲୋକସଭାରେ ଆରକ୍ଷିତ ରହିବ ।

ସ୍ପଷ୍ଟୀକରଣ :—ଏହି ଅନୁଚ୍ଛେଦରେ ଏବଂ ଅନୁଚ୍ଛେଦ ୩୩୨ରେ "ଜନସଂଖ୍ୟା" ପଦର ଅର୍ଥ ଅନ୍ତିମ ପୂର୍ବଗାମୀ ଜନଗଣନାରେ ନିଶ୍ଚିତ ହୋଇଥିବା ଜନ ସଂଖ୍ୟା, ଯହିଁର କି ସୁସଂଗତ ସଂଖ୍ୟା ପ୍ରକାଶିତ ହୋଇଥାଏ :

ପରନ୍ତୁ ଏହି ସ୍ପଷ୍ଟୀକରଣରେ ଅନ୍ତିମ ପୂର୍ବଗାମୀ ଜନଗଣନାପ୍ରତି ନିର୍ଦ୍ଦେଶ, ଯହିଁରକି ସୁସଂଗତ ସଂଖ୍ୟା ପ୍ରକାଶିତ ହୋଇଥାଏ, ସନ ୨୦୦୦ ପରେ କରାଯିବା ପ୍ରଥମ ଜନଗଣନାରେ ସୁସଂଗତ ସଂଖ୍ୟା ପ୍ରକାଶିତ ହେବା ପର୍ଯ୍ୟନ୍ତ ସନ ୧୯୭୧ର ଜନଗଣନା ପ୍ରତି ନିର୍ଦ୍ଦେଶ ବୋଲି ଅର୍ଥ କରାଯିବ ।

ଲୋକସଭାରେ ଆଙ୍ଗ୍ଲୋଭାରତୀୟ ସମାଜର ପ୍ରତିନିଧିତ୍ୱ ।

୩୩୧ । ଅନୁଚ୍ଛେଦ ୮୧ରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ଯଦି ରାଷ୍ଟ୍ରପତି ମନେ କରନ୍ତି ଯେ ଲୋକସଭାରେ ଆଂଗ୍ଲୋ-ଭାରତୀୟ ସମାଜର ପ୍ରତିନିଧିତ୍ୱ ପର୍ଯ୍ୟାପ୍ତ ନୁହେଁ ତାହାହେଲେ ସେ ଲୋକସଭାରେ ଏହି ସମାଜର ଦୁଇରୁ ଅନଧିକ ସଦସ୍ୟଙ୍କୁ ନାମ ନିର୍ଦ୍ଦେଶିତ କରି ପାରିବେ ।

ରାଜ୍ୟମାନଙ୍କର ବିଧାନ ସଭାମାନଙ୍କରେ ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତିଙ୍କ ସକାଶେ ସ୍ଥାନ ସଂରକ୍ଷଣ ।

୩୩୨ । (୧) ଆସାମର, ନାଗାଲାଣ୍ଡର ଓ ମେଘାଳୟର ଜନଜାତି କ୍ଷେତ୍ରମାନଙ୍କରେ ଥିବା ଅନୁସୂଚିତ ଜନଜାତିଙ୍କ ଭିନ୍ନ ଅନ୍ୟ ଜନଜାତିଙ୍କ ସକାଶେ ପ୍ରତ୍ୟେକ ରାଜ୍ୟର ବିଧାନ ସଭାରେ ସ୍ଥାନ ସଂରକ୍ଷିତ ରହିବ ।

(୨) ଆସାମ ରାଜ୍ୟର ବିଧାନସଭାରେ ସ୍ୱାୟତ୍ତଶାସୀ ଜିଲ୍ଲାମାନଙ୍କ ସକାଶେ ମଧ୍ୟ ସ୍ଥାନ ସଂରକ୍ଷିତ ରହିବ ।

(୩) କୌଣସି ରାଜ୍ୟରେ ଯେଉଁ ଅନୁସୂଚିତ ଜାତିଙ୍କ ସଂବନ୍ଧରେ କିମ୍ବା ଯଥାସ୍ଥିତି, ସେ ରାଜ୍ୟରେ ବା ତହିଁର କୌଣସି ଭାଗରେ ଯେଉଁ ଅନୁସୂଚିତ ଜନଜାତିଙ୍କ ସମ୍ବନ୍ଧରେ ସ୍ଥାନ ସଂରକ୍ଷିତ ହୋଇଥିବ ସେମାନଙ୍କ ଜନସଂଖ୍ୟାର ସେହି ରାଜ୍ୟର ସମସ୍ତ ଜନସଂଖ୍ୟା ସହିତ ଯେଉଁ ଅନୁପାତ ରହିଥିବ ଖଣ୍ଡ (୧) ଅଧୀନରେ ସେହି ରାଜ୍ୟର ବିଧାନ ସଭାରେ ଅନୁସୂଚିତ ଜନଜାତିଙ୍କ ସକାଶେ ସଂରକ୍ଷିତ ସ୍ଥାନମାନଙ୍କର ସେହି ସଭାର ସମସ୍ତ ସ୍ଥାନ ସଂଖ୍ୟା ସହିତ ଯଥା ସଂଭବ ସେହି ଅନୁପାତ ରହିବ ।

(୪) ଆସାମ ରାଜ୍ୟର ବିଧାନ ସଭାରେ କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ସକାଶେ ସଂରକ୍ଷିତ ସ୍ଥାନ-ମାନଙ୍କ ସଂଖ୍ୟାର ସେହି ସଭାରେ ମୋଟ ସ୍ଥାନ ସଂଖ୍ୟା ସହିତ ଅନୁପାତ ସେହି ଜିଲ୍ଲାର ଜନସଂଖ୍ୟାର ସେହି ରାଜ୍ୟର ସମସ୍ତ ଜନସଂଖ୍ୟା ସହିତ ଯେଉଁ ଅନୁପାତ ଥିବ ସେହି ଅନୁପାତରୁ କମ୍ ହେବ ନାହିଁ ।

(୫) ଆସାମ ରାଜ୍ୟର କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ସକାଶେ ସଂରକ୍ଷିତ ସ୍ଥାନମାନଙ୍କ ଲାଗି ନିର୍ବାଚନ କ୍ଷେତ୍ରମାନଙ୍କରେ ସେହି ଜିଲ୍ଲା ବହିର୍ଗତ କୌଣସି କ୍ଷେତ୍ର ଅନ୍ତର୍ଗତ ହେବ ନାହିଁ ।

(୬) ଯେଉଁ ବ୍ୟକ୍ତି ଆସାମ ରାଜ୍ୟର କୌଣସି ସ୍ୱାୟତ୍ତଶାସୀ ଜିଲ୍ଲାର ଅନୁସୂଚିତ ଜନଜାତିର ସଦସ୍ୟ ନୁହନ୍ତି ସେ ସେହି ରାଜ୍ୟର ବିଧାନସଭା ସକାଶେ ସେହି ଜିଲ୍ଲାର ଅନ୍ୟ କୌଣସି ନିର୍ବାଚନ କ୍ଷେତ୍ରରୁ ନିର୍ବାଚିତ ହେବା ଲାଗି ପାତ୍ର ହେବେ ନାହିଁ ।

**ରାଜ୍ୟମାନଙ୍କର ବିଧାନ ସଭାମାନଙ୍କରେ ଆଙ୍ଗ୍ଲୋ-ଭାରତୀୟ ସମାଜର ପ୍ରତିନିଧିତ୍ୱ ।**

୩୩୩ । ଅନୁଚ୍ଛେଦ ୧୭୦ରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, କୌଣସି ରାଜ୍ୟର ବିଧାନସଭାରେ ଆଙ୍ଗ୍ଲୋ-ଭାରତୀୟ ସମାଜର ପ୍ରତିନିଧିତ୍ୱ ଆବଶ୍ୟକ ଏବଂ ତହିଁରେ ତାଙ୍କର ପ୍ରତିନିଧିତ୍ୱ ପର୍ଯ୍ୟାପ୍ତ ନୁହେଁ ବୋଲି ଯଦି ସେହି ରାଜ୍ୟର ରାଜ୍ୟପାଳ ମନେ କରନ୍ତି ତାହାହେଲେ ସେ ସେହି ବିଧାନସଭା ନିମିତ୍ତ ସେହି ସମାଜର ଜଣେ ସଦସ୍ୟଙ୍କୁ ନାମ ନିର୍ଦ୍ଦେଶିତ କରିପାରିବେ ।

**ସ୍ଥାନ ସଂରକ୍ଷଣ ଓ ବିଶେଷ ପ୍ରତିନିଧିତ୍ୱ ପଚିଶ ବର୍ଷ ପରେ ରହିତ ହେବା ।**

୩୩୪ । ଏହି ଭାଗର ପୂର୍ବବର୍ତ୍ତୀ ଉପବନ୍ଧମାନଙ୍କରେ ଯାହା କିଛି ଥିବା ସତ୍ତ୍ୱେ—

(କ) ଲୋକସଭାରେ ଏବଂ ରାଜ୍ୟମାନଙ୍କର ବିଧାନ ସଭାମାନଙ୍କରେ ଅନୁସୂଚିତ ଜାତି ଏବଂ ଅନୁସୂଚିତ ଜନଜାତିଙ୍କ ସକାଶେ ସ୍ଥାନମାନଙ୍କର ସଂରକ୍ଷଣ ସମ୍ବନ୍ଧୀୟ, ଏବଂ

(ଖ) ଲୋକସଭାରେ ଏବଂ ରାଜ୍ୟମାନଙ୍କର ବିଧାନ ସଭାମାନଙ୍କରେ ନାମ ନିର୍ଦ୍ଦେଶନ ଦ୍ୱାରା ଆଙ୍ଗ୍ଲୋ-ଭାରତୀୟ ସମାଜର ପ୍ରତିନିଧିତ୍ୱ ସମ୍ବନ୍ଧୀୟ,

ଏହି ସଂବିଧାନର ଉପବନ୍ଧମାନ ଏହି ସଂବିଧାନର ପ୍ରାରମ୍ଭରୁ ପଚିଶ ବର୍ଷ କାଳାବଧିର ଅବସାନ ହେଲେ ପ୍ରଭାବୀ ହେବାରୁ ରହିତ ହେବ :

ପରନ୍ତୁ ଏହି ଅନୁଚ୍ଛେଦର କୌଣସି ବିଷୟ ଲୋକସଭାରେ ବା ରାଜ୍ୟର ବିଧାନସଭାରେ କୌଣସି ପ୍ରତିନିଧିତ୍ୱକୁ, ଯଥାସ୍ଥିତି, ସେ ସମୟରେ ବିଦ୍ୟମାନ ଲୋକସଭା ବା ବିଧାନସଭାର ବିଘଟନ ନ ହେବା ପର୍ଯ୍ୟନ୍ତ ପ୍ରଭାବିତ କରିବ ନାହିଁ ।

**ସେବା ଓ ପଦମାନଙ୍କ ସକାଶେ ଅନୁସୂଚିତ ଜାତି ଏବଂ ଅନୁସୂଚିତ ଜନଜାତିଙ୍କର ଦାବୀ ।**

୩୩୫ । ସଂଘ ବା ରାଜ୍ୟର କାର୍ଯ୍ୟ ସହିତ ସଂସକ୍ତ ସେବା ଓ ପଦଲାଗି ନିଯୁକ୍ତ କରିବାବେଳେ ପ୍ରଶାସନ କାର୍ଯ୍ୟ ପଟୁତାର ରକ୍ଷଣ ସହିତ ସାମଞ୍ଜସ୍ୟ ରଖାଯାଇ ଅନୁସୂଚିତ ଜାତିଙ୍କ ଏବଂ ଅନୁସୂଚିତ ଜନଜାତିଙ୍କ ସଦସ୍ୟମାନଙ୍କର ଦାବୀ ପ୍ରତି ଧ୍ୟାନ ରଖାଯିବ ।

**କେତେକ ସେବାରେ ଆଙ୍ଗ୍ଲୋ-ଭାରତୀୟ ସମାଜ ସକାଶେ ବିଶେଷ ଉପବନ୍ଧ ।**

୩୩୬ । (୧) ଏହି ସଂବିଧାନର ପ୍ରାରମ୍ଭ ପରେ ପ୍ରଥମ ଦୁଇବର୍ଷ ଲାଗି ସଂଘର ରେଳ, ବହିଃଶୁଳ୍କ, ଡାକ ଏବଂ ତାର ବିଭାଗ ସେବାମାନଙ୍କ ପଦରେ ଆଙ୍ଗ୍ଲୋ-ଭାରତୀୟ ସମାଜର ନିଯୁକ୍ତି ଅଗଷ୍ଟ ୧୫ ତାରିଖ ୧୯୪୭ର ଅବ୍ୟବହିତ ପୂର୍ବରୁ ଥିବା ଭିତ୍ତି ଉପରେ କରାଯିବ ।

ପ୍ରତ୍ୟେକ ପରବର୍ତ୍ତୀ ଦୁଇବର୍ଷ କାଳାବଧି ମଧ୍ୟରେ ଉକ୍ତ ସମାଜ ସକାଶେ ଉକ୍ତ ସେବାମାନଙ୍କରେ ସଂରକ୍ଷିତ ପଦମାନଙ୍କର ସଂଖ୍ୟା ଅବ୍ୟବହିତ ପୂର୍ବବର୍ତ୍ତୀ ଦୁଇବର୍ଷ କାଳାବଧିରେ ଏହିପରି ସଂରକ୍ଷିତ ସଂଖ୍ୟାରୁ ଯଥାସମ୍ଭବ ଶତକଡା ଦଶ କମ୍ ହେବ:

ପରନ୍ତୁ ଏହି ସଂବିଧାନର ପ୍ରାରମ୍ଭର ଦଶବର୍ଷ ଅନ୍ତେ ସେପରି ସମସ୍ତ ସଂରକ୍ଷଣର ଅବସାନ ହେବ ।

(୨) ଆଙ୍ଗ୍ଲୋ-ଭାରତୀୟ ସମାଜର ଲୋକେ ଯୋଗ୍ୟତା ଦୃଷ୍ଟିରୁ ଅନ୍ୟ ସାମାଜର ଲୋକଙ୍କ ଭଳି ନିଯୁକ୍ତି ସକାଶେ ଯୋଗ୍ୟ ବୋଲି ପରିଦୃଷ୍ଟ ହେଲେ ଖଣ୍ଡ (୧) ର ଅଧୀନରେ ସେହି ଲୋକ ସମାଜ ସକାଶେ ସଂରକ୍ଷିତ ପଦମାନଙ୍କ ଭିନ୍ନ ଅନ୍ୟ ପଦରେ କିମ୍ବା ସେହି ପଦମାନଙ୍କ ସହିତ ଅନ୍ୟ ପଦରେ ଆଙ୍ଗ୍ଲୋ-ଭାରତୀୟ ସମାଜର ଲୋକମାନଙ୍କ ନିଯୁକ୍ତିରେ ଏହି ଖଣ୍ଡର କୌଣସି ବିଷୟ ପ୍ରତିବନ୍ଧକ ହେବ ନାହିଁ ।

ଆଙ୍ଗ୍ଲୋ-ଭାରତୀୟ ସମାଜର ମଙ୍ଗଳ ସକାଶେ ଶିକ୍ଷା-ଅନୁଦାନ ଲାଗି ବିଶେଷ ଉପବନ୍ଧ ।

୩୩୭ । ଆଙ୍ଗ୍ଲୋ-ଭାରତୀୟ ସମାଜ ମଙ୍ଗଳ ସକାଶେ ଶିକ୍ଷା ସମ୍ବନ୍ଧରେ ଯେବେ କିଛି ଅନୁଦାନ ୧୯୪୮ ମାର୍ଚ୍ଚ ୩୧ ତାରିଖରେ ଶେଷ ହେଉଥିବା ବିତ୍ତୀୟ ବର୍ଷରେ ପ୍ରଦତ୍ତ ହୋଇଥିବ ତେବେ ସେହି ଅନୁଦାନ ଏହି ସଂବିଧାନର ପ୍ରାରମ୍ଭ ପରେ ପ୍ରଥମ ତିନି ବିତ୍ତୀୟ ବର୍ଷ ସକାଶେ ସଂଘ ଦ୍ୱାରା ଏବଂ ପ୍ରତ୍ୟେକ ରାଜ୍ୟଦ୍ୱାରା ପ୍ରଦତ୍ତ ହେବ ।

ପରବର୍ତ୍ତୀ ପ୍ରତ୍ୟେକ ତିନିବର୍ଷ କାଳାବଧିରେ ସେହି ଅନୁଦାନର ଅବ୍ୟବହିତ ପୂର୍ବବର୍ତ୍ତୀ ତିନିବର୍ଷ କାଳାବଧିର ଅନୁଦାନ ଅପେକ୍ଷା ଶତକଡା ଦଶ କମ କରାଯାଇପାରିବ :

ପରନ୍ତୁ ଏହି ସଂବିଧାନ ପ୍ରାରମ୍ଭର ଦଶ ବର୍ଷ ଅନ୍ତେ ସେପରି ଅନୁଦାନ ଯେଉଁ ମାତ୍ରା ପର୍ଯ୍ୟନ୍ତ ଆଙ୍ଗ୍ଲୋ-ଭାରତୀୟ ସମାଜର ବିଶେଷ ସୁବିଧା ରୂପେ ଦିଆଯାଇଥିବ ସେହି ପର୍ଯ୍ୟନ୍ତ ତାହା ରହିତ ହେବ

ଅଧିକନ୍ତୁ କୌଣସି ଶିକ୍ଷା ସଂସ୍ଥାରେ ବାର୍ଷିକ ପ୍ରବେଶର ଅନ୍ୟୂନ ଶତକଡା ୪୦ ପ୍ରବେଶ ସ୍ଥାନ ଆଙ୍ଗ୍ଲୋ-ଭାରତୀୟ ସମାଜ ଭିନ୍ନ ଅନ୍ୟ ସମାଜର ଲୋକଙ୍କ ଲାଗି ପ୍ରାପ୍ତ କରା ନ ଗଲା ପର୍ଯ୍ୟନ୍ତ ସେହି ଶିକ୍ଷା ସଂସ୍ଥା ଏହି ଅନୁଚ୍ଛେଦ ଅନୁସାରେ ଅନୁଦାନ ପାଇବା ଲାଗି ହକଦାର ହେବ ନାହିଁ ।

ଅନୁସୂଚିତ ଜାତି, ଅନୁସୂଚିତ ଜନଜାତି ପ୍ରଭୃତିଙ୍କ ସକାଶେ ସ୍ୱତନ୍ତ୍ରଅଫିସର ।

୩୩୮ । (୧) ଅନୁସୂଚିତ ଜାତି ଏବଂ ଅନୁସୂଚିତ ଜନଜାତିଙ୍କ ସକାଶେ ରାଷ୍ଟ୍ରପତିଙ୍କ ଦ୍ୱାରା ନିଯୁକ୍ତ ଜଣେ ବିଶେଷ ଅଫିସର ରହିବେ ।

(୨) ସ୍ୱତନ୍ତ୍ର ଅଫିସରଙ୍କର ଏହା କର୍ତ୍ତବ୍ୟ ହେବ ଯେ ସେ ଅନୁସୂଚିତ ଜାତି ଏବଂ ଅନୁସୂଚିତ ଜନଜାତିଙ୍କ ସକାଶେ ଏହି ସଂବିଧାନ ଅଧୀନରେ ଉପବନ୍ଧିତ ରକ୍ଷା କବଚ ସହିତ ସମ୍ବଦ୍ଧ ବିଷୟମାନଙ୍କର ଅନୁସନ୍ଧାନ କରିବେ ଏବଂ ସେହି ରକ୍ଷା କବଚମାନଙ୍କର କାର୍ଯ୍ୟକାରିତା ସମ୍ବନ୍ଧରେ ରାଷ୍ଟ୍ରପତି ଯେପରି ବ୍ୟବଧାନ ନିର୍ଦ୍ଦେଶିତ କରିବେ ସେପରି ବ୍ୟବଧାନରେ ରାଷ୍ଟ୍ରପତିଙ୍କୁ ରିପୋର୍ଟ ଦେବେ ଏବଂ ରାଷ୍ଟ୍ରପତି ସେପରି ସମସ୍ତ ରିପୋର୍ଟ ସଂସଦର ପ୍ରତ୍ୟେକ ସଦନ ସମକ୍ଷରେ ଉପସ୍ଥାପିତ କରାଇବେ ।

(୩) ଏହି ଅନୁଚ୍ଛେଦରେ ଅନୁସୂଚିତ ଜାତି ଏବଂ ଅନୁସୂଚିତ ଜନଜାତିଙ୍କ ପ୍ରତି ନିର୍ଦ୍ଦେଶମଧ୍ୟରେ ଏହି ସଂବିଧାନର ଅନୁଚ୍ଛେଦ ୩୪୦ର ଖଣ୍ଡ (୧) ଅଧୀନରେ ନିଯୁକ୍ତ କମିଶନଙ୍କ ରିପୋର୍ଟ ପାଇବା ପରେ ରାଷ୍ଟ୍ରପତି ଆଦେଶ ଦ୍ୱାରା ଯେଉଁ ଅନୁନ୍ନତ ସମାଜକୁ ବିନିର୍ଦ୍ଦିଷ୍ଟ କରିବେ ସେହି ଅନୁନ୍ନତ ସମାଜ ପ୍ରତି ନିର୍ଦ୍ଦେଶ ଏବଂ ଆଙ୍ଗ୍ଲୋ-ଭାରତୀୟ ସମାଜ ପ୍ରତି ନିର୍ଦ୍ଦେଶ ମଧ୍ୟ ଅନ୍ତର୍ଗତ ବୋଲି ଅର୍ଥ କରାଯିବ ।

ଅନୁସୂଚିତ କ୍ଷେତ୍ରର ପ୍ରଶାସନ ଏବଂ ଅନୁସୂଚିତ ଜନଜାତିଙ୍କ କଲ୍ୟାଣ ଉପରେ ସଂଘର ନିୟନ୍ତ୍ରଣ ।

୩୩୯ । (୧) ରାଷ୍ଟ୍ରପତି ଆଦେଶ ଦ୍ୱାରା ରାଜ୍ୟମାନଙ୍କରେ ଅନୁସୂଚିତ କ୍ଷେତ୍ରର ପ୍ରଶାସନ ବିଷୟରେ ଏବଂ ଅନୁସୂଚିତ ଜନଜାତିଙ୍କର କଲ୍ୟାଣ ବିଷୟରେ ରିପୋର୍ଟ ଦେବାଲାଗି ଏକ କମିଶନ ଯେକୌଣସି ସମୟରେ ନିଯୁକ୍ତ କରିପାରିବେ ଏବଂ ଏହି ସଂବିଧାନର ପ୍ରାରମ୍ଭର ଦଶବର୍ଷ ଅନ୍ତେ ନିଯୁକ୍ତ କରିବେ ।

ସେହି ଆଦେଶରେ କମିଶନ ଗଠନ, କ୍ଷମତା ଏବଂ ପ୍ରକ୍ରିୟା ନିର୍ଦ୍ଦିଷ୍ଟ ହୋଇପାରିବ ଏବଂ ରାଷ୍ଟ୍ରପତି ଯେପରି ଆବଶ୍ୟକ ବା ବାଞ୍ଛନୀୟ ବିବେଚନା କରିବେ ସେପରି ପ୍ରାସଂଗିକ ଓ ସହାୟକ ଉପବନ୍ଧମାନ ତହିଁର ଅନ୍ତର୍ଗତ ହୋଇ ପାରିବ ।

(୨) କୌଣସି ରାଜ୍ୟର ଅନୁସୂଚିତ ଜନଜାତିଙ୍କର କଲ୍ୟାଣ ସକାଶେ ଅତ୍ୟାବଶ୍ୟକ ବୋଲି ନିଦେଶରେ ବିନିର୍ଦ୍ଦିଷ୍ଟ ହୋଇଥିବା ଯୋଜନାମାନଙ୍କର ପ୍ରଣୟନ ଓ ସମ୍ପାଦନ ସମ୍ବନ୍ଧରେ ସେହି ରାଜ୍ୟକୁ ନିର୍ଦ୍ଦେଶ ଦେବା ଲାଗି ସଂଘର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ରହିବ ।

**ଅନୁନ୍ନତ ଜାତିଙ୍କ ଅବସ୍ଥାର ଅନୁସନ୍ଧାନ ସକାଶେ କମିଶନ ନିଯୁକ୍ତି ।**

୩୪୦ । (୧) ଭାରତ ରାଜ୍ୟକ୍ଷେତ୍ରରେ ଥିବା ସାମାଜିକ ଦୃଷ୍ଟିରୁ ଓ ଶିକ୍ଷା ଦୃଷ୍ଟିରୁ ଅନୁନ୍ନତ ଜାତିମାନଙ୍କ ଅବସ୍ଥା ଓ ସେମାନେ କେଉଁ ଅସୁବିଧାରେ ରହିଛନ୍ତି ତାହା ଅନୁସନ୍ଧାନ କରିବା ସକାଶେ ଏବଂ ସେହି ଅସୁବିଧା ଦୂର କରିବାଲାଗି ଓ ତାଙ୍କ ଅବସ୍ଥାର ଉନ୍ନତି କଳ୍ପେ ସଂଘ ବା କୌଣସି ରାଜ୍ୟଦ୍ୱାରା ଅବଲମ୍ବନୀୟ ଉପାୟ ବିଷୟରେ ସେହି ପ୍ରୟୋଜନ ନିମିତ୍ତ ସଂଘ ବା କୌଣସି ରାଜ୍ୟଦ୍ୱାରା ଦେୟ ଅନୁଦାନ ବିଷୟରେ ଏବଂ ଯେଉଁ ସର୍ତ୍ତରେ ଅନୁଦାନ ଦିଆଯିବା ଉଚିତ ସେ ସର୍ତ୍ତ ବିଷୟରେ ସୁପାରିଶ କରିବା ଲାଗି ରାଷ୍ଟ୍ରପତି ଯେପରି ଉଚିତ ବିବେଚନା କରିବେ ସେପରି ବ୍ୟକ୍ତିଙ୍କ ଦ୍ୱାରା ଗଠିତ କମିଶନ ଆଦେଶ ଦ୍ୱାରା ନିଯୁକ୍ତ କରିପାରିବେ ଏବଂ କମିଶନ ନିଯୁକ୍ତ କରୁଥିବା ଆଦେଶରେ କମିଶନ ଦ୍ୱାରା ଅନୁସରଣୀୟ ପ୍ରକ୍ରିୟା ନିର୍ଦ୍ଦିଷ୍ଟ ହେବ ।

(୨) ଏହିପରି ନିଯୁକ୍ତ କମିଶନ ତାଙ୍କୁ ନିର୍ଦ୍ଦିଷ୍ଟ କରାଯାଇଥିବା ବିଷୟମାନଙ୍କର ଅନୁସଂଧାନ କରିବ ଏବଂ ତାହା ମିଳିଥିବା ତଥ୍ୟମାନ ବର୍ଣ୍ଣନା କରି ଏବଂ ଉଚିତ ବିବେଚନା କରିବା ମତେ ସୁପାରିଶ କରି ଏକ ରିପୋର୍ଟ ରାଷ୍ଟ୍ରପତିଙ୍କୁ ସମର୍ପଣ କରିବ ।

(୩) ରାଷ୍ଟ୍ରପତି ଏହିପରି ସମର୍ପିତ ରିପୋର୍ଟ ଉପରେ କରାଯାଇଥିବା କାର୍ଯ୍ୟର ବର୍ଣ୍ଣନା ଥିବା ଏକ ଜ୍ଞାପନ ସହିତ ରିପୋର୍ଟର ଏକ ପ୍ରତିଲିପି ସଂସଦର ପ୍ରତ୍ୟେକ ସଦନ ସମକ୍ଷରେ ଉପସ୍ଥାପିତ କରାଇବେ ।

**ଅନୁସୂଚିତ ଜାତି ।**

୩୪୧ । (୧) ରାଷ୍ଟ୍ରପତି କୌଣସି ରାଜ୍ୟ ବା ସଂଘ ରାଜ୍ୟକ୍ଷେତ୍ର ସଂବଂଧରେ ଏବଂ ତାହା ରାଜ୍ୟ ହୋଇଥିବା ସ୍ଥଳେ ତାହାର ରାଜ୍ୟପାଳଙ୍କ ସହିତ ପରାମର୍ଶ କଲାପରେ ଏହି ସଂବିଧାନର ପ୍ରୟୋଜନ ନିମିତ୍ତ, ଯଥାସ୍ଥିତି, ସେହି ରାଜ୍ୟ ବା ସଂଘ ରାଜ୍ୟକ୍ଷେତ୍ର ସମ୍ବନ୍ଧରେ ଯେଉଁ ଯେଉଁ ଜାତି, ମୂଳବଂଶ ବା ଜନଜାତି କିମ୍ବା ଜାତିର ବା ମୂଳବଂଶର ବା ଜନଜାତିର ଭାଗ ବା ତହିଁର ଦଳ ଅନୁସୂଚିତ ଜାତି ବୋଲି ବିବେଚିତ ହେବେ ତାହା ଲୋକ ଅଧିସୂଚନା ଦ୍ୱାରା ବିନିର୍ଦ୍ଦିଷ୍ଟ କରିପାରିବେ ।

(୨) ସଂସଦ ବିଧିଦ୍ୱାରା କୌଣସି ଜନଜାତି ବା ଜନଜାତି ସମାଜକୁ କିମ୍ବା ଜନଜାତି ବା ଜନଜାତି ସମାଜର କୌଣସି ଭାଗ ବା କୌଣସି ଦଳକୁ ଖଣ୍ଡ (୧)ର ଅଧୀନରେ ବାହାର କରାଯାଇଥିବା ଅଧି-ସୂଚନାରେ ବିନିର୍ଦ୍ଦିଷ୍ଟ ଅନୁସୂଚିତ ଜନଜାତିଙ୍କ ସୂଚୀରେ ଅନ୍ତର୍ଗତ କରିପାରିବ ବା ତହିଁରୁ ବହିଷ୍କୃତ କରିପାରିବ ମାତ୍ର ଉପରୋକ୍ତ ରୀତି ବ୍ୟତୀତ ଉକ୍ତ ଖଣ୍ଡ ଅଧୀନରେ ପ୍ରକାଶିତ ଅଧିସୂଚନା କୌଣସି ପରବର୍ତ୍ତୀ ଅଧିସୂଚନା ଦ୍ୱାରା ପରିବର୍ତ୍ତିତ ହେବ ନାହିଁ ।

**ଅନୁସୂଚିତ ଜନଜାତି ।**

୩୪୨ । (୧) ରାଷ୍ଟ୍ରପତି କୌଣସି ରାଜ୍ୟ ବା ସଂଘ ରାଜ୍ୟ କ୍ଷେତ୍ର ସଂମ୍ବନ୍ଧରେ ଏବଂ ତାହା ରାଜ୍ୟ ହୋଇଥିବା ସ୍ଥଳେ ତହିଁର ରାଜ୍ୟପାଳଙ୍କ ସହିତ ପରାମର୍ଶ କଲାପରେ ଯେଉଁ ଜନଜାତି ବା ଜନଜାତି ସମାଜକୁ କିମ୍ବା ଜନଜାତିଙ୍କର ବା ଜନଜାତି ସମାଜର ଯେଉଁ ଭାଗ ବା ଦଳକୁ ଏହି ସଂବିଧାନର ପ୍ରୟୋଜନ ନିମିତ୍ତ, ଯଥାସ୍ଥିତି, ସେହି ରାଜ୍ୟ ବା ସଂଘ ରାଜ୍ୟକ୍ଷେତ୍ର ସଂବନ୍ଧରେ ଅନୁସୂଚିତ ଜନଜାତି ବୋଲି ବିବେଚନା କରିବେ ତାହା ଲୋକଅଧିସୂଚନା ଦ୍ୱାରା ବିନିର୍ଦ୍ଦିଷ୍ଟ କରି ପାରିବେ ।

(୨) ସଂସଦ ବିଧିଦ୍ୱାରା କୌଣସି ଜନଜାତି ବା ଜନଜାତି ସମାଜକୁ କିମ୍ବା ଜନଜାତି ବା ଜନଜାତି ସମାଜର କୌଣସି ଭାଗକୁ ବା କୌଣସି ଦଳକୁ ଖଣ୍ଡ (୧)ର ଅଧୀନରେ ବାହାର କରାଯାଇଥିବା ଅଧିସୂଚନାରେ ବିନିର୍ଦ୍ଦିଷ୍ଟ ଅନୁସୂଚିତ ଜନଜାତିଙ୍କ ସୂଚୀରେ ଅନ୍ତର୍ଗତ କରି ପାରିବ ବା ତହିଁରୁ ବହିଷ୍କୃତ କରିପାରିବ ମାତ୍ର ଉପରୋକ୍ତ ରୀତି ବ୍ୟତୀତ ଉକ୍ତ ଖଣ୍ଡ ଅଧୀନରେ ପ୍ରକାଶିତ ଅଧିସୂଚନା କୌଣସି ପରବର୍ତ୍ତୀ ଅଧିସୂଚନା ଦ୍ୱାରା ପରିବର୍ତ୍ତିତ ହେବ ନାହିଁ ।

## ଭାଗ ୧୭

### ରାଜଭାଷା

#### ଅଧ୍ୟାୟ ୧-ସଂଘର ଭାଷା

ସଂଘର ରାଜଭାଷା ।

୩୪୩ । (୧) ଦେବନାଗରୀ ଲିପିରେ ହିନ୍ଦି ସଂଘର ରାଜଭାଷା ହେବ ।

ସଂଘର ରାଜକୀୟ ପ୍ରୟୋଜନ ଲଗି ବ୍ୟବହୃତ ହେବାଅଙ୍କର ସ୍ୱରୂପ ଭାରତୀୟ ଅଙ୍କର ଅନ୍ତର୍ରାଷ୍ଟ୍ରୀୟ ସ୍ୱରୂପ ହେବ ।

(୨) ଖଣ୍ଡ (୧)ରେ ଯାହା କିଛି ଥିବା ସତ୍ତ୍ୱେ, ଏହି ସଂବିଧାନର ପ୍ରାରମ୍ଭଠାରୁ ପନ୍ଦର ବର୍ଷ କାଳାବଧି ସକାଶେ ଯେଉଁ ସବୁ ରାଜକୀୟ ପ୍ରୟୋଜନ ଲଗି ସଂଘର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଇଂରାଜୀ ଭାଷା ବ୍ୟବହୃତ ହେଉଥିଲା ସେହି ସବୁ ରାଜକୀୟ ପ୍ରୟୋଜନ ଲଗି ଇଂରାଜୀ ଭାଷାର ବ୍ୟବହାର ଚାଲୁ ରହିବ :

ପରନ୍ତୁ ରାଷ୍ଟ୍ରପତି ଏହି କାଳାବଧି ମଧ୍ୟରେ ଆଦେଶ ଦ୍ୱାରା ସଂଘର ରାଜକୀୟ ପ୍ରୟୋଜନମାନଙ୍କ ମଧ୍ୟରୁ କୌଣସି ପ୍ରୟୋଜନ ନିମିତ୍ତ ଇଂରାଜୀ ଭାଷା ସଙ୍ଗେ ସଙ୍ଗେ ହିନ୍ଦୀ ଭାଷାର ଏବଂ ଭାରତୀୟ ଅଙ୍କର ଅନ୍ତର୍ରାଷ୍ଟ୍ରୀୟ ସ୍ୱରୂପ ସଙ୍ଗେ ସଙ୍ଗେ ଦେବନାଗରୀ ସ୍ୱରୂପର ବ୍ୟବହାର ପ୍ରାଧିକୃତ କରି ପାରିବେ ।

(୩) ଏହି ଅନୁଚ୍ଛେଦରେ ଯାହାକିଛି ଥିବା ସତ୍ତ୍ୱେ, ସଂସଦ ଉକ୍ତ ପନ୍ଦର ବର୍ଷ କାଳାବଧି ପରେ ବିଧି-ଦ୍ୱାରା,—

(କ) ଇଂରାଜୀ ଭାଷାର, ଅଥବା

(ଖ) ଅଙ୍କର ଦେବନାଗରୀ ସ୍ୱରୂପର,

ବ୍ୟବହାରକୁ ବିଧିରେ ଯେପରି ବିନିର୍ଦ୍ଦିଷ୍ଟ ହେବ ସେପରି ପ୍ରୟୋଜନ ସକାଶେ ଉପବନ୍ଧିତ କରିପାରିବ ।

ରାଜଭାଷା ସକାଶେ ସଂସଦର କମିଶନ ଓ ସମିତି ।

୩୪୪ । (୧) ଏହି ସଂବିଧାନର ପ୍ରାରମ୍ଭର ପାଞ୍ଚ ବର୍ଷ ଅନ୍ତେ ଏବଂ ତତ୍ପରେ ସେପରି ପ୍ରାରମ୍ଭର ଦଶବର୍ଷ ଅନ୍ତେ ରାଷ୍ଟ୍ରପତି ଆଦେଶ ଦ୍ୱାରା ଗୋଟିଏ କମିଶନ ଗଠିତ କରିବେ ଏବଂ ସେହି କମିଶନ ଜଣେ ସଭାପତି ଏବଂ ଅଷ୍ଟମ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ବିଭିନ୍ନ ଭାଷାରେ ପ୍ରତିନିଧିତ୍ୱ କରୁଥିବା ଯେଉଁ ଅନ୍ୟାନ୍ୟ ସଦସ୍ୟଙ୍କୁ ରାଷ୍ଟ୍ରପତି ନିଯୁକ୍ତ କରିବେ ସେମାନଙ୍କୁ ନେଇ ଗଠିତ ହେବ ଏବଂ କମିଶନ କେଉଁ ପ୍ରକ୍ରିୟା ଅନୁସରଣ କରିବ ତାହା ଆଦେଶରେ ନିର୍ଦ୍ଦିଷ୍ଟ ହେବ ।

(୨) ରାଷ୍ଟ୍ରପତିଙ୍କୁ ନିମ୍ନଲିଖିତ ବିଷୟରେ ସୁପାରିଶ କରିବା କମିଶନର କର୍ତ୍ତବ୍ୟ ହେବ—

(କ) ସଂଘର ରାଜକୀୟ ପ୍ରୟୋଜନ ଲଗି ହିନ୍ଦି ଭାଷାର ଉତ୍ତରୋତ୍ତର ଅଧିକ ବ୍ୟବହାର ;

(ଖ) ସଂଘର ସମସ୍ତ ରାଜକୀୟ ପ୍ରୟୋଜନ ସକାଶେ ବା ତନ୍ମଧ୍ୟରୁ କୌଣସି ପ୍ରୟୋଜନ ସକାଶେ ଇଂରାଜୀ ଭାଷାର ବ୍ୟବହାର ଉପରେ ନିର୍ବନ୍ଧନ ;

(ଗ) ଅନୁଚ୍ଛେଦ ୩୪୮ରେ ବର୍ଣ୍ଣିତ ସମସ୍ତ ପ୍ରୟୋଜନ ବା ତହିଁରୁ କୌଣସି ପ୍ରୟୋଜନ ସକାଶେ ବ୍ୟବହାର କରାଯିବା ଭାଷା ;

(ଘ) ସଂଘର କୌଣସି ଗୋଟିଏ ବା ଅଧିକ ବିନିର୍ଦ୍ଦିଷ୍ଟ ପ୍ରୟୋଜନ ସକାଶେ ବ୍ୟବହାର କରାଯିବା ଅଙ୍କର ସ୍ୱରୂପ ;

(ଙ) ସଂଘର ରାଜଭାଷା ଏବଂ ସଂଘର କୌଣସି ରାଜ୍ୟ ମଧ୍ୟରେ କିମ୍ବା ଗୋଟିଏ ରାଜ୍ୟ ଏବଂ ଅନ୍ୟ ରାଜ୍ୟ ମଧ୍ୟରେ ସଂଯୋଗର ଭାଷା ଏବଂ ତହିଁର ବ୍ୟବହାର ବିଷୟରେ ରାଷ୍ଟ୍ରପତିଙ୍କ ଦ୍ୱାରା କମିଶନକୁ ବିନିର୍ଦ୍ଦିଷ୍ଟ କରାହୋଇଥିବା ଅନ୍ୟାନ୍ୟ ବିଷୟ ।

(୩) ଖଣ୍ଡ (୨) ଅଧୀନରେ ସୁପାରିଶ କଲାବେଳେ କମିଶନ ଭାରତର ଔଦ୍ୟୋଗିକ, ସାଂସ୍କୃତିକ ଓ ବୈଜ୍ଞାନିକ ଉନ୍ନତି ପ୍ରତି ଏବଂ ଲୋକସେବା ସଂବନ୍ଧରେ ଅଣହିନ୍ଦି ଭାଷାଭାଷୀ କ୍ଷେତ୍ରମାନଙ୍କ ଲୋକମାନଙ୍କର ନ୍ୟାଯ୍ୟ ଦାବୀ ଓ ହିତ ପ୍ରତି ସମ୍ୟକ ଭାବରେ ଧ୍ୟାନ ଦେବେ ।

(୪) ତିରିଶ ଜଣ ସଦସ୍ୟଙ୍କୁ ଘେନି ଗୋଟିଏ ସମିତି ଗଠିତ ହେବ ଯହିଁରେ ଲୋକସଭାର କୋଡ଼ିଏ ଜଣ ସଦସ୍ୟ ଓ ରାଜ୍ୟ ସଭାର ଦଶ ଜଣ ସଦସ୍ୟ ରହିବେ ଓ ସେମାନେ ଯଥାକ୍ରମେ ଲୋକସଭାର ସଦସ୍ୟମାନଙ୍କ ଦ୍ୱାରା ଏବଂ ରାଜ୍ୟ ସଭାର ସଦସ୍ୟମାନଙ୍କ ଦ୍ୱାରା ଅନୁପାତୀ ପ୍ରତିନିଧିତ୍ୱ ପଦ୍ଧତି ଅନୁସାରେ ଏକକ ସଂକ୍ରମଣୀୟ ଭୋଟ ଦ୍ୱାରା ନିର୍ବାଚିତ ହେବେ ।

(୫) ଖଣ୍ଡ (୧) ଅଧୀନରେ ଗଠିତ କମିଶନର ସୁପାରିଶମାନ ପରୀକ୍ଷା କରିବା ଏବଂ ରାଷ୍ଟ୍ରପତିଙ୍କୁ ତହିଁରେ ନିଜ ମତ ବିଷୟରେ ରିପୋର୍ଟ ଦେବା ସମିତିର କର୍ତ୍ତବ୍ୟ ହେବ ।

(୬) ଅନୁଚ୍ଛେଦ ୩୪୩ରେ ଯାହାକିଛି ଥିବା ସତ୍ତ୍ୱେ, ରାଷ୍ଟ୍ରପତି ଖଣ୍ଡ (୫)ରେ ନିର୍ଦ୍ଦିଷ୍ଟ ରିପୋର୍ଟ ବିଚାର କଲାପରେ ସେହି ସମଗ୍ର ରିପୋର୍ଟ ବା ତହିଁର କୌଣସି ଭାଗ ଅନୁସାରେ ନିଦେଶ ବାହାର କରି ପାରିବେ ।

## ଅଧ୍ୟାୟ ୨—ଆଞ୍ଚଳିକ ଭାଷା

**ରାଜ୍ୟର ରାଜଭାଷା ବା ରାଜଭାଷାମାନ ।**

୩୪୫ । ଅନୁଚ୍ଛେଦ ୩୪୬ ଓ ୩୪୭ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ରାଜ୍ୟର ବିଧାନମଣ୍ଡଳ ବିଧି ଦ୍ୱାରା ସେହି ରାଜ୍ୟର ସମସ୍ତ ବା କୌଣସି ରାଜକୀୟ ପ୍ରୟୋଜନ ସକାଶେ ବ୍ୟବହାର କରାଯିବା ଭାଷା ରୂପରେ ସେହି ରାଜ୍ୟରେ ବ୍ୟବହୃତ ହେଉଥିବା ଭାଷାମାନଙ୍କ ମଧ୍ୟରୁ ଗୋଟିଏ ବା ଅଧିକ ଭାଷା ଅଥବା ହିନ୍ଦୀକୁ ଗ୍ରହଣ କରି ପାରିବ :

ପରନ୍ତୁ ରାଜ୍ୟର ବିଧାନମଣ୍ଡଳ ବିଧି ଦ୍ୱାରା ଅନ୍ୟଥା ଉପବନ୍ଧ ନ କଲା ପର୍ଯ୍ୟନ୍ତ ଯେଉଁ ସବୁ ରାଜକୀୟ ପ୍ରୟୋଜନ ଲାଗି ଇଂରାଜୀ ଭାଷା ସଂବିଧାନ ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ବ୍ୟବହୃତ ହେଉଥିଲା ସେହିସବୁ ପ୍ରୟୋଜନ ଲାଗି ଇଂରାଜୀ ଭାଷାର ବ୍ୟବହାର ଚାଲୁ ରହିବ ।

**ଗୋଟିଏ ରାଜ୍ୟ ଓ ଅନ୍ୟ ରାଜ୍ୟ ମଧ୍ୟରେ କିମ୍ବା ରାଜ୍ୟ ଓ ସଙ୍ଘ ମଧ୍ୟରେ ସଞ୍ଚାର ନିମିତ୍ତ ରାଜଭାଷା ।**

୩୪୬ । ସଂଘରେ ରାଜକୀୟ ପ୍ରୟୋଜନ ସକାଶେ ବ୍ୟବହାର କରାଯିବା ତତ୍ ସମୟ ପ୍ରାଧିକୃତ ଭାଷା ଏକ ରାଜ୍ୟ ଓ ଅନ୍ୟ ରାଜ୍ୟମଧ୍ୟରେ ଏବଂ କୌଣସି ରାଜ୍ୟ ଓ ସଂଘ ମଧ୍ୟରେ ସଞ୍ଚାର ନିମିତ୍ତ ରାଜଭାଷା ହେବ:

ପରନ୍ତୁ ଯଦି ଦୁଇ ବା ତତୋଧିକ ରାଜ୍ୟ ସେହି ରାଜ୍ୟମାନଙ୍କ ମଧ୍ୟରେ ସଞ୍ଚାର ନିମିତ୍ତ ହିନ୍ଦୀ ରାଜଭାଷା ହେବ ବୋଲି କରାର କରନ୍ତି ତାହା ହେଲେ ସେମାନେ ସେପରି ସଞ୍ଚାର ସକାଶେ ସେହି ଭାଷା ବ୍ୟବହାର କରି ପାରିବେ ।

**କୌଣସି ରାଜ୍ୟର ଜନସଂଖ୍ୟାର କୌଣସି ଭାଗଦ୍ୱାରା କଥିତ ହେଉଥିବା ଭାଷା ସମ୍ବନ୍ଧରେ ବିଶେଷ ଉପବନ୍ଧ ।**

୩୪୭ । କୋଣସି ରାଜ୍ୟର ଜନସଂଖ୍ୟାର ଏକ ପର୍ଯ୍ୟାପ୍ତ ଭାଗ ସେମାନଙ୍କ ଦ୍ୱାରା କଥିତ ହେଉଥିବା କୌଣସି ଭାଷା ସେହି ରାଜ୍ୟଦ୍ୱାରା ଅଭିଜ୍ଞାତ ହେବା ଲାଗି ଇଚ୍ଛା କରୁଛନ୍ତି ବୋଲି ରାଷ୍ଟ୍ରପତିଙ୍କର ହୃଦବୋଧ ହେଲେ ଏବଂ ସେଥିନିମିତ୍ତ ଦାବୀ କରାଗଲେ ରାଷ୍ଟ୍ରପତି ସେପରି ଭାଷାକୁ ସେହି ରାଜ୍ୟରେ ସର୍ବତ୍ର କିମ୍ବା କୌଣସି ଭାଗରେ ଯେପରି ସେ ବିନିର୍ଦ୍ଦିଷ୍ଟ କରିବେ ସେପରି ପ୍ରୟୋଜନ ସକାଶେ ରାଜକୀୟ ଭାଷା ରୂପରେ ଅଭିଜ୍ଞାତ ହେବ ବୋଲି ନିଦେଶ ଦେଇ ପାରିବେ ।

## ଅଧ୍ୟାୟ ୩-ଉଚ୍ଚତମ ନ୍ୟାୟାଳୟ, ଉଚ୍ଚ ନ୍ୟାୟାଳୟ ପ୍ରଭୃତିର ଭାଷା

**ଉଚ୍ଚତମ ନ୍ୟାୟାଳୟ ଓ ଉଚ୍ଚ ନ୍ୟାୟାଳୟ ଏବଂ ଅଧିନିୟମ ବିଧେୟକ ପ୍ରଭୃତିରେ ବ୍ୟବହାର କରାଯିବା ଭାଷା ।**

୩୪୮ । (୧) ଏହି ଭାଗର ପୂର୍ବବର୍ତ୍ତୀ ଉପବନ୍ଧମାନଙ୍କରେ ଯାହା କିଛି ଥିବା ସତ୍ତ୍ୱେ, ସଂସଦ ବିଧିଦ୍ୱାରା ଅନ୍ୟଥା ଉପବନ୍ଧ ନ କଲାପର୍ଯ୍ୟନ୍ତ,—

(କ) ଉଚ୍ଚତମ ନ୍ୟାୟାଳୟରେ ଏବଂ ପ୍ରତ୍ୟେକ ଉଚ୍ଚ ନ୍ୟାୟାଳୟରେ ସମସ୍ତ କାର୍ଯ୍ୟବାହୀ;

(ଖ) ନିମ୍ନଲିଖିତ ପ୍ରାଧିକୃତ ପାଠ; ଯଥା:

(୧) ସଂସଦର ପ୍ରତ୍ୟେକ ସଦନରେ କିମ୍ବା ରାଜ୍ୟର ବିଧାନ ମଣ୍ଡଳର କୌଣସି ସଦନ ବା ଉଭୟ ସଦନରେ ପୁରଃସ୍ଥାପିତ କରିବା ସକାଶେ ବିଧେୟକର କିମ୍ବା ତାହା ଉପରେ ପ୍ରସ୍ତାବିତ ହେଉଥିବା ସଂଶୋଧନର ପ୍ରାଧିକୃତ ପାଠ,

(ଗ) ସଂସଦ ଦ୍ୱାରା ବା ରାଜ୍ୟର ବିଧାନମଣ୍ଡଳ ଦ୍ୱାରା ପାରିତ ହୋଇଥିବା ଅଧିନିୟମର ଏବଂ ରାଷ୍ଟ୍ରପତି ବା ରାଜ୍ୟପାଳଙ୍କ ଦ୍ୱାରା ପ୍ରଖ୍ୟାପିତ ହୋଇଥିବା ଅର୍ଡିନାନ୍ସର ପ୍ରାଧିକୃତ ପାଠ, ଏବଂ

(ଘ) ଏହି ସଂବିଧାନର ଅଧୀନରେ କିମ୍ବା ସଂସଦ ବା ରାଜ୍ୟମାନଙ୍କର ବିଧାନ ମଣ୍ଡଳ ଦ୍ୱାରା ପ୍ରଣୀତ କୌଣସି ବିଧିର ଅଧୀନରେ ବାହାର କରାଯାଇଥିବା ଆଦେଶ, ନିୟମ, ବିନିୟମ ଏବଂ ଉପବିଧିମାନଙ୍କର ପ୍ରାଧିକୃତ ପାଠ,

ଇଂରାଜୀ ଭାଷାରେ ହେବ ।

(୨) ଖଣ୍ଡ (୧) ର ଉପଖଣ୍ଡ (କ) ରେ ଯାହା କିଛି ଥିବା ସତ୍ତ୍ୱେ, କୌଣସି ରାଜ୍ୟର ରାଜ୍ୟପାଳ ପୂର୍ବରୁ ରାଷ୍ଟ୍ରପତିଙ୍କର ସମ୍ମତି ଗ୍ରହଣ କରି ହିନ୍ଦୀ ଭାଷାର ବା ସେହି ରାଜ୍ୟରେ ରାଜକୀୟ ପ୍ରୟୋଜନ ସକାଶେ ବ୍ୟବହୃତ ଅନ୍ୟ କୌଣସି ଭାଷାର ବ୍ୟବହାର ସେହି ରାଜ୍ୟରେ ମୁଖ୍ୟସ୍ଥାନ ଥିବା ଉଚ୍ଚ ନ୍ୟାୟାଳୟର କାର୍ଯ୍ୟବାହୀ ସକାଶେ ପ୍ରାଧିକୃତ କରି ପାରିବେ:

ପରନ୍ତୁ ଏହି ଖଣ୍ଡର କୌଣସି ବିଷୟ ଏପରି ଉଚ୍ଚ ନ୍ୟାୟାଳୟ ଦ୍ୱାରା ପ୍ରଦତ୍ତ ନିର୍ଣ୍ଣୟ, ଡିକ୍ରୀ ଅଥବା ଆଦେଶ ପ୍ରତି ଲାଗୁ ହେବ ନାହିଁ ।

(୩) ଖଣ୍ଡ (୧)ର ଉପଖଣ୍ଡ (ଖ) ରେ ଯାହା କିଛି ଥିବା ସତ୍ତ୍ୱେ ଯେଉଁଠାରେ କୌଣସି ରାଜ୍ୟର ବିଧାନ ମଣ୍ଡଳ ସେହି ବିଧାନମଣ୍ଡଳରେ ପୁରଃସ୍ଥାପିତ ବିଧେୟକ ବା ତାହା ଦ୍ୱାରା ପାରିତ ଅଧିନିୟମରେ କିମ୍ବା ରାଜ୍ୟର ରାଜ୍ୟପାଳଙ୍କ ଦ୍ୱାରା ପ୍ରଖ୍ୟାପିତ ଅର୍ଡିନାନ୍ସରେ କିମ୍ବା ଏହି ଉପଖଣ୍ଡର ପାରାଗ୍ରାଫ (ଘ) ରେ ନିର୍ଦ୍ଦିଷ୍ଟ କୌଣସି ଆଦେଶ, ନିୟମ, ବିନିୟମ ବା ଉପବିଧିରେ ଇଂରାଜୀ ଭାଷା ଭିନ୍ନ ଅନ୍ୟ କୌଣସି ଭାଷାର ବ୍ୟବହାର କରାଯିବା ବିହିତ କରିଥିବେ ସେଠାରେ ସେହି ରାଜ୍ୟର ରାଜକୀୟ ଗେଜେଟରେ ସେହି ରାଜ୍ୟର ରାଜ୍ୟପାଳଙ୍କ ପ୍ରାଧିକାରରେ ପ୍ରକାଶିତ ଇଂରାଜୀ ଭାଷାରେ ତହିଁର ଅନୁବାଦ ଏହି ଖଣ୍ଡ ଅନୁସାରେ ଇଂରାଜୀ ଭାଷାରେ ତହିଁର ପ୍ରାଧିକୃତ ପାଠ ବୋଲି ବିବେଚିତ ହେବ ।

ଭାଷା ସମ୍ବନ୍ଧୀ କେତେକ ବିଧିକୁ ଅଧିନିୟମିତ କରିବା ସକାଶେ ବିଶେଷ ପ୍ରକ୍ରିୟା ।

୩୪୯ । ଏହି ସଂବିଧାନ ପ୍ରାରମ୍ଭଠାରୁ ପନ୍ଦର ବର୍ଷ କାଳାବଧି ପର୍ଯ୍ୟନ୍ତ ଅନୁଚ୍ଛେଦ ୩୪୮ର ଖଣ୍ଡ (୧) ରେ ବର୍ଣ୍ଣିତ ପ୍ରୟୋଜନମାନଙ୍କ ମଧ୍ୟରୁ କୌଣସିଟି ଲାଗି ବ୍ୟବହାର କରାଯିବା ଭାଷା ସକାଶେ ଉପବନ୍ଧ କରୁଥିବା କୌଣସି ବିଧେୟକ ବା ସଂଶୋଧନ ରାଷ୍ଟ୍ରପତିଙ୍କର ବିନା ମଞ୍ଜୁରୀରେ ସଂସଦର କୌଣସି ସଦନରେ ପୁରଃସ୍ଥାପିତ ବା ପ୍ରସ୍ତାବିତ କରାଯିବ ନାହିଁ ଏବଂ ସେହିପରି କୌଣସି ବିଧେୟକକୁ ପୁରଃସ୍ଥାପିତ କିମ୍ବା ସେପରି କୌଣସି ସଂଶୋଧନକୁ ପ୍ରସ୍ତାବିତ କରିବାର ମଞ୍ଜୁରୀ ରାଷ୍ଟ୍ରପତି ଅନୁଚ୍ଛେଦ ୩୪୪ର ଖଣ୍ଡ (୧) ଅଧୀନରେ ଗଠିତ କମିଶନର ସୁପାରିଶ ଏବଂ ସେହି ଅନୁଚ୍ଛେଦର ଖଣ୍ଡ (୪) ଅଧୀନରେ ଗଠିତ ସମିତିର ରିପୋର୍ଟ ବିଚାର କରି ନ ସାରି ଦେବେ ନାହିଁ ।

## ଅଧ୍ୟାୟ ୪—ବିଶେଷ ନିର୍ଦ୍ଦେଶ

ଅସନ୍ତୋଷ ଦୂରୀକରଣ ସକାଶେ ଅଭ୍ୟାବେଦନରେ ବ୍ୟବହାର କରାଯିବା ଭାଷା ।

୩୫୦ । କୌଣସି ଅସନ୍ତୋଷ ଦୂର କରିବା ସକାଶେ ସଂଘ ବା ରାଜ୍ୟର କୌଣସି ଅଫିସର ବା ପ୍ରାଧିକାରୀଙ୍କୁ, ଯଥାସ୍ଥିତି, ସଂଘ ବା ରାଜ୍ୟରେ ବ୍ୟବହୃତ ହେଉଥିବା କୌଣସି ଭାଷାରେ ଅଭ୍ୟାବେଦନ ଅର୍ପଣ କରିବା ଲାଗି ପ୍ରତ୍ୟେକ ବ୍ୟକ୍ତି ହକଦାର ହେବେ ।

ପ୍ରାଥମିକ ପ୍ରକ୍ରମରେ ମାତୃଭାଷାରେ ଶିକ୍ଷା ଦେବା ନିମିତ୍ତ ସୁବିଧା ।

୩୫୦କ । ଭାଷାଗତ ସଂଖ୍ୟାଲଘୁ ବର୍ଗମାନଙ୍କର ପିଲାମାନଙ୍କୁ ଶିକ୍ଷାର ପ୍ରାଥମିକ ପ୍ରକ୍ରମରେ ମାତୃଭାଷାରେ ଶିକ୍ଷା ଦେବାପାଇଁ ପର୍ଯ୍ୟାପ୍ତ ସୁବିଧା ଉପବନ୍ଧିତ କରିବା ନିମିତ୍ତ ପ୍ରତ୍ୟେକ ରାଜ୍ୟ ଓ ରାଜ୍ୟମଧ୍ୟରେ ଥିବା ପ୍ରତ୍ୟେକ ସ୍ଥାନୀୟ ପ୍ରାଧିକାରୀ ପ୍ରୟାସ କରିବେ ଏବଂ ଏପରି ସୁବିଧାମାନଙ୍କର ଉପବନ୍ଧ ସୁନିଶ୍ଚିତ କରିବାପାଇଁ ରାଷ୍ଟ୍ରପତି ଯେପରି ଆବଶ୍ୟକ ଓ ଉଚିତ ମନେ କରିବେ ସେହି ମତେ ଯେ କୌଣସି ରାଜ୍ୟକୁ ନିର୍ଦ୍ଦେଶମାନ ଦେଇ ପାରିବେ ।

ଭାଷାଗତ ସଂଖ୍ୟାଲଘୁ-ମାନଙ୍କ ନିମିତ୍ତ ସ୍ୱତନ୍ତ୍ର ଅଫିସର ।

୩୫୦ଖ । (୧) ଭାଷାଗତ ସଂଖ୍ୟାଲଘୁମାନଙ୍କ ନିମିତ୍ତ ଜଣେ ସ୍ୱତନ୍ତ୍ର ଅଫିସର ରହିବେ ଯେ କି ରାଷ୍ଟ୍ରପତିଙ୍କ ଦ୍ୱାରା ନିଯୁକ୍ତ ହେବେ ।

(୨) ଭାଷାଗତ ସଂଖ୍ୟାଲଘୁମାନଙ୍କ ନିମିତ୍ତ ଯେଉଁ ରକ୍ଷାକବଚମାନ ଏହି ସମ୍ବିଧାନ ଅଧୀନରେ ଉପବନ୍ଧିତ ହୋଇଅଛି ସେ ସମ୍ବନ୍ଧରେ ସମସ୍ତ ବିଷୟ ଅନୁସନ୍ଧାନ କରିବା ଏବଂ ରାଷ୍ଟ୍ରପତି ଯେପରି ନିଦେଶ ଦେବେ ସେପରି ବ୍ୟବଧାନରେ ରାଷ୍ଟ୍ରପତିଙ୍କୁ ସେହି ସବୁ ବିଷୟରେ ରିପୋର୍ଟ ଦେବା ସ୍ୱତନ୍ତ୍ର ଅଫିସରଙ୍କର କର୍ତ୍ତବ୍ୟ ହେବ, ଏବଂ ରାଷ୍ଟ୍ରପତି ଏପରି ସମସ୍ତ ରିପୋର୍ଟକୁ ସଂସଦର ପ୍ରତ୍ୟେକ ସଦନରେ ଉପସ୍ଥାପିତ କରାଇବେ ଏବଂ ସଂପୃକ୍ତ ରାଜ୍ୟମାନଙ୍କର ସରକାରଙ୍କ ନିକଟକୁ ପଠାଇବେ ।

ହିନ୍ଦୀ ଭାଷାର ବିକାଶ ସକାଶେ ନିଦେଶ ।

୩୫୧ । ହିନ୍ଦୀ ଭାଷାର ପ୍ରସାର ବୃଦ୍ଧି କରିବା, ଭାରତର ସମନ୍ୱିତ ସଂସ୍କୃତିର ସମସ୍ତ ତତ୍ତ୍ୱର ଅଭି-ବ୍ୟକ୍ତିର ମାଧ୍ୟମ ରୂପେ ଯେପରି କାର୍ଯ୍ୟକାରୀ ହୋଇ ପାରିବ ସେପରି ଭାବରେ ତାହାର ଉନ୍ନତି କରିବା ଏବଂ ତହିଁର ମୌଳିକତାରେ ହସ୍ତକ୍ଷେପ ନ କରି ହିନ୍ଦୁସ୍ଥାନୀ ଏବଂ ଅଷ୍ଟମ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ଅନ୍ୟ ଭାରତୀୟ ଭାଷାମାନଙ୍କର ରୂପ, ଶୈଳୀ ଓ ଶବ୍ଦାବଳୀ ଗ୍ରହଣ କରି ଏବଂ ଆବଶ୍ୟକ ବିବେଚିତ ହେବାସ୍ଥଳେ ତହିଁର ଶବ୍ଦ ଭଣ୍ଡାର ଲାଗି ମୁଖ୍ୟତଃ ସଂସ୍କୃତରୁ ଏବଂ ଗୌଣତଃ ସେପରି ବିନିର୍ଦ୍ଦିଷ୍ଟ ଭାଷାମାନଙ୍କରୁ ଶବ୍ଦ ଗ୍ରହଣ କରି ତହିଁର ସମୃଦ୍ଧି ସାଧନ କରିବା ସଂଘର କର୍ତ୍ତବ୍ୟ ହେବ ।

# ଭାଗ ୧୮

## ଆପାତ ଉପବନ୍ଧ

ଆପାତ ଉଦ୍‌ଘୋଷଣା ।

୩୫୨ । (୧) ଯଦି ରାଷ୍ଟ୍ରପତିଙ୍କର ହୃଦ୍‌ବୋଧହୁଏ ଯେ ମହା ଆପାତ ବିଦ୍ୟମାନ ହୋଇଅଛି ଏବଂ ସେଥି ଯୋଗୁ ଭାରତର ବା ତହିଁର ରାଜ୍ୟ କ୍ଷେତ୍ରର କୋଣସି ଭାଗର ସୁରକ୍ଷା ହୁଏତ ଯୁଦ୍ଧ ଦ୍ୱାରା ବା ବାହ୍ୟ ଆକ୍ରମଣ ଦ୍ୱାରା ଅଥବା ସଶସ୍ତ୍ର ବିଦ୍ରୋହ ଦ୍ୱାରା ସଂକଟାପନ୍ନ ହେଉଅଛି, ତାହାହେଲେ ସେ ଉକ୍ତ ବିଷୟ ଘୋଷଣା କରି ଏକ ଆପାତକାଳୀନ ଉଦ୍‌ଘୋଷଣା ଦ୍ୱାରା ସେହି ଉଦ୍‌ଘୋଷଣାରେ ବିନିର୍ଦ୍ଦିଷ୍ଟ ହୋଇଥିବା ମତେ ସମଗ୍ର ଭାରତ ସଂପର୍କରେ ବା ତହିଁର ରାଜ୍ୟକ୍ଷେତ୍ରର କୌଣସି ଭାଗ ସଂପର୍କରେ ଏକ ଆପାତ-କାଳୀନ ଉଦ୍‌ଘୋଷଣା କରିପାରିବେ ।

ସ୍ପଷ୍ଟୀକରଣ—ଯଦି ରାଷ୍ଟ୍ରପତିଙ୍କର ହୃଦ୍‌ବୋଧ ହୁଏ ଯେ ଯୁଦ୍ଧ ବା ବାହ୍ୟ ଆକ୍ରମଣ ଅଥବା ସଶସ୍ତ୍ର ବିଦ୍ରୋହ ଘଟିବାର ଆସନ୍ନ ବିପଦ ରହିଛି ତାହାହେଲେ ଏପରି ଯୁଦ୍ଧ, ବା ବାହ୍ୟଆକ୍ରମଣ ଅଥବା ସଶସ୍ତ୍ର ବିଦ୍ରୋହ ପ୍ରକୃତରେ ଘଟିବା ପୂର୍ବରୁ ଭାରତର ବା ତହିଁର ରାଜ୍ୟକ୍ଷେତ୍ରର କୌଣସି ଭାଗର ସୁରକ୍ଷା ସଂକଟାପନ୍ନ ହେଉଅଛି ଏହି ମର୍ମେ ଏକ ଘୋଷଣା କରାଯାଇ ଏକ ଆପାତକାଳୀନ ଉଦ୍‌ଘୋଷଣା କରାଯାଇପାରିବ ।

(୨) ଖଣ୍ଡ (୧) ଅଧୀନରେ କରାଯାଇଥିବା ଉଦ୍‌ଘୋଷଣାକୁ ଏକ ପରବର୍ତ୍ତୀ ଉଦ୍‌ଘୋଷଣା ଦ୍ୱାରା ପରିବର୍ତ୍ତିତ ବା ରଦ୍ଦ କରାଯାଇ ପାରିବ ।

(୩) ଖଣ୍ଡ (୧) ଅଧୀନ ଏକ ଉଦ୍‌ଘୋଷଣା ବା ସେହି ଉଦ୍‌ଘୋଷଣାକୁ ପରିବର୍ତ୍ତିତ କରୁଥିବା ଏକ ଉଦ୍‌ଘୋଷଣା କରାଯାଉ ବୋଲି ସଂଘ କାବିନେଟର (ଅର୍ଥାତ୍ ଅନୁଚ୍ଛେଦ ୭୫ ଅଧୀନରେ ନିଯୁକ୍ତ ପ୍ରଧାନମନ୍ତ୍ରୀ ଓ ଅନ୍ୟାନ୍ୟ କାବିନେଟ ପାହ୍ୟା ମନ୍ତ୍ରୀଙ୍କୁନେଇ ଗଠିତ ପରିଷଦ) ବିନିଶ୍ଚୟ ଲିଖିତାକାରରେ ରାଷ୍ଟ୍ରପତିଙ୍କୁ ସଂସୂଚିତ କରାଯାଇ ନଥିଲେ ରାଷ୍ଟ୍ରପତି ସେପରି ଏକ ଉଦ୍‌ଘୋଷଣା କରିବେ ନାହିଁ ।

(୪) ଏହି ଅନୁଚ୍ଛେଦ ଅଧୀନରେ କରାଯାଇଥିବା ପ୍ରତ୍ୟେକ ଉଦ୍‌ଘୋଷଣା ସଂସଦର ପ୍ରତ୍ୟେକ ସଦନ ସମକ୍ଷରେ ଉପସ୍ଥାପିତ ହେବ ଏବଂ ଯେଉଁସ୍ଥଳେ ଏହା ପୂର୍ବବର୍ତ୍ତୀ ଉଦ୍‌ଘୋଷଣାକୁ ରଦ୍ଦ କରୁଥିବା ଏକ ଉଦ୍‌ଘୋଷଣା ହୋଇଥାଏ ସେହିସ୍ଥଳ ବ୍ୟତିରେକେ ଏକମାସ କାଳାବଧିର ଅବସାନ ପୂର୍ବରୁ ସେହି ଉଦ୍‌ଘୋଷଣାକୁ ସଂସଦର ଉଭୟ ସଦନର ପ୍ରସ୍ତାବ ଦ୍ୱାରା ଅନୁମୋଦିତ କରାଯାଇ ନଥିଲେ ଉକ୍ତ କାଳାବଧିର ଅବସାନ ପରେ ତାହା ପ୍ରବୃତ୍ତ ହେବ ନାହିଁ :

ପରନ୍ତୁ ଯଦି ସେପରି କୌଣସି ଉଦ୍‌ଘୋଷଣା (କୌଣସି ପୂର୍ବବର୍ତ୍ତୀ ଉଦ୍‌ଘୋଷଣାକୁ ରଦ୍ଦ କରୁଥିବା ଉଦ୍‌ଘୋଷଣା ନ ହୋଇ) ଏପରି ସମୟରେ କରାଯାଏ ଯେତେବେଳେ କି ଲୋକସଭା ବିଘଟିତ ହୋଇଥାଏ ବା ଲୋକସଭାର ବିଘଟନ ଏହି ଖଣ୍ଡରେ ନିର୍ଦ୍ଦେଶିତ ଏକମାସ କାଳାବଧି ମଧ୍ୟରେ ହୁଏ ଏବଂ ଯଦି ସେହି ଉଦ୍‌ଘୋଷଣାକୁ ଅନୁମୋଦନ କରୁଥିବା ପ୍ରସ୍ତାବ ରାଜ୍ୟସଭା ଦ୍ୱାରା ପାରିତ ହୋଇଥାଏ ମାତ୍ର ସେହି କାଳାବଧିର ଅବସାନ ପୂର୍ବରୁ ସେହି ଉଦ୍‌ଘୋଷଣା ସମ୍ବନ୍ଧିତ କୌଣସି ପ୍ରସ୍ତାବ ଲୋକସଭା ଦ୍ୱାରା ପାରିତ ହୋଇ ନଥାଏ ତାହାହେଲେ ଲୋକସଭାର ପୁନର୍ଗଠନ ପରେ ଯେଉଁ ତାରିଖରେ ଲୋକସଭା ପ୍ରଥମେ ବସେ ସେହି ତାରିଖରୁ ତିରିଶ ଦିନର ଅବସାନ ପରେ, ଉକ୍ତ ତିରିଶ ଦିନ କାଳାବଧିର ଅବସାନ ପୂର୍ବରୁ ଲୋକସଭା ଦ୍ୱାରା ସେହି ଉଦ୍‌ଘୋଷଣାକୁ ଅନୁମୋଦନ କରୁଥିବା ପ୍ରସ୍ତାବ ପାରିତ ହୋଇ ନଥିଲେ, ସେହି ଉଦ୍‌ଘୋଷଣା ପ୍ରବୃତ୍ତ ହେବନାହିଁ ।

(୫) ଯଦି ଏରୂପେ ଅନୁମୋଦିତ ଉଦ୍‌ଘୋଷଣା ରଦ୍ଦ କରାଯାଇନଥାଏ ତେବେ ଖଣ୍ଡ (୪) ଅଧୀନ ଉଦ୍‌ଘୋଷଣାକୁ ଅନୁମୋଦନ କରୁଥିବା ପ୍ରସ୍ତାବ ମଧ୍ୟରୁ ଦ୍ୱିତୀୟଟି ପାରିତ ହେବା ତାରିଖଠାରୁ ଛଅମାସ କାଳାବଧିର ଅବସାନ ପରେ ଉକ୍ତ ଉଦ୍‌ଘୋଷଣା ପ୍ରବୃତ୍ତ ହେବନାହିଁ :

ପରନ୍ତୁ ଯଦି ଓ ଯେତେଥର ସେପରି ଏକ ଉଦ୍‌ଘୋଷଣା ପ୍ରବୃତ୍ତ ରଖାଯିବାକୁ ଅନୁମୋଦନ କରୁଥିବା କୌଣସି ପ୍ରସ୍ତାବ ସଂସଦର ଉଭୟ ସଦନ ଦ୍ୱାରା ପାରିତ ହୁଏ ତେବେ ସେତେଥର, ତାହା ରଦ୍ଦ କରାନଗଲେ, ଏହି ଖଣ୍ଡ ଅଧୀନରେ ଯେଉଁ ତାରିଖରେ ତାହା ଅନ୍ୟଥା ପ୍ରବୃତ୍ତ ହୋଇ ନଥାନ୍ତା ସେହି ତାରିଖରୁ ଛଅମାସର ଅତିରିକ୍ତ କାଳାବଧି ଲାଗି ପ୍ରବୃତ୍ତ ହୋଇ ରହିବ :

ଅଧିକନ୍ତୁ ଯଦି ଲୋକସଭାର ବିଘଟନ ଏପରି କୌଣସି ଛଅମାସର କାଳାବଧି ମଧ୍ୟରେ ଘଟେ ଓ ସେହି ଉଦ୍‌ଘୋଷଣା ପ୍ରବୃତ୍ତ ହେବାକୁ ଅନୁମୋଦନ କରୁଥିବା କୌଣସି ପ୍ରସ୍ତାବ ରାଜ୍ୟସଭା ଦ୍ୱାରା ପାରିତ ହୋଇଥାଏ ମାତ୍ର ଉକ୍ତ କାଳାବଧି ମଧ୍ୟରେ ସେହି ଉଦ୍‌ଘୋଷଣା ପ୍ରବୃତ୍ତ ହେବା ସଂପର୍କରେ କୌଣସି ପ୍ରସ୍ତାବ ଲୋକସଭା

ଦ୍ୱାରା ପାରିତ ହୋଇ ନଥାଏ ତାହାହେଲେ ଲୋକସଭାର ପୁନର୍ଗଠନ ପରେ ଯେଉଁ ତାରିଖରେ ଲୋକସଭା ପ୍ରଥମେ ବସେ ସେହି ତାରିଖରୁ ତିରିଶ ଦିନର ଅବସାନ ପୂର୍ବରୁ ଲୋକସଭା ଦ୍ୱାରା ସେହି ଉଦ୍‌ଘୋଷଣା ଜାରିକୁ ରଖାଯିବାକୁ ଅନୁମୋଦନ କରୁଥିବା ଏକ ପ୍ରସ୍ତାବ ପାରିତ ହୋଇନଥିଲେ ସେହି ଉଦ୍‌ଘୋଷଣା ପ୍ରବୃତ୍ତ ହେବନାହିଁ ।

(୬) ଖଣ୍ଡ (୪) ଓ (୫) ର ପ୍ରୟୋଜନ ଲାଗି ସଂସଦର ଯେ କୌଣସି ସଦନ ଦ୍ୱାରା ସେହି ସଦନର ମୋଟ ସଦସ୍ୟଙ୍କ ବହୁମତ ଦ୍ୱାରାହିଁ ଓ ସେହି ସଦନରେ ଉପସ୍ଥିତ ଥିବା ଓ ଭୋଟ ଦେଇଥିବା ସଦସ୍ୟମାନଙ୍କର ଦୁଇତୃତୀୟାଂଶରୁ ଅନ୍ୟୂନ ବହୁମତରେ ଏକ ପ୍ରସ୍ତାବ ପାରିତ ହୋଇପାରିବ ।

(୭) ପୂର୍ବବର୍ତ୍ତୀ ଖଣ୍ଡଗୁଡ଼ିକରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ଯଦି ଲୋକସଭା ସେପରି ଉଦ୍‌ଘୋଷଣାକୁ ଅନୁମୋଦନ ନ କରି ବା, ଯଥାସ୍ଥିତି, ତାହାର ପ୍ରଚଳାବସ୍ଥାକୁ ଅନୁମୋଦନ ନ କରି ପ୍ରସ୍ତାବ ପାରିତ କରେ ତେବେ ରାଷ୍ଟ୍ରପତି ଖଣ୍ଡ (୧) ଅଧୀନରେ କରାଯାଇଥିବା ଉଦ୍‌ଘୋଷଣାକୁ ବା ସେପରି ଉଦ୍‌ଘୋଷଣାକୁ ପରିବର୍ତ୍ତିତ କରୁଥିବା ଉଦ୍‌ଘୋଷଣାକୁ ରଦ୍ଦ କରିବେ ।

(୮) ଯେଉଁସ୍ଥଳେ ଲୋକସଭାର ସଦସ୍ୟମାନଙ୍କ ମୋଟ ସଂଖ୍ୟାର ଅନ୍ୟୂନ ଏକଦଶମାଂଶ ସଦସ୍ୟଙ୍କ ଦ୍ୱାରା ଖଣ୍ଡ (୧) ଅଧୀନରେ କରାଯାଇଥିବା ଏକ ଉଦ୍‌ଘୋଷଣା ବା ସେପରି ଉଦ୍‌ଘୋଷଣାକୁ ପରିବର୍ତ୍ତିତ କରୁଥିବା ଉଦ୍‌ଘୋଷଣାକୁ ଅନୁମୋଦନ ନ କରିବା ଲାଗି ବା, ଯଥାସ୍ଥିତି, ତାହାର ପ୍ରଚଳାବସ୍ଥାକୁ ଅନୁମୋଦନ ନ କରିବା ଲାଗି ଏକ ପ୍ରସ୍ତାବ ଉପସ୍ଥାପିତ କରିବା ନିମିତ୍ତ ସେମାନଙ୍କ ଅଭିପ୍ରାୟର ଲିଖିତାକାରରେ ଏକ ସ୍ୱାକ୍ଷରିତ ନୋଟିସ—

(କ) ସଦନ ସତ୍ରରେ ଥିବାବେଳେ ଅଧ୍ୟକ୍ଷଙ୍କୁ, ବା

(ଖ) ସଦନ ସତ୍ରରେ ନଥିବା ବେଳେ ରାଷ୍ଟ୍ରପତିଙ୍କୁ,

ଦିଆଯାଇଥାଏ ସେହିସ୍ଥଳେ ସେପରି ପ୍ରସ୍ତାବ ବିଚାର କରିବା ପ୍ରୟୋଜନାର୍ଥ ଯେଉଁ ତାରିଖରେ ଅଧ୍ୟକ୍ଷଙ୍କ ଦ୍ୱାରା ବା, ଯଥାସ୍ଥିତି, ରାଷ୍ଟ୍ରପତିଙ୍କ ଦ୍ୱାରା ସେପରି ନୋଟିସ୍ ଗ୍ରହଣ କରାଯାଏ ସେହି ତାରିଖରୁ ଚଉଦ ଦିନ ମଧ୍ୟରେ ସଦନର ଏକ ବିଶେଷ ଅଧିବେଶନ କରାଯିବ ।

(୯) ଖଣ୍ଡ (୧) ଅଧୀନରେ ରାଷ୍ଟ୍ରପତିଙ୍କ ଦ୍ୱାରା ପୂର୍ବରୁ କୌଣସି ଉଦ୍‌ଘୋଷଣା କରାଯାଇ ଥାଉ ବା ନଥାଉ ଏବଂ ସେହି ଉଦ୍‌ଘୋଷଣା ପ୍ରବୃତ୍ତ ଥାଉ ବା ନଥାଉ, ବିଭିନ୍ନ କାରଣରୁ ଯଥା, ଯୁଦ୍ଧ ବା ବାହ୍ୟ ଆକ୍ରମଣ ବା ସଶସ୍ତ୍ର ବିଦ୍ରୋହ କିମ୍ବା ଯୁଦ୍ଧ ବା ବାହ୍ୟ ଆକ୍ରମଣ ବା ସଶସ୍ତ୍ର ବିଦ୍ରୋହର ଆସନ୍ନ ବିପଦ ଯୋଗୁଁ ବିଭିନ୍ନ ଉଦ୍‌ଘୋଷଣା କରିବା କ୍ଷମତା ଏହି ଅନୁଚ୍ଛେଦ ଦ୍ୱାରା ରାଷ୍ଟ୍ରପତିଙ୍କ ଉପରେ ପ୍ରଦତ୍ତ କ୍ଷମତାର ଅନ୍ତର୍ଭୁକ୍ତ ଅଟେ ।

**ଆପାତ ଉଦ୍‌ଘୋଷଣାର ପ୍ରଭାବ ।**

୩୫୩ । ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତମାନ ଥିବାବେଳେ—

(କ) ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ, ସଂଘର କାର୍ଯ୍ୟପାଳିକା କ୍ଷମତା କୌଣସି ରାଜ୍ୟକୁ ସେହି ରାଜ୍ୟର କାର୍ଯ୍ୟପାଳିକା କ୍ଷମତା କେଉଁ ରୀତିରେ ପ୍ରୟୋଗ କରାଯିବ ସେହି ବିଷୟରେ ନିର୍ଦ୍ଦେଶ ଦେବା ପର୍ଯ୍ୟନ୍ତ ବିସ୍ତୃତ ରହିବ ;

(ଖ) କୌଣସି ବିଷୟ ସଂଘ ସୂଚୀରେ ପ୍ରଣୀତ ବିଷୟମାନଙ୍କ ମଧ୍ୟରୁ ଗୋଟିଏ ବିଷୟ ନ ହୋଇଥିବା ସତ୍ତ୍ୱେ, ସେହି ବିଷୟରେ ସଂଘକୁ କିମ୍ବା ସଂଘର ଅଫିସର ବା ପ୍ରାଧିକାରୀଙ୍କୁ କ୍ଷମତା ପ୍ରଦାନ ଓ କର୍ତ୍ତବ୍ୟ ସମର୍ପଣ କରୁଥିବା କିମ୍ବା କ୍ଷମତା ପ୍ରଦାନ ଓ କର୍ତ୍ତବ୍ୟ ସମର୍ପଣକୁ ପ୍ରାଧିକୃତ କରୁଥିବା ମର୍ମେ ବିଧି ପ୍ରଣୟନର କ୍ଷମତା ସଂସଦର ବିଧି ପ୍ରଣୟନ କରିବା କ୍ଷମତାର ଅନ୍ତର୍ଗତ ହେବ :

ପରନ୍ତୁ ଆପାତ ଉଦ୍‌ଘୋଷଣା ଭାରତର ରାଜ୍ୟକ୍ଷେତ୍ରର କୋଣସି ଭାଗରେହି ପ୍ରବର୍ତ୍ତମାନ ଥିବା ସ୍ଥଳେ, ଯଦି ଓ ଯେଉଁ ପର୍ଯ୍ୟନ୍ତ ଭାରତର ବା ତାହାର ରାଜ୍ୟକ୍ଷେତ୍ରର କୌଣସି ଭାଗର ସୁରକ୍ଷା ଭାରତର ରାଜ୍ୟକ୍ଷେତ୍ରର ଯେଉଁ ଭାଗରେ ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତମାନ ଥାଏ ସେହି ଭାଗର ବା ସେହି ଭାଗ ସମ୍ବନ୍ଧୀୟ କାର୍ଯ୍ୟକଳାପ ଦ୍ୱାରା ସଂକଟାପନ୍ନ ହୁଏ ତେବେ ଓ ସେହି ପର୍ଯ୍ୟନ୍ତ—

(୮) ଖଣ୍ଡ (କ) ଅଧୀନରେ ନିଦେଶ ଦେବା ନିମିତ୍ତ ସଂଘର କାର୍ଯ୍ୟପାଳିକା କ୍ଷମତାର, ଏବଂ

(୮) ଖଣ୍ଡ (ଖ) ଅଧୀନରେ ବିଧି ପ୍ରଣୟନ କରିବା ନିମିତ୍ତ ସଂସଦର କ୍ଷମତାର ବିସ୍ତାର, ଯେଉଁ ରାଜ୍ୟରେ ବା ଯାହାର କୌଣସି ଭାଗରେ ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତମାନ ଥାଏ ସେହି ରାଜ୍ୟ ଭିନ୍ନ ଏପରି ଅନ୍ୟ ରାଜ୍ୟ ଉପରେ ହେବ ।

ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତମାନ ଥିବାବେଳେ ରାଜସ୍ୱ ବିତରଣ ସଂବଧୀୟ ଉପବଂଧ ମାନଙ୍କର ପ୍ରୟୋଗ ।

୩୫୪ । (୧) ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତମାନ ଥିବା ବେଳେ ରାଷ୍ଟ୍ରପତି ଆଦେଶ ଦ୍ୱାରା ନିଦେଶ ଦେଇ ପାରିବେ ଯେ, ୨୬୮ ଠାରୁ ୨୭୯ ପର୍ଯ୍ୟନ୍ତ ଅନୁଚ୍ଛେଦମାନଙ୍କର ସମସ୍ତ ବା କୌଣସି ଉପବନ୍ଧ ଯେଉଁ ବିତ୍ତୀୟ ବର୍ଷ ମଧ୍ୟରେ ସେହି ଉଦ୍‌ଘୋଷଣା ପ୍ରବର୍ତ୍ତମାନ ହେବାରୁ ବିରତ ହେବ କୌଣସି ଅବସ୍ଥାରେ ସେହି ବର୍ଷର ଶେଷଠାରୁ ଅଧିକ ନ ହୋଇ ଆଦେଶରେ ଯେଉଁ କାଳାବଧି ବିନିର୍ଦ୍ଦିଷ୍ଟ ହୋଇଥିବ ସେହି କାଳାବଧି ପର୍ଯ୍ୟନ୍ତ ରାଷ୍ଟ୍ରପତି ଯେପରି ଉଚିତ ବିବେଚନା କରିବେ ସେପରି ବ୍ୟତିରେକୀ ବା ରୂପାନ୍ତରଣର ବଶବର୍ତ୍ତୀ ରହି ପ୍ରଭାବୀ ହେବ ।

(୨) ଖଣ୍ଡ (୧) ଅଧୀନରେ ଦିଆଯାଇଥିବା ପ୍ରତ୍ୟେକ ଆଦେଶ ଯଥା ସମ୍ଭବ ଶୀଘ୍ର ପ୍ରତ୍ୟେକ ସଦନର ସମକ୍ଷରେ ଉପସ୍ଥାପିତ କରାଯିବ ।

ବାହ୍ୟ ଆକ୍ରମଣ ଓ ଆଭ୍ୟନ୍ତରୀଣ ଅଶାନ୍ତିରୁ ରାଜ୍ୟକୁ ରକ୍ଷା କରିବା ଲାଗି ସଂଘର କର୍ତ୍ତବ୍ୟ ।

୩୫୫ । ବାହ୍ୟ ଆକ୍ରମଣ ଓ ଆଭ୍ୟନ୍ତରୀଣ ଅଶାନ୍ତିରୁ ପ୍ରତ୍ୟେକ ରାଜ୍ୟକୁ ରକ୍ଷା କରିବା ଏବଂ ପ୍ରତ୍ୟେକ ରାଜ୍ୟର ଶାସନ ଏହି ସଂବିଧାନର ଉପବନ୍ଧମାନଙ୍କ ଅନୁସାରେ ନିର୍ବାହିତ ହେଉଅଛି ଏହା ସୁନିଶ୍ଚିତ କରିବା ସଂଘର କର୍ତ୍ତବ୍ୟ ହେବ ।

ରାଜ୍ୟମାନଙ୍କର ସାଂବିଧାନିକ ତନ୍ତ୍ର ବିଫଳ ହେବା ଅବସ୍ଥାରେ ଉପବନ୍ଧ ।

୩୫୬ । (୧) କୌଣସି ରାଜ୍ୟର ରାଜ୍ୟପାଳଙ୍କ ରିପୋର୍ଟ ମିଳିବା ପରେ ବା ଅନ୍ୟଥା ଯଦି ରାଷ୍ଟ୍ରପତି ସନ୍ତୁଷ୍ଟ ହୁଅନ୍ତି ଯେ ଏପରି ପରିସ୍ଥିତିର ଉଦ୍‌ଭବ ହୋଇଅଛି ଯହିଁରେ କି ରାଜ୍ୟର ଶାସନ ଏହି ସଂବିଧାନର ଉପବନ୍ଧମାନଙ୍କ ଅନୁସାରେ ନିର୍ବାହିତ ହୋଇ ପାରିବ ନାହିଁ ତାହାହେଲେ ରାଷ୍ଟ୍ରପତି ଉଦ୍‌ଘୋଷଣା ଦ୍ୱାରା —

(କ) ସେହି ରାଜ୍ୟର ସରକାରଙ୍କର ସମସ୍ତ ବା କୌଣସି କୃତ୍ୟ ଏବଂ ରାଜ୍ୟପାଳଙ୍କ ଠାରେ କିମ୍ବା ରାଜ୍ୟର ବିଧାନ ମଣ୍ଡଳ ଭିନ୍ନ ରାଜ୍ୟର ଅନ୍ୟ କୌଣସି ନିକାୟ ବା ପ୍ରାଧିକାରୀଙ୍କ ଠାରେ ନିହିତ ବା ତାଙ୍କ ଦ୍ୱାରା ପ୍ରୟୋଗ କରାଯିବା ସମସ୍ତ ବା କୌଣସି କ୍ଷମତା ନିଜେ ଗ୍ରହଣ କରିପାରିବେ ;

(ଖ) ରାଜ୍ୟର ବିଧାନ ମଣ୍ଡଳର କ୍ଷମତା ସଂସଦ ଦ୍ୱାରା ବା ତାହାର ପ୍ରାଧିକାର ଅଧୀନରେ ପ୍ରୟୋଗ କରଯାଇପାରିବ ବୋଲି ଘୋଷଣା କରି ପାରିବେ ;

(ଗ) ରାଜ୍ୟରେ କୌଣସି ନିକାୟ ବା ପ୍ରାଧିକାରୀଙ୍କ ସହିତ ସମ୍ବନ୍ଧିତ ଏହି ସଂବିଧାନର ଯେ କୌଣସି ଉପବନ୍ଧର ପ୍ରବର୍ତ୍ତନକୁ ଆଂଶିକ ବା ପୂର୍ଣ୍ଣ ଭାବରେ ନିଲମ୍ବିତ କରିବା ଲାଗି ଉପବନ୍ଧ ସମେତ ଏପରି ପ୍ରାସଙ୍ଗିକ ଓ ଆନୁସଙ୍ଗିକ ଉପବନ୍ଧମାନ ପ୍ରଣୟନ କରି ପାରିବେ, ଯାହାକି ରାଷ୍ଟ୍ରପତି ଉଦ୍‌ଘୋଷଣାର ଉଦ୍ଦେଶ୍ୟକୁ ପ୍ରଭାବୀ କରିବା ସକାଶେ ଆବଶ୍ୟକ ବା ବାଞ୍ଛନୀୟ ମନେ କରିବେ:

ପରନ୍ତୁ ଏହି ଖଣ୍ଡର କୌଣସି ବିଷୟ ରାଷ୍ଟ୍ରପତିଙ୍କୁ ଉଚ୍ଚ ନ୍ୟାୟାଳୟ ଠାରେ ନିହିତ କିମ୍ବା ତାହାଦ୍ୱାରା ପ୍ରୟୋଗ କରାଯାଇପାରିବା କ୍ଷମତାମାନଙ୍କ ମଧ୍ୟରୁ କୌଣସିଟିକୁ ନିଜେ ଗ୍ରହଣ କରିବା ପାଇଁ କିମ୍ବା ଉଚ୍ଚ ନ୍ୟାୟାଳୟ ସହିତ ସମ୍ବନ୍ଧ ଥିବା ଏହି ସଂବିଧାନର କୌଣସି ଉପବନ୍ଧର ପ୍ରବର୍ତ୍ତନକୁ ଆଂଶିକ ବା ପୂର୍ଣ୍ଣ ଭାବରେ ନିଲମ୍ବିତ କରିବା ପାଇଁ ପ୍ରାଧିକୃତ କରିବ ନାହିଁ ।

(୨) ଏପରି କୌଣସି ଉଦ୍‌ଘୋଷଣା କୌଣସି ପରବର୍ତ୍ତୀ ଉଦ୍‌ଘୋଷଣା ଦ୍ୱାରା ପ୍ରତିସଂହୃତ ବା ପରିବର୍ତ୍ତିତ କରାଯାଇ ପାରିବ ।

(୩) ଏହି ଅନୁଚ୍ଛେଦ ଅଧୀନରେ କରାଯାଇଥିବା ପ୍ରତ୍ୟେକ ଉଦ୍‌ଘୋଷଣା ସଂସଦର ପ୍ରତ୍ୟେକ ସଦନ ସମକ୍ଷରେ ଉପସ୍ଥାପିତ କରାଯିବ ଏବଂ ଯଦି ତାହା ପୂର୍ବବର୍ତ୍ତୀ ଉଦ୍‌ଘୋଷଣାକୁ ପ୍ରତିସଂହୃତ କରୁଥିବା ଉଦ୍‌ଘୋଷଣା ହୋଇ ନ ଥାଏ ତାହାହେଲେ ଦୁଇମାସ କାଳାବଧିର ଅବସାନ ପୂର୍ବରୁ ସଂସଦର ଉଭୟ ସଦନ କର୍ତ୍ତୃକ ସଂକଳ୍ପ ଦ୍ୱାରା ଅନୁମୋଦିତ ନ ହେଲେ ଦୁଇ ମାସର ଅବସାନ ପରେ ତାହା ପ୍ରବର୍ତ୍ତମାନ ହେବାରୁ ବିରତ ହେବ:

ପରନ୍ତୁ ଯଦି ଲୋକସଭାର ବିଘଟନ ହୋଇଥିବା ସମୟରେ ସେପରି କୌଣସି ଉଦ୍‌ଘୋଷଣା ବାହାର କରାଯାଏ (ଯୋହାକି ପୂର୍ବବର୍ତ୍ତୀ ଉଦ୍‌ଘୋଷଣାକୁ ପ୍ରତିସଂହୃତ କରୁଥିବା ଉଦ୍‌ଘୋଷଣା ହୋଇ ନ ଥାଏ) କିମ୍ବା ଲୋକସଭାର ବିଘଟନ ଏହି ଖଣ୍ଡରେ ନିର୍ଦ୍ଦିଷ୍ଟ ଦୁଇମାସ କାଳାବଧି ମଧ୍ୟରେ ହୋଇଯାଏ ଏବଂ ଯଦି ଉଦ୍‌ଘୋଷଣାକୁ ଅନୁମୋଦନ କରି ଏକ ସଂକଳ୍ପ ରାଜ୍ୟ ପରିଷଦ ଦ୍ୱାରା ପାରିତ ହୋଇଥାଏ କିନ୍ତୁ ସେପରି ଉଦ୍‌ଘୋଷଣା ବିଷୟରେ ଲୋକସଭା ଦ୍ୱାରା ସେହି କାଳାବଧିର ଅବସାନ ପୂର୍ବରୁ କୌଣସି ସଂକଳ୍ପ ପାରିତ ହୋଇ ନ ଥାଏ ତାହା ହେଲେ ଲୋକସଭା ପୁନର୍ଗଠନ ପରେ ଯେଉଁ ଦିନ ପ୍ରଥମ ଥର ବସିବ ସେହି ଦିନଠାରୁ ତିରିଶ ଦିନ ସମାପ୍ତ ହେବା ପୂର୍ବରୁ ଉଦ୍‌ଘୋଷଣାକୁ ଅନୁମୋଦନ କରି ଏକ ସଂକଳ୍ପ ଲୋକସଭା ଦ୍ୱାରା ପାରିତ ହୋଇ ନ ଗଲେ ଉକ୍ତ ତିରିଶ ଦିନ କାଳାବଧିର ଅବସାନ ପରେ ସେହି ଉଦ୍‌ଘୋଷଣା ପ୍ରବର୍ତ୍ତମାନ ହେବାରୁ ବିରତ ହେବ ।

(୪) ସେପରି ଅନୁମୋଦିତ ଉଦ୍‌ଘୋଷଣା ପ୍ରତିସଂହୃତ କରାଯାଇ ନ ଥିଲେ, ଉଦ୍‌ଘୋଷଣା କରାଯାଇଥିବା ତାରିଖ ଠାରୁ ଛଅମାସ କାଳାବଧିର ଅବସାନ ପରେ ପ୍ରବର୍ତ୍ତିତ ହେବାରୁ ବିରତ ହେବ:

ପରନ୍ତୁ ସେପରି ଉଦ୍‌ଘୋଷଣାକୁ ପ୍ରବର୍ତ୍ତିତ କରି ରଖିବା ସକାଶେ ଅନୁମୋଦନକାରୀ ସଂକଳ୍ପ ଯଦି ଓ ଯେତେଥର ସଂସଦର ଉଭୟ ସଦନ ଦ୍ୱାରା ପାରିତ ହୋଇଥାଏ ତେବେ ଓ ସେତେଥର ସେହି ଉଦ୍‌ଘୋଷଣା ପ୍ରତିସଂହୃତ କରାଯାଇ ନ ଥିଲେ ଯେଉଁ ତାରିଖ ଠାରୁ ତାହା ଏହି ଖଣ୍ଡର ଅଧୀନରେ ଅନ୍ୟଥା ପ୍ରବର୍ତ୍ତିତ ହୋଇ ନ ଥାନ୍ତା ସେହି ତାରିଖ ଠାରୁ ଆହୁରି ଛଅମାସ କାଳାବଧି ପର୍ଯ୍ୟନ୍ତ ପ୍ରବର୍ତ୍ତମାନ ହୋଇ ରହିବ, କିନ୍ତୁ ସେପରି କୌଣସି ଉଦ୍‌ଘୋଷଣା କୌଣସି ଅବସ୍ଥାରେ ମଧ୍ୟ ତିନିବର୍ଷରୁ ଅଧିକ କାଳ ପ୍ରବର୍ତ୍ତମାନ ହୋଇ ରହିବ ନାହିଁ:

ଅଧିକନ୍ତୁ ଯଦି ଲୋକସଭାର ବିଘଟନ ଏପରି କୌଣସି ଛଅମାସ କାଳାବଧି ମଧ୍ୟରେ ହୋଇଯାଏ ଏବଂ ସେପରି ଉଦ୍‌ଘୋଷଣାକୁ ପ୍ରବର୍ତ୍ତମାନ ରଖିବାର ଅନୁମୋଦନକାରୀ ସଂକଳ୍ପ ରାଜ୍ୟସଭା ଦ୍ୱାରା ପାରିତ ହୋଇଥାଏ କିନ୍ତୁ ସେପରି ଉଦ୍‌ଘୋଷଣାକୁ ପ୍ରବର୍ତ୍ତମାନ ରଖିବା ବିଷୟରେ କୌଣସି ସଂକଳ୍ପ ଲୋକସଭା ଦ୍ୱାରା ଉକ୍ତ କାଳାବଧି ମଧ୍ୟରେ ପାରିତ ହୋଇ ନ ଥାଏ ତାହାହେଲେ ଲୋକସଭା ପୁନର୍ଗଠନ ପରେ ଯେଉଁ ଦିନ ପ୍ରଥମ ଥର ବସିବ ସେହି ଦିନଠାରୁ ତିରିଶ ଦିନ ଅବସାନ ହେବା ପୂର୍ବରୁ ଉଦ୍‌ଘୋଷଣାକୁ ପ୍ରବର୍ତ୍ତମାନ ରଖିବାର ଅନୁମୋଦନକାରୀ ସଂକଳ୍ପ ଲୋକସଭା ଦ୍ୱାରା ପାରିତ ହୋଇ ନ ଗଲେ ଉକ୍ତ ତିରିଶ ଦିନ କାଳାବଧିର ଅବସାନ ପରେ ସେହି ଉଦ୍‌ଘୋଷଣା ପ୍ରବର୍ତ୍ତମାନ ହେବାରୁ ବିରତ ହେବ ।

(୫) ଖଣ୍ଡ (୪) ରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ଖଣ୍ଡ (୩) ଅଧୀନରେ ଅନୁମୋଦିତ କୌଣସି ଉଦ୍‌ଘୋଷଣାର ପ୍ରଚଳାବସ୍ଥା ସମ୍ପର୍କରେ ସେପରି ଉଦ୍‌ଘୋଷଣା କରାଯିବା ତାରିଖଠାରୁ ଏକବର୍ଷ ଅବସାନ ହେବା ପରେ କୌଣସି କାଳାବଧି ଲାଗି ଏକ ପ୍ରସ୍ତାବ—

(କ) ସେହି ପ୍ରସ୍ତାବ ପାରିତ ହେବା ସମୟରେ ସାରା ଭାରତରେ ବା, ଯଥାସ୍ଥିତି, ରାଜ୍ୟର ଯେ କୌଣସି ଭାଗର ସମଗ୍ର ଅଂଶରେ ଆପାତକାଳୀନ ଉଦ୍‌ଘୋଷଣା ପ୍ରବୃତ୍ତ ନ ଥିଲେ, ଓ

(ଖ) ସେହି ପ୍ରସ୍ତାବରେ ବିନିର୍ଦ୍ଦିଷ୍ଟ କାଳାବଧି ମଧ୍ୟରେ ଖଣ୍ଡ (୩) ଅଧୀନରେ ଅନୁମୋଦିତ ଉଦ୍‌ଘୋଷଣାର ପ୍ରଚଳାବସ୍ଥା ସଂପୃକ୍ତ ରାଜ୍ୟର ବିଧାନ ସଭାକୁ ସାଧାରଣ ନିର୍ବାଚନ କରାଯିବାରେ ଅସୁବିଧା ଯୋଗୁଁ ଆବଶ୍ୟକ ବୋଲି ନିର୍ବାଚନ କମିଶନ ପ୍ରମାଣିତ ନ କଲେ,

ସଂସଦର କୌଣସି ସଦନ ଦ୍ୱାରା ପାରିତ ହେବନାହିଁ ।

**ଅନୁଚ୍ଛେଦ ୩୫୬ ଅଧୀନରେ କରାଯାଇଥିବା ଉଦ୍‌ଘୋଷଣା ଅଧୀନରେ ବିଧାୟିନୀ କ୍ଷମତାର ପ୍ରୟୋଗ ।**

୩୫୭ । (୧) ଯେଉଁଠାରେ ଅନୁଚ୍ଛେଦ ୩୫୬ର ଖଣ୍ଡ (୧) ଅଧୀନରେ କରାଯାଇଥିବା ଉଦ୍‌ଘୋଷଣା ଦ୍ୱାରା ରାଜ୍ୟର ବିଧାନ ମଣ୍ଡଳର କ୍ଷମତାମାନ ସଂସଦର ପ୍ରାଧୀକାର ଦାରା ବା ଅଧୀନରେ ପ୍ରୟୋଗ କରାଯିବ ବୋଲି ଘୋଷଣା କରାଯାଇଥାଏ ସେଠାରେ—

(କ) ରାଜ୍ୟର ବିଧାନ ମଣ୍ଡଳର ବିଧି ପ୍ରଣୟନ କ୍ଷମତାକୁ ରାଷ୍ଟ୍ରପତିଙ୍କୁ ପ୍ରଦାନ କରିବା ସକାଶେ ଏବଂ ରାଷ୍ଟ୍ରପତି ଯେପରି ସର୍ତ୍ତ ଆରୋପିତ କରିବା ଉଚିତ ବିବେଚନା କରିବେ ସେପରି ସର୍ତ୍ତର ସାପେକ୍ଷତାରେ ସେପରି ପ୍ରଦତ୍ତ କ୍ଷମତାକୁ ସେ ଯେଉଁ ପ୍ରାଧୀକାରୀଙ୍କୁ ଏଥି ସକାଶେ ବିନିର୍ଦ୍ଦିଷ୍ଟ କରିବେ, ସେପରି ପ୍ରାଧିକାରୀଙ୍କୁ ପ୍ରତ୍ୟାଯୋଜନ କରିବା ଲାଗି ରାଷ୍ଟ୍ରପତିଙ୍କୁ ପ୍ରାଧିକୃତ କରିବା ସକାଶେ ସଂସଦ ସକ୍ଷମ ହେବ ;

(ଖ) ସଂଘକୁ କିମ୍ବା ତହିଁର ପ୍ରାଧିକାରୀମାନଙ୍କୁ କିମ୍ବା ଅଫିସର ମାନଙ୍କୁ କ୍ଷମତାର ପ୍ରଦାନ ବା କର୍ତ୍ତବ୍ୟର ଆରୋପଣ କରିବା ସକାଶେ କିମ୍ବା କ୍ଷମତା ପ୍ରଦାନ ବା କର୍ତ୍ତବ୍ୟର ଆରୋପଣ କରାଯିବା ପ୍ରାଧିକୃତ କରିବା ସକାଶେ ବିଧି ପ୍ରଣୟନ ଲାଗି ସଂସଦ କିମ୍ବା ରାଷ୍ଟ୍ରପତି କିମ୍ବା ଉପଖଣ୍ଡ (କ) ଅନୁସାରେ ସେପରି ବିଧିପ୍ରଣୟନର କ୍ଷମତା ଅନ୍ୟ ଯେଉଁ ପ୍ରାଧିକାରୀଙ୍କ ଠାରେ ନିହିତ ଥାଏ ସେହି ପ୍ରାଧିକାରୀ ସକ୍ଷମ ହେବେ ;

(ଗ) ଲୋକସଭା ସତ୍ରରେ ନ ଥିଲାବେଳେ ବ୍ୟୟ ସକାଶେ ସଂସଦର ମଞ୍ଜୁରୀ ଲମ୍ବିତ ରଖି ରାଜ୍ୟର ସଞ୍ଚିତ ନିଧିରୁ ସେପରି ବ୍ୟୟକୁ ପ୍ରାଧିକୃତ କରିବା ସକାଶେ ରାଷ୍ଟ୍ରପତି ସକ୍ଷମ ହେବେ ।

(୨) ଅନୁଚ୍ଛେଦ ୩୫୬ ଅଧୀନରେ ଉଦ୍‌ଘୋଷଣା କରାଯାଇ ନ ଥିଲେ ସଂସଦ ବା ରାଷ୍ଟ୍ରପତି କିମ୍ବା ଖଣ୍ଡ (୧)ର ଉପଖଣ୍ଡ (କ) ରେ ନିର୍ଦ୍ଦିଷ୍ଟ ଅନ୍ୟ ପ୍ରାଧିକାରୀ ଯେଉଁ ବିଧିକୁ ପ୍ରଣୟନ କରିବା ଲାଗି ସକ୍ଷମ ହୋଇ ନ ଥାନ୍ତେ ରାଜ୍ୟର ବିଧାନ ମଣ୍ଡଳର କ୍ଷମତାର ପ୍ରୟୋଗରେ ସଂସଦ ଦ୍ୱାରା ବା ରାଷ୍ଟ୍ରପତିଙ୍କ ଦ୍ୱାରା କିମ୍ବା ସେପରି ଅନ୍ୟ ପ୍ରାଧିକାରୀଙ୍କ ଦ୍ୱାରା ପ୍ରଣୀତ ସେପରି କୌଣସି ବିଧି ଉଦ୍‌ଘୋଷଣା ପ୍ରବର୍ତ୍ତନରୁ ରହିତ ହେବା ପରେ ମଧ୍ୟ ସକ୍ଷମ ବିଧାନ ମଣ୍ଡଳ ବା ଅନ୍ୟ ପ୍ରାଧିକାରୀଙ୍କ ଦ୍ୱାରା ପରିବର୍ତ୍ତିତ ବା ନିରସିତ କିମ୍ବା ସଂଶୋଧିତ ନ ହେବା ପର୍ଯ୍ୟନ୍ତ ପ୍ରବୃତ୍ତ ରହିବ ।

**ଆପାତ ପରିସ୍ଥିତିରେ ଅନୁଚ୍ଛେଦ ୧୯ର ଉପବନ୍ଧ ମାନଙ୍କର ନିଲମ୍ବନ ।**

୩୫୮ । (୧) ଯେତେବେଳେ ଭାରତର ବା ତହିଁର ରାଜ୍ୟ କ୍ଷେତ୍ରର କୌଣସି ଭାଗର ସୁରକ୍ଷା ଯୁଦ୍ଧ ଦ୍ୱାରା ବା ବାହ୍ୟ ଆକ୍ରମଣ ଦ୍ୱାରା ସଂକଟାପନ୍ନ ବୋଲି ଘୋଷଣା କରି ଏକ ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତନରେ ରହିଥାଏ, ସେତେବେଳେ ଅନୁଚ୍ଛେଦ ୧୯ର କୌଣସି ବିଷୟ, ଭାଗ ୩ରେ ଯଥା ସଜ୍ଞାକୃତ ରାଜ୍ୟ ଉକ୍ତ ଭାଗରେ ଅନ୍ତର୍ବିଷ୍ଟ ଉପବନ୍ଧମାନ ନଥିଲେ ଯେଉଁ ବିଧି ପ୍ରଣୟନ କରିବା ବା କାର୍ଯ୍ୟପାଳିକା କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ସକାଶେ ସକ୍ଷମ ହୋଇଥାଆନ୍ତା ତାହା ପ୍ରଣୟନ କରିବା ବା ଗ୍ରହଣ କରିବା ପାଇଁ ସେହି ରାଜ୍ୟର କ୍ଷମତାକୁ ସଂକୁଚିତ କରିବ ନାହିଁ କିନ୍ତୁ ଉଦ୍‌ଘୋଷଣା ପ୍ରବର୍ତ୍ତନ ରହିତ ହେବା ସଙ୍ଗେ ସଙ୍ଗେ ଏରୂପେ ପ୍ରଣୀତ ବିଧି ଏପରି ଅକ୍ଷମତାର୍ଥ ମାତ୍ରା ପର୍ଯ୍ୟନ୍ତ ପ୍ରଭାବ ଶୂନ୍ୟ ହେବ, କିନ୍ତୁ ସେହି ବିଧି ପ୍ରଭାବ ଶୂନ୍ୟ ହେବା ପୂର୍ବରୁ ଯେଉଁ ସବୁ କାର୍ଯ୍ୟ କରାଯାଇଥିବ ବା ଲୋପ ହୋଇଥିବ ତାହା ପ୍ରଭାବ ଶୂନ୍ୟ ହେବ ନାହିଁ :

ପରନ୍ତୁ ସେହି ଆପାତ ଉଦ୍‌ଘୋଷଣା ଭାରତର ରାଜ୍ୟକ୍ଷେତ୍ରର କୌଣସି ଭାଗରେ ହିଁ ପ୍ରବର୍ତ୍ତମାନ ଥିବା ସ୍ଥଳେ, ଯଦି ଓ ଯେଉଁ ପର୍ଯ୍ୟନ୍ତ ଭାରତର ବା ତାହାର ରାଜ୍ୟକ୍ଷେତ୍ରର କୌଣସି ଭାଗର ସୁରକ୍ଷା ଭାରତର ରାଜ୍ୟ କ୍ଷେତ୍ରର ଯେଉଁ ଭାଗରେ ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତମାନ ଥାଏ ସେହି ଭାଗର ବା ସେହି ଭାଗ ସମ୍ବନ୍ଧୀୟ କାର୍ଯ୍ୟକଳାପ ଦ୍ୱାରା ସଙ୍କଟାପନ୍ନ ହୁଏ, ତେବେ ଓ ସେହି ପର୍ଯ୍ୟନ୍ତ ଯେଉଁ ରାଜ୍ୟ ବା ସଂଘ ରାଜ୍ୟ କ୍ଷେତ୍ରରେ ବା ତାହାର କୌଣସି ଭାଗରେ ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତମାନ ନ ଥାଏ ତହିଁରେ ବା ତାହା ସମ୍ବନ୍ଧରେ ଏହି ଅନୁଚ୍ଛେଦ ଅଧୀନରେ ଏପରି କୌଣସି ବିଧି ପ୍ରଣୟନ କରାଯାଇ ପାରିବ ବା ଏପରି କୌଣସି କାର୍ଯ୍ୟପାଳିକା କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇପାରିବ ।

(୨) ଖଣ୍ଡ (୧)ରେ ଥିବା ଯେ କୌଣସି ବିଷୟ—

(କ) ଏପରି କୌଣସି ବିଧିକୁ ଲାଗୁ ହେବ ନାହିଁ ଯହିଁରେ କି ତାହା ପ୍ରଣୀତ ହେବା ସମୟରେ ଏହି ମର୍ମେ ଏକ ଉଲ୍ଲେଖ ନ ଥାଏ ଯେ ଉକ୍ତ ବିଧି ପ୍ରବୃତ୍ତ ଥିବା ଆପାତ ଉଦ୍‌ଘୋଷଣା ସମ୍ପର୍କିତ ଅଟେ .

(ଖ) ଏପରି କୌଣସି କାର୍ଯ୍ୟପାଳିକା କାର୍ଯ୍ୟାନୁଷ୍ଠାନକୁ ଲାଗୁ ହେବ ନାହିଁ ଯାହାକି ସେପରି ଉଲ୍ଲେଖ ଥିବା କୌଣସି ବିଧି ଅଧୀନରେ ନ ହୋଇ ଅନ୍ୟଥା ଗ୍ରହଣ କରା ଯାଇଥାଏ ।

ଆପାତ ପରିସ୍ଥିତିରେ ଭାଗ ୩ ଦ୍ୱାର ପ୍ରଦତ୍ତ ଅଧିକାରମାନଙ୍କ ପ୍ରବର୍ତ୍ତନର ନିଲମ୍ବନ ।

୩୫୯ ! (୧) ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତନରେ ରହିଥିବା ବେଳେ ରାଷ୍ଟ୍ରପତି ଆଦେଶ ଦ୍ୱାରା ଭାଗ ୩ରେ ପ୍ରଦତ୍ତ ଅଧିକାରମାନଙ୍କ ମଧ୍ୟରୁ (ଅନୁଚ୍ଛେଦ ୨୦ ଓ ୨୧ ବ୍ୟତୀତ) ଆଦେଶରେ ବର୍ଣ୍ଣିତ ଯେ କୌଣସି ଅଧିକାରର ପ୍ରବର୍ତ୍ତନ ସକାଶେ କୌଣସି ନ୍ୟାୟାଳୟରେ ଆବେଦନ କରିବାର ଅଧିକାର ଏବଂ ଏହିପରି ବର୍ଣ୍ଣିତ ଅଧିକାରମାନଙ୍କ ପ୍ରବର୍ତ୍ତନ ସକାଶେ କୌଣସି ନ୍ୟାୟାଳୟରେ ଲମ୍ବିତ ସମସ୍ତ କାର୍ଯ୍ୟବାହୀ ଯେଉଁ କାଳାବଧିରେ ଉଦ୍‌ଘୋଷଣା ପ୍ରବୃତ୍ତ ଥିବ ସେହି କାଳାବଧି ସକାଶେ କିମ୍ବା ଆଦେଶରେ ଯେପରି ବିନିର୍ଦ୍ଦିଷ୍ଟ କରାଯିବ ସେପରି ଅଳ୍ପତର କାଳାବଧି ସକାଶେ ନିଲମ୍ବିତ ରହିବ ବୋଲି ଘୋଷଣା କରି ପାରିବେ ।

(୧କ) ଭାଗ ୩ ଦ୍ୱାରା ପ୍ରଦତ୍ତ ଅଧିକାରମାନଙ୍କ ମଧ୍ୟରୁ କୌଣସି ଅଧିକାର ବର୍ଣ୍ଣିତ ଥାଇ ଖଣ୍ଡ (୧) ଅଧୀନରେ କରାଯାଇଥିବା ଏକ ଆଦେଶ ପ୍ରବୃତ୍ତ ଥିବା ଅବସ୍ଥାରେ ସେହି ଅଧିକାରମାନ ପ୍ରଦତ୍ତ କରୁଥିବା ସେହି ଭାଗରେ ଥିବା କୌଣସି ବିଷୟ ସେହି ଭାଗରେ ଯଥା ସଂଜ୍ଞାକୃତ ରାଜ୍ୟର ଏପରି କୌଣସି ବିଧି ପ୍ରଣୟନ କରିବାର ବା ଏପରି କୌଣସି କାର୍ଯ୍ୟପାଳିକା କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାର କ୍ଷମତାକୁ ସଙ୍କୁଚିତ କରିବ ନାହିଁ ଯାହାକି ସେହି ଭାଗରେ ଏହି ଉପବନ୍ଧମାନ ନ ଥିଲେ ରାଜ୍ୟ ପ୍ରଣୟନ କରିବା ବା ଗ୍ରହଣ କରିବା ପାଇଁ ସକ୍ଷମ ହୋଇଥାଆନ୍ତା, କିନ୍ତୁ ଉପରୋକ୍ତ ଆଦେଶ ପ୍ରବୃତ୍ତ ରହିବାରୁ ବିରତ ହେବା ସଙ୍ଗେ ସଙ୍ଗେ ଏ ରୂପେ ପ୍ରଣୀତ ବିଧି ଅକ୍ଷମତାର ମାତ୍ରା ପର୍ଯ୍ୟନ୍ତ ପ୍ରଭାବ ଶୂନ୍ୟ ହେବ କିନ୍ତୁ ସେହି ବିଧି ଏପରି ପ୍ରଭାବ ଶୂନ୍ୟ ହେବା ପୂର୍ବରୁ ଯେଉଁ ସବୁ କାର୍ଯ୍ୟ କରାଯାଇଥିବ ବା ଲୋପ ହୋଇଥିବ ତାହା ପ୍ରଭାବ ଶୂନ୍ୟ ହେବ ନାହିଁ:

ପରନ୍ତୁ ଆପାତ ଉଦ୍‌ଘୋଷଣା ଭାରତର ରାଜ୍ୟ କ୍ଷେତ୍ରର କୌଣସି ଭାଗରେ ହିଁ ପ୍ରବର୍ତ୍ତମାନ ଥିବା ସ୍ଥଳେ, ଯଦି ଓ ଯେଉଁ ପର୍ଯ୍ୟନ୍ତ ଭାରତର ବା ତାହାର ରାଜ୍ୟ କ୍ଷେତ୍ରର କୌଣସି ଭାଗର ସୁରକ୍ଷା ଭାରତର ରାଜ୍ୟ କ୍ଷେତ୍ରର ଯେଉଁ ଭାଗରେ ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତମାନ ଥାଏ ସେହି ଭାଗର ବା ସେହି ଭାଗ ସମ୍ବନ୍ଧୀୟ କାର୍ଯ୍ୟକଳାପ ଦ୍ୱାରା ସଙ୍କଟାପନ୍ନ ହୁଏ ତେବେ ଓ ସେହି ପର୍ଯ୍ୟନ୍ତ ଯେଉଁ ରାଜ୍ୟ ବା ସଂଘ ରାଜ୍ୟ କ୍ଷେତ୍ରରେ ବା ତାହାର କୌଣସି ଭାଗରେ ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତମାନ ନ ଥାଏ ତହିଁରେ ବା ତାହା ସମ୍ବନ୍ଧରେ ଏହି ଅନୁଚ୍ଛେଦ ଅଧୀନରେ ଏପରି କୌଣସି ବିଧି ପ୍ରଣୟନ କରାଯାଇ ପାରିବ ବା ଏପରି କୌଣସି କାର୍ଯ୍ୟପାଳିକା କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇ ପାରିବ ।

(୧ଖ) ଖଣ୍ଡ (୧କ)ରେ ଥିବା ଯେ କୌଣସି ବିଷୟ—

(କ) ଏପରି କୌଣସି ବିଧିକୁ ଲଗୁ ହେବ ନାହିଁ ଯହିଁରେ କି ତାହା ପ୍ରଣୀତ ହେବା ସମୟରେ ଏହି ମର୍ମେ ଏକ ଉଲ୍ଲେଖ ନ ଥାଏ ଯେ ଉକ୍ତ ବିଧି ପ୍ରବୃତ୍ତ ଥିବା ଆପାତ ଉଦ୍‌ଘୋଷଣା ସମ୍ପର୍କିତ ଅଟେ ,

(ଖ) ଏପରି କୌଣସି କାର୍ଯ୍ୟପାଳିକା କାର୍ଯ୍ୟାନୁଷ୍ଠାନକୁ ଲଗୁ ହେବ ନାହିଁ ଯାହାକି ସେପରି ଉଲ୍ଲେଖ ଥିବା କୌଣସି ବିଧି ଅଧୀନରେ ନ ହୋଇ ଅନ୍ୟଥା ଗ୍ରହଣ କରାଯାଇଥାଏ ।

(୨) ଉପରୋକ୍ତ ପ୍ରକାରରେ ପ୍ରଦତ୍ତ ଆଦେଶ ଭାରତର ସମସ୍ତ ରାଜ୍ୟକ୍ଷେତ୍ର ପ୍ରତି କିମ୍ବା ତହିଁର କୌଣସି ଭାଗ ପ୍ରତି ବିସ୍ତୃତ ହୋଇ ପାରିବ :

ପରନ୍ତୁ ଆପାତ ଉଦ୍‌ଘୋଷଣା ଭାରତର ରାଜ୍ୟକ୍ଷେତ୍ରର କୌଣସି ଭାଗରେ ହିଁ ପ୍ରବର୍ତ୍ତମାନ ଥିବା ସ୍ଥଳେ, ଯେ ପର୍ଯ୍ୟନ୍ତ ରାଷ୍ଟ୍ରପତି ଭାରତର ବା ତାହାର ରାଜ୍ୟକ୍ଷେତ୍ରର କୌଣସି ଭାଗର ସୁରକ୍ଷା ଭାରତର ରାଜ୍ୟକ୍ଷେତ୍ରର ଯେଉଁ ଭାଗରେ ଆପାତ ଉଦ୍‌ଘୋଷଣା ପ୍ରବର୍ତ୍ତମାନ ଥାଏ ସେହି ଭାଗର ବା ସେହି ଭାଗ ସମ୍ବନ୍ଧୀୟ କାର୍ଯ୍ୟକଳାପ ଦ୍ୱାରା ସଙ୍କଟାପନ୍ନ ଅଟେ ବୋଲି ସନ୍ତୁଷ୍ଟ ହୋଇ ଏପରି ବିସ୍ତାର ଆବଶ୍ୟକ ମନେ ନ କରନ୍ତି ସେ ପର୍ଯ୍ୟନ୍ତ ଏପରି ଆଦେଶର ବିସ୍ତାର ଭାରତର ରାଜ୍ୟକ୍ଷେତ୍ରର ଅନ୍ୟ କୌଣସି ଭାଗ ଉପରେ ହେବ ନାହିଁ ।

(୩) ଖଣ୍ଡ (୧) ଅନୁସାରେ ପ୍ରଦତ୍ତ ପ୍ରତ୍ୟେକ ଆଦେଶ ଦିଆଗଲପରେ ଯଥା ଶୀଘ୍ର ସଂସଦର ପ୍ରତ୍ୟେକ ସଦନ ସମକ୍ଷରେ ଉପସ୍ଥାପିତ କରାଯିବ ।

ବିତ୍ତୀୟ ଆପାତ ବିଷୟରେ ଉପବନ୍ଧ ।

୩୬୦ । (୧) ଯଦି ରାଷ୍ଟ୍ରପତି ସନ୍ତୁଷ୍ଟ ହୁଅନ୍ତି ଯେ ଭାରତର କିମ୍ବା ତହିଁର ରାଜ୍ୟକ୍ଷେତ୍ରର କୌଣସି ଭାଗର ବିତ୍ତୀୟ ସ୍ଥାୟିତ୍ୱ କିମ୍ବା ପ୍ରତ୍ୟୟ ସଙ୍କଟାପନ୍ନ ହୋଇଥିବା ଭଳି ପରିସ୍ଥିତି ଉଦ୍‌ଭବ ହୋଇଅଛି ତାହାହେଲେ ସେ ଉଦ୍‌ଘୋଷଣା ଦ୍ୱାରା ଏହି ବିଷୟ ଘୋଷଣା କରି ପାରିବେ ।

(୨) ଖଣ୍ଡ (୧) ଅଧୀନରେ କରାଯାଇଥିବା ଏକ ଉଦ୍‌ଘୋଷଣା

(କ) ଏକ ପରବର୍ତ୍ତୀ ଉଦ୍‌ଘୋଷଣା ଦ୍ୱାରା ରଦ୍ଦ ବା ପରିବର୍ତ୍ତିତ କରାଯାଇ ପାରିବ,

(ଖ) ସଂସଦର ପ୍ରତ୍ୟେକ ସଦନ ସମକ୍ଷରେ ଉପସ୍ଥାପିତ କରାଯିବ,

(ଗ) ଦୁଇମାସ କାଳାବଧିର ଅବସାନ ପୂର୍ବରୁ ତାହା ସଂସଦର ଉଭୟ ସଦନର ପ୍ରସ୍ତାବ ଦ୍ୱାରା ଅନୁମୋଦିତ ହୋଇ ନଥିଲେ ଉକ୍ତ କାଳାବଧିର ଅବସାନ ପରେ ରହିତ କରାଯିବ :

ପରନ୍ତୁ, ଯଦି ଲୋକସଭାର ବିଘଟନ ହୋଇଥିବା ସମୟରେ ସେପରି କୌଣସି ଉଦ୍‌ଘୋଷଣା ବାହାର କରାଯାଏ କିମ୍ବା ଲୋକସଭାର ବିଘଟନ ଉପଖଣ୍ଡ (ଗ) ରେ ନିର୍ଦ୍ଦିଷ୍ଟ ଦୁଇମାସ କାଳାବଧି ମଧ୍ୟରେ ହୋଇଯାଏ ଓ ଯଦି ଉଦ୍‌ଘୋଷଣାକୁ ଅନୁମୋଦନ କରୁଥିବା କୌଣସି ସଙ୍କଳ୍ପ ରାଜ୍ୟସଭା ଦ୍ୱାରା ପାରିତ ହୋଇଥାଏ ମାତ୍ର ସେପରି ଉଦ୍‌ଘୋଷଣା ସଂପର୍କିତ କୌଣସି ସଙ୍କଳ୍ପ ଉକ୍ତ କାଳାବଧିର ଅବସାନ ପୂର୍ବରୁ ଲୋକସଭା ଦ୍ୱାରା ପାରିତ ହୋଇନଥାଏ ତାହାହେଲେ ପୁନର୍ଗଠନ ପରେ ତାହା ଯେଉଁ ତାରିଖରେ ପ୍ରଥମେ ବସେ ସେହି ତାରିଖରୁ ତିରିଶ ଦିନ ସମାପ୍ତ ହେବା ପୂର୍ବରୁ ଉଦ୍‌ଘୋଷଣାକୁ ଅନୁମୋଦନ କରି ଏକ ସଙ୍କଳ୍ପ ଲୋକସଭାଦ୍ୱାରା ପାରିତ ହୋଇନଗଲେ ଉକ୍ତ ତାରିଖ ଦିନ କାଳାବଧିର ଅବସାନ ପରେ ସେହି ଉଦ୍‌ଘୋଷଣା ପ୍ରବର୍ତ୍ତନ ରହିତ ହେବ ।

(୩) ଖଣ୍ଡ (୧) ରେ ବର୍ଣ୍ଣିତ ହୋଇଥିବା ମତେ କୌଣସି ଉଦ୍‌ଘୋଷଣା ପ୍ରବର୍ତ୍ତନରେ ରହିଥିବା କାଳାବଧି ମଧ୍ୟରେ ସଂଘର କାର୍ଯ୍ୟପାଳିକା କ୍ଷମତା କୌଣସି ରାଜ୍ୟକୁ ବିତ୍ତୀୟ ଔଚିତ୍ୟ ସମ୍ବନ୍ଧରେ ନିଦେଶରେ ଯେପରି ବିନିର୍ଦ୍ଦିଷ୍ଟ ହୋଇଥିବ ସେପରି ସିଦ୍ଧାନ୍ତମାନ ପାଳନ କରିବା ସକାଶେ ନିଦେଶ ପ୍ରଦାନ ପର୍ଯ୍ୟନ୍ତ ଏବଂ ରାଷ୍ଟ୍ରପତି ଏହି ପ୍ରୟୋଜନ ଲଗି ଯେପରି ନିଦେଶ ଦେବା ଆବଶ୍ୟକ ଓ ସମୁଚିତ ବୋଲି ବିବେଚନା କରିବେ ସେପରି ଅନ୍ୟ ନିଦେଶ ପ୍ରଦାନ ପର୍ଯ୍ୟନ୍ତ ବିସ୍ତୃତ ରହିବ ।

(୪) ଏହି ସଂବିଧାନରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ,—

(କ) ଏପରି କୌଣସି ନିଦେଶରେ—

(/) ରାଜ୍ୟର କାର୍ଯ୍ୟ ସମ୍ବନ୍ଧରେ ସେବା କରୁଥିବା ସମସ୍ତ ବା କୌଣସି ଶ୍ରେଣୀର ବ୍ୟକ୍ତିଙ୍କ ବେତନ ଏବଂ ଭତ୍ତାର ହ୍ରାସକାରୀ ଉପବନ୍ଧ,

(୮/) ଯେଉଁ ଧନ ବିଧେୟକ କିମ୍ବା ଅନ୍ୟ ବିଧେୟକ ପ୍ରତି ଅନୁଚ୍ଛେଦ ୨୦୭ର ଉପବନ୍ଧମାନ ଲଗୁ ହୁଏ ସେହି ବିଧେୟକ ରାଜ୍ୟର ବିଧାନମଣ୍ଡଳ ଦ୍ୱାରା ପାରିତ ହେଲ୍ଲ ପରେ ରାଷ୍ଟ୍ରପତିଙ୍କ ବିଗ୍ଚର ସକାଶେ ସଂରକ୍ଷିତ କରିବା ଲଗି ଉପବନ୍ଧ ଅନ୍ତର୍ଭୁକ୍ତ ହୋଇ ପାରିବ ;

(ଖ) ଏହି ଅନୁଚ୍ଛେଦ ଅଧୀନରେ ବାହାର କରାଯାଇଥିବା ଉଦ୍‌ଘୋଷଣା ପ୍ରବର୍ତ୍ତନରେ ରହିଥିବା କାଳାବଧି ମଧ୍ୟରେ ଉଚ୍ଚତମ ନ୍ୟାୟାଳୟ ଏବଂ ଉଚ୍ଚନ୍ୟାୟାଳୟର ନ୍ୟାୟାଧୀଶଙ୍କ ସମେତ ସଂଘର କାର୍ଯ୍ୟ ସମ୍ବନ୍ଧରେ ସେବା କରୁଥିବା ସମସ୍ତ ବା କୌଣସି ଶ୍ରେଣୀର ବ୍ୟକ୍ତିମାନଙ୍କର ବେତନ ଓ ଭତ୍ତା ହ୍ରାସ କରିବା ଲଗି ନିଦେଶ ବାହାର କରିବା ସକାଶେ ରାଷ୍ଟ୍ରପତି ସକ୍ଷମ ହେବେ ।

(୫) * * *

# ଭାଗ ୧୯

## ପ୍ରକୀର୍ଣ୍ଣ

ରାଷ୍ଟ୍ରପତିଙ୍କର ତଥା ରାଜ୍ୟପାଳ ଓ ରାଜ ପ୍ରମୁଖଙ୍କର ରକ୍ଷଣ ।

୩୬୧ । (୧) ରାଷ୍ଟ୍ରପତି; ରାଜ୍ୟର ରାଜ୍ୟପାଳ ବା ରାଜପ୍ରମୁଖ ତାଙ୍କ ପଦର କ୍ଷମତା ଓ କର୍ତ୍ତବ୍ୟର ପ୍ରୟୋଗ ଓ ସଂପାଦନ ଲାଗି କିମ୍ବା ସେ କ୍ଷମତା ଓ କର୍ତ୍ତବ୍ୟର ପ୍ରୟୋଗ ଓ ସଂପାଦନରେ ତାଙ୍କ ଦ୍ୱାରା କୃତ ବା କରାଯିବା ନିମନ୍ତେ ଅଭିପ୍ରେତ କୌଣସି କାର୍ଯ୍ୟ ଲାଗି କୌଣସି ନ୍ୟାୟାଳୟ ନିକଟରେ ଉତ୍ତର ଦାୟୀ ହେବେ ନାହିଁ :

ପରନ୍ତୁ ଅନୁଚ୍ଛେଦ ୬୧ ଅଧୀନରେ ଦୋଷାରୋପର ଅନୁସନ୍ଧାନ ନିମିତ୍ତ ସଂସଦର କୌଣସି ସଦନ ଦ୍ୱାରା ନିଯୁକ୍ତ ବା ନାମୋଦିଷ୍ଟ କୌଣସି ନ୍ୟାୟାଳୟ, ଟ୍ରିବୁନାଲ ବା ନିକାୟ ଦ୍ୱାରା ରାଷ୍ଟ୍ରପତିଙ୍କ ଆଚରଣର ପୁନର୍ବିଲୋକନ କରାଯାଇ ପାରିବ :

ଅଧିକନ୍ତୁ ଏହି ଖଣ୍ଡର କୌଣସି ବିଷୟ ଭାରତ ସରକାର ବା କୌଣସି ରାଜ୍ୟର ସରକାରଙ୍କ ବିରୁଦ୍ଧରେ କୌଣସି ବ୍ୟକ୍ତିର ସମୁଚିତ କାର୍ଯ୍ୟବାହୀ ଚଳାଇବାର ଅଧିକାରକୁ ସଙ୍କୁଚିତ କରୁଅଛି ବୋଲି ଅର୍ଥ କରାଯିବ ନାହିଁ ।

(୨) ରାଷ୍ଟ୍ରପତି ବା ରାଜ୍ୟର ରାଜ୍ୟପାଳଙ୍କ ବିରୁଦ୍ଧରେ ତାଙ୍କର ପଦଧାରଣ କାଳ ମଧ୍ୟରେ କୌଣସି ପ୍ରକାର ଦାଣ୍ଡିକ କାର୍ଯ୍ୟବାହୀ କୌଣସି ନ୍ୟାୟାଳୟରେ ସଂସ୍ଥିତ ହେବ ନାହିଁ ବା ଚାଲୁ ରହିବ ନାହିଁ ।

(୩) ରାଷ୍ଟ୍ରପତି ବା ରାଜ୍ୟର ରାଜ୍ୟପାଳଙ୍କୁ ତାଙ୍କର ପଦଧାରଣ କାଳ ମଧ୍ୟରେ ବନ୍ଦୀ ବା କାରାବାସ କରିବାଲାଗି କୌଣସି ନ୍ୟାୟାଳୟରୁ କୌଣସି ଆଦେଶିକା ବାହାର କରାଯିବ ନାହିଁ ।

(୪) ରାଷ୍ଟ୍ରପତି ବା ରାଜ୍ୟର ରାଜ୍ୟପାଳଙ୍କ ବିରୁଦ୍ଧରେ ତାଙ୍କର ପଦ ଧାରଣ କାଳ ମଧ୍ୟରେ ସେ ରାଷ୍ଟ୍ରପତି ବା ରାଜ୍ୟର ରାଜ୍ୟପାଳ ପଦ ଗ୍ରହଣ କରିବା ପୂର୍ବେ ବା ପଶ୍ଚାତ ତାଙ୍କର ବ୍ୟକ୍ତିଗତ ସାମର୍ଥ୍ୟରେ ତାଙ୍କ ଦ୍ୱାରା କୃତ ବା କରାଯିବା ନିମନ୍ତେ ଅଭିପ୍ରେତ କୌଣସି କର୍ମ ସମ୍ବନ୍ଧରେ ଅନୁତୋଷ ଦାବୀ କରାଯାଇ କୌଣସି ସିଭିଲ କାର୍ଯ୍ୟବାହୀ କୌଣସି ନ୍ୟାୟାଳୟରେ, ସେହି କାର୍ଯ୍ୟବାହୀର ସ୍ୱରୂପ ସେଥି ନିମିତ୍ତ ବାଦର କାରଣ ଯେଉଁ ପକ୍ଷଙ୍କ ଦ୍ୱାରା ସେ କାର୍ଯ୍ୟବାହୀ ସଂସ୍ଥିତ ହେବ ତାଙ୍କର ନାମ, ବିବରଣୀ ଓ ବାସସ୍ଥାନ ଏବଂ ସେ ଦାବୀ କରୁଥିବା ଅନୁତୋଷର ବର୍ଣ୍ଣନା କରାଯାଇ ଲିଖିତ ସୂଚନା, ଯଥାସ୍ଥିତି, ରାଷ୍ଟ୍ରପତି ବା ରାଜ୍ୟପାଳଙ୍କୁ ପ୍ରଦତ୍ତ ହେବାର ବା ତାଙ୍କ କାର୍ଯ୍ୟାଳୟରେ ଦିଆଯିବା ପରେ ଦୁଇ ମାସର ଅବସାନ ନହେଲା ପର୍ଯ୍ୟନ୍ତ ଦାଏର ହୋଇ ପାରିବ ନାହିଁ ।

ସଂସଦ ଓ ରାଜ୍ୟ ବିଧାନ ମଣ୍ଡଳ ଗୁଡ଼ିକର କାର୍ଯ୍ୟବାହୀର ପ୍ରକାଶନ ସଂପର୍କିତ ସଂରକ୍ଷଣ ।

୩୬୧କ । କୌଣସି ବ୍ୟକ୍ତି କୌଣସି ସମାଗ୍ଭର ପତ୍ରରେ ସଂସଦର ଯେ କୌଣସି ସଦନର ବା କୌଣସି ରାଜ୍ୟର ବିଧାନ ସଭା ବା, ଯଥାସ୍ଥିତି, ବିଧାନସଭାର ଯେ କୌଣସି ସଦନର ସାରତଃ ସତ୍ୟ ରିପୋର୍ଟର ପ୍ରକାଶନ ସଂପର୍କରେ, ସେହି ପ୍ରକାଶନ ବିଦ୍ୱେଷପୂର୍ଣ୍ଣ ଭାବେ କରାଯାଇଅଛି ବୋଲି ପ୍ରମାଣିତ କରାନଗଲେ କୌଣସି ବ୍ୟକ୍ତି କୌଣସି ସିଭିଲ ବା ଫୌଜଦାରୀ କାର୍ଯ୍ୟବାହୀ ପ୍ରତି ଦାୟୀ ହେବେନାହିଁ ;

ପରନ୍ତୁ ଏହି ଖଣ୍ଡରେ ଥିବା କୌଣସି ବିଷୟ ସଂସଦର ଯେ କୌଣସି ସଦନର ବା କୌଣସି ରାଜ୍ୟର ବିଧାନ ସଭା ବା, ଯଥାସ୍ଥିତି, ବିଧାନସଭାର ଯେ କୌଣସି ସଦନର କୌଣସି ଗୋପନୀୟ ଅଧିବେଶନର କାର୍ଯ୍ୟବାହୀର ଯେକୌଣସି ରିପୋର୍ଟର ପ୍ରକାଶନ ପ୍ରତି ଲାଗୁ ହେବନାହିଁ:

(୨) ସମାଗ୍ଭର ପତ୍ରରେ ପ୍ରକାଶିତ ରିପୋର୍ଟ ବା ବିଷୟ ସଂପର୍କରେ ଖଣ୍ଡ (୧) ଯେପରି ଲାଗୁହୁଏ, କୌଣସି ପ୍ରସାରଣ କେନ୍ଦ୍ର ଦ୍ୱାରା ବ୍ୟବସ୍ଥା କରାଯାଇଥିବା କାର୍ଯ୍ୟକ୍ରମ ବା ସେବାର ଭାଗ ସ୍ୱରୂପ ବେତାର ମାଧ୍ୟମରେ ପ୍ରସାରିତ ରିପୋର୍ଟ ବା ବିଷୟ ସଂପର୍କରେ ସେହିପରି ଲାଗୁ ହେବ ।

ସ୍ପଷ୍ଟୀ କରଣ—ଏହି ଅନୁଚ୍ଛେଦରେ "ସମାଗ୍ଭରପତ୍ର" ପ୍ରକାଶନ ପାଇଁ ବିଷୟବସ୍ତୁ ଥାଇ କୌଣସି ସମାଗ୍ଭର ଏଜେନ୍ସି ରିପୋର୍ଟକୁ ଅନ୍ତର୍ଗତ କରେ ।

୩୬୨ । ନିରସିତ

କେତେକ ସଂଧି, କରାର ପ୍ରଭୃତିରୁ ଉଦ୍‌ଭୂତ ବିବାଦରେ ନ୍ୟାୟାଳୟର ହସ୍ତକ୍ଷେପର ବର୍ଜନ ।

୩୬୩ । (୧) ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ, କିନ୍ତୁ ଅନୁଚ୍ଛେଦ ୧୪୩ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, ଏହି ସଂବିଧାନର ପ୍ରାରମ୍ଭ ପୂର୍ବରୁ କୌଣସି ଦେଶୀୟ ଶାସକଙ୍କ ଦ୍ୱାରା ଗୃହୀତ ହୋଇଥିବା ବା ନିଷ୍ପାଦିତ କରାଯାଇଥିବା ଏବଂ ଭାରତ ଡୋମିନିୟନର ସରକାର ବା ତାଙ୍କର ପୂର୍ବବର୍ତ୍ତୀ କୌଣସି ସରକାର ଏକ ପକ୍ଷ ଥିବା ଏବଂ ଏହି ପ୍ରାରମ୍ଭର ପରେ ପ୍ରବର୍ତ୍ତିତ ରହିଥିବା ବା ପ୍ରବର୍ତ୍ତନ ଗ୍ଲୁ କରାଯାଉଥିବା କୌଣସି ସନ୍ଧି, କରାର, ଚୁକ୍ତିସର୍ତ୍ତ, ବଚନବନ୍ଧ, ସନନ୍ଦ ବା ଏପ୍ରକାର ଅନ୍ୟ ଦଲିଲ ସହିତ ସମ୍ବନ୍ଧ ଏହି ସଂବିଧାନର ଉପବନ୍ଧମାନଙ୍କ ମଧ୍ୟରୁ କୌଣସିଟିରୁ ପ୍ରୋଦ୍‌ଭୂତ କୌଣସି ଅଧିକାର ବା ଉଦ୍‌ଭୂତ କୌଣସି ଦାୟିତ୍ୱ ବା ଆଭାର ବିଷୟକ କୌଣସି ବିବାଦରେ ଉଚ୍ଚତମ ନ୍ୟାୟାଳୟର ବା ଅନ୍ୟ କୌଣସି ନ୍ୟାୟାଳୟର ଅଧିକାରିତା ରହିବ ନାହିଁ ।

(୨) ଏହି ଅନୁଚ୍ଛେଦରେ—

(କ) "ଦେଶୀୟ ରାଜ୍ୟ" ର ଅର୍ଥ ଏହି ସଂବିଧାନର ପ୍ରାରମ୍ଭ ପୂର୍ବରୁ ସମ୍ରାଟ ବା ଭାରତ ଡ଼ୋମିନିୟନ ସରକାରଙ୍କ ଦ୍ୱାରା ଏପରି ରାଜ୍ୟ ବୋଲି ଅଭିଜ୍ଞାତ ହୋଇଥିବା କୌଣସି ରାଜ୍ୟକ୍ଷେତ୍ର ; ଏବଂ

(ଖ) "ଶାସକ" ମଧ୍ୟରେ ଏପରି ପ୍ରାରମ୍ଭ ପୂର୍ବରୁ ହିଜ ମେଜେଷ୍ଟି ବା ଭାରତ ଡ଼ୋମିନିୟନ ସରକାରଙ୍କ ଦ୍ୱାରା କୌଣସି ଦେଶୀୟ ରାଜ୍ୟର ଶାସକ ବୋଲି ଅଭିଜ୍ଞାତ ପ୍ରିନ୍‌ସ ଚିଫ ବା ଅନ୍ୟ କୌଣସି ବ୍ୟକ୍ତି ଅନ୍ତର୍ଗତ ।

ଦେଶୀୟ ରାଜ୍ୟମାନଙ୍କର ଶାସକମାନଙ୍କୁ ଅନୁଦର ସ୍ୱୀକୃତି ବନ୍ଦ ହେବା ଓ ହାତପାଣ୍ଠି ଲୋପ ହେବା ।

୩୬୩ କ । ଏହି ସଂବିଧାନରେ ବା ତତ୍‌ସମୟ ପ୍ରବୃତ୍ତ କୌଣସି ବିଧିରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ—

(କ) ଯେଉଁ ରାଜପ୍ରମୁଖ ବା ଅନ୍ୟ ବ୍ୟକ୍ତି ଏହି ସଂବିଧାନ (୨୬ଶ ସଂଶୋଧନ) ଅଧିନିୟମ, ୧୯୭୧ର ପ୍ରାରମ୍ଭ ପୂର୍ବରୁ ଦେଶୀୟ ରାଜ୍ୟର ଶାସକ ରୂପେ ରାଷ୍ଟ୍ରପତିଙ୍କ ଦ୍ୱାରା ସ୍ୱୀକୃତ ହୋଇଥିଲେ କିମ୍ବା ଯେଉଁ ବ୍ୟକ୍ତି ଏପରି ପ୍ରାରମ୍ଭର ପୂର୍ବରୁ କୌଣସି ସମୟରେ ଏପରି ଶାସକଙ୍କର ଉତ୍ତରାଧିକାରୀ ରୂପେ ରାଷ୍ଟ୍ରପତିଙ୍କ ଦ୍ୱାରା ସ୍ୱୀକୃତ ହୋଇଥିଲେ ସେ ଏପରି ପ୍ରାରମ୍ଭ ସମୟରେ ଓ ତତ୍‌ପରେ ସେପରି ଶାସକ ବା ସେପରି ଶାସକଙ୍କ ଉତ୍ତରାଧିକାରୀ ରୂପେ ସ୍ୱୀକୃତ ହେବାରୁ ବଞ୍ଚିତ ହେବେ ;

(ଖ) ସଂବିଧାନ (୨୬ଶ ସଂଶୋଧନ) ଅଧିନିୟମ, ୧୯୭୧ର ପ୍ରାରମ୍ଭର ସମୟରେ ଓ ତତ୍‌ପରେ ହାତପାଣ୍ଠିର ଉଚ୍ଛେଦ ହେଲା ଏବଂ ହାତପାଣ୍ଠି ସମ୍ପର୍କୀୟ ସମସ୍ତ ଅଧିକାର, ଦାୟ ଓ ଦାୟିତ୍ୱ ଲୋପ ହେଲା ଏବଂ ତଦନୁଯାୟୀ ଖଣ୍ଡ (କ) ରେ ଉଲ୍ଲିଖିତ ଶାସକ କିମ୍ବା, ଯଥାସ୍ଥିତି, ଏପରି ଶାସକର ଉତ୍ତରାଧିକାରୀ କିମ୍ବା ଅନ୍ୟ କୌଣସି ବ୍ୟକ୍ତିଙ୍କୁ କୌଣସି ଧନରାଶି ହାତପାଣ୍ଠି ଆକାରରେ ଦିଆଯିବ ନାହିଁ ।

ବୃହତ ପୋତାଶ୍ରୟ ଓ ବିମାନ କ୍ଷେତ୍ର ଲାଗି ବିଶେଷ ଉପବନ୍ଧ ।

୩୬୪ । (୧) ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ, ରାଷ୍ଟ୍ରପତି ଲୋକ ଅଧିସୂଚନାଦ୍ୱାରା ନିଦେଶ ଦେଇ ପାରିବେ ଯେ ଅଧିସୂଚନାରେ ଯେଉଁ ତାରିଖ ବିନିର୍ଦ୍ଦିଷ୍ଟ ହେବ ସେହି ଦିନଠାରୁ—

(କ) ସଂସଦ ବା କୌଣସି ରାଜ୍ୟର ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ କୌଣସି ବିଧି କୌଣସି ବୃହତ ପୋତାଶ୍ରୟ ବା ବିମାନ କ୍ଷେତ୍ର ପ୍ରତି ପ୍ରଯୁଜ୍ୟ ହେବ ନାହିଁ, କିମ୍ବା ଅଧିସୂଚନାରେ ଯେପରି ବିନିର୍ଦ୍ଦିଷ୍ଟ ହେବ ସେପରି ବ୍ୟତିରେକୀ ବା ରୂପ ଭେଦର ବଶବର୍ତ୍ତୀ ରହି ସେ ସବୁ ପ୍ରତି ପ୍ରଯୁଜ୍ୟ ହେବ ; ଅଥବା

(ଖ) କୌଣସି ବିଦ୍ୟମାନ ବିଧି ଉକ୍ତ ତାରିଖ ପୂର୍ବରୁ କରାଯାଇଥିବା ବା କରାଯିବାରୁ ବାଦ ପଡ଼ିଥିବା ବିଷୟ ଭିନ୍ନ ଅନ୍ୟ ବିଷୟରେ କୌଣସି ବୃହତ ପୋତାଶ୍ରୟ ବା ବିମାନ କ୍ଷେତ୍ର ପ୍ରତି ପ୍ରଯୁଜ୍ୟ ହେବାବେଳେ ଅଧିସୂଚନାରେ ଯେପରି ବିନିର୍ଦ୍ଦିଷ୍ଟ ହେବ ସେପରି ବ୍ୟତିରେକୀ ବା ରୂପ ଭେଦର ବଶବର୍ତ୍ତୀ ରହି ପ୍ରଭାବୀ ହେବ ।

(୨) ଏହି ଅନୁଚ୍ଛେଦରେ—

(କ) "ବୃହତ ପୋତାଶ୍ରୟ" ର ଅର୍ଥ ସଂସଦ ପ୍ରଣୀତ କୌଣସି ବିଧି ବା କୌଣସି ବିଦ୍ୟମାନ ବିଧି ଦ୍ୱାରା ବା ଅଧୀନରେ ବୃହତ ପୋତାଶ୍ରୟ ବୋଲି ଘୋଷିତ ହୋଇଥିବା ପୋତାଶ୍ରୟ ଏବଂ ତହିଁରେ ତତ୍ ସମୟ ଏପରି ପୋତାଶ୍ରୟର ସୀମା ମଧ୍ୟରେ ଅନ୍ତର୍ଭୁକ୍ତ ସମସ୍ତ କ୍ଷେତ୍ର ଅନ୍ତର୍ଗତ ହେବ ;

(ଖ) "ବିମାନ କ୍ଷେତ୍ର" ର ଅର୍ଥ ବାୟୁ ପଥ, ବିମାନ ଏବଂ ବିମାନ ପରିବହନ ସହିତ ସମ୍ବନ୍ଧ ଅଧିନିୟମମାନଙ୍କର ପ୍ରୟୋଜନାର୍ଥ ସଂଜ୍ଞାକୃତ ବିମାନ କ୍ଷେତ୍ର ।

ସଙ୍ଘ ଦ୍ୱାରା ପ୍ରଦତ୍ତ ନିଦେଶମାନ ପାଳନ କରିବାରେ ବା ସେ ସବୁ ପ୍ରଭାବୀ କରିବାରେ ଅକୃତକାର୍ଯ୍ୟ ହେବାର ପ୍ରଭାବ ।

୩୬୫ । ଯେଉଁ ଠାରେ ଏହି ସଂବିଧାନର ଉପବନ୍ଧମାନଙ୍କ ମଧ୍ୟରୁ କୌଣସିଟିର ଅଧୀନରେ ସଂଘର କାର୍ଯ୍ୟପାଳିକା କ୍ଷମତାର ପ୍ରୟୋଗରେ ପ୍ରଦତ୍ତ କୌଣସି ନିଦେଶ ପାଳନ କରିବାରେ ବା ସେ ସବୁ ପ୍ରଭାବୀ କରିବାରେ କୌଣସି ରାଜ୍ୟ ଅକୃତକାର୍ଯ୍ୟ ହୋଇଥାଏ ସେଠାରେ ରାଷ୍ଟ୍ରପତିଙ୍କ ପକ୍ଷରେ ଏହା ଧରି ନେବା ବିଧି ସଂଗତ ହେବ ଯେ ଏପରି ଅବସ୍ଥା ଉପୁଜିଛି ଯହିଁରେ କି ରାଜ୍ୟର ଶାସନ ଏହି ସଂବିଧାନର ଉପବନ୍ଧମାନଙ୍କ ଅନୁଯାୟୀ ନିର୍ବାହିତ ହୋଇ ପାରିବ ନାହିଁ ।

ସଂଜ୍ଞାବଳୀ ।

୩୬୬ । ପ୍ରସଙ୍ଗ ଅନ୍ୟଥା ଆବଶ୍ୟକ କରୁ ନ ଥିଲେ ଏହି ସଂବିଧାନର ନିମ୍ନଲିଖିତ ପଦାବଳୀର ଅର୍ଥ ଏତଦ୍ୱାରା କ୍ରମାନ୍ୱୟରେ ଯେପରି ଦିଆ ଯାଇଛି ସେହିପରି ହେବ, ଅର୍ଥାତ :—

(୧) "କୃଷିଆୟ"ର ଅର୍ଥ ଭାରତୀୟ ଆୟ କର ସଂମ୍ବନ୍ଧୀୟ ଅଧିନିୟମମାନଙ୍କର ପ୍ରୟୋଜନାର୍ଥ ସଂଜ୍ଞା କରାଯାଇଥିବା ମତେ କୃଷି ଆୟ;

(୨) "ଆଙ୍ଗ୍ଲୋ-ଭାରତୀୟ" ର ଅର୍ଥ ଏପରି ବ୍ୟକ୍ତି ଯାହାଙ୍କ ପିତା ତଥା ପିତୃ ପରମ୍ପରା ମଧ୍ୟରୁ କୌଣସି ଅନ୍ୟ ପୁରୁଷ ଜନକ ୟୁରୋପୀୟ ଉଦ୍ଭବ ଅଟନ୍ତି ବା ଥିଲେ କିନ୍ତୁ ଯେ ଭାରତ ରାଜ୍ୟକ୍ଷେତ୍ର ମଧ୍ୟରେ ଅଧିବାସୀ ଅଟନ୍ତି ଏବଂ ଯେ କି ଭାରତ ରାଜ୍ୟ କ୍ଷେତ୍ର ମଧ୍ୟରେ ସତତ ବାସ କରୁଥିବା ଓ କେବଳ ଅସ୍ଥାୟୀ ପ୍ରୟୋଜନ ଲାଗି ରହୁ ନ ଥିବା ଜନକ ଜନନୀଙ୍କ ଠାରୁ ଜନ୍ମ ଗ୍ରହଣ କରି ଅଛନ୍ତି ବା କରିଥିଲେ;

(୩) "ଅନୁଚ୍ଛେଦ" ର ଅର୍ଥ ଏହି ସଂବିଧାନର ଅନୁଚ୍ଛେଦ;

(୪) "ଉଧାର ଗ୍ରହଣ" ମଧ୍ୟରେ ବାର୍ଷିକ ଅନୁଦାନ ଦ୍ୱାରା ଧନ ଗ୍ରହଣ ଅନ୍ତର୍ଗତ ଏବଂ "ଉଧାର" ତଦନୁସାରେ ଅର୍ଥ କରାଯିବ ;

(୪କ) * * * *

(୫) "ଖଣ୍ଡ" ର ଅର୍ଥ ଯେଉଁ ଅନୁଚ୍ଛେଦରେ ସେ ପଦ ବ୍ୟବହୃତ ହୋଇ ଅଛି ସେହି ଅନୁଚ୍ଛେଦର ଖଣ୍ଡ ;

(୬) "ନିଗମକର" ର ଅର୍ଥ ଆୟ ଉପରେ କୌଣସି କର, ଯେଉଁ ପର୍ଯ୍ୟନ୍ତ କି ସେହି କର କମ୍ପାନୀମାନଙ୍କ ଦ୍ୱାରା ଦେୟ ହୋଇଥାଏ ତଥା ତାହା ଏପରି କର ଅଟେ ଯାହା ସମ୍ବନ୍ଧରେ କି ନିମ୍ନଲିଖିତ ସର୍ତ୍ତମାନ ପୂରଣ ହେଉଥାଏ—

(କ) ତାହା କୃଷି ଆୟ ବିଷୟରେ ପ୍ରଭାର୍ଯ୍ୟ ହେଉ ନ ଥିବ;

(ଖ) କଂପାନୀ ମାନଙ୍କ ଦ୍ୱାରା ପ୍ରଦତ୍ତ କର ବାବଦ କଂପାନୀ ମାନଙ୍କ ଦ୍ୱାରା ବ୍ୟକ୍ତି-ବିଶେଷଙ୍କ ଦେୟ ଲଭାଂଶରୁ କୌଣସି କାଟ କରାଯିବା ସେହି କର ପ୍ରତି ପ୍ରଯୁଜ୍ୟ କୌଣସି ଅଧି-ନିୟମିତି ଦ୍ୱାରା ପ୍ରାଧିକୃତ ହୋଇ ନ ଥିବ;

(ଗ) ଭାରତୀୟ ଆୟ କରର ପ୍ରୟୋଜନ ଲଗି ଏପରି ଲଭାଂଶ ପାଇବା ବ୍ୟକ୍ତିମାନଙ୍କର ମୋଟ ଆୟର ସଙ୍ଗଣନାରେ ଅଥବା ଏପରି ବ୍ୟକ୍ତିମାନଙ୍କ ଦ୍ୱାରା ଦେୟ ବା ସେମାନଙ୍କୁ ଫେରସ୍ତ ଦିଆ ଯିବା ଭାରତୀୟ ଆୟ କରର ସଂଗଣନାରେ ଏହି ପ୍ରକାର ପ୍ରଦତ୍ତ କରକୁ ସମ୍ମିଳିତ କରିବା ଲଗି ଉପବନ୍ଧ ବିଦ୍ୟମାନ ନ ଥିବ ;

(୭) "ତତ୍‌ସ୍ଥାନୀ ପ୍ରଦେଶ", "ତତ୍‌ସ୍ଥାନୀ ଦେଶୀୟ ରାଜ୍ୟ" ବା "ତତ୍‌ସ୍ଥାନୀ ରାଜ୍ୟ" ବିଷୟରେ ସନ୍ଦେହ ହେବା ସ୍ଥଳେ, ପ୍ରଶ୍ନଗତ ବିଶେଷ ପ୍ରୟୋଜନ ଲଗି ରାଷ୍ଟ୍ରପତି ଯାହାକୁ, ଯଥାସ୍ଥିତି, ତତ୍‌ସ୍ଥାନୀ ପ୍ରଦେଶ, ତତ୍‌ସ୍ଥାନୀ ଦେଶୀୟ ରାଜ୍ୟ ବା ତତ୍‌ସ୍ଥାନୀ ରାଜ୍ୟ ବୋଲି ନିର୍ଦ୍ଧାରିତ କରିବେ, ସେହି ପ୍ରଦେଶ, ଦେଶୀୟ ରାଜ୍ୟ ବା ରାଜ୍ୟକୁ ବୁଝାଇବ;

(୮) "ଋଣ" ମଧ୍ୟରେ ବାର୍ଷିକୀ ରୂପରେ ମୂଳଧନ ରାଶିର ପରିଶୋଧ ପାଇଁ କୌଣସି ଆଭାର ବିଷୟରେ କୌଣସି ଦାୟିତ୍ୱ ତଥା କୌଣସି ପ୍ରତ୍ୟାଭୂତି ଅନୁଯାୟୀ କୌଣସି ଦାୟିତ୍ୱ ଅନ୍ତର୍ଗତ ଏବଂ "ଋଣଭାର" ତଦନୁଯାୟୀ ଅର୍ଥ କରାଯିବ;

(୯) "ସଂପଦା ଶୁଳ୍କ" ର ଅର୍ଥ ଯେଉଁ ଶୁଳ୍କ ମୃତ୍ୟୁ ପରେ ହସ୍ତାନ୍ତରିତ ହେଉଥିବ ଅଥବା ସଂସଦ ବା ରାଜ୍ୟର ବିଧାନମଣ୍ଡଳ ଦ୍ୱାରା ସେହି ଶୁଳ୍କ ସଂପର୍କରେ ପ୍ରଣୀତ ବିଧିମାନଙ୍କର ଉପବନ୍ଧ ଅନୁସାରେ ସେପରି ହସ୍ତାନ୍ତରିତ ହେଲ ବୋଲି ବିବେଚିତ ହେଉଥିବା ସମସ୍ତ ସଂପତ୍ତିର ଉକ୍ତ ବିଧିମାନଙ୍କ ଦ୍ୱାରା ବା ଅଧୀନରେ ବିହିତ ନିୟମ ଅନୁସାରେ ଅଭିନିଶ୍ଚିତ ମୂଳ ମୂଲ୍ୟ ଉପରେ ବା ତାହାର ନିର୍ଦ୍ଦେଶରେ ଧାର୍ଯ୍ୟ ହେବ, ସେହି ଶୁଳ୍କ;

(୧୦) "ବିଦ୍ୟମାନ ବିଧି" ର ଅର୍ଥ ଏହି ସଂବିଧାନ ପ୍ରାରମ୍ଭର ପୂର୍ବରୁ କୌଣସି ବିଧି, ଅର୍ଡିନାନ୍‌ସ, ଆଦେଶ, ଉପବିଧି, ନିୟମ ବା ବିନିୟମ ପ୍ରଣୟନ କରିବାର କ୍ଷମତା ଥିବା କୌଣସି ବିଧାନମଣ୍ଡଳ, ପ୍ରାଧିକାରୀ ବା ବ୍ୟକ୍ତିଙ୍କ ଦ୍ୱାରା ପାରିତ ବା ପ୍ରଣୀତ ହୋଇଥିବା ଏପରି ବିଧି, ଅର୍ଡିନାନ୍‌ସ, ଆଦେଶ, ଉପବିଧି, ନିୟମ ବା ବିନିୟମ ;

(୧୧) "ଫେଡ଼େରାଲ ନ୍ୟାୟାଳୟ"ର ଅର୍ଥ ଭାରତ ଶାସନ ଅଧିନିୟମ, ୧୯୩୫ ଅଧୀନରେ ସଂଗଠିତ ଫେଡ଼େରାଲ ନ୍ୟାୟାଳୟ ;

(୧୨) "ମାଲ" ମଧ୍ୟରେ ସାମଗ୍ରୀ, ପଣ୍ୟ ଓ ପଦାର୍ଥ ଅନ୍ତର୍ଗତ;

(୧୩) "ପ୍ରତ୍ୟାଭୂତି" ମଧ୍ୟରେ କୌଣସି ଉଦ୍ୟୋଗର ଲଭ ଏକ ବିନିର୍ଦ୍ଦିଷ୍ଟ ଧନରାଶିରୁ କମ୍ ହେବା ଅବସ୍ଥାରେ ପ୍ରଦାନ କରାଯିବା ଲଗି ଏହି ସଂବିଧାନର ପ୍ରାରମ୍ଭର ପୂର୍ବରୁ ସ୍ୱୀକୃତ କୌଣସି ଆଭାର ଅନ୍ତର୍ଗତ;

(୧୪) "ଉଚ୍ଚ ନ୍ୟାୟାଳୟ"ର ଅର୍ଥ ଏହି ସଂବିଧାନର ପ୍ରୟୋଜନାର୍ଥ କୌଣସି ରାଜ୍ୟ ଲଗି ଉଚ୍ଚ ନ୍ୟାୟାଳୟ ବୋଲି ବିବେଚିତ କୌଣସି ନ୍ୟାୟାଳୟ ଏବଂ ତହିଁରେ—

(କ) ଏହି ସଂବିଧାନ ଅଧୀନରେ ଉଚ୍ଚ ନ୍ୟାୟାଳୟ ରୂପେ ଗଠିତ ବା ପୁନର୍ଗଠିତ ଭାରତ ରାଜ୍ୟ-କ୍ଷେତ୍ରସ୍ଥ କୌଣସି ନ୍ୟାୟାଳୟ, ତଥା

(ଖ) ଏହି ସଂବିଧାନର ସମସ୍ତ ବା କୌଣସି ପ୍ରୟୋଜନାର୍ଥ ସଂସଦ କର୍ତ୍ତୃକ ବିଧି ଦ୍ୱାରା ଉଚ୍ଚ ନ୍ୟାୟାଳୟ ବୋଲି ଘୋଷିତ ହେବା ଅନ୍ୟ କୌଣସି ନ୍ୟାୟାଳୟ ଅନ୍ତର୍ଗତ;

(୧୫) "ଦେଶୀୟ ରାଜ୍ୟ" ର ଅର୍ଥ ଭାରତ ଡୋମିନିୟନ ସରକାର ସେପରି ରାଜ୍ୟ ବୋଲି ଯେଉଁ ରାଜ୍ୟ କ୍ଷେତ୍ରକୁ ଅଭିଜ୍ଞାତ କରିଥିଲେ ସେହି ରାଜ୍ୟକ୍ଷେତ୍ର;

(୧୬) "ଭାଗ"ର ଅର୍ଥ ଏହି ସଂବିଧାନର ଭାଗ;

(୧୭) "ପେନ୍‌ସନ"ର ଅର୍ଥ କୌଣସି ବ୍ୟକ୍ତିଙ୍କୁ ବା ତାଙ୍କ ସମ୍ବନ୍ଧରେ ଦେୟ ଅଂଶଦାୟୀ ହୋଇ ଥିବା ବା ଅଂଶଦାୟୀ ନ ହୋଇ ଥିବା ଯେ କୌଣସି ପ୍ରକାର ପେନସନ ଏବଂ ତହିଁରେ ଏ ପ୍ରକାର ଦେୟ, ଗ୍ରାଚୁଇଟି, ବେତନ ଏ ପ୍ରକାର ଦେୟ ଉପାଦାନ ଓ କୌଣସି ଭବିଷ୍ୟ ନିଧିର ଫେରସ୍ତ ବାବଦ ସୁଧ ସହିତ ବା ବିନା ସୁଧରେ କିମ୍ବା ଅନ୍ୟ କୌଣସି ଅତିରିକ୍ତ ପରିମାଣ ସହିତ ବା ରହିତ ଏ ପ୍ରକାର ଦେୟ କୌଣସି ଧନ ରାଶି ବା ଧନରାଶିମାନ ଅନ୍ତର୍ଗତ;

(୧୮) "ଜରୁରୀ ଅବସ୍ଥାର ଉଦ୍‌ଘୋଷଣା"ର ଅର୍ଥ ଅନୁଚ୍ଛେଦ ୩୫୨ ର ଖଣ୍ଡ (୧) ଅଧୀନରେ ବାହାର କରାଯାଇଥିବା ଉଦ୍‌ଘୋଷଣା;

(୧୯) "ଲୋକ ଅଧିସୂଚନା" ର ଅର୍ଥ ଭାରତର ରାଜପତ୍ରରେ, ବା ଯଥାସ୍ଥିତି, ରାଜ୍ୟର ରାଜକୀୟ ରାଜପତ୍ରରେ ପ୍ରକାଶିତ ଅଧିସୂଚନା ;

(୨୦) "ରେଳପଥରେ" –

(କ) କୌଣସି ନଗର କ୍ଷେତ୍ର ମଧ୍ୟରେ ପୂର୍ଣ୍ଣ ଭାବରେ ଅବସ୍ଥିତ ଟ୍ରାମପଥ, ବା

(ଖ) କୌଣସି ରାଜ୍ୟ ମଧ୍ୟରେ ପୂର୍ଣ୍ଣ ଭାବରେ ଅବସ୍ଥିତ ଏବଂ ସଂସଦ କର୍ତ୍ତୃକ ବିଧି ଦ୍ୱାରା ରେଳପଥ ନୁହେଁ ବୋଲି ଘୋଷିତ ଅନ୍ୟ କୌଣସି ସଂଚାରମାର୍ଗ ଅନ୍ତର୍ଗତ ନୁହେଁ;

(୨୧) * * * *

(୨୨) "ଶାସକ" କହିଲେ ଯେଉଁ ରାଜ ପ୍ରମୁଖ ବା ଅନ୍ୟ ବ୍ୟକ୍ତି (୨୬ଶ ସଂଶୋଧନ) ଅଧିନିୟମ, ୧୯୭୧ ପୂର୍ବରୁ ରାଷ୍ଟ୍ରପତିଙ୍କ ଦ୍ୱାରା କୌଣସି ଦେଶୀୟ ରାଜ୍ୟର ଶାସକ ରୂପେ ସ୍ୱୀକୃତ ହୋଇଥିଲେ କିମ୍ବା ଯେଉଁ ବ୍ୟକ୍ତି ଏପରି ପ୍ରାରମ୍ଭ ପୂର୍ବରୁ ରାଷ୍ଟ୍ରପତିଙ୍କ ଦ୍ୱାରା ଏପରି ଶାସକଙ୍କର ଉତ୍ତରାଧିକାରୀ ରୂପେ ସ୍ୱୀକୃତ ହୋଇଥିଲେ ତାହାଙ୍କୁ ବୁଝାଇବ;

(୨୩) "ଅନୁସୂଚୀ"ର ଅର୍ଥ ଏହି ସଂବିଧାନର ଅନୁସୂଚୀ;

(୨୪) "ଅନୁସୂଚିତ ଜାତି"ର ଅର୍ଥ ଅନୁଚ୍ଛେଦ ୩୪୨ ଅଧୀନରେ ଏହି ସଂବିଧାନର ପ୍ରୟୋଜନାର୍ଥ ଅନୁସୂଚିତ ଜାତି ବୋଲି ବିବେଚିତ କୌଣସି ଜାତି, ମୂଳବଂଶ ବା ଜନଜାତି କିମ୍ବା ସେପରି ଜାତି, ମୂଳବଂଶ ବା ଜନ ଜାତି ମଧ୍ୟରେ ଥିବା କୌଣସି ଭାଗ ବା ଗୋଷ୍ଠୀ;

(୨୫) "ଅନୁସୂଚିତ ଜନଜାତି"ର ଅର୍ଥ ଅନୁଚ୍ଛେଦ ୩୪୨ ଅଧୀନରେ ଏହି ସଂବିଧାନର ପ୍ରୟୋଜନାର୍ଥ ଅନୁସୂଚିତ ଜନଜାତି ବୋଲି ବିବେଚିତ କୌଣସି ଜନଜାତି ବା ଜନଜାତି ସମାଜ କିମ୍ବା ସେପରି ଜନଜାତି ବା ଜନଜାତି ସମାଜ ମଧ୍ୟରେ ଥିବା କୌଣସି ଭାଗ ବା ଗୋଷ୍ଠୀ;

(୨୬) "ପ୍ରତିଭୂତି" ମଧ୍ୟରେ ଷ୍ଟକ୍ ଅନ୍ତର୍ଗତ;

(୨୬କ) * * *

(୨୭) "ଉପଖଣ୍ଡ"ର ଅର୍ଥ ଯେଉଁ ଖଣ୍ଡରେ ସେହି ପଦ ବ୍ୟବହୃତ ହୋଇଅଛି ସେହି ଖଣ୍ଡର ଉପଖଣ୍ଡ;

(୨୮) "କରାଧାନ" ମଧ୍ୟରେ ସାଧାରଣ ହୋଇଥିବା, ସ୍ଥାନୀୟ ହୋଇଥିବା ବା ବିଶେଷ ପ୍ରକାରର ହୋଇଥିବା ଏବଂ "କର" ତଦନୁସାରେ ଅର୍ଥ କରାଯିବ;

(୨୯) "ଆୟ ଉପରେ କର" ମଧ୍ୟରେ ଅତିରିକ୍ତ ଲାଭ ଉପରେ କର ଭଳି କର ଅନ୍ତର୍ଗତ;

(୩୦) "ସଂଘ ରାଜ୍ୟକ୍ଷେତ୍ର" ର ଅର୍ଥ ପ୍ରଥମ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ କୌଣସି ସଂଘ ରାଜ୍ୟକ୍ଷେତ୍ର ତଥା ଭାରତ ରାଜ୍ୟକ୍ଷେତ୍ର ମଧ୍ୟରେ ସମାବିଷ୍ଟ ହୋଇଥିବା, କିନ୍ତୁ ସେହି ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ହୋଇ ନ ଥିବା ଅନ୍ୟ କୌଣସି ରାଜ୍ୟକ୍ଷେତ୍ର ତହିଁରେ ଅନ୍ତର୍ଗତ ।

ନିର୍ବଚନ

୩୬୭ । (୧) ପ୍ରସଂଗ ଅନ୍ୟଥା ଆବଶ୍ୟକ ନ କଲେ, ସାଧାରଣ ଖଣ୍ଡ ଅଧିନିୟମ, ୧୮୯୭ ଭାରତ ଡୋମିନିୟନ ବିଧାନମଣ୍ଡଳର କୌଣସି ଅଧିନିୟମର ନିର୍ବଚନ ଲାଗି ଯେପରି ପ୍ରଯୁଜ୍ୟ ଅନୁଚ୍ଛେଦ ୩୭୨ ଅଧୀନରେ ତହିଁରେ କୌଣସି ଅନୁକୂଳନ ଓ ରୂପଭେଦ କରାଗଲେ ତାହାର ବଶବର୍ତ୍ତୀ ରହି ଏହି ସଂବିଧାନର ନିର୍ବଚନ ଲାଗି ସେପରି ପ୍ରଯୁଜ୍ୟ ହେବ ।

(୨) ଏହି ସଂବିଧାନରେ ସଂସଦର ବା ସଂସଦ ଦ୍ୱାରା ପ୍ରଣୀତ ଅଧିନିୟମ ବା ବିଧି ପ୍ରତି କିମ୍ବା କୌଣସି ରାଜ୍ୟର ବିଧାନମଣ୍ଡଳର ବା ତାହା ଦ୍ୱାରା ପ୍ରଣୀତ ଅଧିନିୟମ ବା ବିଧି ପ୍ରତି କୌଣସି ନିର୍ଦ୍ଦେଶ ମଧ୍ୟରେ ରାଷ୍ଟ୍ରପତିଙ୍କ ଦ୍ୱାରା ପ୍ରଣୀତ କୌଣସି ଅର୍ଡିନାନ୍‌ସ ପ୍ରତି ବା, ଯଥାସ୍ଥିତି, ରାଜ୍ୟପାଳଙ୍କ ଦ୍ୱାରା ପ୍ରଣୀତ କୌଣସି ଅର୍ଡିନାନ୍‌ସ ପ୍ରତି କୌଣସି ନିର୍ଦ୍ଦେଶ ଅନ୍ତର୍ଗତ ବୋଲି ଅର୍ଥ କରାଯିବ ।

(୩) ଏହି ସଂବିଧାନର ପ୍ରୟୋଜନାର୍ଥ "ବିଦେଶୀ ରାଜ୍ୟ"ର ଅର୍ଥ ଭାରତ ଭିନ୍ନ ଅନ୍ୟ କୌଣସି ରାଜ୍ୟ :

ପରନ୍ତୁ ସଂସଦ ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କ ବଶବର୍ତ୍ତୀ ରହି ରାଷ୍ଟ୍ରପତି ଆଦେଶ ଦ୍ୱାରା କୌଣସି ରାଜ୍ୟକୁ ଆଦେଶରେ ଯେପରି ବିନିର୍ଦ୍ଦିଷ୍ଟ କରାଯିବ ସେପରି ପ୍ରୟୋଜନ ଲାଗି ବିଦେଶୀ ରାଜ୍ୟ ନୁହେଁ ବୋଲି ଘୋଷଣା କରି ପାରିବେ ।

# ଭାଗ ୨୦

## ସଂବିଧାନର ସଂଶୋଧନ

ସଂବିଧାନ ସଂଶୋଧନ ନିମିତ୍ତ ସଂସଦର କ୍ଷମତା ଓ ତହିଁର କାର୍ଯ୍ୟବିଧି ।

୩୬୮ । (୧) ଏହି ସଂବିଧାନରେ ଥିବା ଯେ କୌଣସି ବିଷୟ ସତ୍ତ୍ୱେ, ସଂସଦ ତାହାର ସାଂବିଧାନିକ କ୍ଷମତା ପ୍ରୟୋଗ କରି ଏହି ଅନୁଚ୍ଛେଦରେ ବର୍ଣ୍ଣିତ କାର୍ଯ୍ୟବିଧି ଅନୁଯାୟୀ ଏହି ସଂବିଧାନର କୌଣସି ଉପବଂଧକୁ କୌଣସି ବିଷୟ ଯୋଗ କରି ବା ବଦଳ କରି ବା ନିରସିତ କରି ସଂଶୋଧିତ କରି ପାରିବ ।

(୨) ଏହି ସଂବିଧାନର ସଂଶୋଧନର ସୂତ୍ରପାତ ସଂସଦର କୌଣସି ସଦନରେ କେବଳ ସେହି ପ୍ରୟୋଜନାର୍ଥ ଏକ ବିଧେୟକର ପୁରଃସ୍ଥାପନ ଦ୍ୱାରା କରାଯାଇ ପାରିବ ଏବଂ ସେ ବିଧେୟକ ପ୍ରତ୍ୟେକ ସଦନ ଦ୍ୱାରା ସେହି ସଦନର ସମସ୍ତ ସଦସ୍ୟ ସଂଖ୍ୟାର ବହୁମତରେ ଓ ସେହି ସଦନରେ ଉପସ୍ଥିତ ଥିବା ଓ ଭୋଟ ଦେଇଥିବା ସଦସ୍ୟମାନଙ୍କର ଦ୍ୱିତୃତୀୟାଂଶରୁ ଅନ୍ୟୂନ ବହୁମତରେ ପାରିତ ହେଲେ ଏହା ରାଷ୍ଟ୍ରପତିଙ୍କ ସ୍ୱୀକୃତି ନିମିତ୍ତ ତାଙ୍କ ନିକଟରେ ଉପସ୍ଥାପିତ କରାଯିବ ଓ ସେ ତହିଁରେ ସ୍ୱୀକୃତି ଦେବେ ଏବଂ ତତ୍‌ପରେ ସଂବିଧାନ ସେହି ବିଧେୟକର ନିବଂଧନ ଅନୁସାରେ ସଂଶୋଧିତ ହୋଇଯିବ :

ପରନ୍ତୁ ଯଦି ଏପରି ସଂଶୋଧନ ଦ୍ୱାରା–

(କ) ଅନୁଚ୍ଛେଦ ୫୪, ଅନୁଚ୍ଛେଦ ୫୫, ଅନୁଚ୍ଛେଦ ୭୩, ଅନୁଚ୍ଛେଦ ୧୬୨ ବା ଅନୁଚ୍ଛେଦ ୨୪୧ରେ, କିଂବା

(ଖ) ଭାଗ ୫ର ଅଧ୍ୟାୟ ୪, ଭାଗ ୬ର ଅଧ୍ୟାୟ ୫ ବା ଭାଗ ୧୧ର ଅଧ୍ୟାୟ ୧ରେ, କିଂବା

(ଗ) ସପ୍ତମ ଅନୁସୂଚୀର ସୂଚୀମାନଙ୍କ ମଧ୍ୟରୁ କୌଣସିଟିରେ, କିଂବା

(ଘ) ସଂସଦରେ ରାଜ୍ୟମାନଙ୍କର ପ୍ରତିନିଧିତ୍ୱରେ, କିଂବା

(ଙ) ଏହି ଅନୁଚ୍ଛେଦର ଉପବଂଧମାନଙ୍କରେ,

କୌଣସି ପରିବର୍ତ୍ତନ ଇପ୍‌ସିତ ହୋଇଥାଏ ତାହାହେଲେ ଏପରି ସଂଶୋଧନ ଲାଗି ଉପବଂଧ କରୁଥିବା ବିଧେୟକ ସ୍ୱୀକୃତି ନିମନ୍ତେ ରାଷ୍ଟ୍ରପତିଙ୍କ ନିକଟରେ ଉପସ୍ଥାପିତ କରାଯିବା ପୂର୍ବରୁ ରାଜ୍ୟମାନଙ୍କରୁ ଅନ୍ୟୂନ ଅର୍ଦ୍ଧେକଙ୍କର ବିଧାନମଣ୍ଡଳ କର୍ତ୍ତୃକ ସେହି ଉଦ୍ଦେଶ୍ୟରେ ସେହି ବିଧାନମଣ୍ଡଳମାନଙ୍କ ଦ୍ୱାରା ପାରିତ ସଂକଳ୍ପ ଦ୍ୱାରା ଅନୁସମର୍ଥନ ମଧ୍ୟ ଆବଶ୍ୟକ ହେବ ।

(୩) ଏହି ଅନୁଚ୍ଛେଦ ଅଧୀନରେ ହୋଇଥିବା କୌଣସି ସଂଶୋଧନ ପ୍ରତି ଅନୁଚ୍ଛେଦ ୧୩ର କୌଣସି ବିଷୟ ଲାଗୁ ହେବ ନାହିଁ ।

(୪) ସଂବିଧାନ (୪୨ଶ ସଂଶୋଧନ) ଅଧିନିୟମ, ୧୯୭୬ର ଧାରା ୫୫ର ପ୍ରାରମ୍ଭ ପୂର୍ବରୁ ହେଉ ବା ପରେ ହେଉ, ଏହି ଅନୁଚ୍ଛେଦ ଅଧୀନରେ ସଂବିଧାନରେ (ଭାଗ ୩ର ଉପବଂଧମାନଙ୍କ ସମେତ) ଯେଉଁ ସଂଶୋଧନମାନ କରାଯାଇଥିବ ବା କରାଯିବାର ତାତ୍ପର୍ଯ୍ୟ ଥିବ ତାହା ବିରୁଦ୍ଧରେ କୌଣସି ନ୍ୟାୟାଳୟରେ କୌଣସି କାରଣରୁ ଆପତ୍ତି କରାଯିବ ନାହିଁ ।

(୫) ସଂଦେହ ଦୂରୀକରଣ ନିମିତ୍ତ ଏତଦ୍ୱାରା ଘୋଷଣା କରାଯାଉଛି ଯେ ଏହି ଅନୁଚ୍ଛେଦ ଅଧୀନରେ ଏହି ସଂବିଧାନର ଉପବଂଧମାନଙ୍କୁ ପରିବର୍ଦ୍ଧନ, ପରିବର୍ତ୍ତନ ବା ନିରସନ ଆକାରରେ ସଂଶୋଧନ କରିବା ନିମିତ୍ତ ସଂସଦର ସଂବିଧାୟୀ କ୍ଷମତା ଉପରେ କୌଣସି ପ୍ରକାର ପରିସୀମା ରହିବ ନାହିଁ ।

# ଭାଗ ୨୧

## ଅସ୍ଥାୟୀ, ଆନ୍ତର୍କାଳୀନ ତଥା ବିଶେଷ ଉପବନ୍ଧ

ରାଜ୍ୟ ସୂଚୀର କେତେକ ବିଷୟ ସଂବଂଧରେ ସେ ସବୁ ବିଷୟ ସମବର୍ତ୍ତୀ ସୂଚୀର ଅନ୍ତର୍ଗତ ହୋଇଥିବା ଭଳି ବିଧି ପ୍ରଣୟନ କରିବା ଲାଗି ସଂସଦର ଅସ୍ଥାୟୀ କ୍ଷମତା ।

୩୬୯ । ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ, ଏହି ସଂବିଧାନର ପ୍ରାରମ୍ଭଠାରୁ ପାଞ୍ଚବର୍ଷ କାଳାବଧି ମଧ୍ୟରେ ନିମ୍ନଲିଖିତ ବିଷୟମାନଙ୍କ ସଂବଂଧରେ ସେ ସବୁ ସମବର୍ତ୍ତୀ ସୂଚୀରେ ପ୍ରଗଣିତ ହୋଇଥିବା ଭଳି ସଂସଦର ବିଧି ପ୍ରଣୟନ କରିବା ଲାଗି କ୍ଷମତା ରହିବ, ଅର୍ଥାତ—

(କ) ତୂଳା ଓ ପଶମ ବସ୍ତ୍ର, କଞ୍ଚାତୂଳା (ଭିଣା ଯାଇଥିବା ଓ ନ ଯାଇଥିବା ତୂଳା ବା କପା ସମେତ), ତୂଳାମଂଜି, କାଗଜ (ସମାଚାରପତ୍ର ଲାଗି କାଗଜ ସମେତ), ଖାଦ୍ୟ ଦ୍ରବ୍ୟ (ଭକ୍ଷଣୀୟ ତୈଳବୀଜ ଓ ତେଲ ସମେତ), ପଶୁଖାଦ୍ୟ (ତିଳପିଡ଼ିଆ ଓ ଅନ୍ୟ ସାରକୃତ ଦ୍ରବ୍ୟ ସମେତ), କୋଇଲା (କୋକ ଓ ଅନ୍ୟ ପଥର କୋଇଲାରୁ ଉଦ୍‌ଭୂତ ଦ୍ରବ୍ୟ ସମେତ), ଲୁହା, ଇସ୍‌ପାତ ଏବଂ ଅଭ୍ର କୌଣସି ରାଜ୍ୟ ମଧ୍ୟରେ ବ୍ୟାପାର ଓ ବାଣିଜ୍ୟ ଏବଂ ସେମାନଙ୍କର ଉତ୍ପାଦନ, ଯୋଗାଣ ଓ ବଣ୍ଟନ ;

(ଖ) ଖଣ୍ଡ (କ) ରେ ବର୍ଣ୍ଣିତ ବିଷୟମାନଙ୍କ ମଧ୍ୟରୁ କୌଣସିଟି ସହିତ ସଂବଦ୍ଧ ବିଧି ବିରୁଦ୍ଧ ଅପରାଧ, ଉଚ୍ଚତମ ନ୍ୟାୟାଳୟ ଭିନ୍ନ ଅନ୍ୟ ସମସ୍ତ ନ୍ୟାୟାଳୟର ଏହି ବିଷୟମାନଙ୍କ ମଧ୍ୟରୁ କୌଣସି ବିଷୟ ସଂବଂଧରେ ଅଧିକାରିତା ଓ କ୍ଷମତା ଏବଂ କୌଣସି ନ୍ୟାୟାଳୟରେ ନିଆ ଯାଇଥିବା ଫିସ ବ୍ୟତୀତ ଏହି ବିଷୟମାନଙ୍କ ମଧ୍ୟରୁ କୌଣସି ବିଷୟ ସଂବଂଧରେ ଫିସ ;

ମାତ୍ର ଏହି ଅନୁଚ୍ଛେଦର ଉପବଂଧମାନଙ୍କ ବିନା ସଂସଦ ଯେଉଁ ବିଧି ପ୍ରଣୟନ କରିବାକୁ ସକ୍ଷମ ନ ହୁଅନ୍ତା ସଂସଦ ଦ୍ୱାରା ପ୍ରଣୀତ ସେପରି କୌଣସି ବିଧି ଉକ୍ତ କାଳାବଧିର ଅବସାନରେ ସେ ଅବସାନ ପୂର୍ବରୁ କରାଯାଇଥିବା ବା ନ କରା ଯାଇଥିବା ବିଷୟ ବ୍ୟତୀତ ଅନ୍ୟ ବିଷୟରେ ଅକ୍ଷମତାର ମାତ୍ରା ପର୍ଯ୍ୟନ୍ତ ପ୍ରଭାବୀ ହେବାରୁ ରହିତ ହେବ ।

ଜାମ୍ମୁ ଓ କାଶ୍ମୀର ରାଜ୍ୟ ସମ୍ବନ୍ଧରେ ଅସ୍ଥାୟୀ ଉପବନ୍ଧ ।

୩୭୦ । (୧) ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ—

(କ) ଅନୁଚ୍ଛେଦ ୨୩୮ ର ଉପବଂଧମାନ ଜାମ୍ମୁ ଓ କାଶ୍ମୀର ରାଜ୍ୟ ସଂବଂଧରେ ପ୍ରଯୁଜ୍ୟ ହେବ ନାହିଁ ;

(ଖ) ଉକ୍ତ ରାଜ୍ୟ ପାଇଁ ବିଧି ପ୍ରଣୟନ କରିବା ଲାଗି ସଂସଦର କ୍ଷମତା—

(୧) ଭାରତ ଡ଼ୋମିନିୟନରେ ରାଜ୍ୟର କୌଣସି ପ୍ରବେଶକୁ ନିୟନ୍ତ୍ରିତ କରୁଥିବା ପ୍ରବେଶ ଲିଖତରେ ଯେଉଁ ସବୁ ବିଷୟ ସଂବଧରେ ଡ଼ୋମିନିୟନ ବିଧାନମଣ୍ଡଳ ବିଧି ପ୍ରଣୟନ କରି ପାରିବ ବୋଲି ବିନିର୍ଦ୍ଦିଷ୍ଟ ହୋଇଅଛି ସେହି ବିଷୟମାନଙ୍କର ତତ୍‌ସ୍ଥାନୀ ବୋଲି ସଂଘସୂଚୀ ଓ ସମବର୍ତ୍ତୀ ସୂଚୀରେ ଯେଉଁ ସବୁ ବିଷୟ ରାଷ୍ଟ୍ରପତି ସେ ରାଜ୍ୟର ସରକାରଙ୍କ ସହିତ ପରାମର୍ଶ କରି ଘୋଷଣା କରିବେ ସେହି ସବୁ ବିଷୟ ମାନଙ୍କ ପର୍ଯ୍ୟନ୍ତ, ଏବଂ

(୨) ଉକ୍ତ ସୂଚୀମାନଙ୍କରେ ଥିବା ଅନ୍ୟ ଯେଉଁ ବିଷୟମାନ ସେ ରାଜ୍ୟର ସରକାରଙ୍କ ସହମତିରେ ରାଷ୍ଟ୍ରପତି ଆଦେଶ ଦ୍ୱାରା ବିନିର୍ଦ୍ଦିଷ୍ଟ କରିବେ ସେ ସବୁ ବିଷୟମାନଙ୍କ ପର୍ଯ୍ୟନ୍ତ,

ସୀମିତ ହେବ ।

**ସ୍ପଷ୍ଟୀକରଣ** :—ଏହି ଅନୁଚ୍ଛେଦର ପ୍ରୟୋଜନ ଲାଗି ରାଜ୍ୟର ସରକାର ଅର୍ଥ, ୧୯୪୮ ମାର୍ଚ୍ଚ ପଞ୍ଚମ ଦିବସର ମହାରାଜାଙ୍କ ଉଦ୍‌ଘୋଷଣା ଅନୁଯାୟୀ ତତ୍‌ସମୟ ପଦସ୍ଥ ମନ୍ତ୍ରୀପରିଷଦର ମନ୍ତ୍ରଣା ଅନୁସାରେ କାର୍ଯ୍ୟ କରୁଥିବା ଜାମ୍ମୁ ଓ କାଶ୍ମୀରର ମହାରାଜ ରୂପେ ରାଷ୍ଟ୍ରପତିଙ୍କଦ୍ୱାରା ତତ୍‌ସମୟ ଅଭିଜ୍ଞାତ ବ୍ୟକ୍ତି ;

(ଗ) ଅନୁଚ୍ଛେଦ ୧ ର ଏବଂ ଏହି ଅନୁଚ୍ଛେଦର ଉପବଂଧମାନ ଏହି ରାଜ୍ୟ ସଂବଂଧରେ ପ୍ରଯୁଜ୍ୟ ହେବ ;

(ଘ) ଏହି ସଂବିଧାନର ଅନ୍ୟ ଉପବଂଧମାନଙ୍କ ମଧ୍ୟରୁ ଯେଉଁ ଗୁଡ଼ିକୁ ଯେଉଁ ବ୍ୟତିରେକୀ ଓ ରୂପଭେଦ ସହିତ ରାଷ୍ଟ୍ରପତି ଆଦେଶ ଦ୍ୱାରା ବିନିର୍ଦ୍ଦିଷ୍ଟ କରିବେ ସେ ସବୁ ଏହି ରାଜ୍ୟ ସଂବଂଧରେ ପ୍ରଯୁଜ୍ୟ ହେବ :

ପରନ୍ତୁ ଉପଖଣ୍ଡ (ଖ) ର ପାରା (/) ରେ ନିର୍ଦ୍ଦିଷ୍ଟ ରାଜ୍ୟର ପ୍ରବେଶ ଲିଖତରେ ବିନିର୍ଦ୍ଦିଷ୍ଟ ବିଷୟ ସଂବଂଧୀ ସେପରି କୌଣସି ଆଦେଶ ରାଜ୍ୟର ସରକାରଙ୍କ ବିନା ପରାମର୍ଶରେ ବାହାର କରାଯିବ ନାହିଁ :

ଅଧିକନ୍ତୁ ଅନ୍ତିମ ପୂର୍ବବର୍ତ୍ତୀ ପରନ୍ତୁକରେ ନିର୍ଦ୍ଦିଷ୍ଟ ହୋଇଥିବା ବିଷୟମାନଙ୍କଠାରୁ ଭିନ୍ନ ବିଷୟ ସଂବଂଧୀ ସେପରି କୌଣସି ଆଦେଶ ସେହି ସରକାରଙ୍କ ସହମତି ବିନା ବାହାର କରାଯିବ ନାହିଁ ।

(୨) ଯଦି ସେ ରାଜ୍ୟର ସରକାରଙ୍କ ଦ୍ୱାରା ଖଣ୍ଡ (୧) ର ଉପଖଣ୍ଡ (ଖ) ର ପାରା (//) ରେ ଅଥବା ସେହି ଖଣ୍ଡର ଉପଖଣ୍ଡ (ଘ) ର ଦ୍ୱିତୀୟ ପରନ୍ତୁକରେ ନିର୍ଦ୍ଦିଷ୍ଟ ହୋଇଥିବା ସହମତି ସେ ରାଜ୍ୟଲାଗି ସଂବିଧାନ ପ୍ରଣୟନ ପ୍ରୟୋଜନାର୍ଥ ସଂବିଧାନ ସଭା ଆହୂତ ହେବା ପୂର୍ବରୁ ଦିଆଯାଏ ତାହାହେଲେ ତହିଁ ଉପରେ କୌଣସି ନିଷ୍ପତ୍ତି ଗ୍ରହଣ କରିବା ନିମନ୍ତେ ତାହା ସେହି ବିଧାନ ସଭା ସମକ୍ଷରେ ଉପସ୍ଥାପିତ କରାଯିବ ।

(୩) ଏହି ଅନୁଚ୍ଛେଦର ପୂର୍ବବର୍ତ୍ତୀ ଉପବଂଧମାନଙ୍କରେ ଯାହା କିଛି ଥିବା ସତ୍ତ୍ୱେ ରାଷ୍ଟ୍ରପତି ଲୋକ ଅଧିସୂଚନା ଦ୍ୱାରା ଘୋଷଣା କରିପାରିବେ ଯେ ଏହି ଅନୁଚ୍ଛେଦ ପ୍ରବର୍ତ୍ତିତ ହେବାରୁ ରହିତ ହେବ ଅଥବା ସେ ଯେପରି ବିନିର୍ଦ୍ଦିଷ୍ଟ କରିବେ ସେହି ତାରିଖଠାରୁ ଏବଂ କେବଳ ସେପରି ବ୍ୟତିରେକୀ ଓ ରୂପଭେଦ ସହିତ ପ୍ରବର୍ତ୍ତିତ ହେବ

ପରନ୍ତୁ ରାଷ୍ଟ୍ରପତି ଏପରି ଅଧିସୂଚନା ବାହାର କଲା ପୂର୍ବରୁ ଖଣ୍ଡ (୨) ରେ ନିର୍ଦ୍ଦିଷ୍ଟ ହୋଇଥିବା ସେହି ରାଜ୍ୟର ସଂବିଧାନ ସଭାର ସୁପାରିଶ ଆବଶ୍ୟକ ହେବ ।

ମହାରାଷ୍ଟ୍ର ଓ ଗୁଜୁରାଟ ରାଜ୍ୟମାନଙ୍କ ସମ୍ବନ୍ଧରେ ବିଶେଷ ଉପବନ୍ଧ ।

୩୭୧ । (୧) * *

(୨) ଏହି ସଂବିଧାନରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ରାଷ୍ଟ୍ରପତି ମହାରାଷ୍ଟ୍ର ଓ ଗଜୁରାଟ ରାଜ୍ୟମାନଙ୍କ ସଂବଂଧରେ ଦିଆଯିବା ଆଦେଶ ଦ୍ୱାରା ନିମ୍ନଲିଖିତ ବିଷୟମାନଙ୍କରେ ରାଜ୍ୟପାଳଙ୍କ କୌଣସି ବିଶେଷ ଦାୟିତ୍ୱ ନିମିତ୍ତ ଉପବଂଧ କରିପାରିବେ,—

(କ) ବିଦର୍ଭ, ମରଠାଓ୍ୱାଡ଼ା ଏବଂ ମହାରାଷ୍ଟ୍ରର ଅବଶିଷ୍ଟାଂଶ କିବା, ଯଥାସ୍ଥିତି, ସୌରାଷ୍ଟ୍ର, କଚ ଏବଂ ଗୁଜରାଟର ଅବଶିଷ୍ଟାଂଶ ନିମିତ୍ତ ପୃଥକ ବିକାଶ ମଣ୍ଡଳ ମାନଙ୍କର ସ୍ଥାପନା ଓ ତତ୍‌ସହ ଏହି ଉପବଂଧ ଯେ ଏହି ମଣ୍ଡଳୀମାନଙ୍କ ମଧ୍ୟରୁ ପ୍ରତ୍ୟେକର କାର୍ଯ୍ୟକାରିତା ସଂବଂଧରେ ଏକ ରିପୋର୍ଟ ରାଜ୍ୟ ବିଧାନସଭା ସମକ୍ଷରେ ପ୍ରତି ବର୍ଷ ରଖାଯିବ ;

(ଖ) ସମଗ୍ର ରାଜ୍ୟର ଆବଶ୍ୟକତାମାନଙ୍କର ବଶବର୍ତ୍ତୀ ରହି, ଉକ୍ତ କ୍ଷେତ୍ରମାନଙ୍କର ବିକାଶ ବ୍ୟୟ ନିମିତ୍ତ ନିଧିର ସାମ୍ୟପୂର୍ଣ୍ଣ ଆବଣ୍ଟନ ;

(ଗ) ସମଗ୍ର ରାଜ୍ୟର ଆବଶ୍ୟକତାମାନଙ୍କର ବଶବର୍ତ୍ତୀ ରହି ଉପରୋକ୍ତ ସମସ୍ତ କ୍ଷେତ୍ର ସଂବଂଧରେ ଶିଳ୍ପିକ ଶିକ୍ଷା ଏବଂ ବ୍ୟାବସାୟିକ ପ୍ରଶିକ୍ଷଣ ନିମିତ୍ତ ପର୍ଯ୍ୟାପ୍ତ ସୁବିଧା ଏବଂ ରାଜ୍ୟସରକାରଙ୍କ ନିୟନ୍ତ୍ରଣାଧୀନ ସେବା ମାନଙ୍କରେ ଚାକିରି ନିମିତ୍ତ ପର୍ଯ୍ୟାପ୍ତ ସୁଯୋଗ ଉପଲବ୍ଧ ହେଉଥିବା ଭଳି ଯୁକ୍ତିଯୁକ୍ତ ବ୍ୟବସ୍ଥା ।

ନାଗାଲାଣ୍ଡ ରାଜ୍ୟ ସମ୍ପର୍କରେ ବିଶେଷ ଉପବନ୍ଧ ।

୩୭୧କ । (୧) ଏହି ସଂବିଧାନରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ,

(କ) ନାଗାଲାଣ୍ଡର ବିଧାନସଭା ଏକ ସଂକଳ୍ପ ଦ୍ୱାରା ଏ ରୂପ ବିନିଶ୍ଚୟ ନ କଲେ,—

(/) ନାଗାମାନଙ୍କର ଧାର୍ମିକ ଓ ସାମାଜିକ ପ୍ରଥା,

(//) ନାଗା ଆଇନର ବିଧି ଓ ପ୍ରକ୍ରିୟା,

(୬) ନାଗା ରୁଢ଼ିଗତ ବିଧିର ଅନୁରୂପ ବିନିଶ୍ଚୟ ଅନ୍ତର୍ଗତ ହୋଇଥିବା ସ୍ଥଳେ ସିଭିଲ ଓ ଦାଣ୍ଡିକ ନ୍ୟାୟର ପ୍ରଶାସନ ,

( ।) ଭୂମି ଓ ତାହାର ବିଭିବମାନଙ୍କର ସ୍ୱାମିତ୍ୱ ଓ ଅନ୍ତରଣ,

ସଂବଂଧୀୟ ସଂସଦର କୌଣସି ଅଧିନିୟମ ନାଗାଲଣ୍ଡ ରାଜ୍ୟ ପ୍ରତି ଲଗୁ ହେବ ନାହିଁ ;

(ଖ) ନାଗାଲଣ୍ଡର ରାଜ୍ୟପାଳଙ୍କ ମତରେ ଯେ ପର୍ଯ୍ୟନ୍ତ ରାଜ୍ୟଗଠନର ଅବ୍ୟବହିତ ପୂର୍ବରୁ ନାଗା ପାହାଡ଼ୀ ଟ୍ୟୁନସଂଗ କ୍ଷେତ୍ରରେ ବା ତାହାର କୌଣସି ଭାଗରେ ଆଭ୍ୟନ୍ତରୀଣ ଅଶାନ୍ତି ଗ୍ଲ୍ଲୁ ରହିଥାଏ ସେ ପର୍ଯ୍ୟନ୍ତ ନାଗାଲଣ୍ଡ ରାଜ୍ୟର ବିଧି ଓ ବ୍ୟବସ୍ଥା ସଂବଂଧରେ ତାଙ୍କର ବିଶେଷ ଉତ୍ତରଦାୟିତ୍ୱ ରହିବ, ଏବଂ ତତ୍‌ସଂପର୍କରେ ତାଙ୍କର କାର୍ଯ୍ୟନିର୍ବାହ କରିବା ବେଳେ ରାଜ୍ୟପାଳ ତାଙ୍କର ମନ୍ତ୍ରୀ ପରିଷଦ ସହିତ ପରାମର୍ଶ କରିବା ପରେ କେଉଁ କାର୍ଯ୍ୟବାହୀ କରାଯିବ ସେ ସଂପର୍କରେ ନିଜର ବ୍ୟକ୍ତିଗତ ନିର୍ଣ୍ଣୟ ପ୍ରୟୋଗ କରି ପାରିବେ :

ପରନ୍ତୁ ଯଦି ପ୍ରଶ୍ନ ଉଠେ ଯେ କୌଣସି ବିଷୟ ଏପରି ବିଷୟ ଅଟେ କି ନାହିଁ ଯାହା ସଂବଂଧରେ କି ରାଜ୍ୟପାଳ ଏହି ଉପଖଣ୍ଡ ଅଧୀନରେ ନିଜର ବ୍ୟକ୍ତିଗତ ନିର୍ଣ୍ଣୟ ପ୍ରୟୋଗ କରି କାର୍ଯ୍ୟ କରିବା ଆବଶ୍ୟକ ଅଟେ, ତାହାହେଲେ ରାଜ୍ୟପାଳ ସ୍ୱବିବେକରେ ଯେଉଁ ବିନିଶ୍ଚୟ କରିବେ ତାହା ଅନ୍ତିମ ହେବ, ତଥା ରାଜ୍ୟପାଳଙ୍କ ଦ୍ୱାରା କରାଯାଇଥିବା କୌଣସି କାର୍ଯ୍ୟର ମାନ୍ୟତା ସଂପର୍କରେ ଏହି କାରଣରୁ କୌଣସି ପ୍ରଶ୍ନ ଉଠିବ ନାହିଁ ଯେ ସେ ନିଜର ବ୍ୟକ୍ତିଗତ ନିର୍ଣ୍ଣୟ ପ୍ରୟୋଗ କରି କାର୍ଯ୍ୟ କରିବା ଉଚିତ ଥିଲା ବା ଉଚିତ ନ ଥିଲା :

ଅଧିକନ୍ତୁ ଯଦି ରାଜ୍ୟପାଳଙ୍କଠାରୁ ରିପୋର୍ଟ ପାଇ ବା ଅନ୍ୟଥା ରାଷ୍ଟ୍ରପତିଙ୍କର ହୃଦବୋଧ ହୁଏ ଯେ ନାଗାଲଣ୍ଡ ରାଜ୍ୟରେ ବିଧି ଓ ବ୍ୟବସ୍ଥା ସଂବଂଧରେ ରାଜ୍ୟପାଳଙ୍କର ବିଶେଷ ଉତ୍ତର ଦାୟିତ୍ୱ ରହିବାର ଆବଶ୍ୟକତା ଆଉ ନାହିଁ ତାହାହେଲେ ସେ ଆଦେଶ ଦ୍ୱାରା ନିଦେଶ ଦେଇ ପାରିବେ ଯେ ରାଜ୍ୟପାଳଙ୍କର ଏପରି ଉତ୍ତରଦାୟିତ୍ୱ ଆଦେଶରେ ଯେଉଁ ତାରିଖ ବିନିର୍ଦ୍ଦିଷ୍ଟ ହୋଇଥିବ ସେହି ତାରିଖଠାରୁ ରହିବ ନାହିଁ ;

(ଗ) ଅନୁଦାନର କୌଣସି ଅଭିଯାଚନା ସଂବଂଧରେ ନିଜର ସୁପାରିଶ କଲାବେଳେ ନାଗାଲଣ୍ଡର ରାଜ୍ୟପାଳ ଏହା ସୁନିଶ୍ଚିତ କରିବେ ଯେ କୌଣସି ବିନିର୍ଦ୍ଦିଷ୍ଟ ସେବା ବା ପ୍ରୟୋଜନ ନିମିତ୍ତ ଭାରତର ସଂଚିତ ନିଧିରୁ ଭାରତ ସରକାରଙ୍କ ଦ୍ୱାରା ଦିଆଯାଇଥିବା ଧନ ସେହି ସେନା ବା ପ୍ରୟୋଜନ ସଂବଂଧୀୟ ଅନୁଦାନର ଅଭିଯାଚନାରେ ସମ୍ମିଳିତ କରାଯାଇଅଛି ଓ ଅନ୍ୟ କୌଣସି ଅଭିଯାଚନାରେ ସମ୍ମିଳିତ କରାଯାଇନାହିଁ ;

(ଘ) ନାଗାଲଣ୍ଡର ରାଜ୍ୟପାଳ ଲୋକ ଅଧିସୂଚନା ଦ୍ୱାରା ଏଥି ନିମିତ୍ତ ଯେଉଁ ତାରିଖ ବିନିର୍ଦ୍ଦିଷ୍ଟ କରିବେ ସେହି ତାରିଖଠାରୁ ଟ୍ୟୁନସଂଗ ଜିଲ୍ଲା ନିମିତ୍ତ ପଞ୍ଚତ୍ରିଂଶ ସଭ୍ୟ ବିଶିଷ୍ଟ ଏକ ପ୍ରାଦେଶିକ ପରିଷଦ ସ୍ଥାପିତ କରାଯିବ ଏବଂ ନିମ୍ନଲିଖିତ ବିଷୟରେ ଉପବଂଧ କରିବା ପାଇଁ ରାଜ୍ୟପାଳ ସ୍ୱବିବେକରେ ନିୟମ ପ୍ରଣୟନ କରିପାରିବେ —

(୧) ପ୍ରାଦେଶିକ ପରିଷଦ ରଚନା ଏବଂ ପ୍ରାଦେଶିକ ପରିଷଦର ସଦସ୍ୟ ବଛା ଯିବାର ରୀତି :

ପରନ୍ତୁ ଟ୍ୟୁନସଂଗ ଜିଲ୍ଲାର ଡେପୁଟି କମିଶନର ପ୍ରାଦେଶିକ ପରିଷଦର ପଦପ୍ରଯୁକ୍ତ ସଭାପତି ହେବେ ଏବଂ ପ୍ରାଦେଶିକ ପରିଷଦର ଉପସଭାପତି ତହିଁର ସଭ୍ୟମାନଙ୍କ ଦ୍ୱାରା ସେହି ମାନଙ୍କ ମଧ୍ୟରୁ ନିର୍ବାଚିତ ହେବେ ;

(୨) ପ୍ରାଦେଶିକ ପରିଷଦର ସଦସ୍ୟ ରୂପେ ବଛାଯିବା ପାଇଁ ଏବଂ ସଦସ୍ୟ ହେବାପାଇଁ ଯୋଗ୍ୟତା ;

(୩) ପ୍ରାଦେଶିକ ପରିଷଦର ସଦସ୍ୟଙ୍କର ପଦାବଧି ଏବଂ ସେମାନଙ୍କୁ ଦିଆଯିବା ବେତନ ଓ ଭତ୍ତା, ଯଦି କିଛିଥାଏ ;

(i) ପ୍ରାଦେଶିକ ପରିଷଦର ପ୍ରକ୍ରିୟା ଓ କାର୍ଯ୍ୟ ସଂଚାଳନ ;

(ii) ପ୍ରାଦେଶିକ ପରିଷଦର ଅଫିସର ଓ କର୍ମଚାରୀବୃନ୍ଦଙ୍କ ନିଯୁକ୍ତି ଏବଂ ସେମାନଙ୍କର ସେବାର ସର୍ତ୍ତାବଳୀ ;

(iv) ଅନ୍ୟ କୌଣସି ବିଷୟ, ଯାହା ସଂବଂଧରେ କି ପ୍ରାଦେଶିକ ପରିଷଦର ଗଠନ ଓ ତାହାର ଉଚିତ କାର୍ଯ୍ୟକାରିତା ନିମିତ୍ତ ନିୟମ ପ୍ରଣୟନ କରାଯିବା ଆବଶ୍ୟକ ।

(୨) ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ, ନାଗାଲାଣ୍ଡ ରାଜ୍ୟ ଗଠିତ ହେବା ତାରିଖଠାରୁ ଦଶ ବର୍ଷର କାଳାବଧି ନିମିତ୍ତ କିମ୍ବା ପ୍ରାଦେଶିକ ପରିଷଦର ସୁପାରିଶ କ୍ରମେ ରାଜ୍ୟପାଳ ଯେଉଁ ଅଧିକ କାଳାବଧି ଲୋକ ଅଧିସୂଚନା ଦ୍ୱାରା ଏଥିନିମିତ୍ତ ବିନିର୍ଦ୍ଦିଷ୍ଟ କରିବେ ସେହି କାଳାବଧି ନିମିତ୍ତ,

(କ) ଟ୍ୟୁନସଂଗ ଜିଲ୍ଲାର ପ୍ରଶାସନ ରାଜ୍ୟପାଳଙ୍କଦ୍ୱାରା କରାଯିବ ;

(ଖ) ଯେଉଁଠାରେ ଭାରତ ସରକାରଙ୍କଦ୍ୱାରା ନାଗାଲାଣ୍ଡ ସରକାରଙ୍କୁ ସମସ୍ତ ନାଗାଲାଣ୍ଡ ରାଜ୍ୟର ଆବଶ୍ୟକତାର ପୂର୍ତ୍ତି ନିମିତ୍ତ କୌଣସି ଧନର ବ୍ୟବସ୍ଥା କରାଯାଇଥାଏ ସେଠାରେ ରାଜ୍ୟପାଳ ସ୍ୱବିବେକରେ ଟ୍ୟୁନସଂଗ ଜିଲ୍ଲା ଓ ରାଜ୍ୟର ଅନ୍ୟଭାଗ ମଧ୍ୟରେ ସେହି ଧନର ସାମ୍ୟପୂର୍ଣ୍ଣ ବଣ୍ଟନର ବ୍ୟବସ୍ଥା କରିବେ ;

(ଗ) ରାଜ୍ୟପାଳ ପ୍ରାଦେଶିକ ପରିଷଦର ସୁପାରିଶ କ୍ରମେ ଲୋକ ଅଧିସୂଚନା ଦ୍ୱାରା ଏପରି ନିର୍ଦ୍ଦେଶ ନ ଦେଲେ ନାଗାଲାଣ୍ଡ ବିଧାନମଣ୍ଡଳର କୌଣସି ଅଧିନିୟମ ଟ୍ୟୁନସଂଗ ଜିଲ୍ଲା ପ୍ରତି ଲାଗୁ ହେବନାହିଁ ଏବଂ ରାଜ୍ୟପାଳ ଏପରି କୌଣସି ଅଧିନିୟମ ସଂବଂଧରେ ଏପରି ନିର୍ଦ୍ଦେଶ ଦେବା ବେଳେ ଏହା ନିର୍ଦ୍ଦିଷ୍ଟ କରି ପାରିବେ ଯେ ଏହି ଅଧିନିୟମ ଟ୍ୟୁନସଂଗ ଜିଲ୍ଲା ବା ତାହାର କୌଣସି ଭାଗ ପ୍ରତି ଲାଗୁ ହେବା ବେଳେ ତାହା ସେହି ବ୍ୟତିରେକୀ ବା ରୂପାନ୍ତରଣର ବଶବର୍ତ୍ତୀ ରହି ପ୍ରଭାବୀ ହେବ ଯାହାକି ରାଜ୍ୟପାଳ ପ୍ରାଦେଶିକ ପରିଷଦର ସୁପାରିଶ କ୍ରମେ ବିନିର୍ଦ୍ଦିଷ୍ଟ କରିବେ :]

ପରନ୍ତୁ ଏହି ଉପଖଣ୍ଡ ଅଧୀନରେ ଦିଆଯିବା ନିର୍ଦ୍ଦେଶ ଏପରି ଦିଆଯାଇପାରିବ ଯେପରିକି ତାହାର ଭୂତଲକ୍ଷୀ ପ୍ରଭାବ ରହିବ ;

(ଘ) ରାଜ୍ୟପାଳ ଟ୍ୟୁନସଂଗ ଜିଲ୍ଲାର ଶାନ୍ତି, ଉନ୍ନତି ଓ ସୁଶାସନ ନିମିତ୍ତ ବିନିୟମ ପ୍ରଣୟନ କରି-ପାରିବେ ତଥା ଏ ରୂପେ ପ୍ରଣୀତ କୌଣସି ବିନିୟମ ସେହି ଜିଲ୍ଲା ପ୍ରତି ତତସମୟ ଲାଗୁ ହୋଇଥିବା ସଂସଦର କୌଣସି ଅଧିନିୟମ ବା ଅନ୍ୟ କୌଣସି ବିଧିକୁ ଆବଶ୍ୟକ ହେଲେ ଭୂତଲକ୍ଷୀ ପ୍ରଭାବ ରହିବା ଭଳି ନିରସିତ ବା ସଂଶୋଧିତ କରି ପାରିବ ;

(ଙ) (i) ନାଗାଲାଣ୍ଡ ବିଧାନସଭାରେ ଟ୍ୟୁନସଂଗ ଜିଲ୍ଲାର ପ୍ରତିନିଧିତ୍ୱ କରୁଥିବା ସଦସ୍ୟ-ମାନଙ୍କ ମଧ୍ୟରୁ ଜଣେ ସଦସ୍ୟ ମୁଖ୍ୟମନ୍ତ୍ରୀଙ୍କ ମନ୍ତ୍ରଣା କ୍ରମେ ରାଜ୍ୟପାଳଙ୍କ ଦ୍ୱାରା ଟ୍ୟୁନସଂଗ ବିଷୟକ ମନ୍ତ୍ରୀ ରୂପେ ନିଯୁକ୍ତ ହେବେ ଏବଂ ମୁଖ୍ୟମନ୍ତ୍ରୀ ମନ୍ତ୍ରଣା ଦେବା ବେଳେ ପୂର୍ବୋକ୍ତ ମତେ ସଦସ୍ୟମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ସୁପାରିଶ ମତେ କାର୍ଯ୍ୟ କରିବେ ;

(ii) ଟ୍ୟୁନସଂଗ ବିଷୟକ ମନ୍ତ୍ରୀ ଟ୍ୟୁନସଂଗ ଜିଲ୍ଲା ସଂବଂଧୀୟ ସମସ୍ତ ବିଷୟରେ କାର୍ଯ୍ୟ କରିବେ ଏବଂ ସେ ସଂପର୍କରେ ସେ ରାଜ୍ୟପାଳଙ୍କ ନିକଟରେ ସିଧା ପହଞ୍ଚି ପାରିବେ କିନ୍ତୁ ସେ ସେସବୁ ବିଷୟରେ ମୁଖ୍ୟମନ୍ତ୍ରୀଙ୍କୁ ଅବଗତ କରାଉଥିବେ ;

(ଚ) ଏହି ଖଣ୍ଡର ପୂର୍ବଗାମୀ ଉପବଂଧମାନଙ୍କରେ ଯାହା କିଛି ଥିବା ସତ୍ତ୍ୱେ, ଟ୍ୟୁନସଂଗ ଜିଲ୍ଲା ସଂପର୍କୀୟ ସମସ୍ତ ବିଷୟରେ ଅନ୍ତିମ ନିଷ୍ପତ୍ତି ରାଜ୍ୟପାଳ ସ୍ୱ ବିବେକରେ କରିବେ ;

(ଛ) ଅନୁଚ୍ଛେଦ ୫୪ ଓ ୫୫ରେ ଏବଂ ଅନୁଚ୍ଛେଦ ୮୦ର ଖଣ୍ଡ (୪) ରେ ରାଜ୍ୟର ବିଧାନ ସଭାର ନିର୍ବାଚିତ ସଦସ୍ୟମାନଙ୍କ ପ୍ରତି ବା ଏପରି ପ୍ରତ୍ୟେକ ସଦସ୍ୟ ପ୍ରତି ନିର୍ଦ୍ଦେଶ ମଧ୍ୟରେ ଏହି ଅନୁଚ୍ଛେଦ ଅଧୀନରେ ସ୍ଥାପିତ ପ୍ରାଦେଶିକ ପରିଷଦ ଦ୍ୱାରା ନିର୍ବାଚିତ ନାଗାଲାଣ୍ଡ ବିଧାନ ସଭାର ସଦସ୍ୟମାନଙ୍କ ପ୍ରତି ବା ସଦସ୍ୟ ପ୍ରତି ନିର୍ଦ୍ଦେଶ ଅନ୍ତର୍ଗତ ହେବ ;

(ଜ) ଅନୁଚ୍ଛେଦ ୧୭୦ ରେ—

(୧) ଖଣ୍ଡ (୧) ନାଗାଲାଣ୍ଡ ବିଧାନସଭା ସଂପର୍କରେ ଏପରି ପ୍ରଭାବୀ ହେବ ଯେପରି କି "ଷାଠିଏ" ଶବ୍ଦ ସ୍ଥାନରେ "ଛୟାଳିଶ" ଶବ୍ଦ ରଖା ଯାଇଥିଲ ;

(୨) ଉକ୍ତ ଖଣ୍ଡରେ ରାଜ୍ୟରେ ଥିବା ପ୍ରାଦେଶିକ ନିର୍ବାଚନ କ୍ଷେତ୍ରରୁ ପ୍ରତ୍ୟକ୍ଷ ନିର୍ବାଚନ ପ୍ରତି ନିର୍ଦ୍ଦେଶ ମଧ୍ୟରେ ଏହି ଅନୁଚ୍ଛେଦ ଅଧୀନରେ ସ୍ଥାପିତ ପ୍ରାଦେଶିକ ପରିଷଦର ସଦସ୍ୟମାନଙ୍କ ଦ୍ୱାରା ନିର୍ବାଚନ ଅନ୍ତର୍ଗତ ହେବ

(୩) ଖଣ୍ଡ (୨) ଓ (୩) ରେ ପ୍ରାଦେଶିକ ନିର୍ବାଚନ କ୍ଷେତ୍ର ପ୍ରତି ନିର୍ଦ୍ଦେଶ ମଧ୍ୟରେ କୋହିମା ଓ ମୁକୋକ୍‌ଚୁ୍ୟଂଗ ଜିଲ୍ଲାମାନଙ୍କ ପ୍ରାଦେଶିକ ନିର୍ବାଚନ କ୍ଷେତ୍ରମାନଙ୍କ ପ୍ରତି ନିର୍ଦ୍ଦେଶ ଅଭିପ୍ରେତ ହେବ ।

(୩) ଏହି ଅନୁଚ୍ଛେଦର ପୂର୍ବଗାମୀ ଉପବନ୍ଧମାନଙ୍କ ମଧ୍ୟରୁ କୌଣସି ଉପବନ୍ଧକୁ ପ୍ରଭାବୀ କରିବାରେ ଯଦି କୌଣସି କଠିନତା ଉପୁଜେ ତାହାହେଲେ ସେହି କଠିନତା ଦୂର କରିବା ପ୍ରୟୋଜନରେ (ଅନ୍ୟ କୌଣସି ଅନୁଚ୍ଛେଦର ଅନୁକୂଳନ ବା ରୂପାନ୍ତର ସମେତ) ଯେଉଁ କାର୍ଯ୍ୟ କରାଯିବା ଆବଶ୍ୟକ ବୋଲି ରାଷ୍ଟ୍ରପତିଙ୍କୁ ପ୍ରତୀତ ହେବ ସେ ଆଦେଶ ଦ୍ୱାରା ତାହା କରି ପାରିବେ :

ପରନ୍ତୁ ନାଗାଲାଣ୍ଡ ରାଜ୍ୟ ଗଠନ ତାରିଖ ଠାରୁ ତିନିବର୍ଷର ଅବସାନ ପରେ ଏପରି କୌଣସି ଆଦେଶ ଦିଆଯିବ ନାହିଁ ।

ସ୍ପଷ୍ଟୀକରଣ:—କୋହିମା, ମୁକୋକ୍‌ଚୁ୍ୟଙ୍ଗ ଓ ଟ୍ୟୁନସଙ୍ଗ ଜିଲ୍ଲାର ନାଗାଲାଣ୍ଡ ରାଜ୍ୟ ଅଧିନିୟମ, ୧୯୬୨ ରେ ଯେଉଁ ଅର୍ଥ ରହିଅଛି ଏହି ଅନୁଚ୍ଛେଦରେ ତାହାର ସେହି ଅର୍ଥ ହେବ ।

ଆସାମ ରାଜ୍ୟ ସଂକ୍ରାନ୍ତରେ ବିଶେଷ ଉପବନ୍ଧ ।

୩୭୧ ଖ । ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ, ରାଷ୍ଟ୍ରପତି ଆସାମ ରାଜ୍ୟ ସଂକ୍ରାନ୍ତରେ କରାଯାଇଥିବା ଆଦେଶ ଦ୍ୱାରା ଷଷ୍ଠ ଅନୁସୂଚୀର ପାରା ୨୦ ରେ ସଂଲଗ୍ନ ସାରଣୀର ଭାଗ (୧) ରେ ବିନିର୍ଦ୍ଦିଷ୍ଟ ଜନଜାତି କ୍ଷେତ୍ରରୁ ରାଜ୍ୟର ବିଧାନସଭାକୁ ନିର୍ବାଚିତ ସଦସ୍ୟମାନଙ୍କୁ ନେଇ ଏବଂ ସେହି ଆଦେଶରେ ଉଲ୍ଲିଖିତ ଥିବା ମତେ ସେହି ବିଧାନସଭାର ସେପରି ସଂଖ୍ୟକ ଅନ୍ୟ ସଦସ୍ୟମାନଙ୍କୁ ନେଇ ରାଜ୍ୟ ବିଧାନସଭାର ଏକ କମିଟି ଗଠନ କରିବା ଓ କାର୍ଯ୍ୟ କରିବା ପାଇଁ ଉପବନ୍ଧିତ କରିପାରିବେ ଏବଂ ସେପରି କମିଟିର ଗଠନ ଓ ତାହା ଉପରୋକ୍ତରୂପେ କାର୍ଯ୍ୟ କରିବା ମର୍ମେ ସେହି ବିଧାନସଭାର କାର୍ଯ୍ୟବିଧିର ନିୟମାବଳୀରେ ରୂପାନ୍ତରଣ କରିବା ପାଇଁ ଉପବନ୍ଧିତ କରିପାରିବେ ।

ମଣିପୁର ରାଜ୍ୟ ସଂକ୍ରାନ୍ତରେ ବିଶେଷ ଉପବନ୍ଧ ।

୩୭୧ ଗ । (୧) ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ, ରାଷ୍ଟ୍ରପତି ମଣିପୁର ରାଜ୍ୟ ସମ୍ବନ୍ଧରେ ଦିଆଯିବା ଆଦେଶ ଦ୍ୱାରା ସେହି ରାଜ୍ୟର ପାହାଡ଼ି ଅଞ୍ଚଳର ସେହି ବିଧାନମଣ୍ଡଳକୁ ନିର୍ବାଚିତ ସଦସ୍ୟମାନଙ୍କୁ ନେଇ ରାଜ୍ୟ ବିଧାନ ମଣ୍ଡଳର ଗୋଟିଏ କମିଟିର ଗଠନ ଓ ତାହାର କୃତ୍ୟମାନଙ୍କ ନିମିତ୍ତ ରାଜ୍ୟର ସରକାରଙ୍କ କାର୍ଯ୍ୟ ସମ୍ବନ୍ଧୀ ନିୟମାବଳୀରେ ଏବଂ ବିଧାନମଣ୍ଡଳ ପ୍ରକ୍ରିୟା ସମ୍ବନ୍ଧୀ ନିୟମାବଳୀରେ କରାଯିବା ରୂପାନ୍ତରଣ ନିମିତ୍ତ, ଏବଂ ସେହି କମିଟି ଠିକ ଭାବେ କାର୍ଯ୍ୟ କରିବା ସୁନିଶ୍ଚିତ କରିବା ଉଦ୍ଦେଶ୍ୟରେ ରାଜ୍ୟପାଳଙ୍କର କୌଣସି ବିଶେଷ ଦାୟିତ୍ୱ ନିମିତ୍ତ ଉପବନ୍ଧ କରିପାରିବେ ।

(୨) ରାଜ୍ୟପାଳ ପ୍ରତିବର୍ଷ ଅଥବା ରାଷ୍ଟ୍ରପତି ଯେତେବେଳେ ଆବଶ୍ୟକ କରିବେ, ସେତେବେଳେ ମଣିପୁର ରାଜ୍ୟର ପାହାଡ଼ି ଅଞ୍ଚଳର ପ୍ରଶାସନ ସମ୍ବନ୍ଧରେ ରାଷ୍ଟ୍ରପତିଙ୍କୁ ଗୋଟିଏ ରିପୋର୍ଟ ଦେବେ ଏବଂ ସଂଘର କାର୍ଯ୍ୟପାଳିକା କ୍ଷମତା ଉକ୍ତ ଅଞ୍ଚଳର ପ୍ରଶାସନ ସମ୍ବନ୍ଧରେ ରାଜ୍ୟକୁ ନିର୍ଦ୍ଦେଶ ଦେବା ପାଇଁ ସଂଘର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ରହିବ ।

ସ୍ପଷ୍ଟୀକରଣ—ଏହି ଅନୁଚ୍ଛେଦରେ "ପାହାଡ଼ି ଅଞ୍ଚଳ" ଅଭିବ୍ୟକ୍ତିର ଅର୍ଥ ରାଷ୍ଟ୍ରପତି ଆଦେଶ ଦ୍ୱାରା ପାହାଡ଼ୀ ଅଞ୍ଚଳ ବୋଲି ଘୋଷଣା କରିଥିବା ଅଞ୍ଚଳ ।

ଆନ୍ଧ୍ର ପ୍ରଦେଶ ରାଜ୍ୟ ସମ୍ପର୍କରେ ବିଶେଷ ଉପବନ୍ଧ ।

୩୭୧ ଘ । (୧) ରାଷ୍ଟ୍ରପତି ଆନ୍ଧ୍ର ପ୍ରଦେଶ ରାଜ୍ୟ ସଂପର୍କରେ ଆଦେଶ ଜାରି କରି ସମଗ୍ର ରାଜ୍ୟର ଆବଶ୍ୟକତା ପ୍ରତି ଦୃଷ୍ଟି ରଖି, ରାଜ୍ୟର ବିଭିନ୍ନ ଭାଗର ଲୋକେ ସରକାରୀ ନିଯୁକ୍ତି ସଂପର୍କରେ ଓ ଶିକ୍ଷା ସଂପର୍କରେ ସମାନ ସୁଯୋଗ ଓ ସୁବିଧା ପାଇବା ମର୍ମେ ଉପବନ୍ଧ କରି ପାରିବେ ଏବଂ ରାଜ୍ୟର ବିଭିନ୍ନ ଭଗ ନିମିତ୍ତ ଭିନ୍ନ ଭିନ୍ନ ଉପବନ୍ଧ କରାଯାଇ ପାରିବ ।

(୨) ଖଣ୍ଡ (୧) ଅଧୀନରେ କରାଯାଇ ଥିବା ଆଦେଶରେ ବିଶେଷ ଭାବେ,—

(କ) ରାଜ୍ୟର କୌଣସି ସିଭିଲ ସେବାର କୌଣସି ଏକ ବା ଅଧିକ ଶ୍ରେଣୀର ପଦ ଗୁଡ଼ିକୁ କିମ୍ବା ରାଜ୍ୟ ଅଧୀନସ୍ଥ କୌଣସି ସିଭିଲ ପଦ ଗୁଡ଼ିକୁ ବିଭିନ୍ନ ଭାଗ ନିମିତ୍ତ ବିଭିନ୍ନ ସ୍ଥାନୀୟ କାଡ଼ରରେ ଗଠିତ କରିବା ପାଇଁ ଆବଶ୍ୟକ କରଯାଇ ପାରିବ ଏବଂ ଆଦେଶରେ ବିନିର୍ଦ୍ଦିଷ୍ଟ ହେବା ନୀତି ଓ ପ୍ରକ୍ରିୟା ଅନୁଯାୟୀ ସେହି ପଦ ଧାରଣ କରିଥିବା ବ୍ୟକ୍ତି ମାନଙ୍କୁ ଏପରି ଭାବେ ଗଠିତ ସ୍ଥାନୀୟ କାଡ଼ର ପ୍ରତି ଆବଣ୍ଟନ କରାଯାଇ ପାରିବ;

(ଖ) ରାଜ୍ୟର କେଉଁ ଭାଗ ବା ଭଗମାନ ନିମ୍ନ ଲିଖିତ ଉଦ୍ଦେଶ୍ୟରେ ସ୍ଥାନୀୟ ଅଞ୍ଚଳ ରୂପେ ବିବେଚିତ ହେବ ତାହା ବିନିର୍ଦ୍ଦିଷ୍ଟ କରି ପାରିବ , ଯଥା :—

(/) କୌଣସି ସ୍ଥାନୀୟ କାଡ଼ରରେ ଥିବା କୌଣସି ପଦରେ (ଏହି ଅନୁଚ୍ଛେଦର ଅଧୀନରେ ପ୍ରଦତ୍ତ ଆଦେଶର ଅନୁସରଣରେ ଗଠିତ ହୋଇଥାଉ ବା ଅନ୍ୟଥା ଗଠିତ ହୋଇ ଥାଉ) ସିଧା ସଳଖ ନିଯୁକ୍ତି ନିମିତ୍ତ;

(//) ରାଜ୍ୟ ମଧ୍ୟରେ କୌଣସି ସ୍ଥାନୀୟ ପ୍ରାଧିକାରୀ ଅଧୀନରେ ଥିବା ଯେ କୌଣସି କାଡ଼ରର ପଦରେ ସିଧା ସଳଖ ନିଯୁକ୍ତି ନିମିତ୍ତ;

(///) ରାଜ୍ୟ ମଧ୍ୟରେ କୌଣସି ବିଶ୍ୱବିଦ୍ୟାଳୟରେ ବା ରାଜ୍ୟ ସରକାରଙ୍କର ନିୟନ୍ତ୍ରଣାଧୀନ କୌଣସି ଶିକ୍ଷାନୁଷ୍ଠାନରେ ନାମ ଲେଖାଇବା ନିମିତ୍ତ;

(ଗ) ନିମ୍ନଲିଖିତ ବିଷୟମାନଙ୍କରେ, ଯଥା :—

(/) ଉପଖଣ୍ଡ (ଖ) ରେ ଉଲ୍ଲିଖିତ ଯେଉଁ କାଡ଼ର ଏଥି ନିମିତ୍ତ ଆଦେଶରେ ବିନିର୍ଦ୍ଦିଷ୍ଟ ହେବ ସେହି କାଡ଼ରର ପଦ ମାନଙ୍କରେ ସିଧା ସଳଖ ନିଯୁକ୍ତି ବିଷୟରେ,

(//) ଉପଖଣ୍ଡ (ଖ) ରେ ଉଲ୍ଲେଖିତ ଯେଉଁ ବିଶ୍ୱବିଦ୍ୟାଳୟ ବା ଅନ୍ୟ ଶିକ୍ଷାନୁଷ୍ଠାନ ଏଥି ନିମିତ୍ତ ଆଦେଶରେ ବିନିର୍ଦ୍ଦିଷ୍ଟ ହେବ ତହିଁରେ ନାମ ଲେଖାଯିବା ବିଷୟରେ,

ଯେଉଁ ପାର୍ଥୀମାନେ, ଯଥାସ୍ଥିତି, ଏହି କାଡ଼ର ବା ବିଶ୍ୱବିଦ୍ୟାଳୟ ବା ଅନ୍ୟ ଶିକ୍ଷାନୁଷ୍ଠାନ ସଂପର୍କୀୟ ସ୍ଥାନୀୟ ଅଞ୍ଚଳରେ ଉକ୍ତ ଆଦେଶରେ ବିନିର୍ଦ୍ଦିଷ୍ଟ ହୋଇଥିବା କାଳ ନିମିତ୍ତ ବାସ କରୁଥିଲେ ବା ପାଠ ପଢୁଥିଲେ, ସେହି ପାର୍ଥୀ ମାନଙ୍କୁ କେତେ ମାତ୍ରାରେ, କେଉଁ ରୀତିରେ ଏବଂ କେଉଁ ସର୍ତ୍ତମାନଙ୍କର ଅଧୀନରେ ଅଧିମାନ ବା ଆରକ୍ଷଣ ଦିଆଯାଇ ପାରିବ ତାହା ବିନିର୍ଦ୍ଦିଷ୍ଟ କରି ପାରିବ ।

(୩) ରାଷ୍ଟ୍ରପତି ଆଦେଶ ଦ୍ୱାରା ଆନ୍ଧ୍ର ପ୍ରଦେଶ ରାଜ୍ୟ ନିମିତ୍ତ ଏକ ପ୍ରଶାସନିକ ଟ୍ରିବ୍ୟୁନାଲ ଗଠନ ନିମିତ୍ତ ଉପବନ୍ଧ କରି ପାରିବେ ଏବଂ ସେହି ଟ୍ରିବ୍ୟୁନାଲ ନିମ୍ନଲିଖିତ ବିଷୟ ସଂପର୍କରେ ସଂବିଧାନ (୩୨ଶ ସଂଶୋଧନ) ଅଧିନିୟମ, ୧୯୭୩ ର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଉଚ୍ଚତମ ନ୍ୟାୟାଳୟ ଭିନ୍ନ ଅନ୍ୟ କୌଣସି ନ୍ୟାୟାଳୟ ବା କୌଣସି ଟ୍ରିବ୍ୟୁନାଲ ବା ଅନ୍ୟ ପ୍ରାଧିକାରୀ ପ୍ରୟୋଗ କରୁଥିବା ଅଧିକାରିତା, କ୍ଷମତା ବା ପ୍ରାଧିକାର ସମେତ ଆଦେଶରେ ବିନିର୍ଦ୍ଦିଷ୍ଟ ହୋଇଥିବା ଅଧିକାରିତା, କ୍ଷମତା ଓ ପ୍ରାଧିକାର ପ୍ରୟୋଗ କରିବ, ଯଥା :—

(କ) ଆଦେଶରେ ବିନିର୍ଦ୍ଦିଷ୍ଟ ହୋଇଥିବା ମତେ ରାଜ୍ୟର ସିଭିଲ ସେବାର ଏକ ବା ଅଧିକ ଶ୍ରେଣୀର ପଦମାନଙ୍କ ପାଇଁ ବା ରାଜ୍ୟ ଅଧୀନରେ ଥିବା ସିଭିଲ ସେବାର ଏକ ବା ଅଧିକ ଶ୍ରେଣୀର ପଦମାନଙ୍କ ପାଇଁ ବା ରାଜ୍ୟ ମଧ୍ୟରେ ଥିବା କୌଣସି ସ୍ଥାନୀୟ ପ୍ରାଧିକାରୀଙ୍କ ନିୟନ୍ତ୍ରଣାଧୀନ ଏକ ବା ଅଧିକ ଶ୍ରେଣୀର ପଦମାନଙ୍କ ପାଇଁ ନିଯୁକ୍ତି, ଆବଣ୍ଟନ ବା ପଦୋନ୍ନତି;

(ଖ) ଆଦେଶରେ ବିନିର୍ଦ୍ଦିଷ୍ଟ ହୋଇଥିବା ମତେ ରାଜ୍ୟର ସିଭିଲ ସେବାର ଏକ ବା ଅଧିକ ଶ୍ରେଣୀର ପଦମାନଙ୍କ ପାଇଁ ବା ରାଜ୍ୟ ଅଧୀନରେ ଥିବା ସିଭିଲ ସେବାର ଏକ ବା ଅଧିକ ଶ୍ରେଣୀର ପଦମାନଙ୍କ ପାଇଁ ବା ରାଜ୍ୟ ମଧ୍ୟରେ ଥିବା କୌଣସି ସ୍ଥାନୀୟ ପ୍ରାଧିକାରୀଙ୍କ ନିୟନ୍ତ୍ରଣାଧୀନ ଏକ ବା ଅଧିକ ଶ୍ରେଣୀର ପଦମାନଙ୍କ ପାଇଁ ନିଯୁକ୍ତ, ଆବଣ୍ଟିତ ବା ପଦୋନ୍ନତ ବ୍ୟକ୍ତିମାନଙ୍କର ବରିଷ୍ଠତା;

(ଗ) ଆଦେଶରେ ବିନିର୍ଦ୍ଦିଷ୍ଟ ହୋଇଥିବା ମତେ ରାଜ୍ୟର କୌଣସି ସିଭିଲ ସେବାର ସେପରି ଏକ ବା ଅଧିକ ଶ୍ରେଣୀର ପଦମାନଙ୍କ ପାଇଁ ବା ରାଜ୍ୟ ଅଧୀନରେ ଥିବା କୌଣସି ସିଭିଲ ସେବାର ସେପରି ଏକ ବା ଅଧିକ ଶ୍ରେଣୀର ପଦମାନଙ୍କ ପାଇଁ ବା ରାଜ୍ୟ ମଧ୍ୟରେ ଥିବା କୌଣସି ସ୍ଥାନୀୟ ପ୍ରାଧିକାରୀଙ୍କ ନିୟନ୍ତ୍ରଣାଧୀନ ସେପରି ଏକ ବା ଅଧିକ ଶ୍ରେଣୀର ପଦ ମାନଙ୍କ ପାଇଁ ନିଯୁକ୍ତ, ଆବଣ୍ଟିତ ବା ପଦୋନ୍ନତ ବ୍ୟକ୍ତିମାନଙ୍କର ସେପରି ଅନ୍ୟାନ୍ୟ ସେବା ସର୍ତ୍ତାବଳୀ ।

(୪) ଖଣ୍ଡ (୩) ଅଧୀନରେ,–

(କ) ଦିଆଯାଇଥିବା ଆଦେଶ ରାଷ୍ଟ୍ରପତି ଆଦେଶରେ ବିନିର୍ଦ୍ଦିଷ୍ଟ କରିବା ମତେ ଟ୍ରିବ୍ୟୁନାଲ ତାଙ୍କର ଅଧିକାରିତା ମଧ୍ୟରେ ଥିବା କୌଣସି ବିଷୟ ସଂପର୍କରେ କୌଣସି କ୍ଳେଶର ସମାଧାନ ଲାଗି ଆବେଦନ ଗ୍ରହଣ କରିବା ପାଇଁ ଏବଂ ଟ୍ରିବ୍ୟୁନାଲ ଉଚିତ ମନେ କରିବା ମତେ ତାହା ଉପରେ ଆଦେଶ ଦେବା ପାଇଁ ପ୍ରାଧିକୃତ କରି ପାରିବ;

(ଖ) ଦିଆଯାଇଥିବା ଆଦେଶରେ ରାଷ୍ଟ୍ରପତି ଯେପରି ଆବଶ୍ୟକ ବିବେଚନା କରିବେ ପ୍ରଶାସନିକ ଟ୍ରିବ୍ୟୁନାଲ କ୍ଷମତା, ପ୍ରାଧିକାର ଓ ପ୍ରକ୍ରିୟା (ପ୍ରଶାସନିକ ଟ୍ରିବ୍ୟୁନାଲ ନିଜର ଅବମାନନା ନିମିତ୍ତ ଦଣ୍ଡ ଦେବା ପାଇଁ ଥିବା କ୍ଷମତା ସଂପର୍କୀୟ ଉପବନ୍ଧ ସମେତ) ନିମିତ୍ତ ସେପରି ଉପବନ୍ଧମାନ ରହିପାରିବ;

(ଗ) ଦିଆଯାଇଥିବା ଆଦେଶରେ (ଉଚ୍ଚତମ ନ୍ୟାୟାଳୟ ଭିନ୍ନ) କୌଣସି ନ୍ୟାୟାଳୟରେ ବା ଟ୍ରିବ୍ୟୁନାଲରେ ବା ଅନ୍ୟ ପ୍ରାଧିକାରୀଙ୍କ ନିକଟରେ ଲମ୍ବିତ ଥିବା ଏବଂ ପ୍ରଶାସନିକ ଟ୍ରିବ୍ୟୁନାଲର ଅଧିକାରିତା ମଧ୍ୟରେ ଥିବା ବିଷୟ ସମ୍ବନ୍ଧୀୟ ହୋଇଥିବା ଯେଉଁ ଶ୍ରେଣୀର କାର୍ଯ୍ୟବାହୀମାନ ଆଦେଶରେ ବିନିର୍ଦ୍ଦିଷ୍ଟ ହୋଇଥିବ ସେହି କାର୍ଯ୍ୟବାହୀମାନ ପ୍ରଶାସନିକ ଟ୍ରିବ୍ୟୁନାଲକୁ ଅନ୍ତରିତ କରାଯିବା ମର୍ମେ ଉପବନ୍ଧ କରିପାରିବ ;

(ଘ) ଦିଆଯାଇଥିବା ଆଦେଶରେ (ଫିସ ଓ ମିଆଦ ସମ୍ବନ୍ଧୀୟ ଓ ସାକ୍ଷ୍ୟ ସମ୍ବନ୍ଧୀୟ ଉପବନ୍ଧ ବା ତତ୍‌ସମୟ ପ୍ରବୃତ୍ତ କୌଣସି ବିଧି କୌଣସି ବ୍ୟତିରେକୀ ବା ରୂପଭେଦର ବଶବର୍ତ୍ତୀ ରହି ଲାଗୁ ହେବା ମର୍ମେ କୌଣସି ଉପବନ୍ଧ ସମେତ) ଏପରି ଅନୁପୂରକ, ଆନୁଷଙ୍ଗିକ ବା ପାରିଣାମିକ ଉପବନ୍ଧ ରହିପାରିବ ଯାହାକି ରାଷ୍ଟ୍ରପତି ଉଚିତ ବିବେଚନା କରିବେ ।

(୫) ପ୍ରଶାସନିକ ଟ୍ରିବ୍ୟୁନାଲ କୌଣସି ମାମଲା ଚୂଡ଼ାନ୍ତ ରୂପେ ଫଇସଲା କରି ଯେଉଁ ଆଦେଶ ଦେବ ତାହା ରାଜ୍ୟ ସରକାରଙ୍କ ଦ୍ୱାରା ପୁଷ୍ଟ ହେବା ତାରିଖ ବା ଯେଉଁ ତାରିଖରେ ଆଦେଶ ଦିଆଯାଇଥିବ ସେହି ତାରିଖ ଠାରୁ ତିନିମାସ ଗତ ହେବା ତାରିଖ, ଏ ଦୁଇଟି ମଧ୍ୟରୁ ଯେଉଁଟି ପ୍ରଥମେ ପଡ଼ିବ ସେହି ତାରିଖ ଠାରୁ ପ୍ରଭାବୀ ହେବ :

ପରନ୍ତୁ ରାଜ୍ୟ ସରକାର ଲିଖିତ ଭାବେ ବିଶେଷ ଆଦେଶ ଦେଇ ଏବଂ ତହିଁର କାରଣ ସେଥିରେ ଉଲ୍ଲେଖ କରି ପ୍ରଶାସନିକ ଟ୍ରିବ୍ୟୁନାଲର କୌଣସି ଆଦେଶ ପ୍ରଭାବୀ ହେବା ପୂର୍ବରୁ ତାହାକୁ ସଂଶୋଧିତ ବା ରଦ୍ଦ କରିପାରିବେ, ଏବଂ ଏପରି କ୍ଷେତ୍ରରେ ପ୍ରଶାସନିକ ଟ୍ରିବ୍ୟୁନାଲର ଆଦେଶ କେବଳ ଏହି ସଂଶୋଧିତ ପ୍ରକାରେ ପ୍ରଭାବୀ ହେବ ବା, ଯଥାସ୍ଥିତି, ଆଦୌ ପ୍ରଭାବୀ ନ ହେବ ।

(୬) ଖଣ୍ଡ (୫)ର ଉପବନ୍ଧ ଅଧୀନରେ ରାଜ୍ୟ ସରକାରଙ୍କ ଦ୍ୱାରା ଦିଆଯିବା ପ୍ରତ୍ୟେକ ବିଶେଷ ଆଦେଶ ତାହା ଦିଆଯିବା ପରେ ଯଥାଶୀଘ୍ର ରାଜ୍ୟ ବିଧାନମଣ୍ଡଳର ଉଭୟ ସଦନରେ ଉପସ୍ଥାପିତ କରାଯିବ ।

(୭) ରାଜ୍ୟ ଉଚ୍ଚ ନ୍ୟାୟାଳୟର ପ୍ରଶାସନିକ ଟ୍ରିବ୍ୟୁନାଲ ଉପରେ କୌଣସି ଅଧୀକ୍ଷଣ କ୍ଷମତା ରହିବ ନାହିଁ ଏବଂ ପ୍ରଶାସନିକ ଟ୍ରିବ୍ୟୁନାଲର ଅଧିକାରିତା, କ୍ଷମତା ବା ପ୍ରାଧିକାର ଅଧୀନରେ ଥିବା ବା ସେ ସଂପର୍କୀୟ ହୋଇଥିବା କୌଣସି ବିଷୟ ସଂପର୍କରେ କୌଣସି ନ୍ୟାୟାଳୟ (ଉଚ୍ଚତମ ନ୍ୟାୟାଳୟ ଭିନ୍ନ) ବା ଟ୍ରିବ୍ୟୁନାଲ କୌଣସି ଅଧିକାରିତା, କ୍ଷମତା ବା ପ୍ରାଧିକାର ପ୍ରୟୋଗ କରିବେ ନାହିଁ ।

(୮) ଯଦି ରାଷ୍ଟ୍ରପତି ସନ୍ତୁଷ୍ଟ ହୁଅନ୍ତି ଯେ ପ୍ରଶାସନିକ ଟ୍ରିବ୍ୟୁନାଲ ରହିବାର ଆବଶ୍ୟକତା ଆଉ ନାହିଁ ତାହାହେଲେ ରାଷ୍ଟ୍ରପତି ଆଦେଶ ଦେଇ ପ୍ରଶାସନିକ ଟ୍ରିବ୍ୟୁନାଲକୁ ଲୋପକରି ଦେଇ ପାରିବେ ଏବଂ ଏପରି ଲୋପ କରାଯିବା ପୂର୍ବରୁ ତହିଁରେ ଲମ୍ବିତ ଥିବା ମାମଲାମାନଙ୍କର ଅନ୍ତରଣ ଓ ଫଇସଲା ବିଷୟରେ ଯେପରି ଉଚିତ ମନେ କରିବେ ସେହିମତେ ଉକ୍ତ ଆଦେଶରେ ଉପବନ୍ଧ କରିପାରିବେ ।

(୯) କୌଣସି ନ୍ୟାୟାଳୟ, ଟ୍ରିବ୍ୟୁନାଲ ବା ଅନ୍ୟ କୌଣସି ପ୍ରାଧିକାରୀଙ୍କର ଯେ କୌଣସି ନିର୍ଣ୍ଣୟ, ଡ଼ିକ୍ରୀ ବା ଆଦେଶ ସତ୍ତ୍ୱେ——

(କ) କୌଣସି ବ୍ୟକ୍ତିଙ୍କର କୌଣସି ନିଯୁକ୍ତି, ଅବସ୍ଥାପନ, ପଦୋନ୍ନତି ବା ସ୍ଥାନାନ୍ତରଣ ଯାହାକି,–

(i) ନଭେମ୍ବର ପହିଲା ୧୯୫୬ ପୂର୍ବରୁ ସେହି ତାରିଖ ପୂର୍ବରୁ ବିଦ୍ୟମାନ ଥିବା ମତେ ହାଇଦ୍ରାବାଦ ରାଜ୍ୟ ସରକାର ଅଧୀନରେ ବା ତହିଁରେ ଥିବା କୌଣସି ସ୍ଥାନୀୟ ପ୍ରାଧିକାରୀଙ୍କ ଅଧୀନରେ ଥିବା କୌଣସି ପଦରେ ହୋଇଥାଏ, କିମ୍ବା

(ii) ସଂବିଧାନ (୩୨ଶ ସଂଶୋଧନ) ଅଧିନିୟମ, ୧୯୭୩ର ପ୍ରାରମ୍ଭ ପୂର୍ବରୁ ଆନ୍ଧ୍ରରାଜ୍ୟ ସରକାର ଅଧୀନରେ ବା ତହିଁରେ ଥିବା କୌଣସି ସ୍ଥାନୀୟ ବା ଅନ୍ୟ ପ୍ରାଧିକାରୀ ଅଧୀନରେ ଥିବା କୌଣସି ପଦରେ ହୋଇଥାଏ, ଏବଂ

(ଖ) ଉପଖଣ୍ଡ (କ)ରେ ଉଲ୍ଲିଖିତ କୌଣସି ବ୍ୟକ୍ତିଙ୍କ ଦ୍ୱାରା ବା ତାଙ୍କ ସମକ୍ଷରେ ଗ୍ରହଣ କରାଯାଇଥିବା କୌଣସି କାର୍ଯ୍ୟାନୁଷ୍ଠାନ ବା କରାଯାଇଥିବା କୌଣସି କାର୍ଯ୍ୟ,

କେବଳ ଏହି କାରଣରୁ ଅବୈଧ ବା ଶୂନ୍ୟ ଅଟେ ବୋଲି ବା କୌଣସି ସମୟରେ ଅବୈଧ ବା ଶୂନ୍ୟ ହୋଇଥିଲା ବୋଲି ବିବେଚିତ ହେବନାହିଁ ଯେ, ତତ୍‌ସମୟ ପ୍ରବୃତ୍ତ କୌଣସି ବିଧିରେ ସେପରି ନିଯୁକ୍ତି, ଅବସ୍ଥାପନ, ପଦୋନ୍ନତି ବା ସ୍ଥାନାନ୍ତରଣ ସମ୍ବନ୍ଧରେ ହୁଏତ ହାଇଦ୍ରାବାଦ ଭିତରେ ବା, ଯଥାସ୍ଥିତି, ଆନ୍ଧ୍ରପ୍ରଦେଶ ରାଜ୍ୟର କୌଣସି ଭାଗ ମଧ୍ୟରେ ବାସ କରୁଥିବାର ଯେଉଁ ଆବଶ୍ୟକତା ଉପବନ୍ଧିତ ହୋଇଅଛି ଉକ୍ତ ବ୍ୟକ୍ତିଙ୍କର ନିଯୁକ୍ତି, ଅବସ୍ଥାପନ, ପଦୋନ୍ନତି ବା ସ୍ଥାନାନ୍ତରଣ ତଦନୁଯାୟୀ ହୋଇନାହିଁ ।

(୧୦) ଏହି ସଂବିଧାନର ଅନ୍ୟ କୌଣସି ଉପବନ୍ଧରେ ବା ତତ୍‌ସମୟ ପ୍ରବୃତ୍ତ ଅନ୍ୟ କୌଣସି ବିଧିରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ ଏହି ଅନୁଚ୍ଛେଦର ଉପବନ୍ଧମାନ ଏବଂ ତଦଧୀନ ରାଷ୍ଟ୍ରପତିଙ୍କ ଦ୍ୱାରା କରାଯାଇଥିବା କୌଣସି ଆଦେଶ ପ୍ରଭାବୀ ହେବ ।

ଆନ୍ଧ୍ର ପ୍ରଦେଶରେ ଏକ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର ସ୍ଥାପନା ।

୩୭୧ । (ଙ) ସଂସଦ ବିଧିଦ୍ୱାରା ଆନ୍ଧ୍ରପ୍ରଦେଶ ରାଜ୍ୟରେ ଏକ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ସ୍ଥାପନ କରିପାରିବ ।

ସିକିମ ରାଜ୍ୟ ସଂପର୍କରେ ବିଶେଷ ଉପବନ୍ଧ ।

୩୭୧ । (ଚ) ସଂବିଧାନରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ,——

(କ) ସିକିମ ରାଜ୍ୟର ବିଧାନସଭା ଅନ୍ୟୂନ ତିରିଶ ଜଣ ସଦସ୍ୟଙ୍କୁ ନେଇ ଗଠିତ ହେବ;

(ଖ) ସଂବିଧାନ (୩୬ଶ ସଂଶୋଧନ) ଅଧିନିୟମ, ୧୯୭୫ର ପ୍ରାରମ୍ଭ ତାରିଖ ଠାରୁ (ଏହି ଅନୁଚ୍ଛେଦରେ ଏଥିପରେ ନିୟତ ଦିନ ରୂପେ ନିର୍ଦ୍ଦେଶିତ)——

(i) ସିକିମରେ ଏପ୍ରିଲ ୧୯୭୪ ରେ ହୋଇଥିବା ନିର୍ବାଚନ ଫଳରେ ଯେଉଁ ବିଧାନସଭା ସେହି ନିର୍ବାଚନରେ ନିର୍ବାଚିତ ବତିଶ ଜଣ ସଦସ୍ୟଙ୍କୁ ନେଇ (ଏଥିପରେ ଆସୀନ ସଦସ୍ୟ ରୂପେ ନିର୍ଦ୍ଦେଶିତ) ଗଠିତ ହୋଇଥିଲା ତାହା ଏହି ସଂବିଧାନ ଅଧୀନରେ ସିକିମର ସମ୍ୟକରୂପେ ଗଠିତ ବିଧାନସଭା ରୂପେ ବିବେଚିତ ହେବ ;

(୮) ଆସୀନ ସଦସ୍ୟମାନେ ସଂବିଧାନ ଅଧୀନରେ ସିକିମ ରାଜ୍ୟ ବିଧାନ ସଭାର ସମ୍ୟକ ରୂପେ ନିର୍ବାଚିତ ସଦସ୍ୟ ରୂପେ ବିବେଚିତ ହେବେ ;

(୯) ସିକିମ ରାଜ୍ୟର ଉକ୍ତ ବିଧାନ ସଭା ସଂବିଧାନ ଅଧୀନରେ ଏକ ରାଜ୍ୟ ବିଧାନ ସଭାର କ୍ଷମତା ପ୍ରୟୋଗ କରିବ ଓ କୃତ୍ୟ ପାଳନ କରିବ ;

(ଗ) ଖଣ୍ଡ (ଖ) ଅଧୀନରେ ସିକିମ ରାଜ୍ୟ ବିଧାନ ସଭା ରୂପେ ବିବେଚିତ ହେଉଥିବା ବିଧାନ ସଭା କ୍ଷେତ୍ରରେ ଅନୁଚ୍ଛେଦ ୧୭୨ର ଖଣ୍ଡ (୧) ରେ ପାଞ୍ଚବର୍ଷ କାଳାବଧି ପାଇଁ ଥିବା ନିର୍ଦ୍ଦେଶ ଚାରିବର୍ଷ କାଳାବଧି ପାଇଁ ନିର୍ଦ୍ଦେଶ ଅଟେ ବୋଲି ବୁଝାଯିବ ଏବଂ ଉକ୍ତ ଚାରିବର୍ଷ କାଳାବଧି ନିୟତ ଦିନଠାରୁ ଆରମ୍ଭ ହେଲା ବୋଲି ବିବେଚିତ ହେବ ।

(ଘ) ସଂସଦ କର୍ତ୍ତୃକ ବିଧି ଦ୍ୱାରା ଅନ୍ୟାନ୍ୟ ଉପବନ୍ଧ ପ୍ରଣୀତ ହେବା ପର୍ଯ୍ୟନ୍ତ ଲୋକସଭାରେ ଗୋଟିଏ ସ୍ଥାନ ସିକିମ ରାଜ୍ୟ ପ୍ରତି ଆବର୍ଣ୍ଟିତ ହେବ ଏବଂ ସିକିମ ରାଜ୍ୟ ଗୋଟିଏ ସଂସଦୀୟ ନିର୍ବାଚନ କ୍ଷେତ୍ରରେ ଗଠିତ ହେବ ଓ ତାହା ସିକିମ ସଂସଦୀୟ ନିର୍ବାଚନ କ୍ଷେତ୍ର ନାମରେ ଅଭିହିତ ହେବ ;

(ଙ) ନିୟତ ଦିନରେ ବିଦ୍ୟମାନ ଥିବା ଲୋକସଭାରେ ସିକିମ ରାଜ୍ୟର ପ୍ରତିନିଧି ସିକିମ ରାଜ୍ୟ ବିଧାନ ସଭାର ସଦସ୍ୟମାନଙ୍କ ଦ୍ୱାରା ନିର୍ବାଚିତ ହେବେ ;

(ଚ) ସଂସଦ ସିକିମର ବିଭିନ୍ନ ବର୍ଗର ଲୋକଙ୍କ ଅଧିକାର ଓ ହିତରକ୍ଷା କରିବା ପ୍ରୟୋଜନରେ ସିକିମ ରାଜ୍ୟ ବିଧାନ ସଭାରେ ସେହି ବର୍ଗବିଶିଷ୍ଟ କେତେ ପ୍ରାର୍ଥୀ ରହିବେ ତାହାର ସଂଖ୍ୟା ନିମିତ୍ତ ଏବଂ ସିକିମ ରାଜ୍ୟ ବିଧାନସଭାକୁ ଯେଉଁ ନିର୍ବାଚନ କ୍ଷେତ୍ରମାନଙ୍କରୁ କେବଳ ଏହି ସବୁବର୍ଗ ବିଶିଷ୍ଟ ବ୍ୟକ୍ତିମାନେ ଠିଆ ହୋଇପାରିବେ ସେହି ନିର୍ବାଚନ କ୍ଷେତ୍ର ମାନଙ୍କର ପରିସୀମନ ନିମିତ୍ତ ଉପବନ୍ଧ କରିପାରିବେ ;

(ଛ) ସିକିମର ଶାନ୍ତି ନିମିତ୍ତ ଏବଂ ତାହାର ବିଭିନ୍ନ ବର୍ଗର ବ୍ୟକ୍ତିମାନଙ୍କର ସାମାଜିକ ଓ ଆର୍ଥିକ ସମୁନ୍ନତି ସୁନିଶ୍ଚିତ କରିବା ପାଇଁ ଏକ ନ୍ୟାଯ୍ୟ ବ୍ୟବସ୍ଥା କରିବା ନିମିତ୍ତ ସିକିମ ରାଜ୍ୟପାଳଙ୍କର ବିଶେଷ ଦାୟିତ୍ୱ ରହିବ ଏବଂ ଏହି ଖଣ୍ଡ ଅଧୀନରେ ବିଶେଷ ଦାୟିତ୍ୱ ନିର୍ବାହ କରିବା ବେଳେ ସିକିମ ରାଜ୍ୟପାଳ ବା ରାଷ୍ଟ୍ରପତି ବିଭିନ୍ନ ସମୟରେ ଯେଉଁ ସବୁ ନିର୍ଦ୍ଦେଶ ଦେବା ସମୀଚୀନ ମନେ କରିବେ ତାହାର ବଶବର୍ତ୍ତୀ ରହି ସ୍ୱବିବେକାନୁସାରେ କାର୍ଯ୍ୟ କରିବେ ;

(ଜ) ସିକିମ ସରକାରଙ୍କ ପ୍ରୟୋଜନ ନିମିତ୍ତ ନିୟତ ଦିନର ଅବ୍ୟବହିତ ପୂର୍ବରୁ ସିକିମ ସରକାରଙ୍କଠାରେ ବା ଅନ୍ୟ କୌଣସି ପ୍ରାଧିକାରୀଙ୍କଠାରେ ବା ଅନ୍ୟ ବ୍ୟକ୍ତିଠାରେ ନିହିତ ହୋଇଥିବା ସମସ୍ତ ସଂପତ୍ତି ଓ ଆସ୍ତି (ତାହା ସିକିମ ରାଜ୍ୟରେ ସମାବିଷ୍ଟ ରାଜ୍ୟକ୍ଷେତ୍ର ଭିତରେ ଥାଉ ବା ବାହାରେ ଥାଉ) ନିୟତ ଦିନଠାରୁ ସିକିମ ରାଜ୍ୟ ସରକାରଙ୍କ ଠାରେ ନିହିତ ହେବ ;

(ଝ) ଯେଉଁ ଉଚ୍ଚ ନ୍ୟାୟାଳୟ ନିୟତ ଦିନର ଅବ୍ୟବହିତ ପୂର୍ବରୁ ସିକିମ ରାଜ୍ୟରେ ସମାବିଷ୍ଟ ରାଜ୍ୟ କ୍ଷେତ୍ର ମଧ୍ୟରେ ସେ ରୂପେ କାର୍ଯ୍ୟ କରୁଥାଏ ସେହି ନ୍ୟାୟାଳୟ ନିୟତ ଦିନ ଓ ତତ୍‌ପରେ ସିକିମ ରାଜ୍ୟର ଉଚ୍ଚ ନ୍ୟାୟାଳୟ ରୂପେ ବିବେଚିତ ହେବ ;

(ଞ) ସିକିମ ରାଜ୍ୟର ସମସ୍ତ ରାଜ୍ୟକ୍ଷେତ୍ର ମଧ୍ୟରେ ଥିବା ସିଭିଲ, କ୍ରିମିନାଲ ଓ ରାଜସ୍ୱ ଅଧିକାରିତା— ସଂପର୍କ ସମସ୍ତ ନ୍ୟାୟାଳୟ, ସମସ୍ତ ନ୍ୟାୟିକ କାର୍ଯ୍ୟପାଳିକା ଓ ଅନୁସଚିବୀୟ ପ୍ରାଧିକାରୀ ଓ ଅଧିକାରୀ ନିୟତ ଦିନ ଓ ତତ୍‌ପରେ ସେମାନଙ୍କର ନିଜ ନିଜ କୃତ୍ୟ ସଂବିଧାନର ଉପବନ୍ଧମାନଙ୍କର ବଶବର୍ତ୍ତୀ ହୋଇ ସଂପାଦନ କରିବେ ;

(ଟ) ନିୟତ ଦିନର ଅବ୍ୟବହିତ ପୂର୍ବରୁ ସିକିମ ରାଜ୍ୟରେ ସମାବିଷ୍ଟ ରାଜ୍ୟକ୍ଷେତ୍ରମାନଙ୍କରେ ବା ତାହାର କୌଣସି ଭାଗରେ ପ୍ରବୃତ୍ତ ସମସ୍ତ ବିଧି ଏକ ସକ୍ଷମ ବିଧାନସଭା ଦ୍ୱାରା ବା ଅନ୍ୟ ସକ୍ଷମ ପ୍ରାଧିକାରୀ ଦ୍ୱାରା ସଂଶୋଧିତ ବା ନିରସିତ ନହେବା ପର୍ଯ୍ୟନ୍ତ ତହିଁରେ ପ୍ରବୃତ୍ତ ହୋଇ ରହିବ ;

(ଠ) ଖଣ୍ଡ (ଟ) ରେ ନିର୍ଦ୍ଦେଶିତ ହୋଇଥିବା ମତେ କୌଣସି ବିଧିକୁ ସିକିମ ରାଜ୍ୟର ପ୍ରଶାସନ ସଂପର୍କରେ ଲାଗୁ କରାଇବା ସୁଗମ କରାଇବା ପ୍ରୟୋଜନରେ ଏବଂ ସେପରି କୌଣସି ବିଧିର ଉପବନ୍ଧମାନଙ୍କୁ ସଂବିଧାନର ଉପବନ୍ଧମାନଙ୍କ ସହିତ ସଂହତ କରାଇବା ପ୍ରୟୋଜନରେ ରାଷ୍ଟ୍ରପତି ନିୟତ ଦିନଠାରୁ ଦୁଇବର୍ଷ ମଧ୍ୟରେ ଆଦେଶ ଦ୍ୱାରା ହୁଏତ ନିରସନ ଆକାରରେ ବା ସଂଶୋଧନ ଆକାରରେ ଆବଶ୍ୟକ ବା ସମୀଚୀନ ମନେ ହେବା ମତେ ସେହି ବିଧିର ଅନୁକୂଳନ ବା ରୂପାନ୍ତରଣ କରି ପାରିବେ ଏବଂ ତପରେ ସେପରି ପ୍ରତ୍ୟେକ ବିଧି ସେପରି କରାଯାଇଥିବା ଅନୁକୂଳନ ବା ରୂପାନ୍ତରଣର ବଶବର୍ତ୍ତୀ ହୋଇ ପ୍ରଭାବୀ ହେବ ଏବଂ ସେପରି କୌଣସି ଅନୁକୂଳନ ବା ରୂପାନ୍ତରଣ ସମ୍ପର୍କରେ କୌଣସି ନ୍ୟାୟାଳୟରେ ଆପତ୍ତି କରାଯିବ ନାହିଁ ;

(ଡ) ନିୟତ ଦିନ ପୂର୍ବରୁ ସିକିମ ସଂପର୍କରେ ଯେଉଁ ସନ୍ଧି, କରାର ବା ବଚନବଂଧ କରାଯାଇଥିବ ଏବଂ ଯହିଁରେ କି ଭାରତ ସରକାର ବା ତାହାର କୌଣସି ପୂର୍ବବର୍ତ୍ତୀ ସରକାର ଏକ ପକ୍ଷ ଥିବେ ତହିଁରୁ ଉଦ୍‌ଭୂତ କୌଣସି ବିବାଦ ବା ଅନ୍ୟ ବିଷୟରେ ଉଚ୍ଚତମ ନ୍ୟାୟାଳୟର ବା ଅନ୍ୟ କୌଣସି ନ୍ୟାୟାଳୟର କୌଣସି ଅଧିକାରିତା ରହିବ ନାହିଁ, କିନ୍ତୁ ଏହି ଖଣ୍ଡରେ ଥିବା କୌଣସି ବିଷୟ ଅନୁଚ୍ଛେଦ ୧୪୩ର ଉପବନ୍ଧମାନଙ୍କୁ ନ୍ୟୂନ କରୁଅଛି ବୋଲି ଅର୍ଥ କରାଯିବ ନାହିଁ ;

(ଢ) ବିଜ୍ଞପ୍ତି ତାରିଖରେ ଭାରତର କୌଣସି ରାଜ୍ୟରେ ପ୍ରବୃତ୍ତ ଥିବା ଯେ କୌଣସି ଅଧିନିୟମିତିକୁ ରାଷ୍ଟ୍ରପତି ଯେପରି ଉଚିତ ମନେକରିବେ ସେପରି ନିର୍ବଂଧନ ବା ରୂପାନ୍ତରଣ ସହ ସାଧାରଣ ବିଜ୍ଞପ୍ତି ଦ୍ୱାରା ସିକିମ ରାଜ୍ୟ ପ୍ରତି ପ୍ରସାରିତ କରିପାରିବେ ;

(ଣ) ଯଦି ଏହି ଅନୁଚ୍ଛେଦର ପୂର୍ବଗାମୀ ଉପବନ୍ଧମାନଙ୍କ ମଧ୍ୟରୁ କୌଣସିଟିକୁ ପ୍ରଭାବୀ କରାଇବାରେ କୌଣସି ଅସୁବିଧା ଉପୁଯେ ତାହା ହେଲେ ରାଷ୍ଟ୍ରପତି ସେହି ଅସୁବିଧା ଦୂର କରିବା ପ୍ରୟୋଜନରେ (ଅନ୍ୟ କୌଣସି ଅନୁଚ୍ଛେଦର ଅନୁକୂଳନ ବା ରୂପାନ୍ତରଣ ସମେତ) ଯାହା କରାଯିବା ଆବଶ୍ୟକ ମନେ କରିବେ ଆଦେଶ ଦ୍ୱାରା ତାହା କରିପାରିବେ

ପରନ୍ତୁ ନିୟତ ଦିନଠାରୁ ଦୁଇବର୍ଷ ଗତ ହେବା ପରେ ସେପରି କୌଣସି ଆଦେଶ ଦିଆଯିବ ନାହିଁ ;

(ତ) ନିୟତ ଦିନଠାରୁ ଆରମ୍ଭ ହୋଇଥିବା ଓ ସଂବିଧାନ (୩୬ଶ ସଂଶୋଧନ) ଅଧିନିୟମ, ୧୯୭୫ ରାଷ୍ଟ୍ରପତିଙ୍କ ସ୍ୱୀକୃତି ପାଇବା ତାରିଖର ଅବବ୍ୟହିତ ପୂର୍ବରୁ ଶେଷ ହେଉଥିବା କାଳାବଧି ମଧ୍ୟରେ ସିକିମ ରାଜ୍ୟରେ ବା ତହିଁରେ ସମାବିଷ୍ଟ ରାଜ୍ୟକ୍ଷେତ୍ରମାନଙ୍କରେ କିମ୍ବା ତତ୍‌ସଂପର୍କରେ କରାଯାଇଥିବା ସମସ୍ତ କାର୍ଯ୍ୟ ବା ଗ୍ରହଣ କରାଯାଇଥିବା ସମସ୍ତ କାର୍ଯ୍ୟାନୁଷ୍ଠାନ ଯେଉଁ ପର୍ଯ୍ୟନ୍ତ ସଂବିଧାନ (୩୬)ଶ ସଂଶୋଧନ) ଅଧିନିୟମ, ୧୯୭୫ ଦ୍ୱାରା ସଂଶୋଧିତ ହୋଇଥିବା ମତେ ଏହି ସଂବିଧାନର ଉପବନ୍ଧମାନଙ୍କ ଅନୁରୂପ ହୋଇଥିବ ସେହି ପର୍ଯ୍ୟନ୍ତ ତାହା ସମସ୍ତ ପ୍ରୟୋଜନ ନିମିତ୍ତ ଏ ରୂପେ ସଂଶୋଧିତ ହୋଇଥିବା ମତେ ସଂବିଧାନ ଅଧୀନରେ ବୈଧ ରୂପେ କରାଯାଇଅଛି ବା ଗ୍ରହଣ କରାଯାଇଅଛି ବୋଲି ବିବେଚିତ ହେବ,

ବିଦ୍ୟମାନ ବିଧିମାନ ପ୍ରବୃତ୍ତ ରହିବା ଏବଂ ସେମାନଙ୍କର ଅନୁକୂଳନ ।

୩୭୨ । (୧) ଅନୁଚ୍ଛେଦ ୩୯୫ରେ ନିର୍ଦ୍ଦିଷ୍ଟ ଅଧିନିୟମ ଏହି ସଂବିଧାନ ଦ୍ୱାରା ନିରସିତ ହୋଇଥିବା ସତ୍ତ୍ୱେ, ଏହି ସଂବିଧାନର ଅନ୍ୟ ଉପବଂଧମାନଙ୍କର ବଶବର୍ତ୍ତୀ ରହି, ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତ ରାଜ୍ୟକ୍ଷେତ୍ରରେ ପ୍ରବୃତ୍ତ ଥିବା ସମସ୍ତ ବିଧି ସକ୍ଷମ ବିଧାନମଣ୍ଡଳ ଦ୍ୱାରା ବା ଅନ୍ୟ ସକ୍ଷମ ପ୍ରାଧିକାରୀ ଦ୍ୱାରା ପରିବର୍ତ୍ତିତ ବା ନିରସିତ ବା ସଂଶୋଧିତ ନ ହେବା ପର୍ଯ୍ୟନ୍ତ ତନ୍ମଧ୍ୟରେ ପ୍ରବର୍ତ୍ତମାନ ରହିଥିବ ।

(୨) ଭାରତ ରାଜ୍ୟକ୍ଷେତ୍ରରେ ପ୍ରବର୍ତ୍ତମାନ କୌଣସି ବିଧିର ଉପବନ୍ଧମାନଙ୍କୁ ଏହି ସଂବିଧାନର ଉପବନ୍ଧମାନଙ୍କ ସହିତ ସଙ୍ଗତ କରିବା ପ୍ରୟୋଜନାର୍ଥ, ରାଷ୍ଟ୍ରପତି ଆଦେଶ ଦ୍ୱାରା ସେହିବିଧିର, ନିରସନ ଭାବରେ ହେଉ ବା ସଂଶୋଧନ ଭାବରେ ହେଉ, ଯେପରି ଆବଶ୍ୟକ ବା ଇଷ୍ଟକର ହେବ, ସେପରି ଅନୁକୂଳନ ଓ ରୂପାନ୍ତରଣ କରି ପାରିବେ ଏବଂ ଆଦେଶରେ ଯେପରି ବିନିର୍ଦ୍ଦିଷ୍ଟ ହେବ ସେପରି ତାରିଖଠାରୁ ସେପରି କରାଯାଇଥିବା ଅନୁକୂଳନ ଓ ରୂପାନ୍ତରଣର ବଶବର୍ତ୍ତୀ ହୋଇ ସେହିବିଧି ପ୍ରଭାବୀ ହେବା ଲାଗି ଉପବନ୍ଧ କରି ପାରିବେ ଏବଂ ଏପରି କୌଣସି ଅନୁକୂଳନ ବା ରୂପାନ୍ତରଣ ଉପରେ କୌଣସି ନ୍ୟାୟାଳୟରେ ଆପତ୍ତି କରାଯିବ ନାହିଁ ।

(୩) ଖଣ୍ଡ (୨)ର କୌଣସି ବିଷୟ,

(କ) ଏହି ସଂବିଧାନ ପ୍ରାରମ୍ଭରୁ ତିନିବର୍ଷ ଅବସାନ ପରେ କୌଣସି ବିଧିର କୌଣସି ଅନୁକୂଳନ ବା ରୂପାନ୍ତରଣ କରିବା ପାଇଁ ରାଷ୍ଟ୍ରପତିଙ୍କୁ କ୍ଷମତା ପ୍ରଦାନ କରୁଅଛି ବୋଲି, କିମ୍ବା

(ଖ) ଉକ୍ତ ଖଣ୍ଡ ଅଧୀନରେ ରାଷ୍ଟ୍ରପତିଙ୍କ ଦ୍ୱାରା ଅନୁକୂଳନ ବା ରୂପାନ୍ତରଣ କରାଯାଇଥିବା କୌଣସି ବିଧିର ନିରସନ ବା ସଂଶୋଧନ କରିବାରେ କୌଣସି ସକ୍ଷମ ବିଧାନମଣ୍ଡଳକୁ ବା ଅନ୍ୟ ସକ୍ଷମ ପ୍ରାଧୀକାରୀଙ୍କୁ ବାଧା ଦେଉଅଛି ବୋଲି,

ବିବେଚିତ ହେବନାହିଁ ।

ସ୍ପଷ୍ଟୀକରଣ ୧ :—ଏହି ସଂବିଧାନ ପ୍ରାରମ୍ଭର ପୂର୍ବରୁ ଭାରତ ରାଜ୍ୟକ୍ଷେତ୍ର ମଧ୍ୟରେ କୌଣସି ବିଧାନ ମଣ୍ଡଳ ଦ୍ୱାରା ବା ଅନ୍ୟ ସକ୍ଷମ ପ୍ରାଧୀକାରୀ ଦ୍ୱାରା ପାରିତ ବା ପ୍ରଣୀତ ଏବଂ ପୂର୍ବରୁ ନିରସିତ ହୋଇ ନ ଥିବା କୌଣସି ବିଧି କିମ୍ବା ତାହାର କୌଣସି ଭାଗ ସେ ସମୟରେ ପୂର୍ଣ୍ଣତଃ ବା କୌଣସି ବିଶିଷ୍ଟ କ୍ଷେତ୍ରରେ ପ୍ରବର୍ତ୍ତମାନ ନ ଥିବା ସତ୍ତ୍ୱେ ସେହିବିଧି ଏହି ଅନୁଚ୍ଛେଦର "ପ୍ରବୃତ୍ତ ବିଧି" ପଦାବଳୀ ମଧ୍ୟରେ ଅନ୍ତର୍ଗତ ହେବ ।

ସ୍ପଷ୍ଟୀକରଣ ୨ :—ଭାରତ ରାଜ୍ୟ କ୍ଷେତ୍ରରେ କୌଣସି ବିଧାନମଣ୍ଡଳ ଦ୍ୱାରା ବା ଅନ୍ୟ ସକ୍ଷମ ପ୍ରାଧିକାରୀ ଦ୍ୱାରା ପାରିତ ବା ପ୍ରଣୀତ ଯେଉଁ ବିଧିର ଏହି ସଂବିଧାନ ପ୍ରାରମ୍ଭ ପୂର୍ବରୁ ଭାରତ ରାଜ୍ୟ କ୍ଷେତ୍ର ମଧ୍ୟରେ ପ୍ରଭାବ ତଥା ରାଜ୍ୟକ୍ଷେତ୍ରାତୀତ ପ୍ରଭାବ ଥିଲା ପୂର୍ବୋକ୍ତ କୌଣସି ଅନୁକୂଳନ ଓ ରୂପାନ୍ତରଣର ବଶବର୍ତ୍ତୀ ହୋଇ ତାହାର ସେହିପରି ରାଜ୍ୟକ୍ଷେତ୍ରାତୀତ ପ୍ରଭାବ ପ୍ରଚଳିତ ରହିବ ।

ସ୍ପଷ୍ଟୀକରଣ ୩ :—ଏହି ଅନୁଚ୍ଛେଦର କୌଣସି ବିଷୟ କୌଣସି ପ୍ରବୃତ୍ତ ଅସ୍ଥାୟୀ ବିଧିକୁ ତାହାର ଅବସାନ ଲାଗି ନିୟତ ତାରିଖ ପରେ ବା ଏହି ସଂବିଧାନ ପ୍ରବର୍ତ୍ତମାନ କରାଯାଇ ନ ଥିଲେ ଯେଉଁ ତାରିଖରେ ତାହାର ଅବସାନ ହୋଇଥାନ୍ତା ସେହି ତାରିଖ ପରେ ପ୍ରବର୍ତ୍ତମାନ ରଖିଅଛି ବୋଲି ଅର୍ଥ କରାଯିବ ନାହିଁ ।

ସ୍ପଷ୍ଟୀକରଣ ୪:—କୌଣସି ପ୍ରଦେଶର ରାଜ୍ୟପାଳଙ୍କ ଦ୍ୱାରା ଭାରତ ଶାସନ ଅଧିନିୟମ, ୧୯୩୫ର ଧାରା ୮୮ ଅଧୀନରେ ମୁଖ୍ୟାପିତ ଏବଂ ଏହି ସଂବିଧାନ ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ପ୍ରବୃତ୍ତ ଅର୍ଡିନାନ୍ସ ତତ୍‌ସ୍ଥାନୀ ରାଜ୍ୟର ରାଜ୍ୟପାଳଙ୍କ ଦ୍ୱାରା ପୂର୍ବରୁ ପ୍ରତ୍ୟାହୃତ ହୋଇ ନ ଥିଲେ ଏହି ପ୍ରାରମ୍ଭ ପରେ ଅନୁଚ୍ଛେଦ ୩୮୨ର ଖଣ୍ଡ (୧) ଅଧୀନରେ କୃତ୍ୟ ସଂପାଦନ କରୁଥିବା ସେହି ରାଜ୍ୟର ବିଧାନ ସଭାର ପ୍ରଥମ ଅଧିବେଶନ ଠାରୁ ଛଅ ସପ୍ତାହ ଅବସାନରେ ପ୍ରବର୍ତ୍ତମାନ ହେବାରୁ ରହିତ ହେବ ଏବଂ ଏହି ଅନୁଚ୍ଛେଦର କୌଣସି ବିଷୟ ଏପରି କୌଣସି ଅର୍ଡିନାନ୍ସକୁ ଉକ୍ତ କାଳାବଧିର ପରେ ପ୍ରବର୍ତ୍ତମାନ ରଖିଅଛି ବୋଲି ଅର୍ଥ କରାଯିବ ନାହିଁ ।

ବିଧିମାନଙ୍କର ଅନୁକୂଳନପାଇଁ ରାଷ୍ଟ୍ରପତିଙ୍କର କ୍ଷମତା ।

୩୭୨ କ । (୧) ସଂବିଧାନ (୭ମ ସଂଶୋଧନ) ଅଧିନିୟମ, ୧୯୫୬ର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତରେ ବା ତାହାର କୌଣସି ଭାଗରେ ବିଧିର ଉପବନ୍ଧମାନଙ୍କୁ ସେହି ଅଧିନିୟମ ଦ୍ୱାରା ଯଥା ସଂଶୋଧିତ ଏହି ସଂବିଧାନର ଉପବନ୍ଧମାନଙ୍କ ସହିତ ସଂଗତ କରିବା ପ୍ରୟୋଜନରେ ରାଷ୍ଟ୍ରପତି ୧୯୫୭ ନଭେମ୍ବର ପହିଲା ପୂର୍ବରୁ କରାଯିବା ଆଦେଶ ଦ୍ୱାରା ଯେପରି ଆବଶ୍ୟକ ବା ଇଷ୍ଟକର ହେବ ସେହିମତେ ବିଧିର ଅନୁକୂଳନ ଓ ରୂପାନ୍ତରଣ, ହୁଏତ ନିରସନ ଦ୍ୱାରା ବା ସଂଶୋଧନ ଦ୍ୱାରା କରି ପାରିବେ, ଏବଂ ତହିଁରେ ଉପବନ୍ଧିତ କରି ପାରିବେ ଯେ ଆଦେଶରେ ଯେଉଁ ତାରିଖ ବିନିର୍ଦ୍ଦିଷ୍ଟ ହେବ ସେହି ବିଧି ସେହି ତାରିଖଠାରୁ ଏ ରୂପେ କରାଯାଇଥିବା ଅନୁକୂଳନ ଓ ରୂପାନ୍ତରଣ ମାନଙ୍କର ବଶବର୍ତ୍ତୀ ରହି ପ୍ରଭାବୀ ହେବ ଏବଂ ଏପରି କୌଣସି ଅନୁକୂଳନ ବା ରୂପାନ୍ତରଣ ଉପରେ କୌଣସି ନ୍ୟାୟାଳୟରେ ଆପତ୍ତି କରାଯିବ ନାହିଁ ।

(୨) ଖଣ୍ଡ (୧) ରେ ଥିବା କୌଣସି ବିଷୟ କୌଣସି ସକ୍ଷମ ବିଧାନମଣ୍ଡଳ ବା ଅନ୍ୟ ସକ୍ଷମ ପ୍ରାଧିକାରୀଙ୍କୁ ରାଷ୍ଟ୍ରପତିଙ୍କ ଦ୍ୱାରା ଉକ୍ତ ଖଣ୍ଡ ଅଧୀନରେ ଅନୁକୂଳନ ବା ରୂପାନ୍ତରଣ କରାଯାଇଥିବା କୌଣସି ବିଧିକୁ ନିରସିତ ବା ସଂଶୋଧିତ କରିବାକୁ ବାରଣ କରୁଅଛି ବୋଲି ବୁଝାଯିବ ନାହିଁ ।

ନିବାରକ ନିରୋଧରେ ରଖାଯାଇଥିବା ବ୍ୟକ୍ତିମାନଙ୍କ ବିଷୟରେ କେତେକ ସ୍ଥଳରେ ଆଦେଶ ଦେବା ଲାଗି ରାଷ୍ଟ୍ରପତିଙ୍କର କ୍ଷମତା ।

୩୭୩ । ଅନୁଚ୍ଛେଦ ୨୨ର ଖଣ୍ଡ (୭) ଅଧୀନରେ ସଂସଦ ଦ୍ୱାରା ଉପବନ୍ଧ କରାଯିବା ବା ଏହି ସଂବିଧାନ ପ୍ରାରମ୍ଭଠାରୁ ଏକବର୍ଷ ଅବସାନ ହେବା, ଏଥିମଧ୍ୟରୁ ଯେଉଁଟି ପୂର୍ବରୁ ପଡୁଥିବ ତାହା ନ ହେଲା ପର୍ଯ୍ୟନ୍ତ ଉକ୍ତ ଅନୁଚ୍ଛେଦ ଏପରି ପ୍ରଭାବୀ ହେବ ଯେପରି କି ତାହାର ଖଣ୍ଡ (୪) ଓ ଖଣ୍ଡ (୭)ରେ ସଂସଦ ପ୍ରତି କୌଣସି ନିର୍ଦ୍ଦେଶ ସ୍ଥଳେ ରାଷ୍ଟ୍ରପତିଙ୍କ ପ୍ରତି ନିର୍ଦ୍ଦେଶ ସ୍ଥାନାପନ୍ନ ହୋଇଅଛି ଏବଂ ସେହି ଖଣ୍ଡମାନଙ୍କରେ ସଂସଦ ଦ୍ୱାରା ପ୍ରଣୀତ କୌଣସି ବିଧିପ୍ରତି ନିର୍ଦ୍ଦେଶ ସ୍ଥଳେ ରାଷ୍ଟ୍ରପତିଙ୍କ ଦ୍ୱାରା ପ୍ରଣୀତ ଆଦେଶ ସ୍ଥାନାପନ୍ନ ହୋଇଅଛି ।

ଫେଡେରାଲ ନ୍ୟାୟାଳୟର ନ୍ୟାୟାଧୀଶ-ମାନଙ୍କ ସଂବଂଧରେ ଏବଂ ଫେଡେରାଲ ନ୍ୟାୟାଳୟରେ ବା ସପରିଷଦ ସମ୍ରାଟଙ୍କ ସମକ୍ଷରେ ଲମ୍ବିତ କାର୍ଯ୍ୟବାହୀ-ମାନଙ୍କ ସଂବଧରେ ଉପବଂଧ ।

୩୭୪ । (୧) ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ପଦଧାରଣ କରୁଥିବା ଫେଡ଼େରାଲ ନ୍ୟାୟାଳୟର ନ୍ୟାୟାଧୀଶମାନେ ଅନ୍ୟଥା ନିର୍ବାଚନ କରି ନ ଥିଲେ ଏପରି ପ୍ରାରମ୍ଭରେ ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶ ହୋଇଯିବେ ଏବଂ ତତ୍‌ପରେ ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶମାନଙ୍କ ସଂବନ୍ଧରେ ଅନୁଚ୍ଛେଦ ୧୨୫ ଅଧୀନରେ ଯେପରି ଉପବନ୍ଧିତ ହୋଇଅଛି ସେପରି ବେତନ ଓ ଭତ୍ତା ନିମିତ୍ତ ଏବଂ ଅନୁପସ୍ଥିତି ଛୁଟୀ ଓ ପେନ୍‌ସନ ବିଷୟରେ ସେପରି ଅଧିକାର ନିମିତ୍ତ ହକ୍‌ଦାର ହେବେ ।

(୨) ଏହି ସଂବିଧାନ ପ୍ରାରମ୍ଭରେ ଫେଡ଼େରାଲ ନ୍ୟାୟାଳୟରେ ଲମ୍ବିତଥିବା ସମସ୍ତ ସିଭିଲ ବା କ୍ରିଲନାମି ମୋକଦମା, ଅପିଲ ଓ କାର୍ଯ୍ୟବାହୀ ଉଚ୍ଚତମ ନ୍ୟାୟାଳୟଠାରେ ନିହିତ ହୋଇଯିବ ଏବଂ ଉଚ୍ଚତମ ନ୍ୟାୟାଳୟର ସେ ସବୁ ଶୁଣିବା ଲାଗି ଓ ନିର୍ଦ୍ଧାରଣ କରିବା ଲାଗି ଅଧିକାରିତା ରହିବ ଏବଂ ଏହି ସଂବିଧାନର ପ୍ରାରମ୍ଭ ପୂର୍ବରୁ ଦିଆଯାଇଥିବା ବା କରାଯାଇଥିବା ନିର୍ଣ୍ଣୟ ଓ ଆଦେଶ ସେହିପରି ପ୍ରବର୍ତ୍ତମାନ ଓ ପ୍ରଭାବୀ ହେବ ଯେପରି କି ସେ ସବୁ ଉଚ୍ଚତମ ନ୍ୟାୟାଳୟ ଦ୍ୱାରା ଦିଆଯାଇଅଛି ବା କରାଯାଇଅଛି ।

(୩) ଭାରତ ରାଜ୍ୟକ୍ଷେତ୍ର ମଧ୍ୟରେ କୌଣସି ନ୍ୟାୟାଳୟର କୌଣସି ନିର୍ଣ୍ଣୟ, ଡ଼ିକ୍ରୀ ବା ଆଦେଶରୁ କିମ୍ବା ସେ ସବୁ ସମ୍ବନ୍ଧରେ, ଅପିଲ ଓ ଅର୍ଜିମାନ ଫଏସଲ କରିବା ନିମିତ୍ତ ସପରିଷଦ ସମ୍ରାଟଙ୍କର ଅଧିକାରିତା ର ପ୍ରୟୋଗ ଯେଉଁ ପର୍ଯ୍ୟନ୍ତ ବିଧିଦ୍ୱାରା ପ୍ରାଧିକୃତ ହୋଇଥିବ ସେହି ମାତ୍ରାପର୍ଯ୍ୟନ୍ତ ସଂବିଧାନରେ ଥିବା କୌଣସି ବିଷୟ ଏପରି ଅଧିକାରିତାର ପ୍ରୟୋଗକୁ ଅବିଧିମାନ୍ୟ କରିବ ନାହିଁ ଏବଂ ଏପରି କୌଣସି ଅପିଲ ବା ଅର୍ଜି ଉପରେ ଏହି ସଂବିଧାନ ପ୍ରାରମ୍ଭର ପରେ ଦିଆଯାଇଥିବା ସପରିଷଦ ସମ୍ରାଟଙ୍କର କୌଣସି ଆଦେଶ ସମସ୍ତ ପ୍ରୟୋଜନ ଲାଗି ଏପରି ପ୍ରଭାବୀ ହେବ ଯେପରିକି ତାହା ଉଚ୍ଚତମ ନ୍ୟାୟାଳୟ କର୍ତ୍ତୃକ ଏହି ସଂବିଧାନ ଦ୍ୱାରା ସେହି ନ୍ୟାୟାଳୟକୁ ପ୍ରଦତ୍ତ ଅଧିକାରିତା ପ୍ରୟୋଗରେ ଦିଆଯାଇଥିବା କୌଣସି ଆଦେଶ ବା ଡ଼ିକ୍ରୀ ଅଟେ ।

(୪) ଏହି ସଂବିଧାନର ପ୍ରାରମ୍ଭରେ ଏବଂ ତତ୍‌ପରେ ପ୍ରଥମ ଅନୁସୂଚୀର ଭାଗ (ଖ) ରେ ବିନିର୍ଦ୍ଦିଷ୍ଟ କୌଣସି ରାଜ୍ୟରେ ପ୍ରିଭି କାଉନ୍‌ସିଲ ରୂପେ କୃତ୍ୟ ସଂପାଦନ କରୁଥିବା ପ୍ରାଧିକାରୀଙ୍କର ସେହି ରାଜ୍ୟ ମଧ୍ୟସ୍ଥ କୌଣସି ନ୍ୟାୟାଳୟର କୌଣସି ନିର୍ଣ୍ଣୟ, ଡ଼ିକ୍ରୀ ବା ଆଦେଶଉପରେ କିମ୍ବା ସେ ସବୁ ସମ୍ବନ୍ଧରେ ଅପିଲ ବା ଅର୍ଜି ଗ୍ରହଣ କରିବାର ଓ ଫଏସଲ କରିବାର ଅଧିକାରିତା ରହିତ ହେବ, ଏବଂ ଏପରି ପ୍ରାରମ୍ଭରେ ଉକ୍ତ ପ୍ରାଧିକାରୀଙ୍କ ସମକ୍ଷରେ ଲମ୍ବିତ ଥିବା ସମସ୍ତ ଅପିଲ ଓ ଅନ୍ୟ କାର୍ଯ୍ୟବାହୀ ଉଚ୍ଚତମ ନ୍ୟାୟାଳୟକୁ ଅନ୍ତରିତ ହେବ ଓ ତାହା ଦ୍ୱାରା ଫଏସଲ କରାଯିବ ।

(୫) ଏହି ଅନୁଚ୍ଛେଦର ଉପବନ୍ଧମାନଙ୍କୁ ପ୍ରଭାବୀ କରିବା ଲାଗି ସଂସଦ ବିଧିଦ୍ୱାରା ଅଧିକ ଉପବନ୍ଧ ପ୍ରଣୟନ କରି ପାରିବ ।

ସଂବିଧାନର ଉପବଂଧ ମାନଙ୍କର ବଶବର୍ତ୍ତୀ ରହି ନ୍ୟାୟାଳୟ-ପ୍ରାଧିକାରୀ ଓ ଅଫି-ସରଙ୍କର କୃତ୍ୟ ସଂପାଦନ ଚାଲୁ ରହିବା ।

୩୭୫ । ଭାରତ ରାଜ୍ୟକ୍ଷେତ୍ରରେ ସର୍ବତ୍ର ସିଭିଲ, କ୍ରିମିନାଲ ଓ ରାଜସ୍ୱ ଅଧିକାରିତା ଥିବା ସମସ୍ତ ନ୍ୟାୟାଳୟ, ଏବଂ ନ୍ୟାୟିକ କାର୍ଯ୍ୟପାଳିକା ଓ ଅନୁସଚିବୀୟ ସମସ୍ତ ପ୍ରାଧିକାରୀ ଓ ଅଫିସର ଏହି ସଂବିଧାନର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ସେମାନଙ୍କର କୃତ୍ୟ ସଂପାଦନ ଚାଲୁ ରଖିବେ

ଉଚ୍ଚ ନ୍ୟାୟାଳୟ ମାନଙ୍କର ନ୍ୟାୟାଧୀଶ ମାନଙ୍କ ସଂବଂଧରେ ଉପବଂଧ ।

୩୭୬ । (୧) ଅନୁଚ୍ଛେଦ ୨୧୭ର ଖଣ୍ଡ (୨)ରେ ଯାହା କିଛି ଥିବା ସତ୍ତ୍ୱେ ଏହି ସଂବିଧାନ ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ କୌଣସି ପ୍ରଦେଶରେ ଉଚ୍ଚ ନ୍ୟାୟାଳୟରେ ପଦଧାରଣ କରୁଥିବା ନ୍ୟାୟାଧୀଶ ଅନ୍ୟଥା ନିର୍ବାଚନ କରି ନ ଥିଲେ, ଏପରି ପ୍ରାରମ୍ଭରେ ତତ୍‌ସ୍ଥାନୀ ରାଜ୍ୟର ଉଚ୍ଚ ନ୍ୟାୟାଳୟରେ ନ୍ୟାୟାଧୀଶ ହୋଇ–ଯିବେ ଏବଂ ତତ୍ପରେ ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ ମାନଙ୍କ ସମ୍ବନ୍ଧରେ ଅନୁଚ୍ଛେଦ ୨୨୧ ଅଧୀନରେ ଯେପରି ଉପବନ୍ଧିତ ହୋଇଅଛି ସେପରି ବେତନ ଓ ଭତ୍ତା ଲାଗି ଏବଂ ଅନୁପସ୍ଥିତି ଛୁଟି ଓ ପେନ୍‌ସନ ବିଷୟରେ ସେପରି ଅଧିକାର ଲାଗି ହକଦାର ହେବେ ।

ସେପରି କୌଣସି ନ୍ୟାୟାଧୀଶ ଭାରତର ନାଗରିକ ହୋଇ ନ ଥିଲେ ମଧ୍ୟ ସେପରି ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତି ପଦରେ କିମ୍ବା ଅନ୍ୟ କୌଣସି ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତି ବା ଅନ୍ୟ ନ୍ୟାୟାଧୀଶ ପଦରେ ନିଯୁକ୍ତ ହେବା ସକାଶେ ପାତ୍ର ହେବେ ।

(୨) ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ପ୍ରଥମ ଅନୁସୂଚୀର ଭାଗ (ଖ)ରେ ବିନିର୍ଦ୍ଦିଷ୍ଟ କୌଣସି ରାଜ୍ୟର ତତ୍‌ସ୍ଥାନୀ କୌଣସି ଦେଶୀୟ ରାଜ୍ୟର ଉଚ୍ଚ ନ୍ୟାୟାଳୟରେ ପଦ ଧାରଣ କରୁଥିବା ନ୍ୟାୟାଧୀଶମାନେ ଅନ୍ୟଥା ନିର୍ବାଚନ କରି ନ ଥିଲେ ଏପରି ପ୍ରାରମ୍ଭରେ ଏପରି ବିନିର୍ଦ୍ଦିଷ୍ଟ ରାଜ୍ୟର ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ ହୋଇଯିବେ ଏବଂ ଅନୁଚ୍ଛେଦ ୨୧୭ର ଖଣ୍ଡ (୧) ଓ (୨)ରେ ଯାହା କିଛି ଥିବା ସତ୍ତ୍ୱେ, ସେହି ଅନୁଚ୍ଛେଦ ଖଣ୍ଡ (୧) ର ପରନ୍ତୁକର ବଶବର୍ତ୍ତୀ ରହି, ରାଷ୍ଟ୍ରପତି ଆଦେଶ ଦ୍ୱାରା ଯେପରି ନିର୍ଦ୍ଧାରିତ କରିବେ ସେପରି କାଳାବଧିର ଅବସାନ ପର୍ଯ୍ୟନ୍ତ ପଦ ଧାରଣ କରି ରହିବେ ।

(୩) ଏହି ଅନୁଚ୍ଛେଦର "ନ୍ୟାୟାଧୀଶ" ପଦ ମଧ୍ୟରେ କାର୍ଯ୍ୟକାରୀ ନ୍ୟାୟାଧୀଶ ବା ଅପର ନ୍ୟାୟାଧୀଶ ଅନ୍ତର୍ଗତ ନୁହେଁ ।

ଭାରତର କଂପଟ୍ରୋଲର ଓ ଅଡ଼ିଟର ଜେନେରାଲ ସଂବଂଧରେ ଉପବଂଧ ।

୩୭୭ । ଏହି ସଂବିଧାନ ପ୍ରାରମ୍ଭର ଅବ୍ୟହିତ ପୂର୍ବରୁ ପଦଧାରଣ କରୁଥିବା ଅଡ଼ିଟର ଜେନେରାଲ ଅନ୍ୟଥା ନିର୍ବାଚନ କରି ନ ଥିଲେ ଏପରି ପ୍ରାରମ୍ଭରେ ଭାରତର କଂପଟ୍ରୋଲର ଓ ଅଡ଼ିଟର ଜେନେରାଲ ହୋଇଯିବେ ଏବଂ ତତ୍ପରେ ଭାରତର କଂପଟ୍ରୋଲର ଓ ଅଡ଼ିଟର ଜେନେରାଲ ସଂବନ୍ଧରେ ଅନୁଚ୍ଛେଦ ୧୪୮ର ଖଣ୍ଡ (୩) ଅଧୀନରେ ଯେପରି ଉପବନ୍ଧିତ ହୋଇଅଛି ସେପରି ବେତନ ଏବଂ ଅନୁପସ୍ଥିତି ଛୁଟି ଲାଗି ଓ ପେନ୍‌ସନ୍ ବିଷୟରେ ସେପରି ଅଧିକାର ଲାଗି ହକଦାର ହେବେ ଏବଂ ଏପରି ପ୍ରାରମ୍ଭର ଅବ୍ୟ-ବହିତ ପୂର୍ବରୁ ଯେଉଁ ଉପବନ୍ଧମାନ ତାଙ୍କ ପ୍ରତି ପ୍ରଯୁଜ୍ୟ ଥିଲା ସେହି ଉପବନ୍ଧମାନଙ୍କ ଅଧୀନରେ ନିର୍ଦ୍ଧାରିତ ପଦାବଧିର ଅବସାନ ପର୍ଯ୍ୟନ୍ତ ପଦଧାରଣ କରି ରହିବା ପାଇଁ ହକଦାର ହେବେ ।

ପବ୍ଲିକ ସର୍ଭିସ କମିଶନ ସଂବଂଧରେ ଉପବଂଧ ।

୩୭୮ । (୧) ଏହି ସଂବିଧାନ ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ପଦଧାରଣ କରୁଥିବା ଭାରତ ଡ଼ୋମି-ନିୟନର ପବ୍ଲିକ୍ ସର୍ଭିସ୍ କମିଶନର ସଦସ୍ୟମାନେ ଅନ୍ୟଥା ନିର୍ବାଚନ କରି ନ ଥିଲେ ଏପରି ପ୍ରାରମ୍ଭରେ ୟୁନିୟନ ପବ୍ଲିକ୍ ସର୍ଭିସ୍ କମିଶନର ସଦସ୍ୟ ହୋଇ ଯିବେ ଏବଂ ଅନୁଚ୍ଛେଦ ୩୧୬ର ଖଣ୍ଡ (୧) ଓ (୨)ରେ ଯାହା କିଛି ଥିବା ସତ୍ତ୍ୱେ, ସେହି ଅନୁଚ୍ଛେଦ ଖଣ୍ଡ (୨)ର ପରନ୍ତୁକର ବଶବର୍ତ୍ତୀ ରହି ଏପରି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ ନିୟମମାନ ସେହି ସଦସ୍ୟମାନଙ୍କ ପ୍ରତି ପ୍ରଯୁଜ୍ୟ ଥିଲା ସେହି ନିୟମମାନଙ୍କର ଅଧୀନରେ ନିର୍ଦ୍ଧାରିତ ପଦାବଧିର ଅବସାନ ପର୍ଯ୍ୟନ୍ତ ପଦ ଧାରଣ କରି ରହିବେ ।

(୨) ଏହି ସଂବିଧାନ ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ପଦଧାରଣ କରୁଥିବା କୌଣସି ପ୍ରଦେଶର ପବ୍ଲିକ୍ ସର୍ଭିସ୍ କମିଶନ ବା କୌଣସି ପ୍ରଦେଶ ଗୋଷ୍ଠୀର ଆବଶ୍ୟକତା ସାଧନ କରୁଥିବା କୌଣସି ପବ୍ଲିକ୍ ସର୍ଭିସ୍ କମିଶନ ର ସଦସ୍ୟମାନେ ଅନ୍ୟଥା ନିର୍ବାଚନ କରି ନ ଥିଲେ, ଯଥାସ୍ଥିତି, ତତ୍‌ସ୍ଥାନୀ ରାଜ୍ୟର ପବ୍ଲିକ୍ ସର୍ଭିସ୍ କମିଶନର ବା ତତ୍‌ସ୍ଥାନୀ ରାଜ୍ୟମାନଙ୍କର ଆବଶ୍ୟକତା ସାଧନ କରୁଥିବା କୌଣସି ପବଲିକ୍ ସରଭିସ୍ କମିଶନର ସଦସ୍ୟ ହୋଇଯିବେ ଏବଂ ଅନୁଚ୍ଛେଦ ର ୩୧୬ର ଖଣ୍ଡ (୧) ଓ (୨)ରେ ଯାହା କିଛି ଥିବା ସତ୍ତ୍ୱେ, ସେହି ଅନୁଚ୍ଛେଦର ଖଣ୍ଡ (୨)ର ପରନ୍ତୁକର ବଶବର୍ତ୍ତୀ ରହି, ଏହି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ ନିୟମମାନ ସେହି ସଦସ୍ୟମାନଙ୍କ ପ୍ରତି ପ୍ରଯୁଜ୍ୟ ଥିଲ ସେହି ନିୟମମାନଙ୍କ ଅଧୀନରେ ନିର୍ଦ୍ଧାରିତ ପଦାବଧିର ଅବସାନ ପର୍ଯ୍ୟନ୍ତ ପଦ ଧାରଣ କରି ରହିବେ ।

ଆଂଧ୍ରପ୍ରଦେଶ ବିଧାନ ସଭାର ଅସ୍ତିତ୍ୱାବଧି ସଂପର୍କରେ ବିଶେଷ ଉପବଂଧ ।

୩୭୮ କ । ଅନୁଚ୍ଛେଦ ୧୭୨ରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ରାଜ୍ୟ ପୁନର୍ଗଠନ ଅଧିନିୟମ, ୧୯୫୬ ର ଧାରା ୨୮ ଓ ୨୯ର ଉପବନ୍ଧମାନଙ୍କ ଅଧୀନରେ ଯଥାଗଠିତ ଆନ୍ଧ୍ରପ୍ରଦେଶ ରାଜ୍ୟର ବିଧାନସଭାକୁ ପୂର୍ବରୁ ବିଘଟିତ କରି ଦିଆଯାଇ ନ ଥିଲେ ତାହା ଉକ୍ତ ଧାରା ୨୯ରେ ନିର୍ଦ୍ଦିଷ୍ଟ ତାରିଖଠାରୁ ପାଞ୍ଚବର୍ଷ କାଳାବଧି ପର୍ଯ୍ୟନ୍ତ ଚାଲୁ ରହିବ ଏବଂ ତାହାଠାରୁ ଅଧିକ କାଳ ରହିବ ନାହିଁ ଏବଂ ଉକ୍ତ କାଳାବଧିର ଅବସାନ ସେହି ବିଧାନ ସଭାର ବିଘଟନ ରୂପେ କାର୍ଯ୍ୟକାରୀ ହେବ ।

୩୭୯ ।<br>ଠାରୁ<br>୩୯୧ ।  } ନିରସିତ ।

ଅସୁବିଧା ଦୂର କରିବା ଲାଗି ରାଷ୍ଟ୍ରପତିଙ୍କର କ୍ଷମତା ।

୩୯୨ । (୧) କୌଣସି ଅସୁବିଧା, ବିଶେଷତଃ, ଗଭର୍ଣ୍ଣମେଣ୍ଟ ଅଫ ଇଣ୍ଡିଆ ଆକ୍ଟ (ଭାରତ ଶାସନ ଅଧିନିୟମ), ୧୯୩୫ର ଉପବନ୍ଧମାନଙ୍କରୁ ଏହି ସଂବିଧାନର ଉପବନ୍ଧମାନଙ୍କୁ ସଂକ୍ରମଣ ସମ୍ବନ୍ଧୀୟ ଅସୁବିଧାମାନ ଦୂର କରିବାର ପ୍ରୟୋଜନ ଲାଗି ରାଷ୍ଟ୍ରପତି ଆଦେଶ ଦ୍ୱାରା ନିର୍ଦ୍ଦେଶ ଦେଇ ପାରିବେ ଯେ ସେ ଆଦେଶରେ ଯେଉଁ କାଳାବଧି ବିନିର୍ଦ୍ଦିଷ୍ଟ ହେବ ସେ କାଳ ମଧ୍ୟରେ ସେ ଯେପରି ଆବଶ୍ୟକ ବା ଇଷ୍ଟକର ବିବେଚନା କରିବେ, ରୂପାନ୍ତରଣ ଆକାରରେ ହେଉ ବା ଯୋଗ ବା ଲୋପ ଆକାରରେ ହେଉ, ସେପରି ଅନୁକୂଳନର ବଶବର୍ତ୍ତୀ ରହି ସଂବିଧାନ ପ୍ରଭାବୀ ହେବ:

ପରନ୍ତୁ ଭାଗ ୫ର ଅଧ୍ୟାୟ ୨ ଅଧୀନରେ ସମ୍ୟକ ରୂପେ ସଂଗଠିତ ସଂସଦର ପ୍ରଥମ ଅଧିବେଶନ ପରେ ଏପରି କୌଣସି ଆଦେଶ କରାଯିବ ନାହିଁ ।

(୨) ଖଣ୍ଡ (୧) ଅଧୀନରେ କରାଯାଇଥିବା ପ୍ରତ୍ୟେକ ଆଦେଶ ସଂସଦ ସମକ୍ଷରେ ଉପସ୍ଥାପିତ ହେବ ।

(୩) ଏହି ଅନୁଚ୍ଛେଦ, ଅନୁଚ୍ଛେଦ ୩୨୪, ଅନୁଚ୍ଛେଦ ୩୬୭ ର ଖଣ୍ଡ (୩) ଓ ଅନୁଚ୍ଛେଦ ୩୯୧ ଦ୍ୱାରା ରାଷ୍ଟ୍ରପତିଙ୍କଠାରେ ନ୍ୟସ୍ତ କ୍ଷମତା ଏହି ସଂବିଧାନର ପ୍ରାରମ୍ଭର ପୂର୍ବରୁ ଭାରତ ଡୋମିନିୟନର ଗଭର୍ଣ୍ଣର ଜେନେରାଲଙ୍କ ଦ୍ୱାରା ପ୍ରଯୁଜ୍ୟ ହେବ ।

## ଭାଗ ୨୨

## ସଂକ୍ଷିପ୍ତ ନାମ, ପ୍ରାରମ୍ଭ ଓ ନିରସନ

**ସଂକ୍ଷିପ୍ତ** ନାମ । ୩୯୩ । ଏହି ସଂବିଧାନ ଭାରତର ସଂବିଧାନ ନାମରେ ଅଭିହିତ ହେବ ।

**ପ୍ରାରମ୍ଭ ।** ୩୯୪ । ଏହି ଅନୁଚ୍ଛେଦ ଏବଂ ଅନୁଚ୍ଛେଦ ୫, ୬, ୭, ୮, ୯, ୬୦, ୩୨୪, ୩୬୬, ୩୬୭, ୩୭୯, ୩୮୦, ୩୮୮, ୩୯୧, ୩୯୨, ଓ ୩୯୩ ସଙ୍ଗେ ସଙ୍ଗେ ପ୍ରବୃତ୍ତ ହେବ ଏବଂ ସଂବିଧାନର ଅବଶିଷ୍ଟ ଉପବନ୍ଧମାନ ୧୯୫୦ ଜାନୁଆରୀ ଷଷ୍ଠବିଂଶତିତମ ଦିବସରେ ପ୍ରବୃତ୍ତ ହେବ ଓ ସେ ଦିବସ ଏହି ସଂବିଧାନରେ ଏହି ସଂବିଧାନର ପ୍ରାରମ୍ଭରୂପେ ନିର୍ଦ୍ଦିଷ୍ଟ ହୋଇଅଛି ।

**ନିରସନ ।** ୩୯୫ । ଦି ଇଣ୍ଡିଆନ ଇଣ୍ଡିପେଣ୍ଡେନ୍ସ ଆକ୍ଟ, ୧୯୪୭ ଏବଂ ଦି ଗଭର୍ଣ୍ଣମେଣ୍ଟ ଅଫ ଇଣ୍ଡିଆ ଆକଟ, ୧୯୩୫ ଓ ପଶ୍ଚାଦୁକ୍ତ ଅଧିନିୟମର ସଂଶୋଧନକାରୀ ଓ ଅନୁପୂରଣକାରୀ ସମସ୍ତ ଅଧିନିୟମିତି, ଯହିଁରେ କି ଦି ଆବୋଲିସନ ଅଫ ପ୍ରିଭିକାଉନସିଲ ଜୁରିସିଡ଼ିକ୍ସନ ଆକ୍ଟ, ୧୯୪୯ ଅନ୍ତର୍ଗତ ନୁହେଁ , ଏତଦ୍ୱାରା ନିରସିତ କରାଗଲା ।

---

# ପ୍ରଥମ ଅନୁସୂଚୀ

[ଅନୁଚ୍ଛେଦ ୧ ଓ ୪]

## ୧। ରାଜ୍ୟ ସମୂହ

| ନାମ | ରାଜ୍ୟକ୍ଷେତ୍ର |
|---|---|
| ୧ । ଆନ୍ଧ୍ର ପ୍ରଦେଶ | ଆନ୍ଧ୍ର ରାଜ୍ୟ ଅଧିନିୟମ, ୧୯୫୩ ର ଧାରା ୩ର ଉପଧାରା (୧) ରେ ରାଜ୍ୟପୁନର୍ଗଠନ ଅଧିନିୟମ, ୧୯୫୬ର ଧାରା ୩ର ଉପଧାରା (୧) ରେ ଆନ୍ଧ୍ର ପ୍ରଦେଶ ଓ ମାନ୍ଦ୍ରାଜ (ସୀମା ପରିବର୍ତ୍ତନ) ଅଧିନିୟମ, ୧୯୫୯ର ପ୍ରଥମ ଅନୁସୂଚୀରେ ଏବଂ ଆନ୍ଧ୍ର ପ୍ରଦେଶ ଓ ମହୀଶୂର (ରାଜ୍ୟକ୍ଷେତ୍ର ଅନ୍ତରଣ) ଅଧିନିୟମ, ୧୯୬୮ ର ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ, କିନ୍ତୁ ଆନ୍ଧ୍ର ପ୍ରଦେଶ ଓ ମାନ୍ଦ୍ରାଜ (ସୀମା ପରିବର୍ତ୍ତନ) ଅଧିନିୟମ, ୧୯୫୯ ର ଦ୍ୱିତୀୟ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର ତହିଁରୁ ଅପବର୍ଜିତ ଅଟେ । |
| ୨ । ଆସାମ | ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଆସାମ ପ୍ରଦେଶ, ଖାସୀ ରାଜ୍ୟ, ଆସାମ ଜନଜାତି କ୍ଷେତ୍ର ମଧ୍ୟରେ ଯେଉଁ ରାଜ୍ୟକ୍ଷେତ୍ର ସମାବିଷ୍ଟ ଥିଲା, କିନ୍ତୁ ଆସାମ (ସୀମା ପରିବର୍ତ୍ତନ) ଅଧିନିୟମ, ୧୯୫୧ ର ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର ତଥା ନାଗାଲଣ୍ଡ ରାଜ୍ୟ ଅଧିନିୟମ, ୧୯୬୨ ର ଧାରା ୩ର ଉପଧାରା (୧) ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର ଏବଂ ଉତ୍ତର ପୂର୍ବାଞ୍ଚଳ (ପୁନର୍ଗଠନ) ଅଧିନିୟମ, ୧୯୭୧ ର ଧାରା ୫, ୬, ୭ ରେ ବନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ ତହିଁରୁ ଅପବର୍ଜିତ ଅଟେ । |
| ୩ । ବିହାର | ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ହୁଏତ ବିହାର ପ୍ରଦେଶରେ ସମାବିଷ୍ଟ ଥିବା ବା ସେହି ପ୍ରଦେଶର ଭାଗ ଭଳି ପ୍ରଶାସିତ ହେଉଥିବା ରାଜ୍ୟକ୍ଷେତ୍ରମାନ ଓ ବିହାର ଓ ଉତ୍ତର ପ୍ରଦେଶ (ସୀମା ପରିବର୍ତ୍ତନ) ଅଧିନିୟମ, ୧୯୬୮ ର ଧାରା ୩ର ଉପଧାରା (୧) ର ଖଣ୍ଡ (କ)ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ, କିନ୍ତୁ ବିହାର ଓ ପଶ୍ଚିମ ବଙ୍ଗ (ରାଜ୍ୟକ୍ଷେତ୍ର ଅନ୍ତରଣ) ଅଧିନିୟମ, ୧୯୫୬ ର ଧାରା ୩ର ଉପଧାରା (୧) ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ ଓ ପ୍ରଥମ ବର୍ଣ୍ଣିତ ଅଧିନିୟମର ଧାରା ୩ର ଉପଧାରା (୧) ର ଖଣ୍ଡ (ଖ) ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ ତହିଁରୁ ଅପବର୍ଜିତ ଅଟେ । |
| ୪ । ଗୁଜରାଟ | ବମ୍ବେ ପୁନର୍ଗଠନ ଅଧିନିୟମ, ୧୯୬୦ ର ଧାରା ୩ର ଉପଧାରା (୧) ରେ ନିର୍ଦ୍ଦେଶିତ ରାଜ୍ୟକ୍ଷେତ୍ରମାନ । |
| ୫ । କେରଳ | ରାଜ୍ୟ ପୁନର୍ଗଠନ ଅଧିନିୟମ, ୧୯୫୬ ର ଧାରା ୫ର ଉପଧାରା (୧)ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ । |

| | |
|---|---|
| ୬ । ମଧ୍ୟପ୍ରଦେଶ | ରାଜ୍ୟପୁନର୍ଗଠନ ଅଧିନିୟମ, ୧୯୫୬ ର ଧାରା ୯ ର ଉପଧାରା (୧) ରେ ଏବଂ ରାଜସ୍ଥାନ ଓ ମଧ୍ୟପ୍ରଦେଶ (ରାଜ୍ୟକ୍ଷେତ୍ର ଅନ୍ତରଣ) ଅଧିନିୟମ, ୧୯୫୯ ର ପ୍ରଥମ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର-ମାନ । |
| ୭ । ତାମିଲନାଡୁ | ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ ରାଜ୍ୟ କ୍ଷେତ୍ର ହୁଏତ ମାନ୍ଦ୍ରାଜ ପ୍ରଦେଶରେ ସମାବିଷ୍ଟ ଥିଲା ବା ସେହି ପ୍ରଦେଶର ଭାଗ ଭଳି ପ୍ରଶାସିତ ହେଉଥିଲା ସେହି ରାଜ୍ୟକ୍ଷେତ୍ର ଏବଂ ରାଜ୍ୟ-ପୁନର୍ଗଠନ ଅଧିନିୟମ, ୧୯୫୬ ର ଧାରା ୪ ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର ଏବଂ ଆନ୍ଧ୍ର ପ୍ରଦେଶ ଓ ମାନ୍ଦ୍ରାଜ ସୀମାପରିବର୍ତ୍ତନ ଅଧିନିୟମ, ୧୯୫୯ର ଦ୍ୱିତୀୟ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ, କିନ୍ତୁ ଆନ୍ଧ୍ର ରାଜ୍ୟ ଅଧିନିୟମ, ୧୯୫୩ ର ଧାରା ୩ ର ଉପଧାରା (୧) ଓ ଧାରା (୪) ର ଉପଧାରା (୧) ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର ଏବଂ ରାଜ୍ୟ ପୁନର୍ଗଠନ ଅଧିନିୟମ, ୧୯୫୬ ର ଧାରା ୫ ର ଉପଧାରା (୧) ର ଖଣ୍ଡ (ଖ) ରେ, ଧାରା ୬ ରେ ଓ ଧାରା ୭ର ଉପଧାରା (୧) ର ଖଣ୍ଡ (ଘ) ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର ଏବଂ ଆନ୍ଧ୍ରପ୍ରଦେଶ ଓ ମାନ୍ଦ୍ରାଜ (ସୀମାପରିବର୍ତ୍ତନ) ଅଧିନିୟମ, ୧୯୫୯ ର ପ୍ରଥମ ଅନୁସଚୀ-ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ ତହିଁରୁ ଅପବର୍ଜିତ ଅଟେ । |
| ୮ । ମହାରାଷ୍ଟ୍ର | ରାଜ୍ୟପୁନର୍ଗଠନ ଅଧିନିୟମ, ୧୯୫୬ ର ଧାରା ୮ ର ଉପଧାରା (୧) ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର କିନ୍ତୁ ବମ୍ବେ ପୁନର୍ଗଠନ ଅଧିନିୟମ, ୧୯୬୦ ର ଧାରା ୩ର ଉପଧାରା (୧) ରେ ବିନିର୍ଦ୍ଦିଷ୍ଟ ରାଜ୍ୟ କ୍ଷେତ୍ର ତହିଁରୁ ଅପବର୍ଜିତ ଅଟେ । |
| ୯ । କର୍ଣ୍ଣାଟକ | ରାଜ୍ୟପୁନର୍ଗଠନ ଅଧିନିୟମ, ୧୯୫୬ ର ଧାରା ୭ ର ଉପଧାରା (୧) ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର କିନ୍ତୁ ଆନ୍ଧ୍ର ପ୍ରଦେଶ ଓ ମହୀଶୂର (ରାଜ୍ୟକ୍ଷେତ୍ର ଅନ୍ତରଣ) ଅଧିନିୟମ, ୧୯୬୮ ର ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ ତହିଁରୁ ଅପବର୍ଜିତ ଅଟେ । |
| ୧୦ । ଓଡିଶା | ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ ରାଜ୍ୟକ୍ଷେତ୍ର ହୁଏତ ଓଡିଶା ପ୍ରଦେଶରେ ସମାବିଷ୍ଟ ଥିଲା ବା ସେହି ପ୍ରଦେଶର ଭାଗ ଭଳି ପ୍ରଶାସିତ ହେଉଥିଲା ସେହି ରାଜ୍ୟକ୍ଷେତ୍ରମାନ । |
| ୧୧ । ପଞ୍ଜାବ | ରାଜ୍ୟପୁନର୍ଗଠନ ଅଧିନିୟମ, ୧୯୫୬ ର ଧାରା ୧୧ ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର ଏବଂ ଅର୍ଜିତ ରାଜ୍ୟକ୍ଷେତ୍ର (ବିଲୟନ), ଅଧିନିୟମ, ୧୯୬୦ ର ପ୍ରଥମ ଅନୁସୂଚୀର ଭାଗ ୨ ରେ ନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର-ମାନ, କିନ୍ତୁ ସଂବିଧାନ (ନବମ ସଂଶୋଧନ) ଅଧିନିୟମ, ୧୯୬୦ ର ପ୍ରଥମ ଅନୁସୂଚୀର ଭାଗ ୨ ରେ ନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର ଏବଂ ପଞ୍ଜାବ ପୁନର୍ଗଠନ ଅଧିନିୟମ, ୧୯୬୬ ର ଧାରା ୩ ର ଉପଧାରା (୧) ରେ, ଧାରା ୪ ରେ ଓ ଧାରା ୫ ର ଉପଧାରା (୧) ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ ତହିଁରୁ ଅପବର୍ଜିତ ଅଟେ । |

| | |
|---|---|
| ୧୨ । ରାଜସ୍ଥାନ | ରାଜ୍ୟପୁନର୍ଗଠନ ଅଧିନିୟମ, ୧୯୫୬ ର ଧାରା ୧୦ ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ, କିନ୍ତୁ ରାଜସ୍ଥାନ ଓ ମଧ୍ୟପ୍ରଦେଶ (ରାଜ୍ୟକ୍ଷେତ୍ର ଅନ୍ତରଣ) ଅଧିନିୟମ, ୧୯୫୯ ର ପ୍ରଥମ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ର ତହିଁରୁ ଅପବର୍ଜିତ ଅଟେ । |
| ୧୩ । ଉତ୍ତର ପ୍ରଦେଶ | ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ହୁଏତ ଯୁକ୍ତ ପ୍ରଦେଶ ନାମରେ ଜ୍ଞାତ ପ୍ରଦେଶରେ ସମାବିଷ୍ଟ ଥିବା ବା ସେହି ପ୍ରଦେଶର ଭାଗ ଭଳି ପ୍ରଶାସିତ ହେଉଥିବା ରାଜ୍ୟକ୍ଷେତ୍ରମାନ ଏବଂ ବିହାର ଓ ଉତ୍ତର ପ୍ରଦେଶ (ସୀମାପରିବର୍ତ୍ତନ) ଅଧିନିୟମ, ୧୯୬୮ ର ଧାରା ୩ ର ଉପଧାରା (୧) ର ଖଣ୍ଡ (ଖ) ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ, କିନ୍ତୁ ସେହି ଅଧିନିୟମର ଧାରା ୩ ର ଉପଧାରା (୧) ର ଖଣ୍ଡ (କ)ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ ତହିଁରୁ ଅପବର୍ଜିତ ଅଟେ । |
| ୧୪ । ପଶ୍ଚିମ ବଙ୍ଗ | ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ ରାଜ୍ୟକ୍ଷେତ୍ର ହୁଏତ ପଶ୍ଚିମବଙ୍ଗ ପ୍ରଦେଶରେ ସମାବିଷ୍ଟ ଥିଲା ବା ସେହି ପ୍ରଦେଶର ଭାଗ ଭଳି ପ୍ରଶାସିତ ହେଉଥିଲା ସେହି ରାଜ୍ୟକ୍ଷେତ୍ର ଏବଂ ଚନ୍ଦର ନଗର (ବିଲୟନ) ଅଧିନିୟମ, ୧୯୫୪ ର ଧାରା ୨ର ଖଣ୍ଡ (ଗ) ରେ ଯଥା ସଂଜ୍ଞାକୃତ ଚନ୍ଦର ନଗର ରାଜ୍ୟକ୍ଷେତ୍ର ଏବଂ ବିହାର ଓ ପଶ୍ଚିମବଙ୍ଗ (ରାଜ୍ୟ-କ୍ଷେତ୍ର ଅନ୍ତରଣ) ଅଧିନିୟମ, ୧୯୫୬ ର ଧାରା ୩ ର ଉପଧାରା (୧) ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ । |
| ୧୫ । ଜାମ୍ମୁ ଓ କାଶ୍ମୀର | ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ ରାଜ୍ୟକ୍ଷେତ୍ର ଜାମ୍ମୁ ଓ କାଶ୍ମୀର ଦେଶୀୟ ରାଜ୍ୟରେ ସମାବିଷ୍ଟ ଥିଲା ସେହି ରାଜ୍ୟକ୍ଷେତ୍ରମାନ । |
| ୧୬ । ନାଗାଲଣ୍ଡ | ନାଗାଲଣ୍ଡ ରାଜ୍ୟ ଅଧିନିୟମ, ୧୯୬୨ ର ଧାରା ୩ ର ଉପଧାରା (୧)ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ । |
| ୧୭ । ହରିଆଣା | ପଞ୍ଜାବ ପୁନର୍ଗଠନ ଅଧିନିୟମ, ୧୯୬୬ ର ଧାରା ୩ ର ଉପଧାରା (୧) ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ । |
| ୧୮ । ହିମାଚଳ ପ୍ରଦେଶ | ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ ରାଜ୍ୟକ୍ଷେତ୍ର ହିମାଚଳ ପ୍ରଦେଶ ଓ ବିଳାସପୁର ନାମରେ ମୁଖ୍ୟ କମିଶନରଙ୍କ ପ୍ରଦେଶ ହୋଇଥିବା ଭଳି ପ୍ରଶାସିତ ହେଉଥିଲା ସେହି ରାଜ୍ୟକ୍ଷେତ୍ରମାନ ଓ ପଞ୍ଜାବ ପୁନର୍ଗଠନ ଅଧିନିୟମ, ୧୯୬୬ ର ଧାରା ୫ ର ଉପଧାରା (୧) ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ । |
| ୧୯ । ମଣିପୁର | ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ ରାଜ୍ୟକ୍ଷେତ୍ର ମଣିପୁର ନାମରେ ମୁଖ୍ୟ କମିଶନରଙ୍କ ପ୍ରଦେଶ ହୋଇଥିବା ଭଳି, ପ୍ରଶାସିତ ହେଉଥିଲା ସେହି ରାଜ୍ୟକ୍ଷେତ୍ରମାନ । |

| | |
|---|---|
| ୨୦ । ତ୍ରିପୁରା | ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ ରାଜ୍ୟକ୍ଷେତ୍ରମାନ ତ୍ରିପୁରା ନାମରେ ମୁଖ୍ୟ କମିଶନରଙ୍କ ପ୍ରଦେଶ ହୋଇଥିବା ଭଳି ପ୍ରଶାସିତ ହେଉଥିଲା ସେହି ରାଜ୍ୟକ୍ଷେତ୍ରମାନ । |
| ୨୧ । ମେଘାଳୟ | ଉତ୍ତର ପୂର୍ବାଞ୍ଚଳ (ପୁନର୍ଗଠନ) ଅଧିନିୟମ, ୧୯୭୧ ର ଧାରା ୫ ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ । |
| ୨୨ । ସିକିମ୍ | ସଂବିଧାନ (୩୬ଶ ସଂଶୋଧନ) ଅଧିନିୟମ, ୧୯୭୫ ର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ସିକିମରେ ସମାବିଷ୍ଟ ରାଜ୍ୟକ୍ଷେତ୍ରମାନ । |

## ୬ । ସଂଘ ରାଜ୍ୟକ୍ଷେତ୍ର

| ନାମ | ବିସ୍ତାର |
|---|---|
| ୧ । ଦିଲ୍ଲୀ | ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ ରାଜ୍ୟକ୍ଷେତ୍ରମାନ ମୁଖ୍ୟ କମିଶନରଙ୍କ ଦିଲ୍ଲୀ ପ୍ରଦେଶରେ ସମାବିଷ୍ଟ ଥିଲା ସେହି ରାଜ୍ୟ କ୍ଷେତ୍ରମାନ । |
| ୨ । ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ । | ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯେଉଁ ରାଜ୍ୟକ୍ଷେତ୍ରମାନ ମୁଖ୍ୟ କମିଶନରଙ୍କ ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ ପ୍ରଦେଶରେ ସମାବିଷ୍ଟ ଥିଲା ସେହି ରାଜ୍ୟକ୍ଷେତ୍ରମାନ । |
| ୩ । ଲକ୍ଷାଦ୍ୱୀପ | ରାଜ୍ୟପୁନର୍ଗଠନ ଅଧିନିୟମ, ୧୯୫୬ ର ଧାରା ୬ ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ । |
| ୪ । ଦାଦ୍ରା ଓ ନଗର ହାବେଲୀ | ୧୯୬୧ ମସିହା ଅଗଷ୍ଟମାସର ଏକାଦଶ ଦିବସର ଅବ୍ୟବହିତ ପୂର୍ବରୁ ଯେଉଁ ରାଜ୍ୟକ୍ଷେତ୍ର ମୁକ୍ତ ଦାଦ୍ରା ଓ ନଗର ହାବେଲୀରେ ସମାବିଷ୍ଟ ଥିଲା ସେହି ରାଜ୍ୟକ୍ଷେତ୍ରମାନ । |
| ୫ । ଗୋଆ, ଦାମନ ଓ ଦିଉ | ୧୯୬୧ ମସିହା ଡିସେମ୍ବର ମାସର ବିଂଶ ଦିବସର ଅବ୍ୟବହିତ ପୂର୍ବରୁ ଯେଉଁ ରାଜ୍ୟକ୍ଷେତ୍ର ଗୋଆ, ଦାମନ ଓ ଦିଉରେ ସମାବିଷ୍ଟ ଥିଲା ସେହି ରାଜ୍ୟକ୍ଷେତ୍ରମାନ । |
| ୬ । ପଣ୍ଡିଚେରୀ | ୧୯୬୨ ମସିହା ଅଗଷ୍ଟ ମାସର ଷୋଡଶ ଦିବସର ଅବ୍ୟବହିତ ପୂର୍ବରୁ ଯେଉଁ ରାଜ୍ୟକ୍ଷେତ୍ର ପଣ୍ଡିଚେରୀ କାରିକଲ, ମାହେ ଏବଂ ୟନମ ନାମରେ ଜ୍ଞାତ ଭାରତସ୍ଥ ଫରାସୀ ଉପନିବେଶରେ ସମାବିଷ୍ଟ ଥିଲା ସେହି ରାଜ୍ୟକ୍ଷେତ୍ରମାନ । |

| | |
|---|---|
| ୭ । ଚଣ୍ଡୀଗଡ | ପଞ୍ଜାବ ପୁନର୍ଗଠନ ଅଧିନିୟମ, ୧୯୬୬ ର ଧାରା ୪ ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ । |
| ୮ । ମିଜୋରାମ | ଉତ୍ତରପୂର୍ବାଞ୍ଚଳ (ପୁନର୍ଗଠନ) ଅଧିନିୟମ, ୧୯୭୧ ର ଧାରା ୬ ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ । |
| ୯ । ଅରୁଣାଚଳ ପ୍ରଦେଶ | ଉତ୍ତରପୂର୍ବାଞ୍ଚଳ (ପୁନର୍ଗଠନ) ଅଧିନିୟମ, ୧୯୭୧ ର ଧାରା ୭ ରେ ବିନିର୍ଦ୍ଦିଷ୍ଟ ରାଜ୍ୟକ୍ଷେତ୍ରମାନ । |

# ଦ୍ୱିତୀୟ ଅନୁସୂଚୀ

[ଅନୁଚ୍ଛେଦ ୫୯(୩), ୬୫(୩), ୭୫(୬), ୯୭, ୧୨୫, ୧୪୮(୩), ୧୫୮(୩)
୧୬୪ (୫), ୧୮୬ ଏବଂ ୨୨୧]

## ଭାଗ କ

### ରାଷ୍ଟ୍ରପତି ଏବଂ ରାଜ୍ୟମାନଙ୍କର ରାଜ୍ୟପାଳମାନଙ୍କ ସଂପର୍କରେ ଉପବଂଧ

୧ । ରାଷ୍ଟ୍ରପତି ଏବଂ ରାଜ୍ୟମାନଙ୍କର ରାଜ୍ୟପାଳମାନଙ୍କୁ ପ୍ରତିମାସ ନିମ୍ନଲିଖିତ ଉପଲବ୍ଧି ଦିଆଯିବ, ଅର୍ଥାତ :—

| | |
|---|---|
| ରାଷ୍ଟ୍ରପତି | ୧୦,୦୦୦ ଟଙ୍କା |
| ରାଜ୍ୟର ରାଜ୍ୟପାଳ | ୫,୫୦୦ ଟଙ୍କା |

୨ । ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତ ଡ଼ୋମିନିୟନର ଗଭର୍ଣ୍ଣରମାନଙ୍କୁ ଯେଉଁ ଭତ୍ତା ଦିଆଯାଉଥିଲା ଯଥାକ୍ରମେ ରାଷ୍ଟ୍ରପତି ଓ ତତ୍‌ସ୍ଥାନୀ ରାଜ୍ୟମାନଙ୍କର ରାଜ୍ୟପାଳଙ୍କୁ ସେହି ଭତ୍ତା ମଧ୍ୟ ଦିଆଯିବ ।

୩ । ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଗଭର୍ଣ୍ଣର ଜେନେରାଲ ତଥା ପ୍ରଦେଶମାନଙ୍କର ଗଭର୍ଣ୍ଣରମାନେ ଯେଉଁ ବିଶେଷାଧିକାର ପାଇଁ ହକ୍‌ଦାର ଥିଲେ ଯଥାକ୍ରମେ ରାଷ୍ଟ୍ରପତି ଓ ତତ୍‌ସ୍ଥାନୀ ରାଜ୍ୟମାନଙ୍କର ରାଜ୍ୟପାଳମାନେ ସେମାନଙ୍କ ନିଜ ନିଜର ସଂପୂର୍ଣ୍ଣ ପଦାବଧି ମଧ୍ୟରେ ସେହି ବିଶେଷାଧିକାର ପାଇଁ ହକ୍‌ଦାର ହେବେ ।

୪ । ଯେତେବେଳେ ଉପରାଷ୍ଟ୍ରପତି ବା ଅନ୍ୟ କୌଣସି ବ୍ୟକ୍ତି ରାଷ୍ଟ୍ରପତିଙ୍କ କୃତ୍ୟ ନିର୍ବାହ କରୁଥିବେ ବା ରାଷ୍ଟ୍ରପତି ଭାବରେ କାର୍ଯ୍ୟ କରୁଥିବେ ଅଥବା କୌଣସି ବ୍ୟକ୍ତି ରାଜ୍ୟପାଳଙ୍କ କୃତ୍ୟ ନିର୍ବାହ କରୁଥିବେ ସେତେବେଳେ ସେ ରାଷ୍ଟ୍ରପତି ବା ରାଜ୍ୟପାଳଙ୍କ ମଧ୍ୟରୁ ଯାହାଙ୍କର କୃତ୍ୟ ନିର୍ବାହ କରୁଥିବେ ବା ଯେଉଁ ରୂପରେ କାର୍ଯ୍ୟ କରୁଥିବେ ତାଙ୍କ ସମାନ ଉପଲବ୍ଧି, ଭତ୍ତା ଓ ବିଶେଷାଧିକାର ପାଇବା ପାଇଁ ହକଦାର ହେବେ ।

* * * * * * * *

## ଭାଗ ଗ

### ଲୋକସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ଏବଂ ରାଜ୍ୟସଭାର ସଭାପତି ଓ ଉପସଭାପତି ଏବଂ କୌଣସି ରାଜ୍ୟର ବିଧାନସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ଏବଂ ବିଧାନ ପରିଷଦର ସଭାପତି ଓ ଉପସଭାପତିଙ୍କ ସଂପର୍କରେ ଉପବଂଧ

୭ । ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତ ଡ଼ୋମିନିୟନର ସଂବିଧାନ ସଭାର ଅଧ୍ୟକ୍ଷଙ୍କୁ ଯେଉଁ ବେତନ ଓ ଭତ୍ତା ଦେୟ ହେଉଥିଲା ଲୋକସଭାର ଅଧ୍ୟକ୍ଷଙ୍କୁ ତଥା ରାଜ୍ୟସଭାର ସଭାପତିଙ୍କୁ ସେହି ବେତନ ଓ ଭତ୍ତା ଦିଆଯିବ ଏବଂ ଏପରି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତ ଡ଼ୋମିନିୟନର ସଂବିଧାନ ସଭାର ଉପାଧ୍ୟକ୍ଷଙ୍କୁ ଯେଉଁ ବେତନ ଓ ଭତ୍ତା ଦେୟ ହେଉଥିଲା ଲୋକସଭାର ଉପାଧ୍ୟକ୍ଷଙ୍କୁ ଓ ରାଜ୍ୟ ସଭାର ଉପସଭାପତିଙ୍କୁ ସେହି ବେତନ ଓ ଭତ୍ତା ଦିଆଯିବ ।

୮ । ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ତତ୍‌ସ୍ଥାନୀ ପ୍ରଦେଶର ବିଧାନସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କୁ ଏବଂ ବିଧାନପରିଷଦର ସଭାପତି ଓ ଉପସଭାପତିଙ୍କୁ ଯେଉଁ ବେତନ ଓ ଭତ୍ତା ଦେୟ ହେଉଥିଲା ଯଥାକ୍ରମେ ରାଜ୍ୟ ବିଧାନସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କୁ ଏବଂ ବିଧାନ ପରିଷଦର ସଭାପତି ଓ ଉପ-ସଭାପତିଙ୍କୁ ସେହି ବେତନ ଓ ଭତ୍ତା ଦିଆଯିବ, ଏବଂ ଯେଉଁଠାରେ ଏପରି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ତତ୍‌ସ୍ଥାନୀ ପ୍ରଦେଶରେ ବିଧାନପରିଷଦ ନ ଥାଏ ସେଠାରେ ରାଜ୍ୟର ରାଜ୍ୟପାଳ ଯେପରି ନିର୍ଦ୍ଧାରିତ କରିବେ ସେପରି ବେତନ ଓ ଭତ୍ତା ରାଜ୍ୟ ବିଧାନ ପରିଷଦର ସଭାପତି ଓ ଉପସଭାପତିଙ୍କୁ ନିଆଯିବ ।

## ଭାଗ ଘ

### ଉଚ୍ଚତମ ନ୍ୟାୟାଳୟ ଓ ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶମାନଙ୍କ ସଂପର୍କରେ ଉପବନ୍ଧ

୯ । (୧) ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶମାନଙ୍କୁ ବାସ୍ତବିକ ସେବାରେ ବ୍ୟୟିତ ସମୟ ସଂପର୍କରେ ପ୍ରତିମାସ ନିମ୍ନଲିଖିତ ହାରରେ ବେତନ ଦିଆଯିବ ଅର୍ଥାତ :—

| | |
|---|---|
| ମୁଖ୍ୟ ନ୍ୟାୟାଧିପତି | ୫,୦୦୦ ଟଙ୍କା |
| ଅନ୍ୟ ନ୍ୟାୟାଧୀଶ | ୪,୦୦୦ ଟଙ୍କା : |

ପରନ୍ତୁ ଯଦି ଉଚ୍ଚତମ ନ୍ୟାୟାଳୟର କୌଣସି ନ୍ୟାୟାଧୀଶ ତାଙ୍କ ନିଯୁକ୍ତି ସମୟରେ ଭାରତ ସରକାର ବା ତହିଁର କୌଣସି ପୂର୍ବବର୍ତ୍ତୀ ସରକାର ଅଥବା କୌଣସି ରାଜ୍ୟର ସରକାର ବା ତହିଁର କୌଣସି ପୂର୍ବବର୍ତ୍ତୀ ସରକାରଙ୍କ ଅଧୀନରେ ପୂର୍ବରୁ କରିଥିବା ସେବା ସଂପର୍କରେ କୌଣସି ପେନ୍‌ସନ (ନିର୍ଯୋଗ୍ୟତା ବା କ୍ଷତ ପେନ୍‌ସନ ଭିନ୍ନ) ପାଉଥାନ୍ତି ତେବେ ଉଚ୍ଚତମ ନ୍ୟାୟାଳୟରେ ସେବା ସଂପର୍କରେ ତାଙ୍କର ବେତନରୁ—

(କ) ସେହି ପେନ୍‌ସନର ପରିମାଣ, ଏବଂ

(ଖ) ଯଦି ଏପରି ନିଯୁକ୍ତି ପୂର୍ବରୁ ଏପରି ପୂର୍ବସେବା ସଂପର୍କରେ ତାଙ୍କର ପ୍ରାପ୍ୟ ପେନ୍‌ସନର ଏକ ପ୍ରଭାଗ ବଦଳରେ ତହିଁର ସଂରାଶିକୃତ ମୂଲ୍ୟ ପାଇଥାନ୍ତି ତେବେ ପେନ୍‌ସନର ସେହି ପ୍ରଭାଗର ପରିମାଣ, ଏବଂ

(ଗ) ଯଦି ଏପରି ନିଯୁକ୍ତି ପୂର୍ବରୁ ସେ ଏପରି ପୂର୍ବ ସେବା ସଂପର୍କରେ ନିବୃତ୍ତି ଉପଦାନ ପାଇଥାନ୍ତି ତେବେ ସେହି ଉପଦାନର ସମତୁଲ୍ୟ ପେନସନ,

ହ୍ରାସ କରାଯିବ ।

(୨) ଉଚ୍ଚତମ ନ୍ୟାୟାଳୟର ପ୍ରତ୍ୟେକ ନ୍ୟାୟାଧୀଶ ବିନା ଭଡ଼ାରେ ପଦାବାସ ବ୍ୟବହାର କରିବା ପାଇଁ ହକ୍‌ଦାର ହେବେ ।

(୩) ଏହି ପାରାର ଉପପାରା (୨)ର କୌଣସି ବିଷୟ, ଏପରି କୌଣସି ନ୍ୟାୟାଧୀଶ ଯେ କି ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ—

(କ) ଫେଡ଼େରାଲ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତି ରୂପେ ପଦ ଧାରଣ କରିଥିଲେ ତଥା ଏପରି ପ୍ରାରମ୍ଭ ପରେ ଅନୁଚ୍ଛେଦ ୩୭୪ ର ଖଣ୍ଡ (୨) ଅଧୀନରେ ଉଚ୍ଚତମ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତି ହୋଇଥାନ୍ତି, ବା

(ଖ) ଫେଡ଼େରାଲ ନ୍ୟାୟାଳୟର ଅନ୍ୟ କୌଣସି ନ୍ୟାୟାଧୀଶ ପଦ ଧାରଣ କରିଥିଲେ ଏବଂ ଏପରି ପ୍ରାରମ୍ଭପରେ ଉକ୍ତ ଖଣ୍ଡ ଅଧୀନରେ ଉଚ୍ଚତମ ନ୍ୟାୟାଳୟର (ମୁଖ୍ୟ ନ୍ୟାୟାଧୀପତିଙ୍କ ଭିନ୍ନ) ଏକ ନ୍ୟାୟାଧୀଶ ହୋଇଥାନ୍ତି,

ତାଙ୍କ ପ୍ରତି, ଯେ ଏପରି ମୁଖ୍ୟ ନ୍ୟାୟାଧିପତି ବା ଅନ୍ୟ ନ୍ୟାୟାଧୀଶ ରୂପେ ପଦ ଧାରଣ କରିଥିବା କାଳାବଧି ମଧ୍ୟରେ ଲଗୁ ହେବ ନାହିଁ ଏବଂ ଉଚ୍ଚତମ ନ୍ୟାୟାଳୟର ଏପରି ମୁଖ୍ୟ ନ୍ୟାୟାଧିପତି ବା ଅନ୍ୟ ନ୍ୟାୟାଧୀଶ-ରୂପେ ହେବା ପ୍ରତ୍ୟେକ ନ୍ୟାୟାଧୀଶ, ଯଥାସ୍ଥିତି, ଏପରି ମୁଖ୍ୟ ନ୍ୟାୟାଧିପତି ବା ଅନ୍ୟ ନ୍ୟାୟାଧୀଶ ରୂପେ ବାସ୍ତବିକ ସେବାରେ ବ୍ୟୟିତ ସମୟ ସଂପର୍କରେ ଏହି ପାରାର ଉପପାରା (୧)ରେ ବିନିର୍ଦ୍ଦିଷ୍ଟ ବେତନ ଅତିରିକ୍ତ ଏପରି ବିନିର୍ଦ୍ଦିଷ୍ଟ ବେତନ ଏବଂ ଏପରି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ସେ ନେଉଥିବା ବେତନ ମଧ୍ୟରେ ଅନ୍ତରର ସମପରିମାଣ, ବିଶେଷ ବେତନ ରୂପେ ପାଇବା ପାଇଁ ହକଦାର ହେବେ ।

(୪) ରାଷ୍ଟ୍ରପତି ବିଭିନ୍ନ ସମୟରେ ଯେପରି ବିହିତ କରିବେ ସେହିମତେ ଉଚ୍ଚତମ ନ୍ୟାୟାଳୟର ପ୍ରତ୍ୟେକ ନ୍ୟାୟାଧୀଶ ଭାରତର ରାଜ୍ୟକ୍ଷେତ୍ର ମଧ୍ୟରେ ନିଜର କର୍ତ୍ତବ୍ୟ ପାଳନରେ କରିଥିବା ଯାତ୍ରାରେ କରିଥିବା ବ୍ୟୟର ପୂରଣ ନିମିତ୍ତ ଯୁକ୍ତିଯୁକ୍ତ ଭତ୍ତା ପ୍ରାପ୍ତ ହେବେ ଏବଂ ଯାତ୍ରା ସମ୍ବନ୍ଧରେ ତାଙ୍କୁ ଯୁକ୍ତିଯୁକ୍ତ ସୁବିଧା ପ୍ରଦାନ କରାଯିବ ।

(୫) ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଫେଡ଼େରାଲ ନ୍ୟାୟାଳୟର ନ୍ୟାୟାଧୀଶ-ମାନଙ୍କ ପ୍ରତି ଯେଉଁ ଉପବଂଧମାନ ଲଗୁ ହେଉଥିଲା ତାହା ଦ୍ୱାରା ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶମାନଙ୍କ ଅନୁପସ୍ଥିତି ଛୁଟି (ଛୁଟି ଭତ୍ତା ସମେତ) ଏବଂ ପେନ୍‌ସନ ସଂପର୍କୀୟ ଅଧିକାରମାନ ନିୟନ୍ତ୍ରିତ ହେବ ।

୧୦ । (୧) ଉଚ୍ଚନ୍ୟାୟାଳୟର ନ୍ୟାୟାଧୀଶଙ୍କୁ ବାସ୍ତବିକ ସେବାରେ ବ୍ୟୟିତ ସମୟ ସଂପର୍କରେ ପ୍ରତିମାସ ନିମ୍ନଲିଖିତ ହାରରେ ବେତନ ଦିଆଯିବ, ଅର୍ଥାତ୍—

| | |
|---|---|
| ମୁଖ୍ୟ ନ୍ୟାୟାଧିପତି | ୪,୦୦୦ ଟଙ୍କା |
| ଅନ୍ୟ କୌଣସି ନ୍ୟାୟାଧୀଶ | ୩,୫୦୦ ଟଙ୍କା : |

ପରନ୍ତୁ ଯଦି ଉଚ୍ଚ ନ୍ୟାୟାଳୟର କୌଣସି ନ୍ୟାୟାଧୀଶ ତାଙ୍କର ନିଯୁକ୍ତି ସମୟରେ ଭାରତ ସରକାର ବା ତହିଁର କୌଣସି ପୂର୍ବବର୍ତ୍ତୀ ସରକାର ଅଥବା କୌଣସି ରାଜ୍ୟର ସରକାର ବା ତହିଁର କୌଣସି ପୂର୍ବବର୍ତ୍ତୀ ସରକାରଙ୍କ ଅଧୀନରେ ପୂର୍ବରୁ କରିଥିବା ସେବା ସଂପର୍କରେ କୌଣସି ପେନ୍‌ସନ (ନିର୍ଯୋଗ୍ୟତା ବା କ୍ଷତ ପେନ୍‌ସନ ଭିନ୍ନ) ପ୍ରାପ୍ତ ହେଉଥାଆନ୍ତି ତାହା ହେଲେ ଉଚ୍ଚ ନ୍ୟାୟାଳୟରେ ତାଙ୍କର ସେବା ସଂପର୍କରେ ତାଙ୍କର ବେତନରୁ—

(କ) ସେହି ପେନ୍‌ସନର ପରିମାଣ, ଏବଂ

(ଖ) ଯଦି ଏପରି ନିଯୁକ୍ତି ପୂର୍ବରୁ ପୂର୍ବ ସେବା ସଂପର୍କରେ ତାହାଙ୍କର ପ୍ରାପ୍ୟ ପେନ୍‌ସନର ଏକ ପ୍ରଭାଗ ବଦଳରେ ତହିଁର ସଂରାଶିକୃତ ମୂଲ୍ୟ ପାଇଥାନ୍ତି ତେବେ ସେ ପେନସନର ସେହି ପ୍ରଭାଗର ପରିମାଣ, ଏବଂ

(ଗ) ଯଦି ଏପରି ନିଯୁକ୍ତି ପୂର୍ବରୁ ସେ ଏପରି ପୂର୍ବସେବା ସଂପର୍କରେ ନିବୃତ୍ତି ଉପାଦାନ ପାଇଥାନ୍ତି ତେବେ ସେହି ଉପାଦାନର ସମତୁଲ୍ୟ ପେନ୍‌ସନ,

ହ୍ରାସ କରାଯିବ ।

(୨) ଏପରି ପ୍ରତ୍ୟେକ ବ୍ୟକ୍ତି ଯେ କି ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ—

(କ) କୌଣସି ପ୍ରଦେଶର ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତି ପଦଧାରଣ କରିଥିଲେ ତଥା ଏପରି ପ୍ରାରମ୍ଭପରେ ଅନୁଚ୍ଛେଦ ୩୭୬ର ଖଣ୍ଡ (୧) ଅଧୀନରେ ତତ୍‌ସ୍ଥାନୀ ରାଜ୍ୟର ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତି ହୋଇଥାନ୍ତି, ବା

(ଖ) କୌଣସି ପ୍ରଦେଶର ଉଚ୍ଚ ନ୍ୟାୟାଳୟର ଅନ୍ୟ କୌଣସି ନ୍ୟାୟାଧୀଶ ଥିଲେ ତଥା ଏପରି ପ୍ରାରମ୍ଭପରେ ଉକ୍ତ ଖଣ୍ଡ ଅଧୀନରେ ତତ୍‌ସ୍ଥାନୀ ରାଜ୍ୟର ଉଚ୍ଚ ନ୍ୟାୟାଳୟର (ମୁଖ୍ୟ ନ୍ୟାୟାଧିପତିଙ୍କ ଭିନ୍ନ) ଏକ ନ୍ୟାୟାଧୀଶ ହୋଇଥାନ୍ତି,

ସେ, ଏପରି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଯଦି ଏହି ପାରାର ଉପପାରା (୧)ରେ ବିନିର୍ଦ୍ଦିଷ୍ଟ ବେତନଠାରୁ ଉଚ୍ଚ ହାରରେ ବେତନ ପାଉଥିଲେ ତେବେ, ଯଥାସ୍ଥିତି, ମୁଖ୍ୟ ନ୍ୟାୟାଧୀଶ ବା ଅନ୍ୟ ନ୍ୟାୟାଧୀଶ ରୂପେ ବାସ୍ତବିକ ସେବାରେ ବ୍ୟୟିତ ସମୟ ସଂପର୍କରେ ଉକ୍ତ ଉପପାରାରେ ବିନିର୍ଦ୍ଦିଷ୍ଟ ବେତନ ଅତିରିକ୍ତ ଏପରି ବିନିର୍ଦ୍ଦିଷ୍ଟ ବେତନ ଏବଂ ଏପରି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ସେ ନେଉଥିବା ବେତନ ମଧ୍ୟରେ ଅନ୍ତରର ସମ ପରିମାଣ ବିଶେଷ ବେତନ ରୂପେ ପାଇବା ପାଇଁ ହକଦାର ହେବେ ।

(୩) ଯେଉଁ ବ୍ୟକ୍ତି ସଂବିଧାନ (ସପ୍ତମ ସଂଶୋଧନ) ଅଧିନିୟମ, ୧୯୫୬ର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ପ୍ରଥମ ଅନୁସୂଚୀର ଭାଗ ଖ ରେ ବିନିର୍ଦ୍ଦିଷ୍ଟ କୌଣସି ରାଜ୍ୟର ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନାୟାଧିପତି ପଦ ଧାରଣ କରିଥିଲେ, ତଥା ଏପରି ପ୍ରାରମ୍ଭ ପରେ ଉକ୍ତ ଅଧିନିୟମ ଦ୍ୱାରା ସଂଶୋଧିତ ଉକ୍ତ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ କୌଣସି ରାଜ୍ୟର ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତି ହୋଇଥାନ୍ତି ସେ ଯଦି ଏପରି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ତାଙ୍କ ବେତନ ଅତିରିକ୍ତ କୌଣସି ପରିମାଣ ଭତ୍ତାରୂପେ ପାଉଥିଲେ, ତେବେ ଏପରି ମୁଖ୍ୟ ନ୍ୟାୟାଧିପତିରୂପେ ବାସ୍ତବିକ ସେବାରେ ବ୍ୟୟିତ ସମୟ ସଂପର୍କରେ ଏହି ପାରାର ଉପପାରା (୧) ରେ ବିନିର୍ଦ୍ଦିଷ୍ଟ ବେତନ ଅତିରିକ୍ତ ସେହି ପରିମାଣ ଭତ୍ତା ରୂପେ ପାଇବା ପାଇଁ ହକଦାର ହେବେ ।

୧୧ । ପ୍ରସଙ୍ଗ ଅନ୍ୟଥା ଆବଶ୍ୟକ କରୁ ନ ଥିଲେ ଏହି ଭାଗରେ,—

(କ) କାର୍ଯ୍ୟକାରୀ ମୁଖ୍ୟ ନ୍ୟାୟାଧିପତି "ମୁଖ୍ୟ ନ୍ୟାୟାଧିପତି" ପଦର ଅନ୍ତର୍ଗତ ଅଟନ୍ତି ତଥା ଆଡ଼ହକ ନ୍ୟାୟାଧୀଶ "ନ୍ୟାୟାଧୀଶ" ପଦର ଅନ୍ତର୍ଗତ ଅଟନ୍ତି ;

(ଖ) "ବାସ୍ତବିକ ସେବା" ଏହି ପଦରେ—

(୲) ନ୍ୟାୟାଧୀଶଙ୍କ ଦ୍ୱାରା ନ୍ୟାୟାଧୀଶରୂପେ କର୍ତ୍ତବ୍ୟ କରିବାରେ ଅଥବା ରାଷ୍ଟ୍ରପତିଙ୍କ ଅନୁରୋଧ କ୍ରମେ ସେ ଅନ୍ୟ ଯେଉଁ କୃତ୍ୟ ନିର୍ବହନର ଭାର ନେଇଥିବେ ତାହା ପାଳନ କରିବାରେ ବ୍ୟୟିତ ସମୟ,

(୲୲) ଯେଉଁ ସମୟ ମଧ୍ୟରେ ନ୍ୟାୟାଧୀଶ ଛୁଟି ନେଇ ଅନୁପସ୍ଥିତ ଥିଲେ ତାହା ଅପବର୍ଜନ କରି ବିଶ୍ରାମ ବିକାଶ, ତଥା

(୲୲୲) ଉଚ୍ଚ ନ୍ୟାୟାଳୟରୁ ଉଚ୍ଚତମ ନ୍ୟାୟାଳୟକୁ ବା ଏକ ଉଚ୍ଚ ନ୍ୟାୟାଳୟରୁ ଅନ୍ୟ ଉଚ୍ଚ ନ୍ୟାୟାଳୟକୁ ବଦଳି ହେଲେ ଯୋଗ ଦେବା ସମୟ,

ଅନ୍ତର୍ଗତ ଅଟେ ।

## ଭାଗ ଡ

## ଭାରତର କଂପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କ ସଂପର୍କରେ ଉପବନ୍ଧ

୧୨ । (୧) ଭାରତର କଂପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କୁ ପ୍ରତିମାସ ଚାରିହଜାର ଟଙ୍କା ହାରରେ ବେତନ ଦିଆଯିବ ।

(୨) ଯେଉଁ ବ୍ୟକ୍ତି ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତର ଅଡ଼ିଟର ଜେନେରାଲ ପଦ ଧାରଣ କରିଥିଲେ ତଥା ଏପରି ପ୍ରାରମ୍ଭ ପରେ ଅନୁଚ୍ଛେଦ ୩୭୭ ଅଧୀନରେ ଭାରତର କଂପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲ ହୋଇଥାନ୍ତି ସେ ଏହି ପାରାର ଉପପାରା (୧)ରେ ବିନିର୍ଦ୍ଦିଷ୍ଟ ବେତନ ଅତିରିକ୍ତ ଏପରି ବିନିର୍ଦ୍ଦିଷ୍ଟ ବେତନ ଓ ଏପରି ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତର ଅଡ଼ିଟର ଜେନେରାଲ ରୂପେ ସେ ପାଉଥିବା ବେତନର ଅନ୍ତରର ସମପରିମାଣ, ବିଶେଷ ବେତନ ରୂପେ ପାଇବା ପାଇଁ ହକଦାର ହେବେ ।

(୩) ଭାରତର କଂପ୍ଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କର ଅନୁପସ୍ଥିତି, ଛୁଟି, ପେନ୍‌ସନ ଓ ସେବାର ଅନ୍ୟ ସର୍ତ୍ତମାନଙ୍କ ସଂପର୍କରେ ଅଧିକାର ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ଭାରତର ଅଡ଼ିଟର ଜେନେରାଲଙ୍କ ପ୍ରତି ଲାଗୁ ହେଉଥିବା ଉପବନ୍ଧମାନଙ୍କ ଦ୍ୱାରା, ଯଥାସ୍ଥିତି, ନିୟନ୍ତ୍ରିତ ହେବ ବା ନିୟନ୍ତ୍ରିତ ହେବା ଚାଲୁ ରହିବ ଏବଂ ସେହି ଉପବନ୍ଧମାନଙ୍କରେ ଥିବା ଗଭର୍ଣ୍ଣର ଜେନେରାଲଙ୍କ ସଂପର୍କରେ ନିର୍ଦ୍ଦେଶମାନ ରାଷ୍ଟ୍ରପତିଙ୍କ ସଂପର୍କରେ ନିର୍ଦ୍ଦେଶ ବୋଲି ଅର୍ଥ କରାଯିବ ।

# ତୃତୀୟ ଅନୁସୂଚୀ

[ ଅନୁଚ୍ଛେଦ ୭୫(୪), ୯୯, ୧୨୪(୬), ୧୪୮(୨), ୧୬୪(୩), ୧୮୮ ଏବଂ ୨୧୯ ]

## ଶପଥ ବା ପ୍ରତିଜ୍ଞାନର ପ୍ରପତ୍ର

୧

ସଂଘର ମନ୍ତ୍ରୀପଦ ନିମିତ୍ତ ଶପଥର ପ୍ରପତ୍ର:—

"ମୁଁ.....................................(ଅମୁକ) ଈଶ୍ୱରଙ୍କ ନାମରେ ଶପଥ କରୁଅଛି / ସତ୍ୟନିଷ୍ଠା ସହ ପ୍ରତିଜ୍ଞାନ କରୁଅଛି ଯେ ମୁଁ ବିଧି ଦ୍ୱାରା ସ୍ଥାପିତ ଭାରତର ସଂବିଧାନ ପ୍ରତି ଶ୍ରଦ୍ଧା ଓ ନିଷ୍ଠା ରଖିବି, ମୁଁ ଭାରତର ସାର୍ବଭୌମତ୍ୱ ଓ ଅଖଣ୍ଡତା ଅକ୍ଷୁର୍ଣ୍ଣ ରଖିବି, ସଂଘର ମନ୍ତ୍ରୀ ରୂପେ ମୋର କର୍ତ୍ତବ୍ୟ ଶ୍ରଦ୍ଧାପୂର୍ବକ ଏବଂ ଶୁଦ୍ଧ ଅନ୍ତଃକରଣରେ ନିର୍ବାହ କରିବି ଏବଂ ଭୟ, ପକ୍ଷପାତ, ଅନୁରାଗ ବା ଦ୍ୱେଷ ନ ରଖି ସକଳ ପ୍ରକାର ଲୋକଙ୍କ ପ୍ରତି ସଂବିଧାନ ଓ ବିଧି ଅନୁସାରେ ନ୍ୟାୟ କରିବି ।"

୨

ସଂଘର ମନ୍ତ୍ରୀଙ୍କ ନିମିତ୍ତ ଗୋପନୀୟତା ଶପଥର ପ୍ରପତ୍ର:—

"ମୁଁ ..........................................(ଅମୁକ) ଈଶ୍ୱରଙ୍କ ନାମରେ ଶପଥ କରୁଅଛି / ସତ୍ୟନିଷ୍ଠା ସହ ପ୍ରତିଜ୍ଞାନ କରୁଅଛି ଯେ ଯେଉଁ ବିଷୟ ସଂଘର ମନ୍ତ୍ରୀରୂପେ ମୋର ବିଚାର ନିମିତ୍ତ ଅଣାଯିବ ବା ମୋର ଜ୍ଞାନକୁ ଆସିବ ତାହା କେବଳ ଏପରି ମନ୍ତ୍ରୀରୂପେ ମୋର କର୍ତ୍ତବ୍ୟର ସମ୍ୟକ୍ ନିର୍ବାହ ନିମିତ୍ତ ଯେପରି ଆବଶ୍ୟକ ହେବ ତଦ୍ ବ୍ୟତିରେକେ କୌଣସି ବ୍ୟକ୍ତିଙ୍କୁ ବା ବ୍ୟକ୍ତିମାନଙ୍କୁ ମୁଁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ସଂସୂଚିତ ବା ପ୍ରକଟ କରିବି ନାହିଁ ।"

୩

କ

ସଂସଦ ପାଇଁ ନିର୍ବାଚନ ନିମିତ୍ତ ପ୍ରାର୍ଥୀଙ୍କ ଦ୍ୱାରା କରାଯିବା ଶପଥ ବା ପ୍ରତିଜ୍ଞାନର ପ୍ରପତ୍ର:—

"ମୁଁ ..........................................(ଅମୁକ) ରାଜ୍ୟସଭାର (ବା ଲୋକସଭାର) ସ୍ଥାନ ପୂରଣ ନିମିତ୍ତ ପ୍ରାର୍ଥୀ ରୂପେ ମନୋନୀତ ହୋଇ ଈଶ୍ୱରଙ୍କ ନାମରେ ଶପଥ କରୁଅଛି / ସତ୍ୟନିଷ୍ଠା ସହ ପ୍ରତିଜ୍ଞାନ କରୁଅଛି ଯେ ମୁଁ ବିଧିଦ୍ୱାରା ସ୍ଥାପିତ ଭାରତର ସଂବିଧାନ ପ୍ରତି ଶ୍ରଦ୍ଧାନିଷ୍ଠା ରଖିବି ଏବଂ ମୁଁ ଭାରତର ସାର୍ବଭୌମତ୍ୱ ଓ ଅଖଣ୍ଡତା ଅକ୍ଷୁର୍ଣ୍ଣ ରଖିବି ।"

୩

ସଂସଦ ସଦସ୍ୟଙ୍କଦ୍ୱାରା କରାଯିବା ଶପଥ ବା ପ୍ରତିଜ୍ଞାନର ପ୍ରପତ୍ର:—

"ମୁଁ.............................................(ଅମୁକ) ରାଜ୍ୟସଭା (ଅଥବା ଲୋକସଭା)ର

ଈଶ୍ୱରଙ୍କ ନାମରେ ଶପଥ କରୁଅଛି

ସଦସ୍ୟ ରୂପେ ନିର୍ବାଚିତ (ବା ମନୋନୀତ) ହୋଇ———————————————————ଯେ

ସତ୍ୟନିଷ୍ଠା ସହ ପ୍ରତିଜ୍ଞାନ କରୁଅଛି

ମୁଁ ବିଧିଦ୍ୱାରା ସ୍ଥାପିତ ଭାରତର ସଂବିଧାନ ପ୍ରତି ଶ୍ରଦ୍ଧା ଓ ନିଷ୍ଠା ରଖିବି, ମୁଁ ଭାରତର ସାର୍ବଭୌମତ୍ୱ ଓ ଅଖଣ୍ଡତା ଅକ୍ଷୁର୍ଣ୍ଣ ରଖିବି ଏବଂ ମୁଁ ଯେଉଁ ପଦ ଗ୍ରହଣ କରିବାକୁ ଯାଉଅଛି ତାହାର କର୍ତ୍ତବ୍ୟ ଶ୍ରଦ୍ଧାପୂର୍ବକ ନିର୍ବାହ କରିବି ।"

୪

ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶ ଏବଂ ଭାରତର କମ୍ପଟ୍ରୋଲର ଓ ଅଡିଟର ଜେନେରାଲଙ୍କ ଦ୍ୱାରା କରାଯିବା ଶପଥ ବା ପ୍ରତିଜ୍ଞାନର ପ୍ରପତ୍ର:—

"ମୁଁ.................................. (ଅମୁକ) ଭାରତର ଉଚ୍ଚତମ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧିପତି (ବା ନ୍ୟାୟାଧୀଶ) ବା (ଭରତର କମ୍ପଟ୍ରୋଲର ଓ ଅଡିଟର ଜେନେରାଲ) ରୂପେ ନିଯୁକ୍ତ ହୋଇ

ଈଶ୍ୱରଙ୍କ ନାମରେ ଶପଥ କରୁଅଛି

——————————————————ଯେ ମୁଁ ବିଧିଦ୍ୱାରା ସ୍ଥାପିତ ଭାରତର ସଂବିଧାନ ପ୍ରତି

ସତ୍ୟନିଷ୍ଠା ସହ ପ୍ରତିଜ୍ଞାନ କରୁଅଛି

ଶ୍ରଦ୍ଧା ଓ ନିଷ୍ଠା ରଖିବି, ମୁଁ ଭରତର ସାର୍ବଭୌମତ୍ୱ ଓ ଅଖଣ୍ଡତା ଅକ୍ଷୁର୍ଣ୍ଣ ରଖିବି, ଏବଂ ମୁଁ ସମ୍ୟକ ରୂପେ ଓ ଶ୍ରଦ୍ଧା ପୂର୍ବକ ଏବଂ ନିଜର ପୂର୍ଣ୍ଣ ଦକ୍ଷତା, ଜ୍ଞାନ ଓ ବିବେକ ଅନୁସାରେ ତଥା ଭୟ ବା ପକ୍ଷପାତ, ଅନୁରାଗ ବା ଦ୍ୱେଷ ନ ରଖି ମୋର ପଦର କର୍ତ୍ତବ୍ୟ ପାଳନ କରିବି ଏବଂ ମୁଁ ସଂବିଧାନ ଓ ବିଧିମାନଙ୍କର ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖିବି ।"

୫

ରାଜ୍ୟର କୌଣସି ମନ୍ତ୍ରୀପଦ ନିମିତ୍ତ ଶପଥର ପ୍ରପତ୍ର:—

ଈଶ୍ୱରଙ୍କ ନାମରେ ଶପଥ କରୁଅଛି

"ମୁଁ..........................(ଅମୁକ)————————————————ଯେ ମୁଁ ବିଧିଦ୍ୱାରା

ସତ୍ୟନିଷ୍ଠା ସହ ପ୍ରତିଜ୍ଞାନ କରୁଅଛି

ସ୍ଥାପିତ ଭାରତର ସଂବିଧାନ ପ୍ରତି ଶ୍ରଦ୍ଧା ଓ ନିଷ୍ଠା ରଖିବି, ମୁଁ ଭାରତର ସାର୍ବଭୌମତ୍ୱ ଓ ଅଖଣ୍ଡତା ଅକ୍ଷୁର୍ଣ୍ଣ ରଖିବି, ଏବଂ ମୁଁ..............................(ଅମୁକ) ରାଜ୍ୟର ମନ୍ତ୍ରୀରୂପେ ମୋର କର୍ତ୍ତବ୍ୟକୁ ଶ୍ରଦ୍ଧା ପୂର୍ବକ ଓ ଶୁଦ୍ଧ ଅନ୍ତଃକରଣରେ ନିର୍ବାହ କରିବି ତଥା ଭୟ ବା ପକ୍ଷପାତ, ଅନୁରାଗ ବା ଦ୍ୱେଷ ନ ରଖି ମୁଁ ସକଳ ପ୍ରକାର ଲୋକଙ୍କ ପ୍ରତି ସଂବିଧାନ ଓ ବିଧି ଅନୁସାରେ ନ୍ୟାୟ କରିବି ।"

୬

ରାଜ୍ୟର କୌଣସି ମନ୍ତ୍ରୀଙ୍କ ନିମିତ୍ତ ଗୋପନୀୟତା ଶପଥର ପ୍ରପତ୍ର :—

ଈଶ୍ୱରଙ୍କ ନାମରେ ଶପଥ କରୁଅଛି

"ମୁଁ....(ଅମୁକ) ——————————————— ଯେ ଯେଉଁ ବିଷୟ ....... (ଅମୁକ)

ସତ୍ୟ ନିଷ୍ଠା ସହ ପ୍ରତିଜ୍ଞାନ କରୁଅଛି

ରାଜ୍ୟର ମନ୍ତ୍ରୀ ରୂପେ ମୋର ବିଚାର ନିମିତ୍ତ ଅଣାଯିବ ବା ମୋର ଜ୍ଞାନକୁ ଆସିବ ତାହାକୁ କେବଳ ଏପରି ମନ୍ତ୍ରୀ ରୂପେ ମୋର କର୍ତ୍ତବ୍ୟର ସମ୍ୟକ୍ ନିର୍ବାହ ନିମିତ୍ତ ଯେପରି ଆବଶ୍ୟକ ହେବ ତଦ୍‌ବ୍ୟତିରେକେ କୌଣସି ବ୍ୟକ୍ତିଙ୍କୁ ବା ବ୍ୟକ୍ତିମାନଙ୍କୁ ମୁଁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ସଂସୂଚିତ ବା ପ୍ରକଟ କରିବି ନାହିଁ ।"

୭

କ

ରାଜ୍ୟ ବିଧାନ ମଣ୍ଡଳ ପାଇଁ ନିର୍ବାଚନ ନିମିତ୍ତ ପ୍ରାର୍ଥିଙ୍କ ଦ୍ୱାରା କରାଯିବା ଶପଥ ବା ପତିଜ୍ଞାନର ପ୍ରପତ୍ର :—

"ମୁଁ .........(ଅମୁକ) ବିଧାନ ସଭାର ( ବା ବିଧାନ ପରିଷଦର) ସ୍ଥାନ ପୂରଣ ନିମିତ୍ତ ପ୍ରାର୍ଥୀ ରୂପେ ମନୋନୀତ ହୋଇ— ଈଶ୍ୱରଙ୍କ ନାମରେ ଶପଥ କରୁଅଛି / ସତ୍ୟ ନିଷ୍ଠା ସହ ପ୍ରତିଜ୍ଞାନ କରୁଅଛି — ଯେ ମୁଁ ବିଧିଦ୍ୱାରା ସ୍ଥାପିତ ଭାରତର ସଂବିଧାନ ପ୍ରତି ଶ୍ରଦ୍ଧା ଓ ନିଷ୍ଠା ରଖିବି ଏବଂ ମୁଁ ଭାରତର ସାର୍ବଭୌମତ୍ୱ ଓ ଅଖଣ୍ଡତା ଅକ୍ଷୁର୍ଣ୍ଣ ରଖିବି ।"

ଖ

ରାଜ୍ୟ ବିଧାନ ମଣ୍ଡଳର ସଦସ୍ୟଙ୍କ ଦ୍ୱାରା କରାଯିବା ଶପଥ ବା ପ୍ରତିଜ୍ଞାନର ପ୍ରପତ୍ର :—

"ମୁଁ ......... (ଅମୁକ) ବିଧାନ ସଭାର ( ବା ବିଧାନ ପରିଷଦର) ସଦସ୍ୟ ରୂପେ ନିର୍ବାଚିତ (ବା ମନୋନୀତ) ହୋଇ — ଈଶ୍ୱରଙ୍କ ନାମରେ ଶପଥ କରୁଅଛି / ସତ୍ୟ ନିଷ୍ଠା ସହ ପ୍ରତିଜ୍ଞାନ କରୁଅଛି — ଯେ ମୁଁ ବିଧିଦ୍ୱାରା ସ୍ଥାପିତ ଭାରତର ସଂବିଧାନ ପ୍ରତି ଶ୍ରଦ୍ଧା ଓ ନିଷ୍ଠା ରଖିବି, ମୁଁ ଭାରତର ସାର୍ବଭୌମତ୍ୱ ଓ ଅଖଣ୍ଡତା ଅକ୍ଷୁର୍ଣ୍ଣ ରଖିବି ଏବଂ ମୁଁ ଯେଉଁ ପଦ ଗ୍ରହଣ କରିବାକୁ ଯାଉଅଛି ତାହାର କର୍ତ୍ତବ୍ୟ ଶ୍ରଦ୍ଧା ପୂର୍ବକ ନିର୍ବାହ କରିବି ।"

ଗ

ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ ମାନଙ୍କ ଦ୍ୱାରା କରାଯିବା ଶପଥ ବା ପ୍ରତିଜ୍ଞାନର ପ୍ରପତ୍ର .—

" ମୁଁ .............(ଅମୁକ) .......,...... (ଅମୁକ) ଉଚ୍ଚ ନ୍ୟାୟଳୟର ମୁଖ୍ୟ ନ୍ୟାୟାଧିପତି (ବା ନ୍ୟାୟାଧୀଶ) ରୂପେ ନିଯୁକ୍ତ ହୋଇ — ଈଶ୍ୱରଙ୍କ ନାମରେ ଶପଥ କରୁଅଛି / ସତ୍ୟ ନିଷ୍ଠା ସହ ପ୍ରତିଜ୍ଞାନ କରୁଅଛି — ଯେ ମୁଁ ବିଧିଦ୍ୱାରା ସ୍ଥାପିତ ଭରତର ସଂବିଧାନ ପ୍ରତି ଶ୍ରଦ୍ଧା ଓ ନିଷ୍ଠା ରଖିବି, ମୁଁ ଭାରତର ସାର୍ବଭୌମତ୍ୱ ଓ ଅଖଣ୍ଡତା ଅକ୍ଷୁର୍ଣ୍ଣ ରଖିବି ଏବଂ ମୁଁ ସମ୍ୟକ ରୂପେ ଓ ଶ୍ରଦ୍ଧା ପୂର୍ବକ ଏବଂ ନିଜର ପୂର୍ଣ୍ଣ ଦକ୍ଷତା, ଜ୍ଞାନ ଓ ବିବେକ ଅନୁସାରେ ତଥା ଭୟ ବା ପକ୍ଷପାତ, ଅନୁରାଗ ବା ଦ୍ୱେଷ ନ ରଖି ମୋର ପଦର କର୍ତ୍ତବ୍ୟ ପାଳନ କରିବି, ଏବଂ ମୁଁ ସଂବିଧାନ ଓ ବିଧିମାନଙ୍କର ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖିବି ।"

# ଚତୁର୍ଥ ଅନୁସୂଚୀ

[ ଅନୁଚ୍ଛେଦ ୪ (୧) ଏବଂ ୮୦ (୨) ]

## ରାଜ୍ୟସଭାରେ ସ୍ଥାନ ଆବଣ୍ଟନ

ନିମ୍ନ ସାରଣୀର ପ୍ରଥମ ସ୍ତମ୍ଭରେ ବିନିର୍ଦ୍ଦିଷ୍ଟ ପ୍ରତ୍ୟେକ ରାଜ୍ୟ ବା ସଂଘ ରାଜ୍ୟକ୍ଷେତ୍ରକୁ ତହିଁର ଦ୍ୱିତୀୟ ସ୍ତମ୍ଭରେ, ଯଥାସ୍ଥିତ, ସେହି ରାଜ୍ୟ ବା ସଂଘରାଜ୍ୟ କ୍ଷେତ୍ରର ବିପରୀତରେ ଯେଉଁ ସଂଖ୍ୟା ବିନିର୍ଦ୍ଦିଷ୍ଟ ହୋଇଅଛି ସେହି ସଂଖ୍ୟକ ସ୍ଥାନ ଆବଣ୍ଟିତ ହେବ ।

ସାରଣୀ

| | |
|---|---|
| ୧ । ଆନ୍ଧ୍ରପ୍ରଦେଶ | ୧୮ |
| ୨ । ଆସାମ | ୭ |
| ୩ । ବିହାର | ୨୨ |
| ୪ । ଗୁଜୁରାଟ | ୧୧ |
| ୫ । ହରିଆଣା | ୫ |
| ୬ । କେରଳ | ୯ |
| ୭ । ମଧ୍ୟପ୍ରଦେଶ | ୧୬ |
| ୮ । ତାମିଲନାଡୁ | ୧୮ |
| ୯ । ମହାରାଷ୍ଟ୍ର | ୧୯ |
| ୧୦ । କର୍ଣ୍ଣାଟକ | ୧୨ |
| ୧୧ । ଓଡ଼ିଶା | ୧୦ |
| ୧୨ । ପଞ୍ଜାବ | ୭ |
| ୧୩ । ରାଜସ୍ଥାନ | ୧୦ |
| ୧୪ । ଉତ୍ତର ପ୍ରଦେଶ | ୩୪ |
| ୧୫ । ପଶ୍ଚିମ ବଙ୍ଗ | ୧୬ |
| ୧୬ । ଜାମ୍ମୁ ଓ କାଶ୍ମୀର | ୪ |
| ୧୭ । ନାଗାଲାଣ୍ଡ | ୧ |

| | |
|---|---|
| ୧୮ । ହିମାଚଳ ପ୍ରଦେଶ | ୩ |
| ୧୯ । ମଣିପୁର | ୧ |
| ୨୦ । ତ୍ରିପୁରା | ୧ |
| ୨୧ । ମେଘାଳୟ | ୧ |
| ୨୨ । ସିକିମ | ୧ |
| ୨୩ । ଦିଲ୍ଲୀ | ୩ |
| ୨୪ । ପଣ୍ଡିଚେରୀ | ୧ |
| ୨୫ । ମିଜୋରାମ | ୧ |
| ୨୬ । ଅରୁଣାଚଳ ପ୍ରଦେଶ | ୧ |
| ମୋଟ | ୨୩୨ |

# ପଞ୍ଚମ ଅନୁସୂଚୀ

[ ଅନୁଚ୍ଛେଦ ୨୪୪ (୧) ]

## ଅନୁସୂଚତ କ୍ଷେତ୍ର ଏବଂ ଅନୁସୂଚତ ଜନଜାତମାନଙ୍କର ପ୍ରଶାସନ ଓ ନିୟନ୍ତ୍ରଣ ସଂପର୍କରେ ଉପବନ୍ଧ

### ଭାଗ କ

### ସାଧାରଣ

୧ । **ନିର୍ବାଚନ**—ପ୍ରସଙ୍ଗ ଅନ୍ୟଥା ଆବଶ୍ୟକ କରୁ ନ ଥିଲେ ଏହି ଅନୁସୂଚୀରେ ଆସାମ ଓ ମେଘାଳୟ ରାଜ୍ୟମାନ "ରାଜ୍ୟ" ପଦର ଅନ୍ତର୍ଗତ ନୁହେଁ ।

୨ । **ଅନୁସୂଚିତ କ୍ଷେତ୍ରରେ ରାଜ୍ୟର କାର୍ଯ୍ୟପାଳିକା କ୍ଷମତା**—ଏହି ଅନୁସୂଚୀର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, କୌଣସି ରାଜ୍ୟର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ସେହି ରାଜ୍ୟରେ ଥିବା ଅନୁସୂଚିତ କ୍ଷେତ୍ରମାନଙ୍କ ଉପରେ ରହିବ ।

୩ । **ଅନୁସୂଚିତ କ୍ଷେତ୍ରର ପ୍ରଶାସନ ବିଷୟରେ ରାଜ୍ୟପାଳଙ୍କଦ୍ୱାରା ରାଷ୍ଟ୍ରପତିଙ୍କୁ ରିପୋର୍ଟ**—ଅନୁସୂଚିତ କ୍ଷେତ୍ର ଥିବା ପ୍ରତ୍ୟେକ ରାଜ୍ୟର ରାଜ୍ୟପାଳ ପ୍ରତିବର୍ଷ ଅଥବା ଯେତେବେଳେ ରାଷ୍ଟ୍ରପତି ଏହା ଆବଶ୍ୟକ କରନ୍ତି ସେତେବେଳେ ସେହି ରାଜ୍ୟର ଅନୁସୂଚିତ କ୍ଷେତ୍ରର ପ୍ରଶାସନ ବିଷୟରେ ରାଷ୍ଟ୍ରପତିଙ୍କୁ ରିପୋର୍ଟ ଦେବେ ଏବଂ ରାଜ୍ୟର ଉକ୍ତ କ୍ଷେତ୍ରର ପ୍ରଶାସନ ବିଷୟରେ ନିର୍ଦ୍ଦେଶ ଦେବା ଲାଗି ସଂଘର କାର୍ଯ୍ୟପାଳିକା କ୍ଷମତାର ବିସ୍ତାର ରହିବ ।

### ଭାଗ ଖ

### ଅନୁସୂଚିତ କ୍ଷେତ୍ର ଏବଂ ଅନୁସୂଚିତ ଜନଜାତିମାନଙ୍କର ପ୍ରଶାସନ ଓ ନିୟନ୍ତ୍ରଣ

୪ । **ଜନଜାତି ମନ୍ତ୍ରଣା ପରିଷଦ**—(୧) ଅନୁସୂଚିତ କ୍ଷେତ୍ରଥିବା ପ୍ରତ୍ୟେକ ରାଜ୍ୟରେ ଏବଂ ଯଦି ରାଷ୍ଟ୍ରପତି ଏପରି ନିର୍ଦ୍ଦେଶ ଦିଅନ୍ତି ତେବେ ଅନୁସୂଚିତ ଜନଜାତି ଥିବା କିନ୍ତୁ ଅନୁସୂଚିତ କ୍ଷେତ୍ର ନ ଥିବା କୌଣସି ରାଜ୍ୟରେ କୋଡ଼ିଏରୁ ଅନଧିକ ସଦସ୍ୟ ବିଶିଷ୍ଟ ଏକ ଜନଜାତି ମନ୍ତ୍ରଣା ପରିଷଦ ସ୍ଥାପିତ ହେବ ଯହିଁରେ କି ସଦସ୍ୟମାନଙ୍କର ତିନିଚତୁର୍ଥାଂଶର ନିକଟତମ ସଂଭବ ସଂଖ୍ୟା ସେହି ରାଜ୍ୟର ବିଧାନସଭାରେ ଅନୁସୂଚିତ ଜନଜାତିଙ୍କର ପ୍ରତିନିଧି ହୋଇଥିବେ:

ପରନ୍ତୁ ଯଦି ସେହି ରାଜ୍ୟର ବିଧାନସଭାରେ ଅନୁସୂଚିତ ଜନଜାତିଙ୍କର ପ୍ରତିନିଧିମାନଙ୍କର ସଂଖ୍ୟା ଏପରି ପ୍ରତିନିଧିମାନଙ୍କ ଦ୍ୱାରା ପୂରଣ କରାଯିବାକୁ ଥିବା ଜନଜାତି ମନ୍ତ୍ରଣା ପରିଷଦର ସ୍ଥାନର ସଂଖ୍ୟାଠାରୁ କମ୍ ହୋଇଥାଏ ତାହା ହେଲେ ଅବଶିଷ୍ଟ ସ୍ଥାନ ସେହି ଜନଜାତିମାନଙ୍କର ଅନ୍ୟ ସଦସ୍ୟଙ୍କ ଦ୍ୱାରା ପୂରଣ କରାଯିବ ।

(୨) ରାଜ୍ୟପାଳ ଜନଜାତିମାନଙ୍କର କଲ୍ୟାଣ ଓ ଉନ୍ନତି ସଂବନ୍ଧରେ ଯେଉଁ ସବୁ ବିଷୟ ଉଲ୍ଲେଖ କରିବେ ସେପରି ବିଷୟରେ ମନ୍ତ୍ରଣା ଦେବା ଜନଜାତି ମନ୍ତ୍ରଣା ପରିଷଦର କର୍ତ୍ତବ୍ୟ ହେବ ।

(୩) ରାଜ୍ୟପାଳ—

(କ) ପରିଷଦର ସଦସ୍ୟ ସଂଖ୍ୟା, ସେମାନଙ୍କର ତଥା ପରିଷଦର ଅଧ୍ୟକ୍ଷ ଏବଂ ତହିଁର ଅଫିସର ଓ ସେବକମାନଙ୍କର ନିଯୁକ୍ତିର ରୀତି,

(ଖ) ତହିଁର ଅଧିବେଶନମାନଙ୍କର ସଂଚାଳନ ଏବଂ ତହିଁର ସାଧାରଣ ପ୍ରକ୍ରିୟା, ଏବଂ

(ଗ) ଅନ୍ୟ ସମସ୍ତ ଆନୁଷଙ୍ଗିକ ବିଷୟ,

ଯଥାସ୍ଥିତି, ବିହିତ କରିବା ବା ବିନିୟମିତ କରିବା ନିମିତ୍ତ ନିୟମ ପ୍ରଣୟନ କରିପାରିବେ ।

**୫। ଅନୁସୂଚିତକ୍ଷେତ୍ର ପ୍ରତି ଲାଗୁ ହେବା ବିଧି**—(୧) ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ, ରାଜ୍ୟପାଳ ଲୋକ ଅଧିସୂଚନା ଦ୍ୱାରା ନିର୍ଦ୍ଦେଶ ଦେଇ ପାରିବେ ଯେ ସଂସଦର ବା ରାଜ୍ୟ ବିଧାନମଣ୍ଡଳର କୌଣସି ବିଶେଷ ଅଧିନିୟମ ସେହି ରାଜ୍ୟର ଅନୁସୂଚିତ କ୍ଷେତ୍ର ବା ତହିଁର କୌଣସି ଭାଗ ପ୍ରତି ଲାଗୁ ହେବ ନାହିଁ ଅଥବା ସେହି ଅଧିସୂଚନାରେ ସେ ଯେପରି ବିନିର୍ଦ୍ଦିଷ୍ଟ କରିଥିବେ ସେପରି ବ୍ୟତିରେକୀ ଓ ରୂପାନ୍ତରଣର ବଶବର୍ତ୍ତୀ ରହି ଲାଗୁହେବ ଏବଂ ଏହି ଉପଧାରା ଅଧୀନରେ ଦିଆଯିବା କୌଣସି ନିର୍ଦ୍ଦେଶ ଏପରିଭାବେ ଦିଆଯାଇ ପାରିବ ଯେପରିକି ତହିଁର ଭୂତଲକ୍ଷୀ ପ୍ରଭାବ ରହିବ ।

(୨) ରାଜ୍ୟର ତତ୍‌ସମୟ ଅନୁସୂଚିତ କ୍ଷେତ୍ର ହୋଇଥିବା କୌଣସି କ୍ଷେତ୍ରରେ ଶାନ୍ତି ଓ ସୁଶାସନ ନିମିତ୍ତ ରାଜ୍ୟପାଳ ବିନିୟମ ପ୍ରଣୟନ କରିପାରିବେ ।

ବିଶେଷତଃ ଏବଂ ପୂର୍ବବର୍ତ୍ତୀ କ୍ଷମତାର ବ୍ୟାପକତା ଉପରେ ପ୍ରତିକୂଳ ପ୍ରଭାବ ନ ପକାଇ ଏପରି ବିନିୟମ—

(କ) ଏପରି କ୍ଷେତ୍ରସ୍ଥ ଅନୁସୂଚିତ ଜନଜାତିର ସଦସ୍ୟମାନଙ୍କ ଦ୍ୱାରା ବା ମଧ୍ୟରେ ଭୂମିର ଅନ୍ତରଣକୁ ନିଷିଦ୍ଧ ବା ନିର୍ବନ୍ଧିତ କରି ପାରିବ;

(ଖ) ଏପରି କ୍ଷେତ୍ରସ୍ଥ ଅନୁସୂଚିତ ଜନଜାତିର ସଦସ୍ୟମାନଙ୍କୁ ଭୂମିର ଆବଣ୍ଟନ ବିନିୟମିତ କରି ପାରିବ;

(ଗ) ଏପରି କ୍ଷେତ୍ରସ୍ଥ ଅନୁସୂଚିତ ଜନଜାତିର ସଦସ୍ୟମାନଙ୍କୁ ଧନ ଉଧାର ଦେଉଥିବା ବ୍ୟକ୍ତି-ମାନଙ୍କର ମହାଜନ ରୂପେ କାରବାରକୁ ବିନିୟମିତ କରି ପାରିବ ।

(୩) ଏହି ପାରାର ଉପପାରା (୨) ରେ ଯଥା ନିର୍ଦ୍ଦିଷ୍ଟ କୌଣସି ବିନିୟମ ପ୍ରଣୟନ କରିବାରେ ରାଜ୍ୟ-ପାଳ ପ୍ରଶ୍ନାଧୀନ କ୍ଷେତ୍ର ପ୍ରତି ତତ୍ ସମୟ ଲାଗୁ ହେଉଥିବା ସଂସଦର ବା ରାଜ୍ୟ ବିଧାନ ମଣ୍ଡଳର କୌଣସି ଅଧିନିୟମକୁ ବା କୌଣସି ବିଦ୍ୟମାନ ବିଧିକୁ ନିରସିତ ବା ସଂଶୋଧିତ କରି ପାରିବେ ।

(୪) ଏହି ପାରା ଅଧୀନରେ ପ୍ରଣୀତ ବିନିୟମ ତୁରନ୍ତ ରାଷ୍ଟ୍ରପତିଙ୍କ ନିକଟକୁ ପ୍ରେରଣ କରାଯିବ ଏବଂ ତାଙ୍କ ଦ୍ୱାରା ସ୍ୱୀକୃତ ନ ହେବା ପର୍ଯ୍ୟନ୍ତ ତାହାର କୌଣସି ପ୍ରଭାବ ରହିବ ନାହିଁ ।

(୫) ଯେଉଁଠାରେ ରାଜ୍ୟପାଇଁ ଏକ ଜନଜାତି ମନ୍ତ୍ରଣା ପରିଷଦ ରହିଥାଏ ସେଠାରେ ବିନିୟମ ପ୍ରଣୟନକାରୀ ରାଜ୍ୟପାଳ ଯଦି ଏପରି ପରିଷଦ ସହ ପରାମର୍ଶ କରି ନ ଥାନ୍ତି ତେବେ ଏହି ପାରା ଅଧୀନରେ କୌଣସି ବିନିୟମ ପ୍ରଣୟନ କରାଯିବ ନାହିଁ ।

## ଭାଗ ଗ

### ଅନୁସୂଚିତ କ୍ଷେତ୍ର

**୬। ଅନୁସୂଚିତ କ୍ଷେତ୍ର**—(୧) ରାଷ୍ଟ୍ରପତି ଆଦେଶ ଦ୍ୱାରା ଯାହାକୁ ଅନୁସୂଚିତ କ୍ଷେତ୍ର ବୋଲି ଘୋଷିତ କରିବେ ଏହି ସଂବିଧାନରେ "ଅନୁସୂଚିତ କ୍ଷେତ୍ର" ଦ୍ୱାରା ସେପରି କ୍ଷେତ୍ର ଅଭିପ୍ରେତ ଅଟେ ।

(୨) ରାଷ୍ଟ୍ରପତି ଯେକୌଣସି ସମୟରେ ଆଦେଶ ଦ୍ୱାରା —

(କ) କୌଣସି ସଂପୂର୍ଣ୍ଣ ଅନୁସୂଚିତ କ୍ଷେତ୍ର ବା ତହିଁର କୌଣସି ବିନିର୍ଦ୍ଦିଷ୍ଟ ଭାଗ, ଅନୁସଚିତ କ୍ଷେତ୍ର ବା ତହିଁର ଏପରି ଭାଗ ହୋଇ ରହିବ ନାହିଁ ବୋଲି ନିର୍ଦ୍ଦେଶ ଦେଇ ପାରିବେ;

(କକ) ରାଜ୍ୟର ରାଜ୍ୟପାଳଙ୍କ ସହିତ ପରାମର୍ଶ କରିବା ପରେ ସେହି ରାଜ୍ୟରେ ଥିବା କୌଣସି ଅନୁସୂଚିତ କ୍ଷେତ୍ରକୁ ବଢ଼ାଇ ପାରିବେ;

(ଖ) କୌଣସି ଅନୁସୂଚିତ କ୍ଷେତ୍ରକୁ କେବଳ ତହିଁର ସୀମାର ସଂଶୋଧନ ଆକାରରେ ପରିବର୍ତ୍ତନ କରିପାରିବେ ;

(ଗ) କୌଣସି ରାଜ୍ୟର ସୀମାରେ କୌଣସି ପରିବର୍ତ୍ତନ ବେଳେ ବା ସଂଘରେ କୌଣସି ନୂତନ ରାଜ୍ୟର ପ୍ରବେଶ ବେଳେ ବା ନୂତନ ରାଜ୍ୟର ସ୍ଥାପନା ବେଳେ ପୂର୍ବରୁ କୌଣସି ରାଜ୍ୟର ଅନ୍ତର୍ଗତ ହୋଇ ନ ଥିବା କୌଣସି କ୍ଷେତ୍ରକୁ ଅନୁସୂଚିତ କ୍ଷେତ୍ର ହେବ ବୋଲି ଅଥବା କୌଣସି ଅନୁସୂଚିତ କ୍ଷେତ୍ରର ଭାଗ ହେବ ବୋଲି ଘୋଷଣା କରି ପାରିବେ;

(ଘ) କୌଣସି ରାଜ୍ୟ ବା ରାଜ୍ୟମାନଙ୍କ ସମ୍ବନ୍ଧରେ ଏହି ପାରା ଅଧୀନରେ ହୋଇଥିବା ଆଦେଶ ବା ଆଦେଶମାନ ବିଖଣ୍ଡିତ କରି ପାରିବେ ଏବଂ ସଂପୃକ୍ତ ରାଜ୍ୟର ରାଜ୍ୟପାଳଙ୍କ ସହିତ ପରାମର୍ଶ କରି ଯେଉଁ କ୍ଷେତ୍ରମାନ ଅନୁସୂଚିତ କ୍ଷେତ୍ର ହେବ ତାହା ପୁନଃ ନିରୁପିତ କରି ଆଦେଶ ଦେଇ ପାରିବେ;

ଏବଂ ଏପରି କୌଣସି ଆଦେଶରେ ରାଷ୍ଟ୍ରପତି ଯେପରି ଆବଶ୍ୟକ ଓ ଉଚିତ ମନେ କରିବେ ସେପରି ଆନୁଷଙ୍ଗିକ ଓ ପାରିଣାମିକ ଉପବନ୍ଧମାନ ଅନ୍ତର୍ଭୁକ୍ତ ହେବ କିନ୍ତୁ ଉପରୋକ୍ତ ରୀତି ଭିନ୍ନ ଅନ୍ୟଥା ଏହି ପାରାର ଉପପାରା (୧) ଅଧୀନରେ ପ୍ରଦତ୍ତ ଆଦେଶ କୌଣସି ପଶ୍ଚାତ୍‌ବର୍ତ୍ତୀ ଆଦେଶ ଦ୍ୱାରା ପରିବର୍ତ୍ତିତ ହେବ ନାହିଁ ।

## ଭାଗ ଘ

### ଅନୁସୂଚିର ସଂଶୋଧନ

୭ । **ଅନୁସୂଚିର ସଂଶୋଧନ**–(୧) ସଂସଦ ବିଭିନ୍ନ ସମୟରେ ବିଧି ଦ୍ୱାରା ଏହି ଅନୁସୂଚୀର କୌଣସି ଉପବନ୍ଧକୁ ଯୋଗ, ଅଦଳ ବଦଳ ବା ନିରସିତ କରି ସଂଶୋଧନ କରି ପାରିବ, ଏବଂ ଅନୁସୂଚୀ ଏହି ପ୍ରକାର ସଂଶୋଧିତ ହେଲେ ଏହି ସଂବିଧାନରେ ଏହି ଅନୁସୂଚୀ ପ୍ରତି ନିର୍ଦ୍ଦେଶକୁ ଏହି ପ୍ରକାର ସଂଶୋଧିତ ଅନୁସୂଚୀ ପ୍ରତି ନିର୍ଦ୍ଦେଶ ବୋଲି ଅର୍ଥ କରାଯିବ ।

(୨) ଏହି ପାରାର ଉପପାରା (୧) ରେ ଉଲ୍ଲିଖିତ ବିଧି ଅନୁଚ୍ଛେଦ ୩୬୮ ର ପ୍ରୟୋଜନାର୍ଥ ଏହି ସଂବିଧାନର ସଂଶୋଧନ ବୋଲି ବିବେଚିତ ହେବ ନାହିଁ ।

# ଷଷ୍ଠ ଅନୁସୂଚୀ

[ ଅନୁଚ୍ଛେଦ ୨୪୪ (୨) ଏବଂ ୨୭୫ (୧) ]

**ଆସାମ ଓ ମେଘାଳୟ ରାଜ୍ୟମାନଙ୍କରେ ଏବଂ ମିଜୋରାମ ସଂଘ ରାଜ୍ୟକ୍ଷେତ୍ରରେ ଥିବା ଜନଜାତି କ୍ଷେତ୍ର ସମୂହର ପ୍ରଶାସନ ସଂପର୍କରେ ଉପବଂଧ**

୧ । **ସ୍ୱାୟତ୍ତଶାସୀ ଜିଲ୍ଲା ଏବଂ ସ୍ୱାୟତ୍ତଶାସୀ ଅଞ୍ଚଳ**—(୧) ଏହି ପାରାର ଉପବଂଧମାନଙ୍କର ବଶବର୍ତ୍ତୀ ରହି, ଏହି ଅନୁସୂଚୀର ପାରା ୨୦ ସଂଲଗ୍ନ ସାରିଣୀର ଭାଗ (୧), (୨) ଓ ଭାଗ (୩)ର ପ୍ରତ୍ୟେକ ଦଫାରେ ଥିବା ଜନଜାତି କ୍ଷେତ୍ରମାନ ଏକ ସ୍ୱାୟତ୍ତଶାସୀ ଜିଲ୍ଲା ହେବ ।

(୨) ଯଦି କୌଣସି ସ୍ୱାୟତ୍ତଶାସୀ ଜିଲ୍ଲାରେ ଭିନ୍ନ ଭିନ୍ନ ଅନୁସୂଚୀତ ଜନଜାତି ଥାଆନ୍ତି ତାହାହେଲେ ରାଜ୍ୟପାଳ ଲୋକ ଅଧିସୂଚନାଦ୍ୱାରା ସେମାନେ ବସତି କରିଥିବା ଅଞ୍ଚଳ ବା ଅଞ୍ଚଳମାନଙ୍କୁ ସ୍ୱାୟତ୍ତଶାସୀ ଅଞ୍ଚଳମାନଙ୍କରେ ଭାଗ କରି କରିପାରିବେ ।

(୩) ରାଜ୍ୟପାଳ ଲୋକ ଅଧିସୂଚନା ଦ୍ୱାରା,—

(କ) ଉକ୍ତ ସାରଣୀର ଯେ କୌଣସି ଭାଗରେ ଥିବା କୌଣସି କ୍ଷେତ୍ର ଅନ୍ତର୍ଭୁକ୍ତ କରିପାରିବେ ;

(ଖ) ଉକ୍ତ ସାରଣୀର ଯେ କୌଣସି ଭାଗରୁ କୌଣସି କ୍ଷେତ୍ର ଅପବର୍ଜିତ କରିପାରିବେ ;

(ଗ) ଏକ ନୂତନ ସ୍ୱାୟତ୍ତଶାସୀ ଜିଲ୍ଲା ସୃଷ୍ଟି କରିପାରିବେ ;

(ଘ) କୌଣସି ସ୍ୱାୟତ୍ତଶାସୀ ଜିଲ୍ଲାର କ୍ଷେତ୍ର ବୃଦ୍ଧି କରିପାରିବେ ;

(ଙ) କୌଣସି ସ୍ୱାୟତ୍ତଶାସୀ ଜିଲ୍ଲାର କ୍ଷେତ୍ର ହ୍ରାସ କରିପାରିବେ ;

(ଚ) ଦୁଇ ବା ଅଧିକ ସ୍ୱାୟତ୍ତଶାସୀ ଜିଲ୍ଲା ବା ତହିଁର ଭାଗକୁ ମିଶାଇ ଏକ ସ୍ୱାୟତ୍ତଶାସୀ ଜିଲ୍ଲା ଗଠନ କରିପାରିବେ ;

(ଛ) କୌଣସି ସ୍ୱାୟତ୍ତଶାସୀ ଜିଲ୍ଲାର ସୀମା ନିରୂପଣ କରିପାରିବେ ;

ପରନ୍ତୁ ଏହି ଅନୁସୂଚୀର ପାରା ୧୪ର ଉପପାରା (୧) ଅଧୀନରେ ନିଯୁକ୍ତ କମିଶନରଙ୍କ ରିପୋର୍ଟ ଉପରେ ଯେଉଁ ପର୍ଯ୍ୟନ୍ତ ରାଜ୍ୟପାଳ ବିଗ୍ଭର କରିସାରି ନଥାନ୍ତି ସେ ପର୍ଯ୍ୟନ୍ତ ଏହି ଉପପାରାର ଖଣ୍ଡ (ଗ), (ଘ), (ଙ) ଏବଂ (ଚ) ଅଧୀନରେ ରାଜ୍ୟପାଳଙ୍କ ଦ୍ୱାରା କୌଣସି ଆଦେଶ ଦିଆଯିବ ନାହିଁ :

ଅଧିକନ୍ତୁ ଏହି ଉପପାରା ଅଧୀନରେ ରାଜ୍ୟପାଳଙ୍କଦ୍ୱାରା କରାଯିବା କୌଣସି ଆଦେଶରେ (ପାରା ୨୦ ର ଏବଂ ଉକ୍ତ ସାରଣୀର ଯେ କୌଣସି ଭାଗରେ ଥିବା ଯେ କୌଣସି ଦଫାର ସଂଶୋଧନ ସମେତ) ଏପରି ଆନୁଷଙ୍ଗିକ ଓ ପାରିଣାମିକ ଉପବଂଧମାନ ରହିପାରିବ ଯାହାକି ରାଜ୍ୟପାଳ ଏହି ଆଦେଶର ଉପବଂଧମାନଙ୍କୁ କାର୍ଯ୍ୟକାରୀ କରିବା ନିମିତ୍ତ ଆବଶ୍ୟକ ମନେ କରିବେ ।

୨ । **ଜିଲ୍ଲା ପରିଷଦ ଏବଂ ଆଞ୍ଚଳିକ ପରିଷଦ ଗଠନ**—(୧) ପ୍ରତ୍ୟେକ ସ୍ୱାୟତ୍ତଶାସୀ ଜିଲ୍ଲା ନିମିତ୍ତ ଚବିଶରୁ ଅନଧିକ ସଦସ୍ୟ ବିଶିଷ୍ଟ ଏକ ଜିଲ୍ଲା ପରିଷଦ ରହିବ ଯହିଁରେ କି ଅନ୍ୟୂନ ତିନିଚତୁର୍ଥାଂଶ ସଦସ୍ୟ ବୟସ୍କ ମତାଧିକାର ଆଧାର ଉପରେ ନିର୍ବାଚିତ ହେବେ ।

(୨) ଏହି ଅନୁସୂଚୀର ପାରା ୧ର ଉପପାରା (୨) ଅଧୀନରେ ସ୍ୱାୟତ୍ତଶାସୀ ଅଞ୍ଚଳ ରୂପେ ଗଠିତ ପ୍ରତ୍ୟେକ କ୍ଷେତ୍ର ନିମିତ୍ତ ଏକ ପୃଥକ ଆଞ୍ଚଳିକ ପରିଷଦ ରହିବ ।

(୩) ପ୍ରତ୍ୟେକ ଜିଲ୍ଲା ପରିଷଦ ଓ ପ୍ରତ୍ୟେକ ଆଂଚଳିକ ପରିଷଦ ଯଥାକ୍ରମେ "(ଜିଲ୍ଲାର ନାମ)" ର ଜିଲ୍ଲା ପରିଷଦ ଓ "(ଅଞ୍ଚଳର ନାମ) ର ଆଞ୍ଚଳିକ ପରିଷଦ" ନାମକ ନିଗମ ନିକାୟ ହେବ ଯାହାରକି ଶାଶ୍ୱତ ଉତ୍ତରାଧିକାର ତଥା ସାଧାରଣ ମୁଦ୍ରା ରହିବ ଏବଂ ଉକ୍ତ ନାମରେ ସେ ମୋକଦମା ଆଗତ କରିପାରିବ ବା ତାହାର ନାମରେ ମୋକଦମା ଆଗତ କରାଯାଇ ପାରିବ ।

(୪) ଏହି ଅନୁସୂଚୀର ଉପବଂଧମାନଙ୍କର ବଶବର୍ତ୍ତୀ ରହି, ସ୍ୱାୟତ୍ତଶାସୀ ଜିଲ୍ଲାର ପ୍ରଶାସନ ଯେତେ-ଦୂର ପର୍ଯ୍ୟନ୍ତ ତାହା ଏହି ଅନୁସୂଚୀ ଅଧୀନରେ ସେହି ଜିଲ୍ଲାରେ ଥିବା କୌଣସି ଆଞ୍ଚଳିକ ପରିଷଦଠାରେ ନିହିତ ହୋଇ ନଥାଏ ସେହି ପର୍ଯ୍ୟନ୍ତ ଏପରି ଜିଲ୍ଲାର ଜିଲ୍ଲାପରିଷଦଠାରେ ନିହିତ ହେବ ଏବଂ ସ୍ୱାୟତ୍ତଶାସୀ ଅଞ୍ଚଳର ପ୍ରଶାସନ ଏପରି ଅଂଚଳର ଆଞ୍ଚଳିକ ପରିଷଦଠାରେ ନିହିତ ହେବ ।

(୫) ଆଞ୍ଚଳିକ ପରିଷଦ ଥିବା କୌଣସି ସ୍ୱାୟତ୍ତଶାସୀ ଜିଲ୍ଲାରେ ଆଞ୍ଚଳିକ ପରିଷଦର ପ୍ରାଧିକାରାଧୀନ କ୍ଷେତ୍ରମାନଂକ ସଂପର୍କରେ ଜିଲ୍ଲା ପରିଷଦର ଏହି ଅନୁସୂଚୀ ଦ୍ୱାରା ଏପରି କ୍ଷେତ୍ର ସଂପର୍କରେ ତାହାକୁ ପ୍ରଦତ୍ତ କ୍ଷମତା ଅତିରିକ୍ତ କେବଳ ସେପରି କ୍ଷମତା ରହିବ ଯାହାକି ଆଞ୍ଚଳିକ ପରିଷଦ ଦ୍ୱାରା ତାହାକୁ ପ୍ରତ୍ୟର୍ପିତ ହେବ ।

(୬) ରାଜ୍ୟପାଳ ସଂପୃକ୍ତ ସ୍ୱାୟତ୍ତଶାସୀ ଜିଲ୍ଲା ବା ଅଞ୍ଚଳର ବିଦ୍ୟମାନ ଜନଜାତି ପରିଷଦ ବା ଅନ୍ୟ ପ୍ରତିନିଧିମୂଳକ ଜନଜାତି ସଂଗଠନ ସହ ପରାମର୍ଶ କରି ଜିଲ୍ଲା ପରିଷଦ ଓ ଆଞ୍ଚଳିକ ପରିଷଦ-ମାନଂକର ପ୍ରଥମ ଗଠନ ନିମିତ୍ତ ନିୟମାବଳୀ ପ୍ରଣୟନ କରିବେ, ଏବଂ ଏପରି ନିୟମାବଳୀରେ ନିମ୍ନୋକ୍ତ ବିଷୟମାନ ଉପବନ୍ଧିତ ହୋଇ ପାରିବେ :—

(କ) ଜିଲ୍ଲା ପରିଷଦ ଓ ଆଞ୍ଚଳିକ ପରିଷଦମାନଙ୍କର ରଚନା ତଥା ତହିଁରେ ସ୍ଥାନର ଆବଣ୍ଟନ ;

(ଖ) ସେହି ପରିଷଦମାନଙ୍କ ପାଇଁ ନିର୍ବାଚନର ପ୍ରଯୋଜନାର୍ଥ ଆଞ୍ଚଳିକ ନିର୍ବାଚନ କ୍ଷେତ୍ରମାନଙ୍କର ସୀମା ନିର୍ଦ୍ଧାରଣ ;

(ଗ) ଏପରି ନିର୍ବାଚନମାନଙ୍କରେ ଭୋଟ ଦାନ ପାଇଁ ଯୋଗ୍ୟତା ତଥା ସେଥିପାଇଁ ନିର୍ବାଚନ ନାମାବଳୀ ପ୍ରସ୍ତୁତ କରିବା ;

(ଘ) ଏପରି ନିର୍ବାଚନରେ ଏପରି ପରିଷଦମାନଙ୍କର ସଦସ୍ୟରୂପେ ନିର୍ବାଚିତ ହେବାର ଯୋଗ୍ୟତା ବିଷୟରେ ।

(ଙ) ଏପରି ପରିଷଦମାନଙ୍କର ସଦସ୍ୟମାନଙ୍କର ପଦାବଧି ;

(ଚ) ଏପରି ପରିଷଦମାନଙ୍କ ପାଇଁ ନିର୍ବାଚନ ବା ମନୋନୟନ ସହ ସଂବଧିତ ବା ସଂପୃକ୍ତ ଅନ୍ୟ କୌଣସି ବିଷୟ ;

(ଛ) ଜିଲ୍ଲା ତଥା ଆଞ୍ଚଳିକ ପରିଷଦମାନଙ୍କର ପ୍ରକ୍ରିୟା ଓ କାର୍ଯ୍ୟ ସଂଚାଳନ ;

(ଜ) ଜିଲ୍ଲା ତଥା ଆଞ୍ଚଳିକ ପରିଷଦମାନଙ୍କର ଅଫିସର ଓ କର୍ମଚାରୀ ମାନଙ୍କର ନିଯୁକ୍ତି ;

(୬କ) ଜିଲ୍ଲା ପରିଷଦର ସଦସ୍ୟମାନେ, ସେହି ଜିଲ୍ଲା ପରିଷଦ ପାରା ୧୬ ଅଧୀନରେ ଶିଘ୍ରତର ବିଘଟିତ ନହେଲେ ପରିଷଦ ଲାଗି ସାଧାରଣ ନିର୍ବାଚନ ପରେ ପରିଷଦର ପ୍ରଥମ ସଭା ନିମିତ୍ତ ନିୟତ ତାରିଖଠାରୁ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ପଦ ଧାରଣ କରିବେ ଏବଂ ଜଣେ ମନୋନୀତ ସଦସ୍ୟ ରାଜ୍ୟପାଳଙ୍କ ସନ୍ତୋଷାବଧି ପଦ ଧାରଣ କରିବେ

ପରନ୍ତୁ କୌଣସି ଆପାତକାଳୀନ ଉଦ୍‌ଘୋଷଣା ପ୍ରବର୍ତ୍ତିତ ଥିବା ବେଳେ କିମ୍ବା ଯଦି ଏପରି ପରିସ୍ଥିତି ବିଦ୍ୟମାନ ଥାଏ ଯହିଁରେ ରାଜ୍ୟପାଳଙ୍କ ମତରେ ନିର୍ବାଚନ କରାଇବା ଅସାଧ୍ୟ ହୁଏ, ତେବେ ଉକ୍ତ ପାଞ୍ଚବର୍ଷ କାଳାବଧି, ରାଜ୍ୟପାଳଙ୍କଦ୍ୱାରା ଥରକେ ଏକ ବର୍ଷରୁ ଅଧିକ ହେଉ ନ ଥିବା, ଏବଂ ଯେଉଁ ସ୍ଥଳେ କୌଣସି ଆପାତକାଳୀନ ଉଦ୍‌ଘୋଷଣା ପ୍ରବର୍ତ୍ତିତ ଥାଏ ସେହିସ୍ଥଳେ ସେହି ଉଦ୍‌ଘୋଷଣା ପ୍ରବର୍ତ୍ତିତ ହେବାରୁ ରହିତ ହେବା ପରେ ଛଅମାସ କାଳାବଧି ବାହାରେ ଅଧିକ ହେଉ ନ ଥିବା କାଳାବଧି ଲାଗି ବିସ୍ତାରିତ କରାଯାଇ ପାରିବ :

ଅଧିକନ୍ତୁ କୌଣସି ସାମୟିକ ରିକ୍ତି ପୂରଣ କରିବା ନିମିତ୍ତ ନିର୍ବାଚିତ କୌଣସି ସଦସ୍ୟ, ସେ ଯେଉଁ ସଦସ୍ୟଙ୍କୁ ପ୍ରତିସ୍ଥାପିତ କରନ୍ତି ତାହାଙ୍କ ପଦାବଧିର କେବଳ ଅବଶିଷ୍ଟାଂଶ ଲାଗି ପଦଧାରଣ କରିବେ ।

(୭) ଜିଲ୍ଲା ବା ଆଞ୍ଚଳିକ ପରିଷଦ ତାହାର ପ୍ରଥମ ଗଠନ ପରେ ରାଜ୍ୟପାଳଙ୍କ ଅନୁମୋଦନ କ୍ରମେ ଏହି ପାରାର ଉପପାରା (୬) ରେ ବିନିର୍ଦ୍ଦିଷ୍ଟ ବିଷୟମାନଙ୍କ ସଂପର୍କରେ ନିୟମ ପ୍ରଣୟନ କରିପାରିବ, ତଥା :—

(କ) ଅଧସ୍ତନ ସ୍ଥାନୀୟ ପରିଷଦ ବା ବୋର୍ଡମାନଙ୍କର ଗଠନ ତଥା ସେମାନଙ୍କର ପ୍ରକ୍ରିୟା ଓ ସେମାନଙ୍କର କାର୍ଯ୍ୟ ସଂଚାଳନ ; ଏବଂ

(ଖ) ଯଥାସ୍ଥିତି, ଜିଲ୍ଲା ବା ଅଞ୍ଚଳର ପ୍ରଶାସନ ସଂବଂଧୀୟ କାରବାରର ସଂବ୍ୟବହାର ବିନିୟମିତ କରି ନିୟମାବଳୀ ସଂପର୍କିତ ସାଧାରଣତଃ ସମସ୍ତ ବିଷୟ, ମଧ୍ୟ ପ୍ରଣୟନ କରିପାରିବ :

ପରନ୍ତୁ ଯେଉଁ ପର୍ଯ୍ୟନ୍ତ ଜିଲ୍ଲା ବା ଆଞ୍ଚଳିକ ପରିଷଦ ଦ୍ୱାରା ଏହି ଉପପାରା ଅଧୀନରେ ନିୟମ ପ୍ରଣୟନ କରା ନ ଯାଇଛି ସେ ପର୍ଯ୍ୟନ୍ତ ଏପରି ପ୍ରତ୍ୟେକ ପରିଷଦକୁ ନିର୍ବାଚନ ସଂପର୍କରେ, ତାହାର ଅଫିସର ଓ କର୍ମଚାରୀବର୍ଗଙ୍କ ସଂପର୍କରେ ତଥା ତହିଁର ପ୍ରକ୍ରିୟା ଓ କାର୍ଯ୍ୟ ସଂଚାଳନ ସଂପର୍କରେ ଉପପାରା (୬) ଅଧୀନରେ ରାଜ୍ୟପାଳଙ୍କ ଦ୍ୱାରା ପ୍ରଣୀତ ନିୟମାବଳୀ ପ୍ରଭାବୀ ହେବ ।

**୩ । ଜିଲ୍ଲା ପରିଷଦ ଏବଂ ଆଞ୍ଚଳିକ ପରିଷଦମାନଙ୍କର ବିଧି ପ୍ରଣୟନ କରିବାର କ୍ଷମତା;—**

(୧) ସ୍ୱାୟତ୍ତଶାସୀ ଅଞ୍ଚଳର ଆଞ୍ଚଳିକ ପରିଷଦର, ସେହି ଅଞ୍ଚଳ ଅନ୍ତର୍ଗତ ସମସ୍ତ କ୍ଷେତ୍ର ସଂପର୍କରେ ଏବଂ ସ୍ୱାୟତ୍ତଶାସୀ ଜିଲ୍ଲାର ଜିଲ୍ଲା ପରିଷଦର ସେହି ଜିଲ୍ଲା ମଧ୍ୟରେ କୌଣସି ଆଞ୍ଚଳିକ ପରିଷଦ ଥିଲେ ତହିଁର ପ୍ରାଧିକାରାଧୀନ କ୍ଷେତ୍ର ବ୍ୟତିରେକେ ସେହି ଜିଲ୍ଲାର ସମସ୍ତ କ୍ଷେତ୍ର ସଂପର୍କରେ ନିମ୍ନଲିଖିତ ବିଷୟରେ ବିଧି ପ୍ରଣୟନ କରିବାର କ୍ଷମତା ରହିବ ।

(କ) କୃଷି ବା ଗୋଚର ପ୍ରୟୋଜନ ନିମିତ୍ତ ଅଥବା ନିବାସ ବା ଅଣକୃଷି ପ୍ରୟୋଜନ ନିମିତ୍ତ ଅଥବା ଯହିଁରେ କୌଣସି ଗ୍ରାମ ବା ନଗରର ନିବାସୀଙ୍କର ହିତର ଉନ୍ନତିର ସମ୍ଭାବନା ଥାଏ ସେପରି ଅନ୍ୟ କୌଣସି ପ୍ରୟୋଜନ ନିମିତ୍ତ କୌଣସି ଆରକ୍ଷିତ ବନ ହୋଇଥିବା ଭୂମି ଭିନ୍ନ ଅନ୍ୟ ଭୂମିର ଆବଣ୍ଟନ, ଅଧିଭୋଗ ବା ଉପଯୋଗ କିମ୍ବା ପୃଥକ ରକ୍ଷଣ :

ପରନ୍ତୁ ଏପରି ବିଧିମାନଙ୍କରେ ଥିବା କୌଣସି ବିଷୟ ବାଧ୍ୟତାମୂଳକ ଅର୍ଜନକୁ ପ୍ରାଧିକୃତ କରୁଥିବା ତତ୍ ସମୟ ପ୍ରବୃତ୍ତ ବିଧି ଅନୁସାରେ ସଂପୃକ୍ତ ରାଜ୍ୟ ସରକାରଙ୍କ ଦ୍ୱାରା ସାର୍ବଜନିକ ପ୍ରୟୋଜନାର୍ଥ ହୁଏତ ଅନୁଭୋଗରେ ଥିବା ବା ନ ଥିବା କୌଣସି ଭୂମିର ବାଧ୍ୟତାମୂଳକ ଅର୍ଜନକୁ ବାଧା ଦେବ ନାହିଁ ;

(ଖ) ଆରକ୍ଷିତ ବନ ନ ହୋଇଥିବା କୌଣସି ବନର ପରିଚାଳନା ;

(ଗ) କୃଷି ପ୍ରୟୋଜନ ନିମିତ୍ତ କୌଣସି କେନାଲ ବା ଜଳସରଣୀର ଉପଯୋଗ ;

(ଘ) ଝୁମପ୍ରଥା ଅଥବା ଅନ୍ୟ ପ୍ରକାରର ସ୍ଥାନାନ୍ତରଣଶୀଳ କୃଷି ପ୍ରଥାର ବିନିୟମନ ;

(ଙ) ଗ୍ରାମ ଅଥବା ନଗର ସମିତି ବା ପରିଷଦର ସ୍ଥାପନା ତଥା ସେମାନଙ୍କର କ୍ଷମତା ;

(ଚ) ଗ୍ରାମ ବା ନଗର ପୋଲିସ ଏବଂ ଲୋକ ସ୍ୱାସ୍ଥ୍ୟ ଓ ପରିଚ୍ଛନ୍ନତା ସମେତ, ଗ୍ରାମ ବା ନଗର ପ୍ରଶାସନ ସଂବଂଧୀୟ ଅନ୍ୟ କୌଣସି ବିଷୟ ;

(ଛ) ପ୍ରମୁଖ ବା ମୁଖିଆମାନଙ୍କର ନିଯୁକ୍ତି ବା ଉତ୍ତରାଧିକାର ।

(ଜ) ସଂପତ୍ତିର ଉତ୍ତରାଧିକାର ;

(ଝ) ବିବାହ ;

(ଞ) ସାମାଜିକ ଆଚାର ।

(୨) ଏହି ପାରାରେ "ଆରକ୍ଷିତ ବନ" ଦ୍ୱାରା ଆସାମ ବନ ବିନିୟମ, ୧୮୯୧ ଅଧୀନରେ ଅଥବା ପ୍ରଶ୍ନଗତ କ୍ଷେତ୍ରରେ ତତ୍‌ସମୟ ପ୍ରବୃତ୍ତ ଥିବା ଅନ୍ୟ କୌଣସି ବିଧି ଅଧୀନରେ ଆରକ୍ଷିତ ବନ' ହୋଇଥିବା କ୍ଷେତ୍ର ଅଭିପ୍ରେତ ଅଟେ ।

(୩) ଏହି ପାରା ଅଧୀନରେ ପ୍ରଣୀତ ସମସ୍ତ ବିଧି ତୁରନ୍ତ ରାଜ୍ୟପାଳଙ୍କ ନିକଟକୁ ପଠାଯିବ ଏବଂ ତାଙ୍କର ସ୍ୱୀକୃତି ପ୍ରାପ୍ତ ନହେବା ପର୍ଯ୍ୟନ୍ତ ତାହା ପ୍ରଭାବୀ ହେବ ନାହିଁ ।

୪ । **ସ୍ୱାୟତ୍ତଶାସୀ ଜିଲ୍ଲା ଏବଂ ସ୍ୱାୟତ୍ତଶାସୀ ଅଞ୍ଚଳରେ ନ୍ୟାୟ ପ୍ରଶାସନ**-(୧) କୌଣସି ସ୍ୱାୟତ୍ତଶାସୀ ଅଞ୍ଚଳର କ୍ଷେତ୍ର ସଂପର୍କରେ ସେହି ଅଞ୍ଚଳର ଆଞ୍ଚଳିକ ପରିଷଦ ଏବଂ କୌଣସି ସ୍ୱାୟତ୍ତଶାସୀ ଜିଲ୍ଲାରେ ଯଦି କୌଣସି ଆଞ୍ଚଳିକ ପରିଷଦ ଥାଏ ତେବେ ତହିଁର ପ୍ରାଧିକାରାଧୀନ କ୍ଷେତ୍ର ଭିନ୍ନ ଅନ୍ୟ କ୍ଷେତ୍ର ସଂପର୍କରେ ସେହି ଜିଲ୍ଲାର ଜିଲ୍ଲା ପରିଷଦ, ଯେଉଁ ବାଦ ବା ମାମଲମାନଙ୍କ ପ୍ରତି ଏହି ଅନୁସୂଚୀର ପାରା ୫ର ଉପଧାରା (୧)ର ଉପବନ୍ଧ ଲାଗୁ ଅଟେ ତାହା ଭିନ୍ନ ଯେଉଁ ବାଦ ବା ମାମଲାମାନଙ୍କର ପକ୍ଷମାନେ ସମସ୍ତେ ଏପରି କ୍ଷେତ୍ରଭିତରର ଅନୁସୂଚିତ ଜନଜାତି ହୋଇଥାନ୍ତି, ସେପରି ବାଦ ଓ ମାମଲା-ମାନଙ୍କର ବିଚାରଣ ନିମିତ୍ତ ରାଜ୍ୟର ସମସ୍ତ ନ୍ୟାୟାଳୟକୁ ଅପବର୍ଜିତ କରି ଗ୍ରାମ ପରିଷଦ ବା ନ୍ୟାୟାଳୟ ଗଠନ କରିପାରିବ ଏବଂ ଉପଯୁକ୍ତ ବ୍ୟକ୍ତିଙ୍କୁ ଏପରି ଗ୍ରାମ ପରିଷଦର ସଦସ୍ୟ ଅଥବା ଏପରି ନ୍ୟାୟାଳୟର ପୀଠାସୀନ ଅଫିସର ରୂପେ ନିଯୁକ୍ତ କରିପାରିବ ଏବଂ ଏହି ଅନୁସୂଚୀର ପାରା ୩ ଅଧୀନରେ ପ୍ରଣୀତ ବିଧିମାନଙ୍କର ପ୍ରଶାସନ ନିମିତ୍ତ ଯେପରି ଆବଶ୍ୟକ ସେପରି ଅଫିସରମାନଙ୍କୁ ମଧ୍ୟ ନିଯୁକ୍ତ କରିପାରିବ ।

(୨) ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ, ସ୍ୱାୟତ୍ତଶାସୀ ଅଞ୍ଚଳର ଆଞ୍ଚଳିକ ପରିଷଦ ଅଥବା ସେହି ଆଞ୍ଚଳିକ ପରିଷଦ ଦ୍ୱାରା ସେଥିନିମିତ୍ତ ଗଠିତ କୌଣସି ନ୍ୟାୟାଳୟ, ବା ଯଦି କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ମଧ୍ୟସ୍ଥ କୌଣସି କ୍ଷେତ୍ର ସଂପର୍କରେ କୌଣସି ଆଞ୍ଚଳିକ ପରିଷଦ ନଥାଏ ତେବେ ଏପରି ଜିଲ୍ଲା ନିମିତ୍ତ ଜିଲ୍ଲା ପରିଷଦ ଅଥବା ଜିଲ୍ଲା ପରିଷଦ ଦ୍ୱାରା ସେଥିନିମିତ୍ତ ଗଠିତ କୌଣସି ନ୍ୟାୟାଳୟ, ଯେଉଁ ବାଦ ବା ମାମଲମାନଙ୍କ ପ୍ରତି ଏହି ଅନୁସୂଚୀର ପାରା ୫ର ଉପଧାରା (୧)ର ଉପବଂଧମାନ ଲାଗୁ ହୁଏ ତାହା ଭିନ୍ନ ଏହି ପାରାର ଉପପାରା (୧) ଅନୁସାରେ, ଯଥାସ୍ଥିତି, ଏପରି ଅଞ୍ଚଳ ବା କ୍ଷେତ୍ର ମଧ୍ୟରେ ଗଠିତ ଗ୍ରାମ ପରିଷଦ ବା ନ୍ୟାୟାଳୟ ଦ୍ୱାରା ବିଚାରଣୀୟ ସମସ୍ତ ବାଦ ବା ମାମଲମାନଙ୍କ ସଂପର୍କରେ ଅପିଲ ନ୍ୟାୟାଳୟର କ୍ଷମତା ପ୍ରୟୋଗ କରି ପାରିବ, ଏବଂ ଏପରି ବାଦ ବା ମାମଲମାନଙ୍କ ଉପରେ ଉଚ୍ଚନ୍ୟାୟାଳୟ ଏବଂ ଉଚ୍ଚତମ ନ୍ୟାୟାଳୟ ବ୍ୟତିରେକେ ଅନ୍ୟ କୌଣସି ନ୍ୟାୟାଳୟର ଅଧିକାରିତା ରହିବ ନାହିଁ ।

(୩) ଯେଉଁ ବାଦ ଓ ମାମଲାମାନଙ୍କ ପ୍ରତି ଏହି ପାରାର ଉପପାରା (୨) ର ଉପବନ୍ଧମାନ ଲାଗୁ ହୁଏ ସେହି ବାଦ ଓ ମାମଲମାନଙ୍କ ଉପରେ ଉଚ୍ଚ ନ୍ୟାୟାଳୟ, ରାଜ୍ୟପାଳ ବିଭିନ୍ନ ସମୟରେ ଆଦେଶ ଦ୍ୱାରା ଯେପରି ବିନିର୍ଦ୍ଦିଷ୍ଟ କରିବେ ସେପରି ଅଧିକାରିତା ପାଇବ, ତଥା ପ୍ରୟୋଗ କରିବ ।

(୪) ଯଥାସ୍ଥିତି ଆଞ୍ଚଳିକ ପରିଷଦ ବା ଜିଲ୍ଲା ପରିଷଦ ରାଜ୍ୟପାଳଙ୍କ ପୂର୍ବ ଅନୁମୋଦନ କ୍ରମେ-

(କ) ଗ୍ରାମ ପରିଷଦ ଓ ନ୍ୟାୟାଳୟମାନଙ୍କର ଗଠନ ତଥା ଏହି ପାରା ଅଧୀନରେ ସେମାନଙ୍କ ଦ୍ୱାରା ପ୍ରୟୋଗ କରାଯାଇଥିବା କ୍ଷମତା,

(ଖ) ଏହି ପାରାର ଉପପାରା (୧) ଅଧୀନରେ ବାଦ ଓ ମାମଲାମାନଙ୍କର ବିଚାରରେ ଗ୍ରାମପରିଷଦ ଓ ନ୍ୟାୟାଳୟମାନଙ୍କର ଦ୍ୱାରା ଅନୁସରଣୀୟ ପ୍ରକ୍ରିୟା,

(ଗ) ଏହି ପାରାର ଉପପାରା (୨) ଅଧୀନରେ ଅପିଲ ଓ ଅନ୍ୟ କାର୍ଯ୍ୟବାହୀମାନଙ୍କରେ ଆଞ୍ଚଳିକ ବା ଜିଲ୍ଲା ପରିଷଦ ଦ୍ୱାରା ବା ଏପରି ପରିଷଦ ଦ୍ୱାରା ଗଠିତ କୌଣସି ନ୍ୟାୟାଳୟ ଦ୍ୱାରା ଅନୁସରଣୀୟ ପ୍ରକ୍ରିୟା,

(ଘ) ଏପରି ପରିଷଦ ଏବଂ ନ୍ୟାୟାଳୟମାନଙ୍କର ନିଷ୍ପତ୍ତି ଓ ଆଦେଶମାନଙ୍କର ପ୍ରବର୍ତ୍ତନ,

(ଙ) ଏହି ପାରାର ଉପପାରା (୧) ଓ (୨) ର ଉପବନ୍ଧମାନ କାର୍ଯ୍ୟକାରୀ କରିବା ନିମିତ୍ତ ଅନ୍ୟ ସମସ୍ତ ସହାୟକ ବିଷୟମାନ,

ବିନିୟମିତ କରି ନିୟମ ପ୍ରଣୟନ କରି ପାରିବ ।

(୫) ରାଷ୍ଟ୍ରପତି ସଂପୃକ୍ତ ରାଜ୍ୟସରକାରଙ୍କ ସହିତ ପରାମର୍ଶ କରିବା ପରେ ବିଜ୍ଞପ୍ତି ଦ୍ୱାରା ଏଥିନିମିତ୍ତ ଯେଉଁ ତାରିଖ ନିୟତ କରିବେ ସେହି ତାରିଖରେ ଓ ତତ୍‌ପରେ ଏହି ପାରା ଉକ୍ତ ବିଜ୍ଞପ୍ତିରେ ବିନିର୍ଦ୍ଦିଷ୍ଟ ହୋଇଥିବା ସ୍ୱାୟତ୍ତଶାସୀ ଜିଲ୍ଲା ଓ ଅଞ୍ଚଳମାନଙ୍କ ସଂପର୍କରେ ଏପରି ପ୍ରଭାବୀ ହେବ ଯେପରିକି,—

(/) ଉପପାରା (୧) ରେ "ଯେଉଁ ବାଦ ବା ମାମଲାମାନଙ୍କ ପ୍ରତି ଏହି ଅନୁସୂଚୀର ପାରା ୫ ର ଉପପାରା (୧) ର ଉପବନ୍ଧମାନ ଲାଗୁ ଅଟେ ତାହା ଭିନ୍ନ ଯେଉଁ ବାଦ ବା ମାମଲାମାନଙ୍କର ସମସ୍ତ ପକ୍ଷକାର ଏପରି କ୍ଷେତ୍ର ଭିତରର ଅନୁସୂଚିତ ଜନଜାତି ହୋଇଥାଆନ୍ତି" ଶବ୍ଦାବଳୀ ସ୍ଥାନରେ "ଯେଉଁ ବାଦ ବା ମାମଲା ଏହି ଅନୁସୂଚୀର ପାରା ୫ର ଉପପାରା (୧) ରେ ଉଲ୍ଲିଖିତ ବାଦ ବା ମାମଲା ପରି ହୋଇ ନଥିବ ଯାହାକି ରାଜ୍ୟପାଳ ଏଥିନିମିତ୍ତ ବିନିର୍ଦ୍ଦିଷ୍ଟ କରିପାରିବେ" ଶବ୍ଦାବଳୀ ସ୍ଥାନାପନ୍ନ ହୋଇଅଛି ;

(//) ଉପପାରା (୨) ଓ (୩) ଲୋପ କରାଯାଇଅଛି ;

(///) **ଉପପାରା** (୪) ରେ—

(କ) "ଯଥାସ୍ଥିତି, ଆଞ୍ଚଳିକ ପରିଷଦ ବା ଜିଲ୍ଲା ପରିଷଦ ରାଜ୍ୟପାଳଙ୍କ ପୂର୍ବ ଅନୁମୋଦନ କ୍ରମେ" ଏହି ଶବ୍ଦାବଳୀ ସ୍ଥାନରେ "ରାଜ୍ୟପାଳ" ଶବ୍ଦ ସ୍ଥାନାପନ୍ନ ହୋଇଅଛି ;

(ଖ) ଖଣ୍ଡ (କ) ସ୍ଥାନରେ ନିମ୍ନଲିଖିତ ଖଣ୍ଡ ସ୍ଥାନାପନ୍ନ ହୋଇଅଛି, ଯଥା :—

"(କ) ଗ୍ରାମ ପରିଷଦ ଓ ନ୍ୟାୟାଳୟମାନଙ୍କର ଗଠନ, ଏହି ପାରା ଅଧୀନରେ ସେମାନଙ୍କ ଦ୍ୱାରା ପ୍ରୟୋଗ କରାଯିବା କ୍ଷମତା ଏବଂ ଗ୍ରାମ ପରିଷଦ ଓ ନ୍ୟାୟାଳୟମାନଙ୍କର ନିଷ୍ପତ୍ତି ବିରୁଦ୍ଧରେ କେଉଁ ନ୍ୟାୟାଳୟରେ ଅପିଲ କରାଯିବ; "

(ଗ) ଖଣ୍ଡ (ଗ) ସ୍ଥାନରେ ନିମ୍ନଲିଖିତ ଖଣ୍ଡ ସ୍ଥାନାପନ୍ନ ହୋଇଅଛି, ଯଥା :—

"(ଗ) ଉପପାରା (୫) ଅଧୀନରେ ରାଷ୍ଟ୍ରପତିଙ୍କ ଦ୍ୱାରା ନିୟତ ତାରିଖର ଅବ୍ୟବହିତ ପୂର୍ବରୁ ଆଞ୍ଚଳିକ ବା ଜିଲ୍ଲା ପରିଷଦରେ କିମ୍ବା ଏପରି ପରିଷଦ ଦ୍ୱାରା ଗଠିତ କୌଣସି ନ୍ୟାୟାଳୟରେ ଲମ୍ବିତ ଅପିଲ ଓ ଅନ୍ୟ କାର୍ଯ୍ୟବାହୀମାନଙ୍କର ଅନ୍ତରଣ;"

(ଘ) ଖଣ୍ଡ (ଙ)ରେ "ଉପପାରା (୧) ଓ (୨)" ଏହି ଶବ୍ଦ, ବନ୍ଧନୀ ଓ ସଂଖ୍ୟାମାନଙ୍କ ସ୍ଥାନରେ "ଉପପାରା (୧)" ଶବ୍ଦ, ବନ୍ଧନୀ ଓ ସଂଖ୍ୟା ସ୍ଥାନାପନ୍ନ ହୋଇଅଛି ।

**୫ । କେତେକ ବାଦ, ମାମଲା ଏବଂ ଅପରାଧ ବିଚାର ନିମିତ୍ତ ଆଞ୍ଚଳିକ ଓ ଜିଲ୍ଲା ପରିଷଦମାନଙ୍କୁ ତଥା କେତେକ ନ୍ୟାୟାଳୟ ଏବଂ ଅଫିସର ସିଭିଲ ପ୍ରକ୍ରିୟା ସଂହିତା, ୧୯୦୮ ତଥା ଦଣ୍ଡ ପ୍ରକ୍ରିୟା ସଂହିତା ୧୮୯୮ ଅଧୀନରେ କ୍ଷମତା ପ୍ରଦାନ—**

(୧) ରାଜ୍ୟପାଳ କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ବା ଅଞ୍ଚଳରେ ରାଜ୍ୟପାଳଙ୍କ ଦ୍ୱାରା ସେଥିନିମିତ୍ତ ବିନିର୍ଦ୍ଦିଷ୍ଟ କୌଣସି ପ୍ରବୃତ୍ତ ବିଧିରୁ ଜାତ ବାଦ ବା ମାମଲା ମାନଙ୍କର ବିଚାର ନିମିତ୍ତ ଅଥବା ଭାରତୀୟ ଦଣ୍ଡ ସଂହିତା ଅଧୀନରେ ଅଥବା ଏପରି ଜିଲ୍ଲା ବା ଅଞ୍ଚଳରେ ତତ୍ ସମୟ ଲାଗୁ ହେଉଥିବା କୌଣସି ବିଧି ଅଧୀନରେ ମୃତ୍ୟୁ, ଆଜୀବନ ନିର୍ବାସନ ବା ପାଞ୍ଚ ବର୍ଷରୁ ଊଣା ନ ହୋଇଥିବା ଅବଧିନିମିତ୍ତ କାରା ବାସରେ ଦଣ୍ଡନୀୟ ଅପରାଧ ମାନଙ୍କର ବିଚାରଣ ନିମିତ୍ତ, ଏପରି ଜିଲ୍ଲା ବା ଅଞ୍ଚଳ ଉପରେ ପ୍ରାଧିକାର ପାଇଥିବା ଜିଲ୍ଲା ପରିଷଦ ବା ଅନ୍ୟ ଆଞ୍ଚଳିକ ପରିଷଦକୁ ବା ଏପରି ଜିଲ୍ଲା ପରିଷଦ ଦ୍ୱାରା ଗଠିତ ନ୍ୟାୟାଳୟମାନଙ୍କୁ ଅଥବା ସେଥି ନିମିତ୍ତ ରାଜ୍ୟପାଳଙ୍କ ଦ୍ୱାରା ନିଯୁକ୍ତ କୌଣସି ଅଫିସରଙ୍କୁ, ଯଥାସ୍ଥିତି, ସିଭିଲ ପ୍ରକ୍ରିୟା ସଂହିତା, ୧୯୦୮ ବା ଦଣ୍ଡ ପ୍ରକ୍ରିୟା ସଂହିତା, ୧୮୯୮ ଅଧୀନରେ ସେ ଯେପରି ସମୁଚିତ ବୋଲି ବିବେଚନା କରିବେ ସେପରି କ୍ଷମତା ପ୍ରଦାନ କରି ପାରିବେ ଏବଂ ତଦୁପରି ଉକ୍ତ ପରିଷଦ, ନ୍ୟାୟାଳୟ ବା ଅଫିସର ଏପରି ପ୍ରଦତ୍ତ କ୍ଷମତା ପ୍ରୟୋଗ କରି ବାଦ, ମାମଲା ବା ଅପରାଧମାନଙ୍କର ବିଚାର କରିପାରିବେ ।

(୨) ଜିଲ୍ଲା ପରିଷଦ, ଆଞ୍ଚଳିକ ପରିଷଦ, ନ୍ୟାୟାଳୟ ବା ଅଫିସରଙ୍କୁ ଏହି ପାରାର ଉପପାରା (୧) ଅଧୀନରେ ପ୍ରଦତ୍ତ କ୍ଷମତାମାନଙ୍କ ମଧ୍ୟରୁ ଯେ କୌଣସିଟିକୁ ରାଜ୍ୟପାଳ ପ୍ରତ୍ୟାହାର କରି ପାରିବେ ବା ତହିଁର ରୂପାନ୍ତରଣ କରି ପାରିବେ ।

(୩) ଏହି ପାରାରେ ଯାହା ଅଭିବ୍ୟକ୍ତ ରୂପେ ଉପବନ୍ଧିତ ହୋଇଅଛି ତାହା ବ୍ୟତିରେକେ, କୌଣସି ସ୍ୱାୟତ୍ତଶାସୀ ଜିଲ୍ଲାରେ ବା କୌଣସି ସ୍ୱାୟତ୍ତଶାସୀ ଅଞ୍ଚଳ, ଯାହା ପ୍ରତି ଏହି ପାରାର ଉପବନ୍ଧମାନ ଲାଗୁ ହୁଏ ତହିଁରେ କୌଣସି ବାଦ, ମାମଲା ବା ଅପରାଧମାନଙ୍କର ବିଚାରଣରେ ସିଭିଲ ପ୍ରକ୍ରିୟା ସଂହିତା, ୧୯୦୮ ଏବଂ ଦଣ୍ଡ ପ୍ରକ୍ରିୟା ସଂହିତା, ୧୮୯୮ ଲାଗୁ ହେବ ନାହିଁ ।

(୪) କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ବା ସ୍ୱାୟତ୍ତଶାସୀ ଅଞ୍ଚଳ ସଂପର୍କରେ ପାରା ୪ ର ଉପପାରା (୫) ଅଧୀନରେ ରାଷ୍ଟ୍ରପତିଙ୍କ ଦ୍ୱାରା ନିୟତ ତାରିଖରେ ଓ ତତ୍ପରେ ଏହି ପାରାରେ ଥିବା କୌଣସି ବିଷୟ, ସେହି ଜିଲ୍ଲା ବା ଅଞ୍ଚଳ ପ୍ରତି ଉକ୍ତ ବିଷୟର ପ୍ରୟୋଗ ସଂପର୍କରେ, ଜିଲ୍ଲା ପରିଷଦ ବା ଅଞ୍ଚଳ ପରିଷଦକୁ କିମ୍ବା ଜିଲ୍ଲା ପରିଷଦ ଦ୍ୱାରା ଗଠିତ ନ୍ୟାୟାଳୟମାନଙ୍କୁ ରାଜ୍ୟପାଳ ଏହି ପାରାର ଉପପାରା (୧) ରେ ଉଲ୍ଲିଖିତ କ୍ଷମତାମାନଙ୍କ ମଧ୍ୟରୁ କୌଣସି କ୍ଷମତା ପ୍ରଦତ୍ତ କରିବା ପାଇଁ ଏହି ପାରାରେ ଥିବା କୌଣସି ବିଷୟ ପ୍ରାଧିକୃତ କରୁଅଛି ବୋଲି ବିବେଚିତ ହେବ ନାହିଁ ।

**୬ । ସ୍ୱାୟତ୍ତଶାସୀ ଜିଲ୍ଲାର ଜିଲ୍ଲା ପରିଷଦର ପ୍ରାଥମିକ ବିଦ୍ୟାଳୟ ଇତ୍ୟାଦି ସ୍ଥାପନ କରିବାର କ୍ଷମତା—**

(୧) ସ୍ୱାୟତ୍ତଶାସୀ ଜିଲ୍ଲାର ଜିଲ୍ଲା ପରିଷଦ ଜିଲ୍ଲାରେ ପ୍ରାଥମିକ ବିଦ୍ୟାଳୟ, ଔଷଧାଳୟ, ବଜାର, କାଞ୍ଜିହାଉଦା, ନୌଘାଟ, ମୀନକ୍ଷେତ୍ର, ସଡ଼କ, ସଡ଼କପରିବହନ ଓ ଜଳପଥମାନ ସ୍ଥାପନ କରି ପାରିବ ଏବଂ ରାଜ୍ୟ- ପାଳଙ୍କର ପୂର୍ବ ଅନୁମୋଦନ କ୍ରମେ ସେଗୁଡ଼ିକର ବିନିୟମନ ଓ ନିୟନ୍ତ୍ରଣ ନିମିତ୍ତ ବିନିୟମ ପ୍ରଣୟନ କରିପାରିବ ଏବଂ ବିଶେଷଭାବେ ଜିଲ୍ଲାର ପ୍ରାଥମିକ ବିଦ୍ୟାଳୟମାନଙ୍କରେ ପ୍ରାଥମିକ ଶିକ୍ଷା କେଉଁ ଭାଷାରେ ଓ କେଉଁ ରୀତିରେ ଦିଆ ଯିବ ତାହା ବିହିତ କରି ପାରିବ ।

(୨) ରାଜ୍ୟପାଳ, ଜିଲ୍ଲାପରିଷଦର ଅନୁମତି କ୍ରମେ ହୁଏତ ସର୍ତ୍ତ ସହିତ ବା ବିନା ସର୍ତ୍ତରେ ସେହି ପରିଷଦକୁ ବା ତାହାର କୌଣସି ଅଧୀକାରୀଙ୍କୁ କୃଷି, ପଶୁପାଳନ, ଗ୍ରାମଗୋଷ୍ଠୀ ପରିକଳ୍ପନା, ସମବାୟ ସମିତି, ସମାଜ କଲ୍ୟାଣ, ଗ୍ରାମଯୋଜନା କିମ୍ବା ରାଜ୍ୟର କାର୍ଯ୍ୟପାଳିକା କ୍ଷମତାର ପ୍ରସାର ଥିବା ଅନ୍ୟ କୌଣସି ବିଷୟ ସଂପର୍କରେ କୃତ୍ୟମାନ ନ୍ୟସ୍ତ କରି ପାରିବେ ।

**୭ । ଜିଲ୍ଲା ଏବଂ ଆଞ୍ଚଳିକ ନିଧି**—(୧) ପ୍ରତ୍ୟେକ ସ୍ୱାୟତ୍ତଶାସୀ ଜିଲ୍ଲା ନିମିତ୍ତ ଏକ ଜିଲ୍ଲା ନିଧି ଏବଂ ପ୍ରତ୍ୟେକ ସ୍ୱାୟତ୍ତଶାସୀ ଅଞ୍ଚଳ ନିମିତ୍ତ ଏକ ଆଞ୍ଚଳିକ ନିଧି ଗଠିତ କରାଯିବ ଏବଂ ତହିଁରେ ଯଥାକ୍ରମେ ସେହି ଜିଲ୍ଲାର ଜିଲ୍ଲାପରିଷଦ ଦ୍ୱାରା ବା ସେହି ଅଞ୍ଚଳର ଆଞ୍ଚଳିକ ପରିଷଦ ଦ୍ୱାରା, ଯଥାସ୍ଥିତି, ସେହି ଜିଲ୍ଲା ବା ଅଞ୍ଚଳକୁ ଏହି ସଂବିଧାନର ଉପବନ୍ଧମାନଙ୍କ ଅନୁସାରେ ପ୍ରଶାସନ କରିବାରେ ପ୍ରାପ୍ତ ସମସ୍ତ ଧନ ଜମା କରାଯିବ ।

(୨) ରାଜ୍ୟପାଳ, ଯଥାସ୍ଥିତି, ଜିଲ୍ଲା ନିଧି ବା ଆଞ୍ଚଳିକ ନିଧିର ପରିଚାଳନା ନିମିତ୍ତ ଏବଂ ଉକ୍ତ ନିଧିକୁ ଧନର ସଂଦାୟ, ତହିଁରୁ ଧନର ପ୍ରତ୍ୟାହରଣ, ତହିଁରେ ଧନର ଅଭିରକ୍ଷା ସଂପର୍କରେ ଏବଂ ଉପରୋକ୍ତ ବିଷୟମାନଙ୍କ ସହ ସଂସକ୍ତ ବା ତହିଁର ସହାୟକ ଅନ୍ୟ ଯେ କୌଣସି ବିଷୟରେ ଅନୁସୃତ ହେବା ପ୍ରକ୍ରିୟା ସଂପର୍କରେ ନିୟମ ପ୍ରଣୟନ କରି ପାରିବେ ।

(୩) ରାଷ୍ଟ୍ରପତିଙ୍କ ଅନୁମୋଦନ କ୍ରମେ ଭାରତର କମ୍ପଟ୍ରୋଲର ଓ ଅଡ଼ିଟର ଜେନେରାଲ ଯେପରି ବିହିତ କରିବେ, ଯଥାସ୍ଥିତି, ଜିଲ୍ଲା ପରିଷଦ ବା ଆଞ୍ଚଳିକ ପରିଷଦର ହିସାବ ସେହି ପ୍ରକାରେ ରଖାଯିବ ।

(୪) କମ୍ପଟ୍ରୋଲର ଓ ଅଡ଼ିଟର ଜେନେରାଲ ଯେଉଁ ରୀତି ଉଚିତ ମନେ କରିବେ ଜିଲ୍ଲା ଓ ଆଞ୍ଚଳିକ ପରିଷଦ ମାନଙ୍କର ହିସାବ ସେହି ରୀତିରେ ପରୀକ୍ଷା କରାଇବେ ଏବଂ ସେହି ହିସାବ ସଂପର୍କରେ କମ୍ପଟ୍ରୋଲର ଓ ଓ ଅଡ଼ିଟର ଜେନେରାଲଙ୍କ ରିପୋର୍ଟ ରାଜ୍ୟପାଳଙ୍କୁ ଦିଆଯିବ ଯେ କି ପରିଷଦ ସମକ୍ଷରେ ତାହା ଉପସ୍ଥାପିତ କରାଇବେ ।

୮ । **ଭୂରାଜସ୍ୱ ନିର୍ଦ୍ଧାରଣ ଓ ଅସୁଲ ଏବଂ କର ଆରୋପଣ କ୍ଷମତା**——(୧) ସ୍ୱାୟତ୍ତଶାସୀ ଅଞ୍ଚଳର ଆଞ୍ଚଳିକ ପରିଷଦ ସେହି ଅଞ୍ଚଳ ଭିତରର ସମସ୍ତ ଭୂମି ସଂପର୍କରେ, ଏବଂ ସ୍ୱାୟତ୍ତଶାସୀ ଜିଲ୍ଲାର ଜିଲ୍ଲାପରିଷଦ ସେହି ଜିଲ୍ଲା ମଧ୍ୟରେ କୌଣସି ଆଞ୍ଚଳିକ ପରିଷଦ ଥିଲେ ତହିଁର ପ୍ରାଧିକାରାଧୀନ କ୍ଷେତ୍ର ଭିତରର ଭୂମି ବ୍ୟତିରେକେ ସେହି ଜିଲ୍ଲାର ସମସ୍ତ ଭୂମି ସଂପର୍କରେ ରାଜ୍ୟରେ ଭୂରାଜସ୍ୱ ପ୍ରୟୋଜନାର୍ଥ ଭୂମିର ରାଜସ୍ୱ ନିର୍ଦ୍ଧାରଣ କରିବା ପାଇଁ ସାଧାରଣତଃ ରାଜ୍ୟ ସରକାରଙ୍କ ଦ୍ୱାରା ତତ୍ ସମୟ ଅନୁସୃତ ପଦ୍ଧତି ଅନୁସାରେ ଭୂରାଜସ୍ୱ ନିର୍ଦ୍ଧାରଣ କରିବା ଓ ଅସୁଲ କରିବାର କ୍ଷମତା ପ୍ରାପ୍ତ ହେବ ।

(୨) ସ୍ୱାୟତ୍ତ ଶାସୀ ଅଞ୍ଚଳର ଆଞ୍ଚଳିକ ପରିଷଦ ସେହି ଅଞ୍ଚଳ ଭିତରର ସମସ୍ତ ଭୂମି ସଂପର୍କରେ ଏବଂ ସ୍ୱାୟତ୍ତଶାସୀ ଜିଲ୍ଲାର ଜିଲ୍ଲା ପରିଷଦ ସେହି ଜିଲ୍ଲା ମଧ୍ୟରେ କୌଣସି ଆଞ୍ଚଳିକ ପରିଷଦ ଥିଲେ ତହିଁର ପ୍ରାଧିକାରାଧୀନ କ୍ଷେତ୍ର ଭିତରର ଭୂମି ବ୍ୟତିରେକେ ସେହି ଜିଲ୍ଲାର ସମସ୍ତ ଭୂମିସଂପର୍କରେ ଭୂମି ଓ ଭବନ ଉପରେ କର ତଥା ଏପରି କ୍ଷେତ୍ରମାନଙ୍କରେ ନିବାସ କରିବା ବ୍ୟକ୍ତିଙ୍କ ଉପରେ ମାସୁଲ ଉଦ୍‌ଗ୍ରହଣ ଓ ଅସୁଲ କରିବାର କ୍ଷମତା ପ୍ରାପ୍ତ ହେବ ।

(୩) ସ୍ୱାୟତ୍ତଶାସୀ ଜିଲ୍ଲାର ଜିଲ୍ଲା ପରିଷଦ ସେହି ଜିଲ୍ଲା ମଧ୍ୟରେ ନିମ୍ନଲିଖିତ କରମାନଙ୍କ ମଧ୍ୟରୁ ସମସ୍ତ ବା ତହିଁରୁ କୌଣସିଟିକୁ ଉଦ୍‌ଗ୍ରହଣ ଓ ଅସୁଲ କରିବାର କ୍ଷମତା ପ୍ରାପ୍ତ ହେବ, ଅର୍ଥାତ୍ :—

(କ) ବୃତ୍ତି, ବ୍ୟାପାର, ଆଜୀବିକା ଓ ନିୟୋଜନ ଉପରେ କର;

(ଖ) ପଶୁ, ଯାନ ଓ ନୌକା ଉପରେ କର;

(ଗ) ବିକ୍ରୀ ନିମିତ୍ତ ବଜାରରେ ବସ୍ତୁର ପ୍ରବେଶ ଉପରେ କର, ଏବଂ ନୌକାରେ ଯିବା ବ୍ୟକ୍ତି ଓ ବସ୍ତୁମାନଙ୍କ ଉପରେ ମାସୁଲ; ଏବଂ

(ଘ) ପାଠଶାଳା, ଔଷଧାଳୟ ବା ସଡ଼କମାନଙ୍କର ରକ୍ଷଣାବେକ୍ଷଣ ନିମିତ୍ତ କର ।

(୪) ଏହି ପାରାର ଉପପାରା (୨) ଓ (୩) ରେ ବିନିର୍ଦ୍ଦିଷ୍ଟ କରମାନଙ୍କ ମଧ୍ୟରୁ କୌଣସିଟିର ଉଦ୍‌ଗ୍ରହଣ ଓ ଅସୁଲ ଉପବନ୍ଧିତ କରିବା ନିମିତ୍ତ, ଯଥାସ୍ଥିତି, ଆଞ୍ଚଳିକ ପରିଷଦ ବା ଜିଲ୍ଲା ପରିଷଦ ବିନିୟମ ପ୍ରଣୟନ କରି ପାରିବ, ଏବଂ ଏପରି ପ୍ରତ୍ୟେକ ବିନିୟମ ସଙ୍ଗେ ସଙ୍ଗେ ରାଜ୍ୟପାଳଙ୍କୁ ପ୍ରଦାନ କରାଯିବ ଓ ତାଙ୍କର ସ୍ୱୀକୃତି ପ୍ରାପ୍ତ ନ ହେଲା ପର୍ଯ୍ୟନ୍ତ ତାହା ପ୍ରଭାବୀ ହେବ ନାହିଁ ।

**୯ । ଖଣିଜ ଦ୍ରବ୍ୟମାନଙ୍କର ପୂର୍ବେକ୍ଷଣ ବା ନିଷ୍କାସନର ପ୍ରୟୋଜନାର୍ଥ ଲାଇସେନ୍‌ସ ବା ପଟ୍ଟା—**

(୧) କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ସ୍ଥିତ କୌଣସି କ୍ଷେତ୍ର ସଂପର୍କରେ ରାଜ୍ୟ ସରକାରଙ୍କ ଦ୍ୱାରା ଖଣିଜ ଦ୍ରବ୍ୟର ପୂର୍ବେକ୍ଷଣ ବା ନିଷ୍କାସନର ପ୍ରୟୋଜନାର୍ଥ ପ୍ରଦତ୍ତ ଲାଇସେନ୍‌ସ ବା ପଟ୍ଟାମାନଙ୍କୁ ପ୍ରତିବର୍ଷ ପ୍ରୋଦଭୂତ ହେଉଥିବା ରଏଲଟି ରାଜ୍ୟ ସରକାର ଏବଂ ସେ ଜିଲ୍ଲାର ଜିଲ୍ଲା ପରିଷଦ ମଧ୍ୟରେ ହେବା ସହମତି ଅନୁସାରେ ସେହି ଜିଲ୍ଲା ପରିଷଦକୁ ପ୍ରଦତ୍ତ ହେବ ।

(୨) ଜିଲ୍ଲା ପରିଷଦକୁ ପ୍ରଦତ୍ତ ହେବା ଏପରି ରଏଲଟିର ଅଂଶ ସଂପର୍କରେ କୌଣସି ବିବାଦ ଜାତ ହେଲେ ନିର୍ଦ୍ଧାରଣ ନିମିତ୍ତ ତାହା ରାଜ୍ୟପାଳଙ୍କ ନିକଟକୁ ନିର୍ଦ୍ଦେଶିତ ହେବ ଏବଂ ସ୍ୱବିବେକ ଅନୁସାରେ ରାଜ୍ୟପାଳଙ୍କ ଦ୍ୱାରା ନିର୍ଦ୍ଧାରିତ ପରିମାଣ ଏହି ପାରାର ଉପପାରା (୧) ଅଧୀନରେ ଜିଲ୍ଲା ପରିଷଦକୁ ଦେୟ ପରିମାଣ ବୋଲି ବିବେଚିତ ହେବ ତଥା ରାଜ୍ୟପାଳଙ୍କ ନିଷ୍ପତି ଚୂଡ଼ାନ୍ତ ହେବ ।

**୧୦ । ଅଣ ଜନଜାତି ଲୋକମାନଙ୍କ ଦ୍ୱାରା କରାଯିବା ମହାଜନୀ ଓ ବେପାରର ନିୟନ୍ତ୍ରଣ ନିମିତ୍ତ ଜିଲ୍ଲା ପରିଷଦର ବିନିୟମ ପ୍ରଣୟନ କରିବାର କ୍ଷମତା—** (୧) ସ୍ୱାୟତ୍ତଶାସୀ ଜିଲ୍ଲାର ଜିଲ୍ଲା ପରିଷଦ ସେହି ଜିଲ୍ଲାରେ ବାସ କରୁଥିବା ଅନୁସୂଚିତ ଜନଜାତି ଭିନ୍ନ ଅନ୍ୟ ଲୋକଙ୍କ ଦ୍ୱାରା କରାଯିବା ମହାଜନୀ ଓ ବେପାରର ବିନିୟମନ ଓ ନିୟନ୍ତ୍ରଣ ନିମିତ୍ତ ବିନିୟମ ପ୍ରଣୟନ କରିପାରିବ ।

(୨) ବିଶେଷତଃ ଏବଂ ପୂର୍ବବର୍ତ୍ତୀ କ୍ଷମତାର ବ୍ୟାପକତା ଉପରେ ପ୍ରତିକୂଳ ପ୍ରଭାବ ନପକାଇ ଏପରି ବିନିୟମ—

(କ) ତଦର୍ଥ ପ୍ରଦତ୍ତ ଲାଇସେନ୍‌ସ ପ୍ରାପ୍ତ ବ୍ୟକ୍ତିଙ୍କ ବ୍ୟତିରେକେ ଅନ୍ୟ କେହି ମହାଜନୀ କାରବାର କରିବେ ନାହିଁ ବୋଲି ବିହିତ କରିପାରିବ ;

(ଖ) ମହାଜନ ଦ୍ୱାରା ପ୍ରଭାର୍ଯ୍ୟ ବା ଆଦାୟ କରାଯାଇପାରିବା ସୁଧର ସର୍ବୋଚ୍ଚ ହାର ବିହିତ କରିପାରିବ;

(ଗ) ମହାଜନମାନଙ୍କ ଦ୍ୱାରା ହିସାବ ରଖାଯିବା ନିମିତ୍ତ ତଥା ଜିଲ୍ଲା ପରିଷଦର ତଦର୍ଥ ନିଯୁକ୍ତ ଅଫିସରମାନଙ୍କ ଦ୍ୱାରା ଏପରି ହିସାବର ନିରୀକ୍ଷଣ ନିମିତ୍ତ ଉପବନ୍ଧ କରିପାରିବ;

(ଘ) ସେହି ଜିଲ୍ଲା ନିବାସୀ ଅନୁସୂଚିତ ଜନଜାତିବର୍ଗର ସଦସ୍ୟ ନ ହୋଇଥିବା କୌଣସି ବ୍ୟକ୍ତି ଜିଲ୍ଲା ପରିଷଦ ଦ୍ୱାରା ସେଥିନିମିତ୍ତ ପ୍ରଦତ୍ତ ଲାଇସେନ୍‌ସ ବିନା କୌଣସି ବସ୍ତୁର ମୋଟ ଖୁଚୁରା କାରବାର କରିବ ନାହିଁ ବୋଲି ବିହତ କରିପାରିବ:

ପରନ୍ତୁ ଜିଲ୍ଲା ପରିଷଦର ସମସ୍ତ ସଦସ୍ୟ ସଂଖ୍ୟାର ତିନି ଚତୁର୍ଥାଂଶରୁ ଅନ୍ୟୂନ ବହୁମତରେ ପାରିତ ନ ହେଲେ ଏହି ପାରା ଅଧୀନରେ କୌଣସି ବିନିୟମ ପ୍ରଣୟନ କରାଯାଇ ପାରିବ ନାହିଁ :

ଅଧିକନ୍ତୁ ଏପରି ବିନିୟମ ପ୍ରଣୟନ କରାଯିବା ସମୟର ପୂର୍ବରୁ ଜିଲ୍ଲାମାନଙ୍କ ମଧ୍ୟରେ କାରବାର କରୁଥିବା ମହାଜନ ବା ବେପାରୀଙ୍କୁ ଲାଇସେନ୍‌ସ ଦେବାକୁ ମନା କରିବା ନିମିତ୍ତ ଏପରି ବିନିୟମମାନଙ୍କ ଅଧୀନରେ କ୍ଷମତା ରହିବ ନାହିଁ ।

(୩) ଏହି ପାରା ଅଧୀନରେ ପ୍ରଣୀତ ସମସ୍ତ ବିନିୟମ ତୁରନ୍ତ ରାଜ୍ୟପାଳଙ୍କ ନିକଟକୁ ପଠାଯିବ, ଏବଂ ଯେଉଁ ପର୍ଯ୍ୟନ୍ତ ତହିଁରେ ସେ ସ୍ୱୀକୃତି ଦେଇ ନ ଥାନ୍ତି ସେ ପର୍ଯ୍ୟନ୍ତ ତାହା ପ୍ରଭାବୀ ହେବ ନାହିଁ ।

**୧୧ । ଏହି ଅନୁସୂଚୀ ଅଧୀନରେ ପ୍ରଣୀତ ବିଧି, ନିୟମ ଓ ବିନିୟମମାନଙ୍କର ପ୍ରକାଶନ**—ଜିଲ୍ଲା ପରିଷଦ ବା ଆଞ୍ଚଳିକ ପରିଷଦ ଦ୍ୱାରା ଏହି ଅନୁସୂଚୀ ଅଧୀନରେ ପ୍ରଣୀତ ସମସ୍ତ ବିଧି, ନିୟମ ଓ ବିନିୟମ ରାଜ୍ୟର ଶାସକୀୟ ରାଜପତ୍ରରେ ଅବିଳମ୍ବେ ପ୍ରକାଶିତ କରାଯିବ ଏବଂ ଏପରି ପ୍ରକାଶନ ପରେ ତାହା ବିଧି ଭଳି ପ୍ରଭାବୀ ହେବ ।

**୧୨ । ଆସାମ ରାଜ୍ୟରେ ଥିବା ସ୍ୱାୟତ୍ତଶାସୀ ଜିଲ୍ଲା ଓ ସ୍ୱାୟତ୍ତଶାସୀ ଅଞ୍ଚଳମାନଙ୍କ ପ୍ରତି ସଂସଦର ଏବଂ ଆସାମ ରାଜ୍ୟ ବିଧାନ ମଣ୍ଡଳର ଅଧିନିୟମମାନଙ୍କର ପ୍ରୟୋଗ**— (୧) ଏହି ସଂବିଧାନରେ ଯାହାକିଛି ଥିବା ସତ୍ତ୍ୱେ—

(କ) ଯେଉଁ ବିଷୟ ସଂପର୍କରେ ଆସାମ ରାଜ୍ୟରେ ଥିବା ଜିଲ୍ଲା ପରିଷଦ ବା ଆଞ୍ଚଳିକ ପରିଷଦ ନିୟମ ପ୍ରଣୟନ କରି ପାରିବ ବୋଲି ଏହି ଅନୁସୂଚୀର ପାରା ୩ରେ ବିନିର୍ଦ୍ଦିଷ୍ଟ ହୋଇଅଛି ସେପରି ବିଷୟ ସଂପର୍କରେ ଆସାମ ରାଜ୍ୟ ବିଧାନମଣ୍ଡଳର କୌଣସି ଅଧିନିୟମ ତଥା ଅନାସୁତ ସୁରା ସାରିକ ପେୟର ଉପଭୋଗକୁ ନିଷେଧ ବା ନିର୍ବନ୍ଧିତ କରୁଥିବା ରାଜ୍ୟ ବିଧାନ ମଣ୍ଡଳର କୌଣସି ଅଧିନିୟମ ସେହି ରାଜ୍ୟରେ ଥିବା କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ବା ସ୍ୱାୟତ୍ତଶାସୀ ଅଞ୍ଚଳ ପ୍ରତି, ଉଭୟ ମଧ୍ୟରୁ ପ୍ରତ୍ୟେକ କ୍ଷେତ୍ରରେ ଏପରି ଜିଲ୍ଲା ପାଇଁ ଥିବା ବା ଏପରି ଅଞ୍ଚଳ ଉପରେ ଅଧିକାରିତା ଥିବା ଜିଲ୍ଲା ପରିଷଦ ଲୋକ ଅଧିସୂଚନା ଦ୍ୱାରା ନିଦେଶ ନଦେଲେ, ଲାଗୁ ହେବ ନାହିଁ ଏବଂ କୌଣସି ଅଧିନିୟମ ସଂପର୍କରେ ଏପରି ନିଦେଶ ଦେବା ବେଳେ ଜିଲ୍ଲା ପରିଷଦ ନିଦେଶ ଦେଇ ପାରିବ ଯେ ସେହି ଅଧିନିୟମ ଏପରି ଜିଲ୍ଲା ବା ଅଞ୍ଚଳ ବା ତହିଁର କୌଣସି ଭାଗ ପ୍ରତି ଲାଗୁ ହେବାରେ ଜିଲ୍ଲା ପରିଷଦ ଯେପରି ଉଚିତ ମନେ କରିବ ସେପରି ବ୍ୟତିରେକୀ ବା ରୂପାନ୍ତରଣର ବଶବର୍ତ୍ତୀ ରହି ପ୍ରଭାବୀ ହେବ;

(ଖ) ରାଜ୍ୟପାଳ ଲୋକ ଅଧିସୂଚନା ଦ୍ୱାରା ନିଦେଶ ଦେଇ ପାରିବେ ଯେ ସଂସଦର ବା ଆସାମର ରାଜ୍ୟ ବିଧାନ ମଣ୍ଡଳର ଯେଉଁ ଅଧିନିୟମ ପ୍ରତି ଏହି ଉପପାରାର ଖଣ୍ଡ (କ)ର ଉପବନ୍ଧମାନ ଲାଗୁ ନୁହେଁ ତାହା ସେହି ରାଜ୍ୟରେ ଥିବା କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ବା କୌଣସି ସ୍ୱାୟତ୍ତଶାସୀ ପ୍ରଦେଶ ପ୍ରତି ଲାଗୁ ହେବ ନାହିଁ ବା ସେହି ଅଧିସୂଚନାରେ ସେ ଯେପରି ବିନିର୍ଦ୍ଦିଷ୍ଟ କରିବେ ସେପରି ବ୍ୟତିରେକୀ ବା ରୂପାନ୍ତରଣର ବଶବର୍ତ୍ତୀ ରହି ଏପରି ଜିଲ୍ଲା ବା ଅଞ୍ଚଳ ଅଥବା ତାହାର କୌଣସି ଭାଗ ପ୍ରତି ଲାଗୁ ହେବ ।

(୨) ଏହି ପାରାର ଉପପାରା (୧) ଅଧୀନରେ ଦିଆଯିବା କୌଣସି ନିଦେଶ ଏପରି ଭାବେ ଦିଆଯାଇ ପାରେ ଯେପରିକି ତାହାର ଭୂତଲକ୍ଷୀ ପ୍ରଭାବ ରହିବ ।

**୧୨ କ । ମେଘାଳୟ ରାଜ୍ୟରେ ଥିବା ସ୍ୱାୟତ୍ତଶାସୀ ଜିଲ୍ଲା ଓ ସ୍ୱାୟତ୍ତଶାସୀ ଅଞ୍ଚଳମାନଙ୍କ ପ୍ରତି ସଂସଦର ଓ ମେଘାଳୟ ରାଜ୍ୟ ବିଧାନମଣ୍ଡଳର ଅଧିନିୟମମାନଙ୍କର ପ୍ରୟୋଗ**—ଏହି ସଂବିଧାନରେ ଯାହା କିଛି ଥିବା ସତ୍ତ୍ୱେ—

(କ) ଯଦି ଏହି ଅନୁସୂଚୀର ପାରା (୩)ର ଉପପାରା (୧)ରେ ବିନିର୍ଦ୍ଦିଷ୍ଟ କୌଣସି ବିଷୟ ସଂପର୍କରେ ମେଘାଳୟ ରାଜ୍ୟରେ ଥିବା ଜିଲ୍ଲା ବା ଆଞ୍ଚଳିକ ପରିଷଦ ଦ୍ୱାରା ପ୍ରଣୀତ କୌଣସି ବିଧିର କୌଣସି ଉପବନ୍ଧ ବା ଏହି ଅନୁସୂଚୀର ପାରା ୮ ବା ପାରା ୧୦ ଅଧୀନରେ ସେହି ରାଜ୍ୟରେ ଥିବା କୌଣସି ଜିଲ୍ଲା ପରିଷଦ ବା ଆଞ୍ଚଳିକ ପରିଷଦ ଦ୍ୱାରା ପ୍ରଣୀତ କୌଣସି ବିନିୟମର କୌଣସି ଉପବନ୍ଧ ମେଘାଳୟର ରାଜ୍ୟ ବିଧାନମଣ୍ଡଳ ଦ୍ୱାରା ସେହି ବିଷୟ ସଂପର୍କରେ ପ୍ରଣୀତ କୌଣସି ବିଧିର କୌଣସି ଉପବନ୍ଧର ବିରୋଧାତ୍ମକ ହୁଏ ତାହାହେଲେ, ଯଥାସ୍ଥିତି, ଜିଲ୍ଲା ପରିଷଦ ବା ଆଞ୍ଚଳିକ ପରିଷଦ ଦ୍ୱାରା ପ୍ରଣୀତ ବିଧି ବା ବିନିୟମ, ତାହା ମେଘାଳୟର ରାଜ୍ୟ ବିଧାନମଣ୍ଡଳ ଦ୍ୱାରା ବିଧି ପ୍ରଣୀତ ହେବାର ପୂର୍ବରୁ ହୋଇଥାଉ ବା ପରେ ହୋଇଥାଉ, ଯେତେ ଦୂର ପର୍ଯ୍ୟନ୍ତ ବିରୋଧାତ୍ମକ ହୋଇଥିବ ସେହି ପର୍ଯ୍ୟନ୍ତ ଶୂନ୍ୟ ହେବ ଏବଂ ମେଘାଳୟ ରାଜ୍ୟ ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ ବିଧି ଅଭିଭାବୀ ହେବ ;

(ଖ) ରାଷ୍ଟ୍ରପତି ସଂସଦର କୌଣସି ଅଧିନିୟମ ସଂପର୍କରେ ଅଧିସୂଚନା ଦ୍ୱାରା ନିଦେଶ ଦେଇ ପାରିବେ ଯେ ସେହି ଅଧିନିୟମ ମେଘାଳୟ ରାଜ୍ୟରେ ଥିବା କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ବା ସ୍ୱାୟତ୍ତଶାସୀ ଅଞ୍ଚଳ ପ୍ରତି ଲାଗୁ ହେବ ନାହିଁ ଅଥବା ସେହି ଅଧିସୂଚନା ଯେଉଁ ବ୍ୟତିରେକୀ ବା ସଂଶୋଧନମାନ ବିନିର୍ଦ୍ଦିଷ୍ଟ କରିବେ ତାହାର ବଶବର୍ତ୍ତୀ ହୋଇ ସେହି ଜିଲ୍ଲା ବା ଅଞ୍ଚଳ ପ୍ରତି ବା ତାହାର କୌଣସି ଭାଗ ପ୍ରତି ଲାଗୁ ହେବ ଏବଂ ଏପରି କୌଣସି ନିଦେଶ ଏପରି ଭାବରେ ଦିଆଯାଇପାରିବ ଯେପରିକି ତାହାର ଭୂତଲକ୍ଷୀ ପ୍ରଭାବ ରହିବ ।

୧୨ ଖ । **ମିଜୋରାମ ସଂଘ ରାଜ୍ୟ କ୍ଷେତ୍ରରେ ଥିବା ସ୍ୱାୟତ୍ତଶାସୀ ଜିଲ୍ଲା ଓ ସ୍ୱାୟତ୍ତଶାସୀ ଅଞ୍ଚଳମାନଙ୍କରେ ସଂସଦର ଅଧିନିୟମ ଓ ଅନ୍ୟ ଅଧିନିୟମମାନଙ୍କର ପ୍ରୟୋଗ**—ଏହି ସଂବିଧାନରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ—

(କ) ଯଦି ଏହି ଅନୁସୂଚୀରେ ପାରା ୩ର ଉପଧାରା (୧)ରେ ବିନିର୍ଦ୍ଦିଷ୍ଟ କୌଣସି ବିଷୟ ସମ୍ପର୍କରେ ମିଜୋରାମ ସଂଘ ରାଜ୍ୟକ୍ଷେତ୍ରରେ ଥିବା କୌଣସି ଜିଲ୍ଲା ପରିଷଦ ବା ଆଞ୍ଚଳିକ ପରିଷଦ ଦ୍ୱାରା ପ୍ରଣୀତ କୌଣସି ବିଧିର କୌଣସି ଉପବନ୍ଧ ଅଥବା ଏହି ଅନୁସୂଚୀର ପାରା ୮ ବା ପାରା ୧୦ ଅଧୀନରେ ସେହି ସଂଘ ରାଜ୍ୟକ୍ଷେତ୍ରରେ ଥିବା କୌଣସି ଜିଲ୍ଲା ପରିଷଦ ବା ଆଞ୍ଚଳିକ ପରିଷଦ ଦ୍ୱାରା ପ୍ରଣୀତ କୌଣସି ବିନିୟମର କୌଣସି ଉପବନ୍ଧ ସେହି ବିଷୟ ସମ୍ପର୍କରେ ପ୍ରଣୀତ ବିଧିର କୌଣସି ଉପବନ୍ଧ ପ୍ରତି ବିରୋଧାତ୍ମକ ହୁଏ ତାହାହେଲେ ଜିଲ୍ଲା, ପରିଷଦ ବା ଯଥାସ୍ଥିତି, ଆଞ୍ଚଳିକ ପରିଷଦ ଦ୍ୱାରା ପ୍ରଣୀତ ବିଧି ବା ବିନିୟମ ମିଜୋରାମ ସଂଘରାଜ୍ୟ-କ୍ଷେତ୍ରର ବିଧାନମଣ୍ଡଳ ଦ୍ୱାରା ପ୍ରଣୀତ ବିଧିର ପୂର୍ବରୁ ତାହା ପ୍ରଣୀତ ହୋଇଥାଉ ବା ପରେ ପ୍ରଣୀତ ହୋଇଥାଉ, ବିରୋଧର ବିସ୍ତୃତି ପର୍ଯ୍ୟନ୍ତ ଶୂନ୍ୟ ହେବ ଏବଂ ମିଜୋରାମ ସଂଘ ରାଜ୍ୟ-କ୍ଷେତ୍ରର ବିଧାନ ମଣ୍ଡଳ ଦ୍ୱାରା ପ୍ରଣୀତ ବିଧି ଅଭିଭାବୀ ହେବ ;

(ଖ) ସଂସଦର କୌଣସି ଅଧିନିୟମ ସମ୍ପର୍କରେ ରାଷ୍ଟ୍ରପତି ଅଧିସୂଚନା ଦ୍ୱାରା ନିଦେଶ ଦେଇ ପାରିବେ ଯେ ତାହା ମିଜୋରାମ ସଂଘ ରାଜ୍ୟ-କ୍ଷେତ୍ରରେ ଥିବା କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ବା କୌଣସି ସ୍ୱାୟତ୍ତଶାସୀ ଅଞ୍ଚଳ ପ୍ରତି ଲାଗୁ ହେବ ନାହିଁ ଅଥବା ସେହି ଅଧିସୂଚନାରେ ସେ ଯେଉଁ ବ୍ୟତିରେକୀ ବା ସଂଶୋଧନମାନ ବିନିର୍ଦ୍ଦିଷ୍ଟ କରିବେ ସେ ସବୁର ବଶବର୍ତ୍ତୀ ହୋଇ ସେହି ଜିଲ୍ଲା ବା ଅଞ୍ଚଳ ପ୍ରତି ବା ତାହାର କୌଣସି ଭାଗପ୍ରତି ଲାଗୁ ହେବ ଏବଂ ଏପରି କୌଣସି ନିଦେଶ ଏପରି ଭାବରେ ଦିଆଯାଇ ପାରିବ ଯେପରିକି ତାହାର ଭୂତଲକ୍ଷୀ ପ୍ରଭାବ ରହିବ ।

୧୩ । **ବାର୍ଷିକ ବିତ୍ତ ବିବରଣରେ ସ୍ୱାୟତ୍ତଶାସୀ ଜିଲ୍ଲା ସମ୍ବନ୍ଧୀୟ ପ୍ରାକ୍‌କଳିତ ପ୍ରାପ୍ତି ଓ ବ୍ୟୟ ପୃଥକ ଭାବେ ଦର୍ଶିତ କରାଯିବା**—ରାଜ୍ୟର ସଞ୍ଚିତ ନିଧିରେ ଜମା କରାଯିବା ବା ତହିଁରୁ ଖର୍ଚ୍ଚ କରାଯିବା ସ୍ୱାୟତ୍ତଶାସୀ ଜିଲ୍ଲା ସମ୍ବନ୍ଧୀୟ ପ୍ରାକ୍‌କଳିତ ପ୍ରାପ୍ତି ଓ ବ୍ୟୟ ପ୍ରଥମେ ଜିଲ୍ଲା ପରିଷଦ ସମକ୍ଷରେ ଆଲୋଚନା ନିମିତ୍ତ ରଖାଯିବ ଏବଂ ଏପରି ଆଲୋଚନା ପରେ ଅନୁଚ୍ଛେଦ ୨୦୨ ଅଧୀନରେ ରାଜ୍ୟ ବିଧାନମଣ୍ଡଳ ସମକ୍ଷରେ ଉପସ୍ଥାପିତ କରାଯିବା ବାର୍ଷିକ ବିତ୍ତ ବିବରଣୀରେ ପୃଥକଭାବେ ଦର୍ଶିତ କରାଯିବ ।

୧୪ । **ସ୍ୱାୟତ୍ତଶାସୀ ଜିଲ୍ଲା ଏବଂ ସ୍ୱାୟତ୍ତଶାସୀ ଅଞ୍ଚଳର ପ୍ରଶାସନ ଯାଞ୍ଚ କରିବା ଏବଂ ତହିଁ ଉପରେ ରିପୋର୍ଟ ଦେବା ନିମିତ୍ତ କମିଶନ ନିଯୁକ୍ତି**— (୧) ରାଜ୍ୟପାଳ ଯେ କୌଣସି ସମୟରେ ଏହି ଅନୁସୂଚୀର ପାରା ୧ର ଉପପାରା (୩)ର ଖଣ୍ଡ (ଗ), (ଘ), (ଙ) ଓ (ଚ)ରେ ବିନିର୍ଦ୍ଦିଷ୍ଟ ବିଷୟମାନଙ୍କ ସମେତ ରାଜ୍ୟର ସ୍ୱାୟତ୍ତଶାସୀ ଜିଲ୍ଲା ଓ ସ୍ୱାୟତ୍ତଶାସୀ ଅଞ୍ଚଳର ପ୍ରଶାସନ ସମ୍ବନ୍ଧରେ ତାଙ୍କ ଦ୍ୱାରା ବିନିର୍ଦ୍ଦିଷ୍ଟ ଯେ କୌଣସି ବିଷୟକୁ ପରୀକ୍ଷା କରିବା ଓ ତହିଁ ଉପରେ ରିପୋର୍ଟ ଦେବା ନିମିତ୍ତ କମିଶନ ନିଯୁକ୍ତ କରି ପାରିବେ, ଅଥବା ସେ ସାଧାରଣ ଭାବେ ରାଜ୍ୟର ପ୍ରଶାସନ ସମ୍ବନ୍ଧରେ ଏବଂ ବିଶେଷଭାବେ—

(କ) ଏପରି ଜିଲ୍ଲା ବା ଅଞ୍ଚଳରେ ଶିକ୍ଷା ଓ ଚିକିତ୍ସାର ସୁବିଧା ଓ ସଞ୍ଚାରର ଉପବନ୍ଧ ସମ୍ବନ୍ଧରେ,

(ଖ) ଏପରି ଜିଲ୍ଲା ବା ଅଞ୍ଚଳ ସମ୍ପର୍କରେ କୌଣସି ନୂତନ ବା ବିଶେଷ ବିଧାନର ଆବଶ୍ୟକତା ସମ୍ବନ୍ଧରେ,

(ଗ) ଜିଲ୍ଲା ବା ଆଞ୍ଚଳିକ ପରିଷଦ ଦ୍ୱାରା ପ୍ରଣୀତ ବିଧି, ନିୟମ ଏବଂ ବିନିୟମମାନଙ୍କର ପ୍ରଶାସନ ସମ୍ବନ୍ଧରେ,

ବିଭିନ୍ନ ସମୟରେ ଯାଞ୍ଚ କରି ରିପୋର୍ଟ ଦେବା ନିମିତ୍ତ ଏକ କମିଶନ ନିଯୁକ୍ତ କରି ପାରିବେ, ଏବଂ ଏପରି କମିଶନ ଦ୍ୱାରା ଅନୁସରଣୀୟ ପ୍ରକ୍ରିୟା ସଂଜ୍ଞାକୃତ କରି ପାରିବେ ।

(୨) ଏପରି ପ୍ରତ୍ୟେକ ଆୟୋଗର ରିପୋର୍ଟକୁ ସେ ସମ୍ପର୍କରେ ରାଜ୍ୟପାଳଙ୍କ ସୁପାରିଶ ସହ ସମ୍ପୃକ୍ତ ମନ୍ତ୍ରୀ ରାଜ୍ୟ ସରକାରଙ୍କ ଦ୍ୱାରା ତହିଁ ଉପରେ ଯେଉଁ କାର୍ଯ୍ୟ କରାଯିବାକୁ ପ୍ରସ୍ତାବ ଥିବ ସେହି ବିଷୟରେ ଏକ ବ୍ୟାଖ୍ୟାତ୍ମକ ଜ୍ଞାପନ ସହିତ ରାଜ୍ୟ ବିଧାନମଣ୍ଡଳ ସମକ୍ଷରେ ଉପସ୍ଥାପିତ କରିବେ ।

(୩) ରାଜ୍ୟପାଳ ତାଙ୍କର ମନ୍ତ୍ରୀମାନଙ୍କ ମଧ୍ୟରେ ରାଜ୍ୟ ଶାସନର କାର୍ଯ୍ୟ ବଣ୍ଟନ କଲାବେଳେ ତାଙ୍କର ମନ୍ତ୍ରୀମାନଙ୍କ ମଧ୍ୟରୁ ଜଣଙ୍କୁ ବିଶେଷଭାବେ ସ୍ୱାୟତ୍ତଶାସୀ ଜିଲ୍ଲା ଓ ସ୍ୱାୟତ୍ତଶାସୀ ଅଞ୍ଚଳମାନଙ୍କର କଲ୍ୟାଣ ଦାୟିତ୍ୱରେ ରଖି ପାରିବେ ।

୧୫ । **ଜିଲ୍ଲା ଏବଂ ଆଞ୍ଚଳିକ ପରିଷଦମାନଙ୍କର କାର୍ଯ୍ୟ ଓ ସଙ୍କଳ୍ପମାନଙ୍କୁ ବାତିଲ ବା ନିଲମ୍ବିତ କରିବା**—(୧) ଯଦି କୌଣସି ସମୟରେ ରାଜ୍ୟପାଳଙ୍କର ହୃଦବୋଧ ହୁଏ ଯେ ଜିଲ୍ଲା ପରିଷଦ ବା ଆଞ୍ଚଳିକ ପରିଷଦର କୌଣସି କାର୍ଯ୍ୟ ବା ସଂକଳ୍ପ ଦ୍ୱାରା ଭାରତର ନିରାପତ୍ତା ପ୍ରତି ସଂକଟ ଉପୁଜିବାର ସଂଭାବନା ଅଛି କିମ୍ବା ତାହା ସାର୍ବଜନିକ ବ୍ୟବସ୍ଥାର ପ୍ରତିକୂଳ ହେବାର ସଂଭାବନା ଅଛି ତେବେ ସେ ଏପରି କାର୍ଯ୍ୟ ବା ସଂକଳ୍ପକୁ ବାତିଲ ବା ନିଲମ୍ବିତ କରି ପାରିବେ, ଏବଂ ଏପରି କାର୍ଯ୍ୟ କରାଯିବା ବା ଗୁଲୁ ରଖାଯିବାକୁ ଅଥବା ଏପରି ସଂକଳ୍ପ ପ୍ରଭାବୀ ହେବାକୁ ନିବାରିତ କରିବା ନିମିତ୍ତ ଯେପରି ଆବଶ୍ୟକ ମନେ କରିବେ (ପରିଷଦକୁ ନିଲମ୍ବିତ କରିବା ଓ ପରିଷଦଠାରେ ନିହିତ ବା ତାହା ଦ୍ୱାରା ପ୍ରୟୋଗ କରାଯାଇପାରିବା କ୍ଷମତାମାନଙ୍କ ମଧ୍ୟରୁ ସମସ୍ତ ବା କୌଣସିଟିକୁ ନିଜ ହାତକୁ ନେବା ସମେତ) ସେପରି କାର୍ଯ୍ୟାନୁଷ୍ଠାନ କରିପାରିବେ ।

(୨) ଏହି ପାରାର ଉପପାରା (୧) ଅଧୀନରେ ରାଜ୍ୟପାଳଙ୍କ ଦ୍ୱାରା କୃତ ଆଦେଶ ସେଥିନିମିତ୍ତ କାରଣ ସହ ରାଜ୍ୟ ବିଧାନମଣ୍ଡଳର ସମକ୍ଷରେ ଯଥା ସଂଭବ ଶୀଘ୍ର ଉପସ୍ଥାପିତ କରାଯିବ ଏବଂ ରାଜ୍ୟ ବିଧାନମଣ୍ଡଳ ଦ୍ୱାରା ପ୍ରତିସଂହୃତ କରା ନ ଗଲେ ସେହି ଆଦେଶ ସେପରି ପ୍ରବୃତ୍ତ ହେବା ତାରିଖରୁ ବାର ମାସ କାଳାବଧି ପର୍ଯ୍ୟନ୍ତ ପ୍ରବୃତ୍ତ ରହିବ :

ପରନ୍ତୁ ଯଦି ଏବଂ ଯେତେଥର ଏପରି ଆଦେଶକୁ ପ୍ରବୃତ୍ତ ରଖିବାକୁ ଅନୁମୋଦନ କରି ରାଜ୍ୟ ବିଧାନ ମଣ୍ଡଳ ଦ୍ୱାରା ସଂକଳ୍ପ ପାରିତ ହୁଏ ତେବେ ଆଦେଶ ରାଜ୍ୟପାଳଙ୍କ ଦ୍ୱାରା ପ୍ରତିସଂହୃତ କରାଯାଇ ନଥିଲେ ଯେଉଁ ତାରିଖରେ ଏହି ପାରା ଅଧୀନରେ ପ୍ରବର୍ତ୍ତନକୁ ରହିତ କରାହୋଇଥାନ୍ତା ସେହି ତାରିଖରୁ ଆହୁରି ବାରମାସ ଅଧିକ କାଳାବଧି ନିମିତ୍ତ ପ୍ରବୃତ୍ତ ରହିବ ।

୧୬ । **ଜିଲ୍ଲା ବା ଆଞ୍ଚଳିକ ପରିଷଦର ବିଘଟନ**—(୧) ଏହି ଅନୁସୂଚୀର ପାରା ୧୪ ଅଧୀନରେ ନିଯୁକ୍ତ ଆୟୋଗର ସୁପାରିଶ ଅନୁସାରେ ରାଜ୍ୟପାଳ ଲୋକ ଅଧିସୂଚନା ଦ୍ୱାରା କୌଣସି ଜିଲ୍ଲା ବା ଆଞ୍ଚଳିକ ପରିଷଦକୁ ବିଘଟନ କରିବାର ଆଦେଶ ଦେଇ ପାରିବେ, ଏବଂ—

(କ) ପରିଷଦର ପୁନର୍ଗଠନ ନିମିତ୍ତ ତୁରନ୍ତ ନୂତନ ନିର୍ବାଚନ କରାଯିବା ପାଇଁ ନିଦେଶ ଦେଇ ପାରିବେ ; ଅଥବା

(ଖ) ରାଜ୍ୟ ବିଧାନମଣ୍ଡଳର ପୂର୍ବ ଅନୁମୋଦନର ବଶବର୍ତ୍ତୀ ହୋଇ ଏପରି ପରିଷଦର ପ୍ରାଧୀକାରାଧୀନ କ୍ଷେତ୍ରର ପ୍ରଶାସନ ନିଜ ହାତକୁ ନେଇ ପାରିବେ ଅଥବା ଏପରି କ୍ଷେତ୍ରର ପ୍ରଶାସନ ଉକ୍ତ ପାରା ଅଧୀନରେ ନିଯୁକ୍ତ କମିଶନ ବା ସେ ସମୁପଯୁକ୍ତ ବୋଲି ମନେ କରୁଥିବା ଅନ୍ୟ କୌଣସି ନିକାୟ ହାତରେ ବାର ମାସରୁ ଅନଧିକ କାଳାବଧି ନିମିତ୍ତ ଦେଇ ପାରିବେ :

ପରନ୍ତୁ ଯେବେ ଏହି ପାରାର ଖଣ୍ଡ (କ) ଅଧୀନରେ କୌଣସି ଆଦେଶ ଦିଆଯାଇଥାଏ ତେବେ ରାଜ୍ୟପାଳ ସାଧାରଣ ନିର୍ବାଚନ ହୋଇ ପରିଷଦର ପୁନର୍ଗଠିତ ହେବା ବିଷୟ ଲମ୍ବିତ ରହିଥିବାବେଳେ ପ୍ରଶ୍ନାଧୀନ କ୍ଷେତ୍ରର ପ୍ରଶାସନ ସଂପର୍କରେ ଏହି ପାରାର ଖଣ୍ଡ (ଖ)ରେ ନିର୍ଦ୍ଦିଷ୍ଟ କାର୍ଯ୍ୟବାହୀ କରିପାରିବେ :

ଅଧିକନ୍ତୁ, ଯଥାସ୍ଥିତି, ଜିଲ୍ଲା ବା ଆଞ୍ଚଳିକ ପରିଷଦକୁ ରାଜ୍ୟ ବିଧାନମଣ୍ଡଳ ସମକ୍ଷରେ ତାହାର ମତାମତ ଉପସ୍ଥାପିତ କରିବାର ସୁଯୋଗ ଦିଆ ନ ଯାଇ ଏହି ପାରାର ଖଣ୍ଡ (ଖ) ଅଧୀନରେ କୌଣସି କାର୍ଯ୍ୟବାହୀ କରାଯିବ ନାହିଁ ।

(୨) ଯଦି କୌଣସି ସମୟରେ ରାଜ୍ୟପାଳଙ୍କର ହୃଦବୋଧ ହୁଏ ଯେ ଏପରି ପରିସ୍ଥିତିର ଉଦ୍ଭବ ହୋଇଅଛି ଯହିଁରେକି କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ବା ଅଞ୍ଚଳର ପ୍ରଶାସନ ଏହି ଅନୁସୂଚୀରେ ଉପବନ୍ଧ-ମାନଙ୍କ ଅନୁଯାୟୀ ନିର୍ବାହିତ ହୋଇପାରିବ ନାହିଁ ତାହାହେଲେ ସେ ଛଅ ମାସରୁ ଅନଧିକ କାଳ ପର୍ଯ୍ୟନ୍ତ ଲୋକ ଅଧିସୂଚନା ଦ୍ୱାରା, ଯଥାସ୍ଥିତି, ଜିଲ୍ଲା ପରିଷଦ ବା ଆଞ୍ଚଳିକ ପରିଷଦଠାରେ ନ୍ୟସ୍ତ ହୋଇଥିବା ବା ତାହାଦ୍ୱାରା ପ୍ରୟୋଗ କରାଯାଇପାରିବା ସମସ୍ତ ବା କୌଣସି କୃତ୍ୟ ବା କ୍ଷମତା ନିଜ ହାତକୁ ନେଇ ପାରିବେ ଏବଂ ସେହି କୃତ୍ୟ ବା କ୍ଷମତାମାନ ସେ ଏଥିନିମିତ୍ତ ବିନିର୍ଦ୍ଦିଷ୍ଟ କରିଥିବା ବ୍ୟକ୍ତିଙ୍କ ଦ୍ୱାରା ପ୍ରୟୋଗ କରାଯାଇ-ପାରିବ ବୋଲି ଘୋଷଣା କରିପାରିବେ

ପରନ୍ତୁ ରାଜ୍ୟପାଳ ପରବର୍ତ୍ତୀ ଆଦେଶ ବା ଆଦେଶମାନଙ୍କ ଦ୍ୱାରା ପ୍ରଥମ ଆଦେଶର ପ୍ରବର୍ତ୍ତନ ପ୍ରତିଥର ଛଅମାସରୁ ଅନଧିକ କାଳ ପର୍ଯ୍ୟନ୍ତ ବଢାଇ ପାରିବେ ।

(୩) ଏହି ପାରାର ଉପପାରା ୨ ଅଧୀନରେ କରାଯିବା ପ୍ରତ୍ୟେକ ଆଦେଶ ତାହାର କାରଣ ସହିତ ରାଜ୍ୟର ବିଧାନମଣ୍ଡଳରେ ଉପସ୍ଥାପିତ କରାଯିବ ଏବଂ ଏହି ଆଦେଶ ବାହାର କରାଯିବା ପରେ ରାଜ୍ୟ ବିଧାନମଣ୍ଡଳ ପ୍ରଥମେ ଯେଉଁ ତାରିଖରେ ବସିବ ସେହି ତାରିଖଠାରୁ ୩୦ ଦିନର ଅବସାନ ପୂର୍ବରୁ ଏହା ରାଜ୍ୟ ବିଧାନମଣ୍ଡଳ ଦ୍ୱାରା ଅନୁମୋଦିତ ନ ହେଲେ ସେହି କାଳାବଧିର ଅବସାନ ପରେ ପ୍ରବର୍ତ୍ତନରହିତ ହେବ ।

୧୭ । **ସ୍ୱାୟତ୍ତଶାସୀ ଜିଲ୍ଲାମାନଙ୍କରେ ନିର୍ବାଚନ କ୍ଷେତ୍ରମାନ ଗଠନ କରିବାରେ ଏପରି ଜିଲ୍ଲାମାନଙ୍କରୁ କ୍ଷେତ୍ରମାନଙ୍କର ଅପବର୍ଜନ**:—ଆସାମର ବା ମେଘାଳୟର ବିଧାନସଭା ପାଇଁ ନିର୍ବାଚନର ପ୍ରୟୋଜନ ନିମିତ୍ତ ରାଜ୍ୟପାଳ ଆଦେଶ ଦ୍ୱାରା ଘୋଷିତ କରିପାରିବେ ଯେ, ଯଥାସ୍ଥିତି, ଆସାମ ଓ ମେଘାଳୟ ରାଜ୍ୟରେ ଥିବା କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ଅନ୍ତର୍ଗତ କୌଣସି କ୍ଷେତ୍ର ଏପରି ଜିଲ୍ଲା ନିମିତ୍ତ ସଭାରେ ଆରକ୍ଷିତ ସ୍ଥାନ ବା ସ୍ଥାନମାନଙ୍କର ପୂରଣ ନିମିତ୍ତ କୌଣସି ନିର୍ବାଚନ କ୍ଷେତ୍ରର ଭାଗ ହେବ ନାହିଁ, ମାତ୍ର ସଭାରେ ଏପରି ଆରକ୍ଷିତ ନହୋଇଥିବା ସ୍ଥାନ ବା ସ୍ଥାନମାନଙ୍କର ପୂରଣ ନିମିତ୍ତ ଆଦେଶରେ ବିନିର୍ଦ୍ଦିଷ୍ଟ ହୋଇଥିବା ନିର୍ବାଚନ କ୍ଷେତ୍ରର ଭାଗ ହେବ ।

୧୮ । ନିରସିତ

୧୯ । **ଅନ୍ତଃକାଳୀନ ଉପବନ୍ଧ**—(୧) ଏହି ସଂବିଧାନର ପ୍ରାରମ୍ଭର ପଶ୍ଚାତ୍ ଯଥା ସଂଭବ ଶୀଘ୍ର ଏହି ଅନୁସୂଚୀ ଅନୁସାରେ ରାଜ୍ୟସ୍ଥିତ ପ୍ରତ୍ୟେକ ସ୍ୱାୟତ୍ତଶାସୀ ଜିଲ୍ଲା ନିମିତ୍ତ ଜିଲ୍ଲା ପରିଷଦ ଗଠନ ଲାଗି ରାଜ୍ୟପାଳ ଅଗ୍ରସର ହେବେ ଏବଂ ଯେଉଁ ପର୍ଯ୍ୟନ୍ତ କୌଣସି ସ୍ୱାୟତ୍ତଶାସୀ ଜିଲ୍ଲା ନିମିତ୍ତ ଜିଲ୍ଲା ପରିଷଦ ଏହି ପ୍ରକାରେ ଗଠିତ ନ ହୋଇଛି ସେ ପର୍ଯ୍ୟନ୍ତ ଏପରି ଜିଲ୍ଲାର ପ୍ରଶାସନ ରାଜ୍ୟପାଳଙ୍କଠାରେ ନିହିତ ହେବ ଏବଂ ଏହି ଅନୁସୂଚୀର ପୂର୍ବଗାମୀ ଉପବନ୍ଧମାନଙ୍କ ପରିବର୍ତ୍ତେ ଏପରି ଜିଲ୍ଲାସ୍ଥିତ କ୍ଷେତ୍ରମାନଙ୍କ ପ୍ରଶାସନରେ ନିମ୍ନଲିଖିତ ଉପବନ୍ଧମାନ ଲାଗୁ ହେବ, ଯଥା—

(କ) ରାଜ୍ୟପାଳ ଲୋକ ଅଧିସୂଚନା ଦ୍ୱାରା ସଂସଦର ଅଥବା ରାଜ୍ୟ ବିଧାନମଣ୍ଡଳର କୌଣସି ଅଧିନିୟମ ଏପରି କ୍ଷେତ୍ର ପ୍ରତି ଲାଗୁ ହେବ ବୋଲି ନିଦେଶ ନଦେଲେ ତାହା ସେପରି କ୍ଷେତ୍ର ପ୍ରତି ଲାଗୁ ହେବ ନାହିଁ ଏବଂ କୌଣସି ଅଧିନିୟମ ସମ୍ପର୍କରେ ଏପରି ନିଦେଶ ଦେବାବେଳେ ରାଜ୍ୟପାଳ ନିଦେଶ ଦେଇ ପାରିବେ ଯେ ସେହି ଅଧିନିୟମ କୌଣସି କ୍ଷେତ୍ର ବା ସେହି କ୍ଷେତ୍ରର କୌଣସି ବିନିର୍ଦ୍ଦିଷ୍ଟ ଭାଗ ପ୍ରତି ଲାଗୁ ହେବାରେ ସେ ଯେପରି ଉଚିତ ମନେ କରିବେ ସେପରି ବ୍ୟତିରେକୀ ବା ରୂପାନ୍ତରଣର ବଶବର୍ତ୍ତୀ ରହି ପ୍ରଭାବୀ ହେବ ;

(ଖ) ଏପରି କୌଣସି କ୍ଷେତ୍ରର ଶାନ୍ତି ଓ ସୁଶାସନ ନିମିତ୍ତ ରାଜ୍ୟପାଳ ବିନିୟମ ପ୍ରଣୟନ କରି ପାରିବେ ଏବଂ ସେପରି ପ୍ରଣୀତ କୌଣସି ବିନିୟମ ଏପରି କ୍ଷେତ୍ରରେ ତତ୍‌ସମୟ ଲଗୁ ହେଉଥିବା ସଂସଦର ଅଥବା ସେହି ରାଜ୍ୟ ବିଧାନମଣ୍ଡଳର କୌଣସି ଅଧିନିୟମକୁ ବା କୌଣସି ବିଦ୍ୟମାନ ବିଧିକୁ ନିରସିତ ବା ସଂଶୋଧିତ କରି ପାରିବ ।

(୨) ଏହି ପାରାର ଉପପାରା (୧)ର ଖଣ୍ଡ (ଗ) ଅଧୀନରେ ରାଜ୍ୟପାଳଙ୍କ ଦ୍ୱାରା ଦିଆଯିବା କୌଣସି ଆଦେଶ ଏପରି ଦିଆଯାଇପାରେ ଯେପରିକି ତହିଁର ଭୂତଲକ୍ଷୀ ପ୍ରଭାବ ରହିବ ।

(୩) ଏହି ପାରାର ଉପପାରା(୧)ର ଖଣ୍ଡ (ଗ) ଅଧୀନରେ ପ୍ରଣୀତ ସମସ୍ତ ବିନିୟମ ତୁରନ୍ତ ରାଷ୍ଟ୍ରପତିଙ୍କ ସମକ୍ଷରେ ଉପସ୍ଥାପିତ କରାଯିବ ଏବଂ ଯେଉଁ ପର୍ଯ୍ୟନ୍ତ ସେ ସେଥିପ୍ରତି ତାଙ୍କର ଅନୁମତି ପ୍ରଦାନ ନ କରନ୍ତି ସେପର୍ଯ୍ୟନ୍ତ ତାହା ପ୍ରଭାବୀ ହେବ ନାହିଁ ।

**୨୦ । ଜନଜାତି କ୍ଷେତ୍ର**—(୧) ନିମ୍ନ ସାରଣୀର ଭାଗ ୧, ୨ ଓ ୩ରେ ବିନିର୍ଦ୍ଦିଷ୍ଟ କ୍ଷେତ୍ର ଯଥାକ୍ରମେ ଆସାମ ରାଜ୍ୟ, ମେଘାଳୟ ରାଜ୍ୟ ଓ ମିଜୋରାମ ସଂଘ ରାଜ୍ୟକ୍ଷେତ୍ରରେ ଥିବା ଜନଜାତିକ୍ଷେତ୍ର ହେବ ।

(୨) ନିମ୍ନ ସାରଣୀର କୋଣସି ଜିଲ୍ଲା ସଂପର୍କରେ ଥିବା ନିର୍ଦ୍ଦେଶ ଉତ୍ତର ପୂର୍ବ ଅଞ୍ଚଳ (ପୁନର୍ଗଠନ) ଅଧିନିୟମ, ୧୯୭୧ର ଧାରା ୨ର ଖଣ୍ଡ (ଖ) ଅଧୀନରେ ନିୟତ ଦିନର ଅବ୍ୟବହିତ ପୂର୍ବରୁ ସେହି ନାମରେ ଥିବା ସ୍ୱାୟତ୍ତଶାସୀ ଜିଲ୍ଲା ମଧ୍ୟରେ ସମାବିଷ୍ଟ ରାଜ୍ୟକ୍ଷେତ୍ରମାନଙ୍କୁ ବୁଝାଇବ :

ପରନ୍ତୁ ଏହି ଅନୁସୂଚୀର ପାରା ୩ର ଉପପାରା (୧)ର ଖଣ୍ଡ (ଙ) ଓ (ଚ), ପାରା ୪, ପାରା ୫, ପାରା ୬, ପାରା ୮ର ଉପପାରା (୩)ର ଖଣ୍ଡ (କ), (ଖ), (ଘ) ଓ ଉପପାରା (୪) ଏବଂ ପାରା ୧୦ର ଉପପାରା (୨)ର ଖଣ୍ଡ (ଘ)ର ପ୍ରୟୋଜନ ନିମିତ୍ତ ସିଲଂ ନଗରପାଳିକା ମଧ୍ୟରେ ସମାବିଷ୍ଟ ଅଞ୍ଚଳର କୌଣସି ଭାଗ ସଂଯୁକ୍ତ ଖାସୀ, ଜୟନ୍ତିଆ, ପାହାଡ଼ି ଜିଲ୍ଲା ମଧ୍ୟରେ ଥିବା ଅଞ୍ଚଳ ରୂପେ ବିବେଚିତ ହେବ ନାହିଁ ।

### ସାରଣୀ

### ଭାଗ ୧

୧ । ଉତ୍ତର କାଛର ପାହାଡ଼ି ଜିଲ୍ଲା ।

୨ । ମିକିର ପାହାଡ଼ି ଜିଲ୍ଲା ।

### ଭାଗ ୨

୧ । ଖାସି ପାହାଡ଼ି ଜିଲ୍ଲା ।

୨ । ଜୟନ୍ତିଆ ପାହାଡ଼ି ଜିଲ୍ଲା ।

୩ । ଗାରୋ ପାହାଡ଼ି ଜିଲ୍ଲା ।

### ଭାଗ ୩

୧ । ଚକମା ଜିଲ୍ଲା ।

୨ । ଲଖର ଜିଲ୍ଲା ।

୩ । ପାଓ୍ୱା ଜିଲ୍ଲା ।

**୨୦ କ । ମିଜୋ ଜିଲ୍ଲା ପରିଷଦର ବିଘଟନ**—(୧) ଏହି ଅନୁସଚୀରେ ଯେ କୌଣସି ବିଷୟ ଥିବା ସତ୍ତ୍ୱେ, ବିହିତ ତାରିଖର ଅବ୍ୟବହିତ ପୂର୍ବରୁ ଥିବା ମିଜୋ ଜିଲ୍ଲାର ଜିଲ୍ଲା ପରିଷଦ (ଏଥିଉତ୍ତାରୁ ମିଜୋ ଜିଲ୍ଲା ପରିଷଦ ରୂପେ ନିର୍ଦ୍ଦେଶିତ) ବିଘଟିତ ହୋଇଯିବ ତଥା ବିଦ୍ୟମାନ ହେବାରୁ ରହିତ ହେବ ।

(୨) ମିଜୋରାମ ସଂଘ ରାଜ୍ୟ କ୍ଷେତ୍ରର ପ୍ରଶାସକ ଏକ ବା ଅଧିକ ଆଦେଶ ଦ୍ୱାରା ନିମ୍ନଲିଖିତ ସମସ୍ତ ବା ଯେ କୌଣସି ବିଷୟ ଲାଗି ଉପବନ୍ଧ କରିପାରିବେ, ଅର୍ଥାତ୍—

(କ) ସଂପୂର୍ଣ୍ଣଭାବେ ବା ଆଂଶିକଭାବେ ମିଜୋ ଜିଲ୍ଲା ପରିଷଦର ଆସ୍ତି, ଅଧିକାର ଓ ଦାୟିତ୍ୱର (ତାହା ଦ୍ୱାରା କରାଯାଇଥିବା କୌଣସି ଚୁକ୍ତି ଅଧୀନ ଅଧିକାର ଓ ଦାୟିତ୍ୱ ସମେତ) ସଂଘକୁ ବା ଅନ୍ୟ କୌଣସି ପ୍ରାଧିକାରୀଙ୍କୁ ଅନ୍ତରଣ ;

(ଖ) ଯେଉଁ ବୈଧିକ କାର୍ଯ୍ୟବାହୀରେ ମିଜୋ ଜିଲ୍ଲା ପରିଷଦ ଏକ ପକ୍ଷ ହୋଇଥାଏ ତାହାର ପକ୍ଷ ଭାବେ ମିଜୋ ଜିଲ୍ଲା ପରିଷଦ ଲାଗି ସଂଘ ବା ଅନ୍ୟ କୌଣସି ପ୍ରାଧିକାରୀଙ୍କର ପ୍ରତିସ୍ଥାପନ ବା ସେହି ସଂଘ ବା ଅନ୍ୟ କୌଣସି ପ୍ରାଧିକାରୀଙ୍କର ଯୋଗ କରଣ ;

(ଗ) ମିଜୋ ଜିଲ୍ଲା ପରିଷଦର କୌଣସି କର୍ମଚାରୀଙ୍କର ସଂଘକୁ ଅଥବା ସଂଘ ବା ଅନ୍ୟ କୌଣସି ପ୍ରାଧିକାରୀ ଦ୍ୱାରା ଅନ୍ତରଣ ବା ପୁନର୍ନିୟୋଜନ, ସେପରି ଅନ୍ତରଣ ବା ପୁନର୍ନିୟୋଜନ ପରେ ସେହି କର୍ମଚାରୀଙ୍କ ପ୍ରତି ପ୍ରଯୁଜ୍ୟ ସେବା ନିବନ୍ଧନ ଓ ସର୍ତ୍ତାବଳୀ ;

(ଘ) ମିଜୋ ଜିଲ୍ଲା ପରିଷଦ ଦ୍ୱାରା ପ୍ରଣୀତ ଓ ତାହାର ବିଘଟନର ଅବ୍ୟବହିତ ପୂର୍ବରୁ ପ୍ରବୃତ୍ତ ଥିବା କୌଣସି ବିଧିର, ସେପରି ବିଧି କୌଣସି ସକ୍ଷମ ବିଧାନମଣ୍ଡଳ ବା ଅନ୍ୟ ସକ୍ଷମ ପ୍ରାଧିକାରୀଙ୍କ ଦ୍ୱାରା ପରିବର୍ତ୍ତିତ, ନିରସିତ ବା ସଂଶୋଧିତ କରା ନ ଯିବା ପର୍ଯ୍ୟନ୍ତ ସେହି ପ୍ରଶାସକ ଏତଦୁପଲକ୍ଷେ ପ୍ରଣୀତ କରି ପାରିବା ମତେ, ନିରସନ ସୂତ୍ରେ ହେଉ ବା ସଂଶୋଧନ ସୂତ୍ରେ ହେଉ, ସେପରି ଅନୁକୂଳନ ବା ରୂପାନ୍ତରଣର ବଶବର୍ତ୍ତୀ ହୋଇ, ଚାଲୁ ରଖା ଯିବା ;

(ଙ) ପ୍ରଶାସକ ଆବଶ୍ୟକ ମନେ କରିବା ସେପରି ଆନୁଷଙ୍ଗିକ, ପାରିଣାମିକ ଓ ଅନୁପୂରକ ବିଷୟମାନ ।

ସ୍ପଷ୍ଟୀ କରଣ—ଏହି ପାରାରେ ଏବଂ ଏହି ଅନୁସୂଚୀର ପାରା ୨୦ଖ ରେ ଥିବା ଅଭିବ୍ୟକ୍ତି "ବିହିତ ତାରିଖ" କହିଲେ ଯେଉଁ ତାରିଖରେ ମିଜୋରାମ ସଂଘରାଜ୍ୟକ୍ଷେତ୍ରର ବିଧାନସଭା ସରକାରଙ୍କ ସଂଘ ରାଜ୍ୟକ୍ଷେତ୍ର ଅଧିନିୟମ, ୧୯୬୩ର ଉପବନ୍ଧମାନଙ୍କ ଅଧୀନରେ ଓ ସେହି ଉପବନ୍ଧମାନଙ୍କ ଅନୁସାରେ ସମ୍ୟକ ଭାବେ ଗଠିତ ହୋଇଥାଏ ସେହି ତାରିଖକୁ ବୁଝାଇବ ।

**୨୦ ଖ । ମିଜୋରାମ ସଂଘ ରାଜ୍ୟକ୍ଷେତ୍ରରେ ଥିବା ସ୍ୱାୟତ୍ତଶାସୀ ଅଞ୍ଚଳମାନ ସ୍ୱାୟତ୍ତଶାସୀ ଜିଲ୍ଲା ହେବା ଏବଂ ତାହାର ପରିଣାମ ସ୍ୱରୂପ ଅସ୍ଥାୟୀ ଉପବନ୍ଧ**—(୧)ଏହି ଅନୁସୂଚୀରେ ଯେକୌଣସି ବିଷୟ ଥିବା ସତ୍ତ୍ୱେ,—

(କ) ମିଜୋରାମ ସଂଘ ରାଜ୍ୟକ୍ଷେତ୍ରରେ ବିହିତ ତାରିଖର ଅବ୍ୟବହିତ ପୂର୍ବରୁ ବିଦ୍ୟମାନ ଥିବା ପ୍ରତ୍ୟେକ ସ୍ୱାୟତ୍ତଶାସୀ ଅଞ୍ଚଳ ସେହି ତାରିଖରେ ଓ ସେହି ତାରିଖଠାରୁ ସେହି ସଂଘରାଜ୍ୟ କ୍ଷେତ୍ରରେ ଏକ ସ୍ୱାୟତ୍ତଶାସୀ ଜିଲ୍ଲା ହେବ (ଏହା ପରେ ତତସ୍ଥାନୀ ନୂତନ ଜିଲ୍ଲା ରୂପେ ନିର୍ଦ୍ଦେଶିତ) ଏବଂ ତାହାର ପ୍ରଶାସକ ଏକ ବା ଅଧିକ ଆଦେଶ ଦ୍ୱାରା ନିଦେଶ ଦେଇ ପାରିବେ ଯେ ଏହି ଖଣ୍ଡର ଉପବନ୍ଧ ଗୁଡ଼ିକୁ ପ୍ରଭାବୀ କରିବାକୁ ଆବଶ୍ୟକ ହେଉଥିବା ସେପରି ପାରିଣାମିକ ସଂଶୋଧନମାନ ଏହି ଅନୁସୂଚୀର ପାରା ୨୦ରେ (ସେହି ପାରାରେ ସଂଲଗ୍ନ ସାରଣୀର ଭାଗ ୩ ସମେତ) କରାଯିବ ଏବଂ ତତ୍‌ପଶ୍ଚାତ୍ ଉକ୍ତ ପାରା ଓ ଉକ୍ତ ଭାଗ ୩ ତଦନୁସାରେ ସଂଶୋଧିତ ହୋଇଥିବା ବିବେଚିତ ହେବ ;

(ଖ) ବିହିତ ତାରିଖର ଅବ୍ୟବହିତ ପୂର୍ବରୁ ବିଦ୍ୟମାନ ମିଜୋରାମ ସଂଘ ରାଜ୍ୟକ୍ଷେତ୍ରରେ ଥିବା କୌଣସି ସ୍ୱାୟତ୍ତଶାସୀ ଅଞ୍ଚଳର ପ୍ରତ୍ୟେକ ଆଞ୍ଚଳିକ ପରିଷଦ (ଏହାପରେ ବିଦ୍ୟମାନ ଆଞ୍ଚଳିକ ପରିଷଦ ଭାବେ ନର୍ଦ୍ଦେଶିତ) ସେହି ତାରିଖରେ ଓ ସେହି ତାରିଖଠାରୁ ଏବଂ କୌଣସି ଜିଲ୍ଲା ପରିଷଦ ତତସ୍ଥାନୀ ନୂତନ ଜିଲ୍ଲା ଲାଗି ସମ୍ୟକ୍‌ରୂପେ ଗଠିତ ନ ହେବା ପର୍ଯ୍ୟନ୍ତ ସେହି ଜିଲ୍ଲାର (ଏହା ପରେ ତତସ୍ଥାନୀ ନୂତନ ଜିଲ୍ଲା ପରିଷଦ ରୂପେ ନିର୍ଦ୍ଦେଶିତ) ଜିଲ୍ଲା ପରିଷଦ ବୋଲି ବିବେଚିତ ହେବ ।

(୨) କୌଣସି ବିଦ୍ୟମାନ ଆଞ୍ଚଳିକ ପରିଷଦର ପ୍ରତ୍ୟେକ ସଦସ୍ୟ, ନିର୍ବାଚିତ ହୋଇଥାଆନ୍ତୁ ବା ମନୋନୀତ ହୋଇ ଥାଆନ୍ତୁ, ତତସ୍ଥାନୀ ନୂତନ ଜିଲ୍ଲା ପରିଷଦକୁ ନିର୍ବାଚିତ ବା, ଯଥାସ୍ଥିତି, ମନୋନୀତ ହୋଇଥିବା ବିବେଚିତ ହେବେ ଏବଂ ଏହି ଅନୁସୂଚୀ ଅଧୀନ ତତସ୍ଥାନୀ ନୂତନ ଜିଲ୍ଲା ଲାଗି ଜିଲ୍ଲା ପରିଷଦ ସମ୍ୟକଭାବେ ଗଠିତ ନ ହେବା ପର୍ଯ୍ୟନ୍ତ ପଦଧାରଣ କରିବେ ।

(୩) ତତସ୍ଥାନୀ ନୂତନ ଜିଲ୍ଲା ପରିଷଦ ଦ୍ୱାରା ଏହି ଅନୁସୂଚୀର ପାରା ୨ର ଉପପାରା (୭) ଏବଂ ପାରା ୪ର ଉପପାରା (୪) ଅଧୀନରେ ନିୟମାବଳୀ ପ୍ରଣୀତ ନହେବା ପର୍ଯ୍ୟନ୍ତ ବିଦ୍ୟମାନ ଆଞ୍ଚଳିକ ପରିଷଦ ଦ୍ୱାରା ଉକ୍ତ ଉପବନ୍ଧମାନଙ୍କ ଅଧୀନରେ ପ୍ରଣୀତ ଏବଂ ବିହିତ ତାରିଖର ଅବ୍ୟବହିତ ପୂର୍ବରୁ ପ୍ରବୃତ୍ତ ଥିବା ସେହି ନିୟମାବଳୀର ମିଜୋରାମ ସଂଘର ରାଜ୍ୟକ୍ଷେତ୍ରର ପ୍ରଶାସକଙ୍କ ଦ୍ୱାରା ତହିଁରେ କରାଯିବା ସେପରି ଅନୁକୂଳନ ଓ ରୂପାନ୍ତରଣର ବଶବର୍ତ୍ତୀ ରହି ସେହି ତତ୍‌ସ୍ଥାନୀ ନୂତନ ଜିଲ୍ଲା ପରିଷଦ ସଂପର୍କରେ ପ୍ରଭାବ ରହିବ ।

(୪) ମିଜୋରାମ ସଂଘ ରାଜ୍ୟକ୍ଷେତ୍ରର ପ୍ରଶାସକ ଏକ ବା ଅଧିକ ଆଦେଶ ଦ୍ୱାରା ନିମ୍ନଲିଖିତ ସମସ୍ତ ବା ଯେକୌଣସି ବିଷୟ ନିମିତ୍ତ ଉପବନ୍ଧ କରିପାରିବେ, ଅର୍ଥାତ :—

(କ) ସଂପୂର୍ଣ୍ଣଭାବେ ବା ଆଂଶିକଭାବେ ବିଦ୍ୟମାନ ଆଞ୍ଚଳିକ ପରିଷଦର ଆସ୍ତି, ଅଧିକାର ଓ ଦାୟିତ୍ୱର (ତାହା ଦ୍ୱାରା କରାଯାଇଥିବା କୌଣସି ଚୁକ୍ତି ଅଧୀନ ଅଧିକାର ଓ ଦାୟିତ୍ୱ ସମେତ) ସେହି ତତ୍‌ସ୍ଥାନୀ ନୂତନ ଜିଲ୍ଲା ପରିଷଦକୁ ଅନ୍ତରଣ ;

(ଖ) ଯେଉଁ ବୈଧିକ କାର୍ଯ୍ୟବାହୀରେ ବିଦ୍ୟମାନ ଆଞ୍ଚଳିକ ପରିଷଦ ଏକ ପକ୍ଷ ହୋଇଥାଏ ତାହାର ପକ୍ଷଭାବେ ବିଦ୍ୟମାନ ଆଞ୍ଚଳିକ ପରିଷଦ ଲାଗି ତତ୍‌ସ୍ଥାନୀ ନୂତନ ଜିଲ୍ଲା ପରିଷଦର ପ୍ରତିସ୍ଥାପନ;

(ଗ) ବିଦ୍ୟମାନ ଆଞ୍ଚଳିକ ପରିଷଦର କୌଣସି କର୍ମଚାରୀଙ୍କର ତତ୍‌ସ୍ଥାନୀ ନୂତନ ଜିଲ୍ଲା ପରିଷଦକୁ ବା ତାହା ଦ୍ୱାରା ଅନ୍ତରଣ ବା ପୁନର୍ନିଯୋଜନ, ସେପରି ଅନ୍ତରଣ ବା ପୁନର୍ନିଯୋଜନ ପରେ ସେହି କର୍ମଚାରୀଙ୍କ ପ୍ରତି ପ୍ରଯୁଜ୍ୟ ସେବା ନିବନ୍ଧନ ଓ ସର୍ତ୍ତାବଳୀ ;

(ଘ) ବିଦ୍ୟମାନ ଆଞ୍ଚଳିକ ପରିଷଦ ଦ୍ୱାରା ପ୍ରଣୀତ ଏବଂ ବିହିତ ତାରିଖର ଅବ୍ୟବହିତ ପୂର୍ବରୁ ପ୍ରବୃତ୍ତି ଥିବା କୌଣସି ବିଧିର, ସେପରି ବିଧି କୌଣସି ସକ୍ଷମ ବିଧାନମଣ୍ଡଳ ବା ଅନ୍ୟ ସକ୍ଷମ ପ୍ରାଧିକାରୀଙ୍କ ଦ୍ୱାରା ପରିବର୍ତ୍ତିତ, ନିରସିତ ବା ସଂଶୋଧିତ କରାନଯିବା ପର୍ଯ୍ୟନ୍ତ ସେହି ପ୍ରଶାସକ ଏତଦୁପଲକ୍ଷେ ପ୍ରଣୀତ କରି ପାରିବା ମତେ ନିରସନ ସୂତ୍ରେ ହେଉ ବା ସଂଶୋଧନ ସୂତ୍ରେ ହେଉ ସେପରି ଅନୁକୂଳନ ବା ରୂପାନ୍ତରଣର ବଶବର୍ତ୍ତୀ ହୋଇ, ଚାଲୁ ରଖାଯିବା ;

(ଙ) ପ୍ରଶାସକ ଆବଶ୍ୟକ ମନେ କରିବା ସେପରି ଆନୁଷଙ୍ଗିକ, ପାରିଣାମିକ ଓ ଅନୁପୂରକ ବିଷୟମାନ ।

୨୦—ଗ । **ନିର୍ବାଚନ**—ଏତଦୁପଲକ୍ଷେ ପ୍ରଣୀତ କୌଣସି ଉପବନ୍ଧର ବଶବର୍ତ୍ତୀ ହୋଇ ଏହି ଅନୁସୂଚୀର ଉପବନ୍ଧମାନ ମିଜୋରାମ ସଂଘ ରାଜ୍ୟକ୍ଷେତ୍ର ପ୍ରତି ଲାଗୁ ହେଲାବେଳେ ଏପରି ପ୍ରଭାବୀ ହେବ—

(୧) ଯେପରିକି ରାଜ୍ୟପାଳ ଓ ରାଜ୍ୟ ସରକାରଙ୍କ ପ୍ରତି ଥିବା ନିର୍ଦ୍ଦେଶ ଅନୁଚ୍ଛେଦ ୨୩୯ ଅଧୀନରେ ନିଯୁକ୍ତ ସଂଘ ରାଜ୍ୟକ୍ଷେତ୍ରର ପ୍ରଶାସକଙ୍କ ପ୍ରତି ନିର୍ଦ୍ଦେଶ, ରାଜ୍ୟ ପ୍ରତି ("ରାଜ୍ୟସରକାର" ଅଭିବ୍ୟକ୍ତି ବ୍ୟତୀତ) ନିର୍ଦ୍ଦେଶ, ମିଜୋରାମ ସଂଘ ରାଜ୍ୟକ୍ଷେତ୍ର ପ୍ରତି ନିର୍ଦ୍ଦେଶ ଏବଂ ରାଜ୍ୟ ବିଧାନମଣ୍ଡଳ ପ୍ରତି ନିର୍ଦ୍ଦେଶ, ମିଜୋରାମ ସଂଘରାଜ୍ୟ କ୍ଷେତ୍ରର ବିଧାନସଭା ପ୍ରତି ନିର୍ଦ୍ଦେଶ ଅଟେ ।

(୨) ଯେପରିକି–

(କ) ପାରା ୪ର ଉପପାରା (୫) ରେ ସଂପୃକ୍ତ ରାଜ୍ୟ ସରକାରଙ୍କ ସହ ପରାମର୍ଶ ଲାଗିଥିବା ଉପବନ୍ଧ ଲୋପ କରାଯାଇଅଛି ;

(ଖ) ପାରା ୬ର ଉପପାରା (୨) ରେ "ଯାହା ପ୍ରତି ରାଜ୍ୟର କାର୍ଯ୍ୟ ପାଳିକା କ୍ଷମତା ବିସ୍ତୃତ" ଶବ୍ଦାବଳୀ ପାଇଁ "ଯାହା ସଂକ୍ରାନ୍ତରେ ମିଜୋରାମ ସଂଘ ରାଜ୍ୟକ୍ଷେତ୍ରର ବିଧାନସଭାର ବିଧି ପ୍ରଣୟନ କରିବା କ୍ଷମତା ଥାଏ" ଶବ୍ଦାବଳୀ ପ୍ରତିସ୍ଥାପିତ କରାଯାଇଅଛି ;

(ଗ) ପାରା ୧୩ରେ "ଅନୁଚ୍ଛେଦ ୨୦୨ ଅଧୀନରେ" ଶବ୍ଦାବଳୀ ଓ ସଂଖ୍ୟା ଲୋପ କରାଯାଇଅଛି ।

୨୧ । **ଅନୁସୂଚୀର ସଂଶୋଧନ**–(୧) ସଂସଦ ବିଭିନ୍ନ ସମୟରେ ଯୋଗ, ଅଦଳବଦଳ ବା ନିରସନ କରି ଏହି ଅନୁସୂଚୀର ଉପବନ୍ଧମାନଙ୍କ ମଧ୍ୟରୁ ଯେକୌଣସିଟିକୁ ସଂଶୋଧନ କରିପାରିବ ଏବଂ ଯେବେ ଅନୁସୂଚୀକୁ ଏପରି ସଂଶୋଧିତ କରାଯାଏ ତେବେ ଏହି ସଂବିଧାନରେ ଏହି ଅନୁସୂଚୀ ପ୍ରତି କୌଣସି ନିର୍ଦ୍ଦେଶ ଏପରି ସଂଶୋଧିତ ଅନୁସୂଚୀ ପ୍ରତି ନିର୍ଦ୍ଦେଶ ବୋଲି ଅର୍ଥ କରାଯିବ ।

(୨) ଏହି ପାରାର ଉପପାରା (୧) ରେ ବର୍ଣ୍ଣିତ କୌଣସି ବିଧି ଅନୁଚ୍ଛେଦ ୩୬୮ର ପ୍ରୟୋଜନାର୍ଥ ଏହି ସଂବିଧାନର ସଂଶୋଧନ ବୋଲି ବିବେଚିତ ହେବ ନାହିଁ ।

# ସପ୍ତମ ଅନୁସୂଚୀ

[ ଅନୁଚ୍ଛେଦ ୨୪୬ ]

ସୂଚୀ ୧-ସଂଘ ସୂଚୀ

୧ । ଭାରତର ଓ ତହିଁର ପ୍ରତ୍ୟେକ ଭାଗର ପ୍ରତିରକ୍ଷା, ଯହିଁର ଅନ୍ତର୍ଗତ ପ୍ରତିରକ୍ଷା ନିମିତ୍ତ ପ୍ରସ୍ତୁତି ଏବଂ ଯୁଦ୍ଧ କାଳରେ ତହିଁର ପରିଚାଳନାକୁ ସୁଗମ କରୁଥିବା ସମସ୍ତ କାର୍ଯ୍ୟ ତଥା ଯୁଦ୍ଧ ସମାପ୍ତି ପରେ ସଫଳତା ପୂର୍ବକ ସୈନ୍ୟ ବିଯୋଜନ ।

୨ । ନୌସେନା, ସେନାବାହିନୀ ଓ ବିମାନ ବାହିନୀ; ସଂଘର ଅନ୍ୟ କୌଣସି ସଶସ୍ତ୍ର ବାହିନୀ ।

୨ କ । ସଂଘର କୌଣସି ସଶସ୍ତ୍ର ବାହିନୀର ବା ସଂଘର ନିୟନ୍ତ୍ରଣାଧୀନ ଅନ୍ୟ କୌଣସି ବାହିନୀର ବା ତାହାର କୌଣସି ଭାଗ ବା ୟୁନିଟର କୌଣସି ରାଜ୍ୟର ଅସୈନିକ ଶକ୍ତିର ସହାୟତା ନିମିତ୍ତ ଅଭିନିୟୋଜନ, ଏପରି ଅଭିନିୟୋଜନ ସମୟରେ ସେହି ବାହିନୀର ସଦସ୍ୟମାନଙ୍କର କ୍ଷମତା, ଅଧିକାରିତା, ବିଶେଷାଧିକାର ଓ ଦାୟିତ୍ୱ ।

୩ । କାଣ୍ଟନମେଣ୍ଟ କ୍ଷେତ୍ରମାନଙ୍କର ପରିସୀମନ, ଏପରି କ୍ଷେତ୍ରମାନଙ୍କରେ ସ୍ଥାନୀୟ ସ୍ୱାୟତ୍ତଶାସନ, ଏପରି କ୍ଷେତ୍ରମାନଙ୍କ ମଧ୍ୟରେ କାଣ୍ଟନମେଣ୍ଟ ପ୍ରାଧିକାରୀମାନଙ୍କର ଗଠନ, କ୍ଷମତା ଏବଂ ଏପରି କ୍ଷେତ୍ରମାନଙ୍କରେ ଗୃହବାସର (ଭଡ଼ାର ନିୟନ୍ତ୍ରଣ ସମେତ) ବିନିୟମନ ।

୪ । ନୌସେନା, ସେନାବାହିନୀ ଓ ବିମାନ ବାହିନୀର କର୍ମଶାଳା ।

୫ । ଅସ୍ତ୍ର ଶସ୍ତ୍ର, ଆଗ୍ନେୟାସ୍ତ୍ର, ଗୋଳାବାରୁଦ ଏବଂ ବିସ୍ଫୋରଣ ।

୬ । ପରମାଣୁ ଶକ୍ତି ଓ ତହିଁର ଉତ୍ପାଦନ ନିମିତ୍ତ ଆବଶ୍ୟକ ଖଣିଜ ସଂପଦ ।

୭ । ପ୍ରତିରକ୍ଷାର ପ୍ରୟୋଜନ ନିମିତ୍ତ ଅଥବା ଯୁଦ୍ଧ ପରିଚାଳନା ନିମିତ୍ତ ଆବଶ୍ୟକ ବୋଲି ସଂସଦ କର୍ତ୍ତୃକ ବିଧି ଦ୍ୱାରା ଘୋଷିତ ଉଦ୍ୟୋଗ ।

୮ । କେନ୍ଦ୍ରୀୟ ଗୁପ୍ତବାର୍ତ୍ତା ଓ ଅନୁସନ୍ଧାନ ବିଭାଗ ।

୯ । ପ୍ରତିରକ୍ଷା, ବୈଦେଶିକ ବ୍ୟାପାର ବା ଭାରତର ସୁରକ୍ଷା ସଂପର୍କୀୟ ପ୍ରୟୋଜନ ନିମିତ୍ତ ନିବାରକ ନିରୋଧ, ଏପରି ନିରୁଦ୍ଧ ବ୍ୟକ୍ତି ।

୧୦ । ବୈଦେଶିକ ବ୍ୟାପାର, ଏପରି ସମସ୍ତ ବିଷୟ ଯହିଁରେ କି କୌଣସି ବିଦେଶୀ ରାଜ୍ୟ ସହ ଭାରତର ସଂପର୍କ ସ୍ଥାପିତ ହେଉଥାଏ ।

୧୧ । ରାଜନୈତିକ, କନ୍ସିଲୟ ଏବଂ ବ୍ୟାପାରିକ ପ୍ରତିନିଧିତ୍ୱ ।

୧୨ । ମିଳିତ ରାଷ୍ଟ୍ର ସଙ୍ଗଠନ ।

୧୩ । ଆନ୍ତର୍ଜାତୀୟ ସମ୍ମେଳନ, ସଙ୍ଗମ ଓ ଅନ୍ୟ ନିକାୟମାନଙ୍କରେ ଭାଗ ନେବା ଏବଂ ତହିଁରେ କରାଯିବା ନିଷ୍ପତ୍ତିମାନଙ୍କୁ କାର୍ଯ୍ୟାନ୍ୱିତ କରିବା ।

୧୪ । ବିଦେଶୀ ରାଜ୍ୟମାନଙ୍କ ସହ ସନ୍ଧି ଓ କରାର କରିବା ଏବଂ ବିଦେଶୀ ରାଜ୍ୟମାନଙ୍କ ସହ କରାଯିବା ସନ୍ଧି କରାର ଓ ଚୁକ୍ତିମାନଙ୍କୁ କାର୍ଯ୍ୟାନ୍ୱିତ କରିବା ।

୧୫ । ଯୁଦ୍ଧ ଏବଂ ଶାନ୍ତି ।

୧୬ । ବୈଦେଶିକ ଅଧିକାରିତା ।

୧୭ । ନାଗରିକତା,ଦେଶୀୟ କରଣ ଓ ଅନ୍ୟ ଦେଶୀୟ ।

୧୮ । ପ୍ରତ୍ୟର୍ପଣ ।

୧୯ । ଭାରତରେ ପ୍ରବେଶ ଓ ନିର୍ବାଚନ, ପାସପୋର୍ଟ ଓ ଭିସା ।

୨୦ । ଭାରତ ବାହାରର ସ୍ଥାନମାନଙ୍କୁ ତୀର୍ଥ ଯାତ୍ରା ।

୨୧ । ମହା ସମୁଦ୍ର ଓ ଆକାଶରେ କରାଯିବା ଜଳଦସ୍ୟୁତା ଓ ଅପରାଧ; ସ୍ଥଳ, ମହାସମୁଦ୍ର ବା ଆକାଶରେ ରାଷ୍ଟ୍ରମାନଙ୍କର ବିଧି ବିରୁଦ୍ଧରେ କୃତ ଅପରାଧ ।

୨୨ । ରେଳପଥ ।

୨୩ । ସଂସଦ ପ୍ରଣୀତ ବିଧିଦ୍ୱାରା ବା ତାହାର ଅଧୀନରେ ରାଷ୍ଟ୍ରୀୟ ରାଜପଥ ବୋଲି ଘୋଷିତ ରାଜପଥ ।

୨୪ । ଯନ୍ତ୍ରଚାଳିତ ଜଳଯାନମାନଙ୍କ ସମ୍ବନ୍ଧରେ ରାଷ୍ଟ୍ରୀୟ ଜଳପଥ ରୂପେ ସଂସଦ ପ୍ରଣୀତ ବିଧିଦ୍ୱାରା ଘୋଷିତ ଆନ୍ତର୍ଦେଶୀୟ ଜଳପଥମାନଙ୍କରେ ନୌବହନ ଓ ନୌପରିବହନ, ଏପରି ଜଳପଥମାନଙ୍କର ପଥ ନିୟମ ।

୨୫ । ଜୁଆର ଜଳରେ ନୌବହନ ଓ ନୌପରିବହନ ସମେତ ସମୁଦ୍ର ନୌବହନ ଓ ନୌପରିବହନ, ବଣିଜ ପୋତୀୟ ଶିକ୍ଷା ଓ ପ୍ରଶିକ୍ଷଣ ନିମିତ୍ତ ବ୍ୟବସ୍ଥା ଏବଂ ରାଜ୍ୟ ତଥା ଅନ୍ୟ ଏଜେନ୍ସିମାନଙ୍କ ଦ୍ୱାରା ଦିଆଯାଉଥିବା ଏପରି ଶିକ୍ଷା ଓ ପ୍ରଶିକ୍ଷଣର ବିନିୟମନ ।

୨୬ । ନୌବହନ ଓ ବିମାନମାନଙ୍କର ସୁରକ୍ଷା ନିମିତ୍ତ ଆଲୋକପୋତ ଏବଂ ବିକନ ସମେତ ଆଲୋକସ୍ତମ୍ଭ ।

୨୭ । ସଂସଦ ପ୍ରଣୀତ ବିଧି ବା ବିଦ୍ୟମାନ ବିଧି ଦ୍ୱାରା ବା ତାହାର ଅଧୀନରେ ବୃହତ ପୋତାଶ୍ରୟ ରୂପେ ଘୋଷିତ ପୋତାଶ୍ରୟ ଯହିଁରେକି ତହିଁର ପରିସୀମନ ତଥା ତହିଁରେ ପୋତାଶ୍ରୟ ପ୍ରାଧିକାରୀମାନଙ୍କର ଗଠନ ଓ କ୍ଷମତା ମଧ୍ୟ ଅନ୍ତର୍ଭୁକ୍ତ ଅଟେ ।

୨୮ । ପୋତାଶ୍ରୟ କ୍ୱାରାଣ୍ଟାଇନ, ଯହିଁରେକି ତାହା ସହ ସମ୍ବନ୍ଧିତ ଚିକିତ୍ସାଳୟ ମଧ୍ୟ ଅନ୍ତର୍ଭୁକ୍ତ ଅଟେ, ନାବିକମାନଙ୍କ ନିମିତ୍ତ ତଥା ସାମୁଦ୍ରୀୟ ଚିକିତ୍ସାଳୟ ।

୨୯ । ଆକାଶପଥ, ବିମାନ ଓ ବିମାନ ପରିବହନ, ବିମାନ କ୍ଷେତ୍ରମାନଙ୍କର ଉପବନ୍ଧ, ବିମାନ ଯାତାୟତ ଓ ବିମାନ କ୍ଷେତ୍ରମାନଙ୍କର ବିନିୟମନ ଓ ସଙ୍ଗଠନ, ବୈମାନିକ ଶିକ୍ଷା ଓ ପ୍ରଶିକ୍ଷଣ ନିମିତ୍ତ ବ୍ୟବସ୍ଥା ଏବଂ ରାଜ୍ୟ ତଥା ଅନ୍ୟ ଏଜେନ୍ସିମାନଙ୍କ ଦ୍ୱାରା ଦିଆଯାଉଥିବା ଏପରି ଶିକ୍ଷା ଓ ପ୍ରଶିକ୍ଷଣର ବିନିୟମନ ।

୩୦ । ରେଳପଥ, ସମୁଦ୍ର ବା ବାୟୁ ଦ୍ୱାରା ଅଥବା ଯନ୍ତ୍ରଚାଳିତ ଯାନରେ ରାଷ୍ଟ୍ରୀୟ ଜଳପଥ ଦ୍ୱାରା ଯାତ୍ରୀ ବା ମାଲ ବହନ ।

୩୧ । ଡ଼ାକ ଓ ତାର, ଟେଲିଫୋନ, ବେତାର ପ୍ରସାରଣ ଏବଂ ଅନ୍ୟ ସମରୂପ ସଞ୍ଚାର ।

୩୨ । ସଂଘର ସଂପତ୍ତି ଓ ତହିଁର ରାଜସ୍ୱ କିନ୍ତୁ କୌଣସି ରାଜ୍ୟରେ ଅବସ୍ଥିତ ସଂପତ୍ତି ସମ୍ବନ୍ଧରେ ଯେତିକି ପର୍ଯ୍ୟନ୍ତ ସଂସଦ ବିଧିଦ୍ୱାରା ଅନ୍ୟଥା ଉପବନ୍ଧିତ କରେ ତଦ୍‌ବ୍ୟତିରେକେ ତାହା ସେହି ରାଜ୍ୟକୃତ ବିଧାନର ବଶବର୍ତ୍ତୀ ରହିବ ।

୩୩ । × × × ×

୩୪ । ଭାରତର ଦେଶୀୟ ରାଜ୍ୟର ଶାସକମାନଙ୍କର ସଂପତ୍ତି ନିମିତ୍ତ ପ୍ରତିପାଲ୍ୟ ଅଧିକରଣ ।

୩୫ । ସଂଘର ଲୋକ ଋଣ ।

୩୬ । ଚଳନ୍ତି ଅର୍ଥ ମୁଦ୍ରା ଓ ବୈଧ ଟେଣ୍ଡର ବିଦେଶୀ ମୁଦ୍ରା ।

୩୭ । ବୈଦେଶିକ ଋଣ ।

୩୮ । ଭାରତର ରିଜର୍ଭବ୍ୟାଙ୍କ ।

୩୯ । ଡ଼ାକଘର ସଞ୍ଚୟ ବ୍ୟାଙ୍କ ।

୪୦ । ଭରତ ସରକାର ବା କୌଣସି ରାଜ୍ୟର ସରକାରଙ୍କ ଦ୍ୱାରା ସଙ୍ଗଠିତ ଲଟରି ।

୪୧ । ବିଦେଶୀ ରାଜ୍ୟମାନଙ୍କ ସହ ବ୍ୟାପାର ଓ ବାଣିଜ୍ୟ ଶୁଳ୍କ ସୀମାନ୍ତ ବାଟେ କରାଯିବା ଆମଦାନୀ ଓ ରପ୍ତାନୀ ଶୁଳ୍କ ସୀମାନ୍ତର ସଂଜ୍ଞା ।

୪୨ । ଆନ୍ତର୍ରାଜ୍ୟିକ ବ୍ୟାପାର ଓ ବାଣିଜ୍ୟ ।

୪୩ । ମହାଜନୀ, ବୀମା ଓ ବିତ୍ତୀୟ ନିଗମ ସମେତ ମାତ୍ର ସମବାୟ ସୋସାଇଟିକୁ ଅନ୍ତର୍ଭୁକ୍ତ ନକରି ବ୍ୟାପାରିକ ନିଗମର ବିନିୟମନ ଓ ସମାପନ ।

୪୪ । ବିଶ୍ୱବିଦ୍ୟାଳୟକୁ ଛାଡ଼ି ବ୍ୟାପାରିକ ହେଉ ବା ନହେଉ ଯେଉଁ ନିଗମର ଉଦ୍ଦେଶ୍ୟ ଗୋଟିଏ ରାଜ୍ୟ ମଧ୍ୟରେ ଆବଦ୍ଧ ନୁହେଁ ସେପରି ନିଗମର ନିଗମନ, ବିନିୟମନ ଓ ସମାପନ ।

୪୫ । ମହାଜନ ।

୪୬ । ବିନିୟମ ପତ୍ର, ଚେକ, ବଚନ ପତ୍ର ତଥା ଏପରି ଅନ୍ୟ ଦଲିଲମାନ ।

୪୭ । ବୀମା ।

୪୮ । ଷ୍ଟକ ଏକ୍ସଚେଞ୍ଜ ଓ ବାଇଦା ବଜାର ।

୪୯ । ପେଟେଣ୍ଟ, ଉଦ୍‌ଭାବନ ଓ ରୂପାଙ୍କନ, ପ୍ରତିଲିପ୍ୟଧିକାର, ବ୍ୟାପାର ଚିହ୍ନ ଓ ପଣ୍ୟ ଚିହ୍ନ ।

୫୦ । ଓଜନ ଓ ମାପର ମାନସ୍ଥାପନ ।

୫୧ । ଭାରତ ବାହାରକୁ ରପ୍ତାନୀ ହେବା ଅଥବା ଏକ ରାଜ୍ୟରୁ ଅନ୍ୟ ରାଜ୍ୟକୁ ପଠାଯିବା ମାଲ-ମାନଙ୍କର ଗୁଣର ମାନ ସ୍ଥାପନ ।

୫୨ । ଲୋକହିତ ନିମିତ୍ତ ଯେଉଁ ଉଦ୍ୟୋଗ ଉପରେ ସଂଘର ନିୟନ୍ତ୍ରଣ ସମୀଚୀନ ଅଟେ ବୋଲି ସଂସଦ କର୍ତ୍ତୃକ ବିଧିଦ୍ୱାରା ଘୋଷଣା କରାଯାଇଥାଏ ସେପରି ଉଦ୍ୟୋଗ ।

୫୩ । ତୈଳ କ୍ଷେତ୍ର ଓ ଖଣିଜ ତୈଳ ସଂପଦର ବିନିୟମନ ଓ ବିକାଶ, ପେଟ୍ରୋଲିୟମ ଜାତ ଦ୍ରବ୍ୟ, ଭୀଷଣ ଦହନଶୀଳ ବୋଲି ସଂସଦ କର୍ତ୍ତୃକ ବିଧିଦ୍ୱାରା ଘୋଷିତ ଅନ୍ୟ ତରଳ ବସ୍ତୁ ଓ ଦ୍ରବ୍ୟ ।

୫୪ । ଯେଉଁ ପର୍ଯ୍ୟନ୍ତ ସଂଘର ନିୟନ୍ତ୍ରଣରେ ଖଣିର ବିନିୟମନ ଓ ଖଣିର ବିକାଶ ଲୋକହିତ ନିମିତ୍ତ ସମୀଚୀନ ଅଟେ ବୋଲି ସଂସଦ କର୍ତ୍ତୃକ ବିଧିଦ୍ୱାରା ଘୋଷିତ କରାଯାଇଥାଏ ସେହି ମାତ୍ରା ପର୍ଯ୍ୟନ୍ତ ତହିଁର ବିନିୟମନ ଓ ବିକାଶ ।

୫୫ । ଶ୍ରମର ବିନିୟମନ ଏବଂ ଖଣି ଓ ତୈଳ କ୍ଷେତ୍ରମାନଙ୍କର ସୁରକ୍ଷା ।

୫୬ । ଯେଉଁ ପର୍ଯ୍ୟନ୍ତ ସଂଘର ନିୟନ୍ତ୍ରଣରେ ଆନ୍ତର୍ରାଜ୍ୟିକ ନଦୀ ଓ ନଦୀ ଉପତ୍ୟକାମାନଙ୍କର ବିନିୟମନ ଓ ବିକାଶ ଲୋକହିତ ନିମିତ୍ତ ସମୀଚୀନ ଅଟେ ବୋଲି ସଂସଦ କର୍ତ୍ତୃକ ବିଧିଦ୍ୱାରା ଘୋଷିତ କରାଯାଇଥାଏ ସେହି ମାତ୍ରା ପର୍ଯ୍ୟନ୍ତ ସେହି ନଦୀ ଓ ନଦୀ ଉପତ୍ୟକାମାନଙ୍କର ବିନିୟମନ ଓ ବିକାଶ ।

୫୭ । ରାଜ୍ୟକ୍ଷେତ୍ରୀୟ ଜଳପ୍ରାଙ୍ଗଣ ବାହାରେ ମାଛଧରା ଓ ମୀନ କ୍ଷେତ୍ର ।

୫୮ । ସଂଘୀୟ ଏଜେନ୍‌ସି ଦ୍ୱାରା ଲବଣର ଉତ୍ପାଦନ, ଯୋଗାଣ ଓ ବିତରଣ ; ଅନ୍ୟ ଏଜେନ୍‌ସି-ମାନଙ୍କ ଦ୍ୱାରା ଲବଣ ଉତ୍ପାଦନ ଯୋଗାଣ ଓ ବିତରଣର ବିନିୟମନ ଓ ନିୟନ୍ତ୍ରଣ ।

୫୯ । ଅଫିମର ଗ୍ରଷ, ଉତ୍ପାଦନ ଓ ରପ୍ତାନୀ ନିମିତ୍ତ ବିକ୍ରୟ ।

୬୦ । ପ୍ରଦର୍ଶନ ନିମିତ୍ତ ଚଳଚିତ୍ରମାନଙ୍କୁ ମଞ୍ଜୁରୀ ଦାନ ।

୬୧ । ସଂଘୀୟ କର୍ମଚାରୀମାନଙ୍କ ସମ୍ବନ୍ଧୀୟ ଶିଳ୍ପଗତ ବିବାଦ ।

୬୨ । ଏହି ସଂବିଧାନର ପ୍ରାରମ୍ଭରେ ରାଷ୍ଟ୍ରୀୟ ପୁସ୍ତକାଳୟ, ଭାରତୀୟ ସଂଗ୍ରହାଳୟ, ସାମାଜିକ ଯୁଦ୍ଧ ।

୬୩ । ଏହି ସଂବିଧାନର ପ୍ରାରମ୍ଭରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ, ଆଲିଗଡ଼ ମୁଶଲିମ୍ ବିଶ୍ୱ-ବିଦ୍ୟାଳୟ ଓ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ; ଅନୁଚ୍ଛେଦ ୩୭୧ ଢ ଅନୁଯାୟୀ ସ୍ଥାପିତ ବିଶ୍ୱବିଦ୍ୟାଳୟ ନାମରେ ଜ୍ଞାତ ସଂସ୍ଥାମାନ ଏବଂ ସଂସଦ କର୍ତ୍ତୃକ ବିଧିଦ୍ୱାରା ରାଷ୍ଟ୍ରୀୟ ମହତ୍ୱ ସଂପନ୍ନ ସଂସ୍ଥା ବୋଲି ଘୋଷିତ ଅନ୍ୟ କୌଣସି ସଂସ୍ଥା ।

୬୪ । ଭାରତ ସରକାରଙ୍କ ଦ୍ୱାରା ପୂର୍ଣ୍ଣତଃ ବା ଭାଗତଃ ବିତ୍ତ ପୋଷିତ ତଥା ସଂସଦ କର୍ତ୍ତୃକ ବିଧି ଦ୍ୱାରା ରାଷ୍ଟ୍ରୀୟ ମହତ୍ତ୍ୱପୂର୍ଣ୍ଣ ସଂସ୍ଥା ବୋଲି ଘୋଷିତ ବୈଜ୍ଞାନିକ ବା ଶିଳ୍ପିକ ଶିକ୍ଷା ସଂସ୍ଥାମାନ ।

୬୫ । (କ) ପୋଲିସ ଅଫିସର ପ୍ରଶିକ୍ଷଣ ସମେତ ବୃତ୍ତିଗତ ବ୍ୟବସାୟିକ ବା ବୈଷୟିକ ପ୍ରଶିକ୍ଷଣ ନିମିତ୍ତ ; ଅଥବା

(ଖ) ବିଶେଷ ଅଧ୍ୟୟନ ବା ଗବେଷଣାରେ ଉନ୍ନତି ନିମିତ୍ତ ; ଅଥବା

(ଗ) ଅପରାଧର ଅନୁସନ୍ଧାନ ବା ନିରୂପଣ କରିବାରେ ବୈଜ୍ଞାନିକ ବା ବୈଷୟିକ ସହାୟତା ନିମିତ୍ତ,

ଥିବା ସଂଘ ଏଜେନ୍ସି ବା ସଂସ୍ଥାମାନ ।

୬୬ । ଉଚ୍ଚତର ଶିକ୍ଷା ବା ଗବେଷଣା ସଂସ୍ଥାମାନଙ୍କ ମଧ୍ୟରେ ଏବଂ ବୈଜ୍ଞାନିକ ଓ ବୈଷୟିକ ସଂସ୍ଥାମାନଙ୍କ ମଧ୍ୟରେ ସମନ୍ୱୟ ସ୍ଥାପନ ଓ ମାନ ନିର୍ଦ୍ଧାରଣ ।

୬୭ । ସଂସଦ ପ୍ରଣୀତ ବିଧିଦ୍ୱାରା ରାଷ୍ଟ୍ରୀୟ ମହତ୍ତ୍ୱସଂପନ୍ନ ବୋଲି ଘୋଷିତ ପ୍ରାଚୀନ ଏବଂ ଐତିହାସିକ କିର୍ତ୍ତୀ ଓ ଅଭିଲେଖ ଏବଂ ପ୍ରତ୍ନତତ୍ତ୍ୱୀୟ ସ୍ଥାନ ଓ ଅବଶେଷ ।

୬୮ । ଭାରତର ଭୂସର୍ବେକ୍ଷଣ, ଭାରତର ଭୂତତ୍ତ୍ୱୀୟ, ବାନସ୍ପତିକ, ପ୍ରାଣୀତତ୍ତ୍ୱୀୟ ଓ ନରତତ୍ତ୍ୱୀୟ ସର୍ବେକ୍ଷଣ, ଅନ୍ତରୀକ୍ଷୀୟ ସଂସ୍ଥାମାନ ।

୬୯ । ଜନଗଣନା ।

୭୦ । ସଂଘ ଲୋକସେବାମାନ; ଅଖିଳଭାରତୀୟ ସେବାମାନ ୟୁନିୟନ; ପବ୍ଲିକ୍ ସର୍ଭିସ କମିଶନ ।

୭୧ । ସଂଘ ପେନସନ ଅର୍ଥାତ୍ ଭାରତ ସରକାରଙ୍କ ଦ୍ୱାରା ବା ଭାରତର ସଂଚିତ ନିଧିରୁ ଦେୟ ପେନ୍‌ସନ ।

୭୨ । ସଂସଦ ଓ ରାଜ୍ୟ ବିଧାନମଣ୍ଡଳମାନଙ୍କ ନିମିତ୍ତ ତଥା ରାଷ୍ଟ୍ରପତି ଓ ଉପରାଷ୍ଟ୍ରପତି ପଦ ନିମିତ୍ତ ନିର୍ବାଚନ ଆୟୋଗ ।

୭୩ । ସଂସଦର ସଦସ୍ୟ, ରାଜ୍ୟସଭାର ସଭାପତି ଓ ଉପସଭାପତି ଏବଂ ଲୋକସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କର ବେତନ ଓ ଭତ୍ତା ।

୭୪ । ସଂସଦର ପ୍ରତ୍ୟେକ ସଦନର ଏବଂ ପ୍ରତ୍ୟେକ ସଦନର ସଦସ୍ୟ ଓ ସମିତିମାନଙ୍କର କ୍ଷମତା, ବିଶେଷାଧିକାର ଓ ଉନ୍ମୁକ୍ତିମାନ ସଂସଦର ସମିତିମାନଙ୍କ ସମକ୍ଷରେ ବା ସଂସଦ ଦ୍ୱାରା ନିଯୁକ୍ତ ଆୟୋଗମାନଙ୍କ ସମକ୍ଷରେ ସାକ୍ଷ୍ୟଦେବା ବା ଦସ୍ତାବେଜ ପେଶ କରିବା ନିମିତ୍ତ ବ୍ୟକ୍ତିମାନଙ୍କର ଉପସ୍ଥିତିକୁ ବାଧ୍ୟ କରିବା ।

୭୫ । ରାଷ୍ଟ୍ରପତି ଓ ରାଜ୍ୟପାଳମାନଙ୍କର ଉପଲବ୍ଧି, ଭତ୍ତା ଓ ବିଶେଷାଧିକାରମାନ ତଥା ଅନୁପସ୍ଥିତି-ଛୁଟି ବିଷୟରେ ଅଧିକାର ; ସଂଘର ମନ୍ତ୍ରୀମାନଙ୍କର ବେତନ ଓ ଭତ୍ତା ; କଂପଟ୍ରୋଲର ଓ ଅଡ଼ିଟର ଜେନେରାଲଙ୍କ ବେତନ, ଭତ୍ତା ଓ ଅନୁପସ୍ଥିତି ଛୁଟି ବିଷୟରେ ଅଧିକାର ଓ ଅନ୍ୟାନ୍ୟ ସେବା ସର୍ତ୍ତ ।

୭୬ । ସଂଘ ଓ ରାଜ୍ୟମାନଙ୍କର ହିସାବ ପରୀକ୍ଷା ।

୭୭ । ଉଚ୍ଚତମ ନ୍ୟାୟାଳୟର ଗଠନ, ସଂଗଠନ, ଅଧିକାରିତା ଓ କ୍ଷମତା (ସେହି ନ୍ୟାୟାଳୟର ଅବମାନନା ସମେତ) ତଥା ସେଠାରେ ନିଆଯିବା ଫିସ ; ଉଚ୍ଚତମ ନ୍ୟାୟାଳୟରେ ବିଧି ବ୍ୟବସାୟ କରିବା ନିମିତ୍ତ ହକ୍‌ଦାର ବ୍ୟକ୍ତି ।

୭୮ । ଉଚ୍ଚ ନ୍ୟାୟାଳୟମାନଙ୍କର ଅଫିସର ଓ ସେବକମାନଙ୍କ ବିଷୟରେ ଉପବଂଧ ବ୍ୟତିରେକେ ଉଚ୍ଚ ନ୍ୟାୟାଳୟମାନଙ୍କର ଗଠନ ଓ ସଂଗଠନ (ଅବକାଶ ସମେତ) ; ଉଚ୍ଚ ନ୍ୟାୟାଳୟମାନଙ୍କରେ ବିଧି ବ୍ୟବସାୟ କରିବା ନିମିତ୍ତ ହକ୍‌ଦାର ବ୍ୟକ୍ତି ।

୭୯ । କୌଣସି ସଂଘ ରାଜ୍ୟକ୍ଷେତ୍ରକୁ ଉଚ୍ଚ ନ୍ୟାୟାଳୟର ଅଧିକାରିତାର ବିସ୍ତାର ବା ସେଠାରୁ କୌଣସି ଉଚ୍ଚ ନ୍ୟାୟାଳୟର ଅଧିକାରିତାର ଅପବର୍ଜନ ।

୮୦ । କୌଣସି ରାଜ୍ୟର ପୁଲିସ ବାହିନୀର ସଦସ୍ୟଙ୍କର କ୍ଷମତା ଓ ଅଧିକାରିତାର ସେହି ରାଜ୍ୟ ବହିର୍ଭୂତ କୌଣସି କ୍ଷେତ୍ରପ୍ରତି ବିସ୍ତାରଣ କିନ୍ତୁ ଏତଦ୍ୱାରା କୌଣସି ଏକ ରାଜ୍ୟର ପୁଲିସ ସେହି ରାଜ୍ୟ ବହିର୍ଭୂତ କୌଣସି କ୍ଷେତ୍ରରେ ସେହି କ୍ଷେତ୍ର ଯେଉଁ ରାଜ୍ୟରେ ଅବସ୍ଥିତ ସେହି ରାଜ୍ୟର ସରକାରଙ୍କର ବିନା ସମ୍ମତିରେ ସେପରି କ୍ଷମତା ଓ ଅଧିକାରିତା ପ୍ରୟୋଗ କରିବା ନିମିତ୍ତ ସକ୍ଷମ ହେବ ନାହିଁ ; କୌଣସି ରାଜ୍ୟର ପୁଲିସ ବାହିନୀର ସଦସ୍ୟଙ୍କର କ୍ଷମତା ଓ ଅଧିକାରିତାର ସେହି ରାଜ୍ୟ ବହିର୍ଭତ ରେଳକ୍ଷେତ୍ରମାନଙ୍କ ପ୍ରତି ବିସ୍ତାର ।

୮୧ । ଆନ୍ତଃରାଜ୍ୟ ପ୍ରବ୍ରଜନ ; ଆନ୍ତର୍ରାଜ୍ୟ କ୍ୱାରାନ୍‌ଟାଇନ୍ ।

୮୨ । କୃଷି ଆୟ ଭିନ୍ନ ଅନ୍ୟ ଆୟ ଉପରେ କର ।

୮୩ । ରପ୍ତାନୀ ଶୁଳ୍କ ସମେତ ସୀମା ଶୁଳ୍କ ।

୮୪ । ଭାରତରେ ପ୍ରସ୍ତୁତ ବା ଉତ୍ପନ୍ନ ତମାଖୁ ଉପରେ ଏବଂ—

(କ) ମାନବ ଉପଭୋଗ ନିମିତ୍ତ ସୁରାସାରିକ ପାନୀୟ,

(ଖ) ଅଫିମ, ଭାଙ୍ଗ ଓ ଅନ୍ୟ ସ୍ୱାପକ ଔଷଧ ଓ ସ୍ୱାପକ ସମୂହ ବ୍ୟତିରେକେ କିନ୍ତୁ ମଦ୍ୟସାର ବା ଏହି ପାରାର ଉପପାରା (ଖ)ରେ ଅନ୍ତର୍ଭୁକ୍ତ ହୋଇଥିବା କୌଣସି ପଦାର୍ଥକୁ ଅନ୍ତର୍ବିଷ୍ଟ କରିଥିବା ଔଷଧୀୟ ଓ ପ୍ରସାଧନୀୟ ସାମଗ୍ରୀ ସମେତ ଅନ୍ୟାନ୍ୟ ସମସ୍ତ ବସ୍ତୁ ଉପରେ ଉତ୍ପାଦନ ଶୁଳ୍କ ।

୮୫ । ନିଗମ କର ।

୮୬ । ବ୍ୟକ୍ତି ବା କଂପାନୀମାନଙ୍କର ଆସ୍ତି ମଧ୍ୟରୁ କୃଷି ଭୂମିକୁ ଛାଡ଼ି ତହିଁର ମୂଳଧନ ମୂଲ୍ୟ ଉପରେ କର ; କଂପାନୀମାନଙ୍କର ମୂଳଧନ ଉପରେ କର ।

୮୭ । କୃଷି ଭୂମି ଭିନ୍ନ ଅନ୍ୟ ସଂପତ୍ତି ସଂପର୍କରେ ସଂପଦା ଶୁଳ୍କ ।

୮୮ । କୃଷି ଭୂମି ଭିନ୍ନ ଅନ୍ୟ ସଂପତ୍ତିର ଉତ୍ତରାଧିକାର ସଂପର୍କରେ ଶୁଳ୍କ ।

୮୯ । ରେଳରେ ବା ସମୁଦ୍ରରେ ବା ଆକାଶ ପଥରେ ନିଆଯିବା ବସ୍ତୁ ଓ ଯାତ୍ରୀମାନଙ୍କ ଉପରେ ସୀମାକର; ରେଳର ଯାତ୍ରୀ ଭଡ଼ା ଓ ମାଲ ଭଡ଼ା ଉପରେ କର ।

୯୦ । ଷ୍ଟକ୍ ଏକ୍‌ସ୍‌ଚେଞ୍ଜ୍ ଓ ବାଇଦାବଜାର ଉପରେ ଷ୍ଟାଂପ ଶୁଳ୍କ ଭିନ୍ନ ଅନ୍ୟ କର ।

୯୧ । ବିନିମୟ ପତ୍ର, ଚେକ, ବଚନପତ୍ର, ବହନପତ୍ର, ପ୍ରତ୍ୟୟ ପତ୍ର, ବୀମାପତ୍ର, ଅଂଶ ଅନ୍ତରଣ, ଡ଼ିବେଞ୍ଚର, ପ୍ରତିପତ୍ର ଓ ରସିଦ ସଂପର୍କରେ ଷ୍ଟାଂପ ଶୁଳ୍କର ହାର ।

୯୨ । ସମ୍ବାଦ ପତ୍ର କ୍ରୟ ବା ବିକ୍ରୟ ଉପରେ ଏବଂ ତହିଁରେ ପ୍ରକାଶିତ ହେବା ବିଜ୍ଞାପନ ଉପରେ କର ।

୯୨ କ । ସଂବାଦପତ୍ର ଭିନ୍ନ ଅନ୍ୟ ବସ୍ତୁମାନଙ୍କର ବିକ୍ରୟ ବା କ୍ରୟ ଉପରେ କର ଯେଉଁଠାରେ କି ଏପରି ବିକ୍ରୟ ବା କର ଆନ୍ତର୍ରାଜ୍ୟିକ ବ୍ୟାପାର ବା ବାଣିଜ୍ୟ କ୍ରମେ ହେଉଥାଏ ।

୯୩ । ଏହି ସୂଚୀର ବିଷୟମାନଙ୍କ ମଧ୍ୟରୁ କାହାରି ସଂପର୍କୀୟ ବିଧି ବିରୁଦ୍ଧରେ ଅପରାଧ ।

୯୪ । ଏହି ସୂଚୀର ବିଷୟମାନଙ୍କ ମଧ୍ୟରୁ କାହାରି ପ୍ରୟୋଜନାର୍ଥ ଯାଞ୍ଚ, ସର୍ବେକ୍ଷଣ ଓ ସାଂଖ୍ୟିକୀ ।

୯୫ । ଏହି ସୂଚୀର ବିଷୟମାନଙ୍କ ମଧ୍ୟରୁ କାହାରି ସଂପର୍କରେ ଉଚ୍ଚତମ ନ୍ୟାୟାଳୟ ବ୍ୟତିରେକେ ଅନ୍ୟ ସମସ୍ତ ନ୍ୟାୟାଳୟର ଅଧିକାରିତା ଓ କ୍ଷମତା ନବାଧିକରଣ ବିଷୟକ ଅଧିକାରିତା ।

୯୬ । ଏହି ସୂଚୀର ବିଷୟମାନଙ୍କ ମଧ୍ୟରୁ କାହାରି ସଂପର୍କରେ ଫିସ, କିନ୍ତୁ କୌଣସି ନ୍ୟାୟାଳୟରେ ନିଆଯିବା ଫିସ ତହିଁର ଅନ୍ତର୍ଭୁକ୍ତ ନୁହେଁ ।

୯୭ । ସୂଚୀ ୨ ବା ୩ରେ ବର୍ଣ୍ଣିତ ହୋଇ ନ ଥିବା କୌଣସି କର ସମେତ ସେହି ସୂଚୀମାନଙ୍କରେ ପ୍ରଗଣିତ ହୋଇନଥିବା ଅନ୍ୟ ଯେ କୌଣସି ବିଷୟ ।

# ସୂଚୀ ୨–ରାଜ୍ୟସୂଚୀ

୧ । ସାର୍ବଜନିକ ବ୍ୟବସ୍ଥା (କିନ୍ତୁ ସିଭିଲ କ୍ଷମତା ସହାୟତା ନିମିତ୍ତ ନୌସେନା, ସେନା ବାହିନୀ ଓ ବିମାନ ବାହିନୀମାନଙ୍କର ବା ସଂଘର ନିୟନ୍ତ୍ରଣାଧୀନ ଅନ୍ୟ କୌଣସି ବାହିନୀର ବା ତାହାର କୌଣସି ଭାଗ ବା ୟୁନିଟର ପ୍ରୟୋଗ ତହିଁର ଅନ୍ତର୍ଗତ ନୁହେଁ) ।

୨ । ସୂଚୀ ୧ର ପ୍ରବିଷ୍ଟି ୨କ ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ପୁଲିସ (ରେଳ ଓ ଗ୍ରାମ ପୁଲିସ ସମେତ) ।

୩ । ଉଚ୍ଚ ନ୍ୟାୟାଳୟର ଅଫିସର ଓ ସେବକ, ଖଜଣା ଓ ରାଜସ୍ୱ ନ୍ୟାୟାଳୟମାନଙ୍କରେ ପ୍ରକ୍ରିୟା, ଉଚ୍ଚତମ ନ୍ୟାୟାଳୟ ବ୍ୟତିରେକେ ସମସ୍ତ ନ୍ୟାୟାଳୟରେ ନିଆଯିବା ଫିସ ।

୪ । କାରାଗାର, ସୁଧାରାଳୟ, ବୋର୍ସଟଲ ସଂସ୍ଥାମାନ ଓ ତଦ୍ରୂପ ଅନ୍ୟ ସଂସ୍ଥାମାନ ଏବଂ ତହିଁରେ ନିରୁଦ୍ଧ ବ୍ୟକ୍ତିଗଣ, କାରାଗାର ଓ ଅନ୍ୟ ସଂସ୍ଥାମାନଙ୍କର ଉପଯୋଗ ନିମିତ୍ତ ଅନ୍ୟ ରାଜ୍ୟମାନଙ୍କ ସହ ବନ୍ଦୋବସ୍ତ ।

୫ । ସ୍ଥାନୀୟ ଶାସନ, ଅର୍ଥାତ ସ୍ଥାନୀୟ ସ୍ୱାୟତ୍ତ ଶାସନ ବା ଗ୍ରାମ ପ୍ରଶାସନର ପ୍ରୟୋଜନ ନିମିତ୍ତ ନଗର ନିଗମ, ଉନ୍ନୟନ ନ୍ୟାସ, ଜିଲ୍ଲାବୋର୍ଡ, ଖଣିଜ ବନ୍ଦୋବସ୍ତ ପ୍ରାଧିକାରୀ ତଥା ଅନ୍ୟ ସ୍ଥାନୀୟ ପ୍ରାଧିକାରୀମାନଙ୍କର ଗଠନ ଓ କ୍ଷମତା ସମୂହ ।

୬ । ଲୋକ ସ୍ୱାସ୍ଥ୍ୟ ଓ ପରିଚ୍ଛନ୍ନତା, ଚିକିତ୍ସାଳୟ ଏବଂ ଔଷଧାଳୟ ।

୭ । ଭରତ ବାହାର ସ୍ଥାନମାନଙ୍କୁ ତୀର୍ଥଯାତ୍ରା ଭିନ୍ନ ଅନ୍ୟ ତୀର୍ଥଯାତ୍ରା ।

୮ । ମାଦକ ପାନୀୟ ଅର୍ଥାତ୍ ମାଦକ ପାନୀୟମାନଙ୍କର ଉତ୍ପାଦନ, ପ୍ରସ୍ତୁତି, ଦଖଲ, ପରିବହନ, କ୍ରୟ ଏବଂ ବିକ୍ରୟ ।

୯ । ଅସମର୍ଥ ଓ ଅନିଯୋଜ୍ୟ ବ୍ୟକ୍ତିମାନଙ୍କୁ ସହାୟତା ।

୧୦ । ଶବପୋଡ଼ା ଓ କବର ସ୍ଥାନ, ଶବଦାହ ଓ ଶ୍ମଶାନ ।

୧୧ । * * * *

୧୨ । ରାଜ୍ୟଦ୍ୱାରା ନିୟନ୍ତ୍ରିତ ବା ବିତ୍ତପୋଷିତ ପୁସ୍ତକାଳୟ, ସଂଗ୍ରହାଳୟ ବା ଅନ୍ୟ ସମତୁଲ୍ୟ ସଂସ୍ଥାମାନ ; ସଂସଦ ପ୍ରଣୀତ ବିଧି ଦ୍ୱାରା ରାଷ୍ଟ୍ରୀୟ ମହତ୍ତ୍ୱପୂର୍ଣ୍ଣ ବୋଲି ଘୋଷିତ ହୋଇଥିବା ଭିନ୍ନ ଅନ୍ୟ ପ୍ରାଚୀନ ଏବଂ ଐତିହାସିକ ସ୍ମାରକ ଏବଂ ଅଭିଲେଖମାନ ।

୧୩ । ସଞ୍ଚାର ଅର୍ଥାତ୍ ସଡ଼କ, ପୋଲ, ନୌକାଘାଟ ଏବଂ ସଞ୍ଚାରର ଅନ୍ୟ ସାଧନ ଯାହାକି ସୂଚୀ ୧ରେ ବିନିର୍ଦ୍ଦିଷ୍ଟ ହୋଇନାହିଁ, ପୌର ଟ୍ରାମପଥ, ରାଜପଥ, ସୂଚୀ ୧ ଓ ସୂଚୀ ୩ରେ ଥିବା ଅନ୍ତର୍ଦେଶୀୟ ଜଳପଥ ସମ୍ବନ୍ଧୀୟ ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ଏପରି ଜଳପଥ ଓ ତହିଁ ଉପରେ ଯାତାୟତ କରୁଥିବା ଯନ୍ତ୍ରଚାଳିତ ଯାନ ଭିନ୍ନ ଅନ୍ୟ ଯାନ ।

୧୪ । କୃଷିଶିକ୍ଷା ଓ ଗବେଷଣା, ମଡ଼କରୁ ରକ୍ଷା ଏବଂ ଉଦ୍ଭିଦ ରୋଗ ନିବାରଣ ସମେତ କୃଷି ।

୧୫ । ପଶୁ ଧନର ପରିରକ୍ଷଣ, ସଂରକ୍ଷଣ ଓ ଉନ୍ନୟନ ଏବଂ ପଶୁରୋଗ ନିବାରଣ; ପଶୁଚିକିତ୍ସା ପ୍ରଶିକ୍ଷଣ ଓ ବ୍ୟବସାୟ ।

୧୬ । ପଶୁ ଅବରୋଧ ଏବଂ ପଶୁ ଅତିଚାରର ନିବାରଣ ।

୧୭ । ସୂଚୀ ୧ର ପ୍ରବିଷ୍ଟି ୫୬ର ବଶବର୍ତ୍ତୀ ରହି ଜଳ, ଅର୍ଥାତ୍ ଜଳ ଯୋଗାଣ, ଜଳସେଚନ, କେନାଲ, ଜଳ ନିଷ୍କାସନ ଓ ବନ୍ଧ, ଜଳ ସଂଗ୍ରହ ଓ ଜଳ ଶକ୍ତି ।

୧୮ । ଭୂମି, ଅର୍ଥାତ୍ ଭୂମିରେ ବା ଭୂମି ଉପରେ ଅଧିକାର, ଭୂସ୍ୱାମୀ ଓ ପ୍ରଜାଙ୍କ ସମ୍ବନ୍ଧ ସମେତ ଭୂଧୃତି ଏବଂ ଭଟକ, ଖଜଣା ସଂଗ୍ରହ, କୃଷି ଭୂମିର ଅନ୍ତରଣ ଏବଂ ସଂକ୍ରମଣ, ଭୂମି ଉନ୍ନୟନ ଏବଂ କୃଷି ଋଣ, ଉପନିବେଶ ସ୍ଥାପନ ।

୧୯ । * * * *

୨୦ । * * * *

୨୧ । ମୀନ କ୍ଷେତ୍ର ।

୨୨ । ସୂଚୀ ୧ର ପ୍ରବିଷ୍ଟି ୩୪ର ବଶବର୍ତ୍ତୀ ରହି ପ୍ରତିପାଲ୍ୟ ଅଧିକରଣ, ଭାରଗ୍ରସ୍ତ ଓ କୋରଖ ସଂପଦା ।

୨୩ । ସଂଘର ନିୟନ୍ତ୍ରଣ ଅଧୀନରେ ବିନିୟମନ ଓ ବିକାଶ ସମ୍ବନ୍ଧରେ ସୂଚୀ ୧ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ଖଣିର ବିନିୟମନ ଓ ଖଣିଜ ବିକାଶ ।

୨୪ । ସୂଚୀ ୧ର ପ୍ରବିଷ୍ଟି ୭ ଓ ୫୨ର ଉପବନ୍ଧମାନଙ୍କ ବଶବର୍ତ୍ତୀ ରହି ଉଦ୍ୟୋଗ ।

୨୫ । ଗ୍ୟାସ ଓ ଗ୍ୟାସ କର୍ମଶାଳାମାନ ।

୨୬ । ସୂଚୀ ୩ର ଉପବିଷ୍ଟି ୩୩ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ରାଜ୍ୟର ଅନ୍ତର୍ଗତ ବ୍ୟାପାର ଓ ବାଣିଜ୍ୟ ।

୨୭ । ସୂଚୀ ୩ର ପ୍ରବିଷ୍ଟି ୩୩ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ମାଲ ଉତ୍ପାଦନ, ଯୋଗାଣ ଓ ବଣ୍ଟନ ।

୨୮ । ବଜାର ଓ ମେଳା ।

୨୯ । * * * *

୩୦ । ମହାଜନୀ ଓ ମହାଜନ, କୃଷି ଋଣରୁ ଉଦ୍ଧାର ।

୩୧ । ପାନ୍ଥଶାଳା ଓ ପାନ୍ଥଶାଳା ରକ୍ଷକ ।

୩୨ । ସୂଚୀ ୧ରେ ବିନିର୍ଦ୍ଦିଷ୍ଟ ନିଗମମାନଙ୍କ ଭିନ୍ନ ଅନ୍ୟ ନିଗମମାନଙ୍କର ଓ ବିଶ୍ୱବିଦ୍ୟାଳୟ ମାନଙ୍କର ନିଗମନ, ବିନିୟମନ ଓ ସମାପନ; ନିଗମିତ ନ ହୋଇଥିବା ବ୍ୟାପାରିକ, ସାହିତ୍ୟିକ, ବୈଜ୍ଞାନିକ, ଧାର୍ମିକ ଏବଂ ଅନ୍ୟ ସଙ୍ଗମ ଓ ସୋସାଇଟିମାନ; ସମବାୟ ସୋସାଇଟିମାନ ।

୩୩ । ନାଟ୍ୟଶାଳା ଓ ନାଟକ ଅଭିନୟ; ସୂଚୀ ୧ର ପ୍ରବିଷ୍ଟି ୬୦ର ବଶବର୍ତ୍ତୀ ରହି କ୍ରୀଡ଼ା, ପ୍ରମୋଦ ଓ ବିନୋଦ ।

୩୪ । ବାଜିରଖିବା ଓ ଜୁଆ ।

୩୫ । ରାଜ୍ୟଠାରେ ନିହିତ ବା ତାହାର ଦଖଲରେ ଥିବା କର୍ମଶାଳା , ଭୂମି ଓ ଗୃହ ।

୩୬ । * * * *

୩୭ । ସଂସଦ ପ୍ରଣୀତ କୌଣସି ବିଧିର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ରାଜ୍ୟ ବିଧାନ ମଣ୍ଡଳ ନିମିତ୍ତ ନିର୍ବାଚନ ।

୩୮ । ରାଜ୍ୟ ବିଧାନମଣ୍ଡଳର ସଦସ୍ୟମାନଙ୍କର ବିଧାନ ସଭାର ବାଚସ୍ପତି ଓ ଉପବାଚସ୍ପତିଙ୍କର ଏବଂ ବିଧାନ ପରିଷଦ ଥିଲେ ତହିଁର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କର ବେତନ ଓ ଭତ୍ତା ।

୩୯ । ବିଧାନ ସଭା ଓ ତହିଁର ସଦସ୍ୟ ଓ ସମିତିମାନଙ୍କର ଏବଂ ବିଧାନ ପରିଷଦ ଥିଲେ ପରିଷଦର ଏବଂ ସଦସ୍ୟ ଓ ସମିତିମାନଙ୍କର କ୍ଷମତା, ବିଶେଷାଧିକାର ଓ ଉନ୍ମୁକ୍ତିମାନ, ରାଜ୍ୟର ବିଧାନମଣ୍ଡଳର ସମିତିମାନଙ୍କ ସମକ୍ଷରେ ସାକ୍ଷ୍ୟଦେବା ବା ଦସ୍ତାବେଜ ପେଶ କରିବା ନିମିତ୍ତ ବ୍ୟକ୍ତିମାନଙ୍କର ଉପସ୍ଥିତିକୁ ବାଧ୍ୟ କରିବା ।

୪୦ । ରାଜ୍ୟର ମନ୍ତ୍ରୀମାନଙ୍କର ବେତନ ଓ ଭତ୍ତା ।

୪୧ । ରାଜ୍ୟର ଲୋକସେବା, ରାଜ୍ୟ ପବ୍ଲିକ ସର୍ଭିସ କମିଶନ ।

୪୨ । ରାଜ୍ୟ ପେନସନ ଅର୍ଥାତ୍ ରାଜ୍ୟ ଦ୍ୱାରା ବା ରାଜ୍ୟର ସଞ୍ଚିତ ନିଧିରୁ ଦେୟ ପେନସନ ।

୪୩ । ରାଜ୍ୟର ଲୋକ ଋଣ ।

୪୪ । ନିଖାତ ନିଧି ।

୪୫ । ଭୂରାଜସ୍ୱ ଯହିଁରେ ରାଜସ୍ୱର ନିର୍ଦ୍ଧାରଣ ଓ ସଂଗ୍ରହ, ଭୂ-ଅଭିଲେଖର ସଂରକ୍ଷଣ, ରାଜସ୍ୱ ପ୍ରୟୋଜନ ତଥା ସତ୍ତ୍ୱ ଅଭିଲେଖ ନିମିତ୍ତ ସର୍ବେକ୍ଷଣ ଏବଂ ରାଜସ୍ୱର ଅନ୍ୟ ସଂକ୍ରାମଣ ଅନ୍ତର୍ଗତ ଅଟେ ।

୪୬ । କୃଷି ଆୟ ଉପରେ କର ।

୪୭ । କୃଷି ଭୂମିର ଉତ୍ତରାଧିକାର ସଂପର୍କରେ ଶୁଳ୍କ ।

୪୮ । କୃଷି ଭୂମି ସଂପର୍କରେ ସଂପଦା ଶୁଳ୍କ ।

୪୯ । ଭୂମି ଓ ଗୃହ ଉପରେ କର ।

୫୦ । ସଂସଦ କର୍ତ୍ତୃକ ବିଧିଦ୍ୱାରା ଖଣିଜ ବିକାଶ ସମ୍ବନ୍ଧରେ ଆରୋପିତ ପରିସୀମାର ବଶବର୍ତ୍ତୀ ରହି ଖଣିଜ ଅଧିକାର ଉପରେ କର ।

୫୧ । ରାଜ୍ୟରେ ପ୍ରସ୍ତୁତ ବା ଉତ୍ପାଦିତ ନିମ୍ନଲିଖିତ ବସ୍ତୁମାନଙ୍କ ଉପରେ ଉତ୍ପାଦନ ଶୁଳ୍କ ଏବଂ ଭାରତରେ ଅନ୍ୟତ୍ର ପ୍ରସ୍ତୁତ ବା ଉତ୍ପାଦିତ ତତ୍ସମ ବସ୍ତୁମାନଙ୍କ ଉପରେ ସେହି ହାରରେ ବା କମ୍ ହାରରେ ପ୍ରତି ଶୁଳ୍କ ଯଥା :—

(କ) ମାନବ ଉପଭୋଗ ନିମିତ୍ତ ସୁରାସାରିକ ପାନୀୟ,

(ଖ) ଅଫିମ, ଭାଙ୍ଗ ଏବଂ ଅନ୍ୟ ସ୍ୱାପକ ଔଷଧମାନ ଏବଂ ସ୍ୱାପକ ସମୂହ; କିନ୍ତୁ ଯେଉଁ ଔଷଧୀୟ ଓ ପ୍ରସାଧନ ସାମଗ୍ରୀମାନଙ୍କରେ ସୁରାସାର ବା ଏହି ପ୍ରବିଷ୍ଟିର ଉପଧାରା (ଖ)ରେ ଅନ୍ତର୍ଭୁକ୍ତ କୌଣସି ପଦାର୍ଥ ଥାଏ ସେ ସବୁ ତହିଁର ଅନ୍ତର୍ଭୁକ୍ତ ନୁହେଁ ।

୫୨ । କୌଣସି ସ୍ଥାନୀୟ କ୍ଷେତ୍ରରେ ଉପଯୋଗ, ଉପଭୋଗ ବା ବିକ୍ରୟ ନିମିତ୍ତ ବସ୍ତୁମାନଙ୍କର ପ୍ରବେଶ ଉପରେ କର ।

୫୩ । ବିଦ୍ୟୁତର ଉପଭୋଗ ବା ବିକ୍ରୟ ଉପରେ କର ।

୫୪ । ସୂଚୀ ୧ର ପ୍ରବିଷ୍ଟି ୯୨କ ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ସମ୍ବାଦ ପତ୍ର ଭିନ୍ନ ଅନ୍ୟ ବସ୍ତୁମାନଙ୍କର କ୍ରୟ ବିକ୍ରୟ ଉପରେ କର ।

୫୫ । ସମ୍ବାଦ ପତ୍ରମାନଙ୍କରେ ପ୍ରକାଶିତ ହେଉଥିବା ବିଜ୍ଞାପନ ଏବଂ ରେଡିଓ ବା ଟେଲିଭିଜନ ଦ୍ୱାରା ପ୍ରସାରିତ ବିଜ୍ଞାପନ ଭିନ୍ନ ଅନ୍ୟ ବିଜ୍ଞାପନମାନଙ୍କ ଉପରେ କର ।

୫୬ । ସଡ଼କ ବା ଅନ୍ତର୍ଦେଶୀୟ ଜଳପଥମାନଙ୍କରେ ନିଆଯିବା ବସ୍ତୁ ଓ ଯାତ୍ରୀଙ୍କ ଉପରେ କର ।

୫୭ । ସୂଚୀ ୩ର ପ୍ରବିଷ୍ଟି ୩୫ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ଟ୍ରାମ ଗାଡ଼ି ସମେତ ଯନ୍ତ୍ର ଚାଳିତ ହେଉ ବା ନ ହେଉ ସଡ଼କରେ ବ୍ୟବହାରଯୋଗ୍ୟ ଯାନମାନଙ୍କ ଉପରେ କର ।

୫୮ । ପଶୁ ଓ ନୌକା ଉପରେ କର ।

୫୯ । ମାସୁଲ ।

୬୦ । ବୃତ୍ତି, ବ୍ୟାପାର, ଆଜୀବିକା ଓ ଚାକିରି ଉପରେ କର ।

୬୧ । ମୁଣ୍ଡ ପିଛା କର ।

୬୨ । ଆମୋଦ, ବିନୋଦ, ବାଜିରଖିବା ଓ ଜୁଆଖେଳ ଉପରେ କର ସମେତ ବିଳାସ ବିଷୟ ଉପରେ କର ।

୬୩ । ଷ୍ଟାଂପ ଶୁଳ୍କର ହାର ସମ୍ବନ୍ଧରେ ସୂଚୀ ୧ର ଉପବନ୍ଧମାନଙ୍କରେ ବିନିର୍ଦ୍ଦିଷ୍ଟ ଦସ୍ତାବେଜମାନଙ୍କ ଭିନ୍ନ ଅନ୍ୟ ଦସ୍ତାବେଜମାନଙ୍କ ସଂପର୍କରେ ଷ୍ଟାଂପ ଶୁଳ୍କର ହାର ।

୬୪ । ଏହି ସୂଚୀର ବିଷୟମାନଙ୍କର ମଧ୍ୟରୁ କାହାରି ସମ୍ବନ୍ଧୀୟ ବିଧି ବିରୁଦ୍ଧରେ ଅପରାଧ ।

୬୫ । ଏହି ସୂଚୀର ବିଷୟମାନଙ୍କ ମଧ୍ୟରୁ କାହାରି ସମ୍ବନ୍ଧରେ ଉଚ୍ଚତମ ନ୍ୟାୟାଳୟର ବ୍ୟତିରେକେ ଅନ୍ୟ ନ୍ୟାୟାଳୟ-ମାନଙ୍କର ଅଧିକାରିତା ଓ କ୍ଷମତା ।

୬୬ । କୌଣସି ନ୍ୟାୟାଳୟରେ ନିଆଯିବା ଫିସକୁ ଛାଡ଼ି ଏହି ସୂଚୀର ବିଷୟମାନଙ୍କ ମଧ୍ୟରୁ କାହାରି ବିଷୟରେ ଫିସ ।

## ସୂଚୀ ୩--ସମବର୍ତ୍ତୀ ସୂଚୀ

୧। ଏହି ସଂବିଧାନର ପ୍ରାରମ୍ଭରେ ଭାରତୀୟ ଦଣ୍ଡ ସଂହିତାର ଅନ୍ତର୍ଗତ ସମସ୍ତ ବିଷୟ ସମେତ ଦଣ୍ଡ ବିଧି, ମାତ୍ର ତହିଁରୁ ସୂଚୀ ୧ ବା ସୂଚୀ ୨ରେ ବିନିର୍ଦ୍ଦିଷ୍ଟ ବିଷୟମାନଙ୍କ ମଧ୍ୟରୁ କାହାରି ସଂପର୍କୀୟ ବିଧି ବିରୁଦ୍ଧ ଅପରାଧ ଅପବର୍ଜିତ ଅଟେ ତଥା ସିଭିଲ କ୍ଷମତାର ସହାୟତା ନିମିତ୍ତ ସଂଘର ନୌବାହିନୀ, ସେନା ବାହିନୀ ଓ ବିମାନ ବାହିନୀର ଉପଯୋଗ ଅପବର୍ଜିତ ଅଟେ ।

୨। ଏହି ସଂବିଧାନର ପ୍ରାରମ୍ଭରେ ଦଣ୍ଡ ପ୍ରକ୍ରିୟା ସଂହିତାର ଅନ୍ତର୍ଗତ ଥିବା ସମସ୍ତ ବିଷୟ ସମେତ ଦଣ୍ଡ ପ୍ରକ୍ରିୟା ।

୩। ରାଜ୍ୟର ସୁରକ୍ଷା, ସାର୍ବଜନିକ ବ୍ୟବସ୍ଥାର ସଂରକ୍ଷଣ ଅଥବା ଲୋକସମାଜ ନିମିତ୍ତ ଅତ୍ୟାବଶ୍ୟକ ଯୋଗାଣ ଓ ସେବାର ସଂରକ୍ଷଣ ସହ ସଂପୃକ୍ତ ନିବାରକ ନିରୋଧ, ଏପରି ନିରୁଦ୍ଧ ବ୍ୟକ୍ତି ।

୪। କଏଦୀ, ଅଭିଯୁକ୍ତ ବ୍ୟକ୍ତି ତଥା ଏହି ସୂଚୀର ପ୍ରବିଷ୍ଟି ୩ରେ ବିନିର୍ଦ୍ଦିଷ୍ଟ କାରଣ ହେତୁ ନିବାରକ ନିରୋଧ ବଶବର୍ତ୍ତୀ ବ୍ୟକ୍ତିଙ୍କର ଏକ ରାଜ୍ୟରୁ ଅନ୍ୟ ରାଜ୍ୟକୁ ଅପସାରଣ ।

୫। ବିବାହ ଓ ବିବାହ ବିଚ୍ଛେଦ, ଶିଶୁ ଓ ଅପ୍ରାପ୍ତ ବୟସ୍କ, ଦତ୍ତକ ଗ୍ରହଣ ଉଇଲ, ନିର୍ବସିୟତା ଓ ଉତ୍ତରାଧିକାର, ଅବିଭକ୍ତ କୁଟୁମ୍ବ ଓ ବିଭାଜନ, ଏହି ସଂବିଧାନର ପ୍ରାରମ୍ଭର ଅବ୍ୟବହିତ ପୂର୍ବରୁ ନ୍ୟାୟିକ କାର୍ଯ୍ୟବାହୀର ପକ୍ଷକାରମାନେ ଯେଉଁ ବିଷୟ ସଂପର୍କରେ ନିଜ ନିଜ ବ୍ୟକ୍ତିଗତ ବିଧିର ବଶବର୍ତ୍ତୀ ଥିଲେ ସେହି ସମସ୍ତ ବିଷୟ ।

୬। କୃଷି ଭୂମି ଭିନ୍ନ ଅନ୍ୟ ସଂପତ୍ତିର ଅନ୍ତରଣ, ବିଲେଖ ଓ ଦସ୍ତାବେଜମାନଙ୍କର ରେଜେଷ୍ଟ୍ରୀକରଣ ।

୭। ଭାଗଦାରୀ, ଏଜେନ୍‌ସି, ପରିବହନ ଚୁକ୍ତି ଓ ଅନ୍ୟ ବିଶେଷ ପ୍ରକାରର ଚୁକ୍ତି ସମେତ ଚୁକ୍ତି ସମୂହ, ମାତ୍ର କୃଷି ଭୂମି ସମ୍ବନ୍ଧୀୟ ଚୁକ୍ତି ତହିଁର ଅନ୍ତର୍ଗତ ନୁହେଁ ।

୮। ଅନୁଯୋଜ୍ୟ ଦୋଷ ।

୯। ଦିବାଳି ଓ ଶୋଧ ଅକ୍ଷମତା ।

୧୦। ନ୍ୟାସ ଓ ନ୍ୟାସୀ ।

୧୧। ମହାପ୍ରଶାସକ ଓ ରାଜନ୍ୟାସୀ ।

୧୧ କ। ନ୍ୟାୟ ପ୍ରଶାସନ, ଉଚ୍ଚତମ ନ୍ୟାୟାଳୟ ଓ ଉଚ୍ଚ ନ୍ୟାୟାଳୟ ଭିନ୍ନ ଅନ୍ୟ ସମସ୍ତ ନ୍ୟାୟାଳୟର ଗଠନ ଓ ସଙ୍ଗଠନ ।

୧୨। ସାକ୍ଷ୍ୟ ଓ ଶପଥ; ବିଧି, ଲୋକକାର୍ଯ୍ୟ ଓ ଅଭିଲେଖମାନଙ୍କର ତଥା ନ୍ୟାୟିକ ପ୍ରକ୍ରିୟାର ମାନ୍ୟତା ।

୧୩। ଏହି ସଂବିଧାନର ପ୍ରାରମ୍ଭରେ ସିଭିଲ ପ୍ରକ୍ରିୟା ସଂହିତାର ଅନ୍ତର୍ଗତ ଥିବା ସମସ୍ତ ବିଷୟ, ପରିସୀମା ଓ ମଧ୍ୟସ୍ଥତା ସମେତ ସିଭିଲ ପ୍ରକ୍ରିୟା ।

୧୪। ଉଚ୍ଚତମ ନ୍ୟାୟାଳୟର ଅବମାନନାକୁ ଅନ୍ତର୍ଗତ ନ କରି ନ୍ୟାୟାଳୟ ଅବମାନନା ।

୧୫। ବାରବୁଲାପଣ, ଯାଯାବର ଓ ଭ୍ରମଣଶୀଳ ଜନଜାତି ।

୧୬। ଉନ୍ମତ୍ତ ଓ ବିକଳଚିତ୍ତମାନଙ୍କର ରକ୍ଷଣ ଓ ଚିକିତ୍ସା ସ୍ଥାନ ସମେତ ଉନ୍ମାଦ ଓ ଚିତ୍ତ ବୈକଲ୍ୟ ।

୧୭। ପଶୁମାନଙ୍କ ପ୍ରତି ନିର୍ଦ୍ଦୟତାର ନିବାରଣ ।

୧୭ କ। ଜଙ୍ଗଲ ।

୧୭ ଖ। ବନ୍ୟଜନ୍ତୁ ଓ ପକ୍ଷୀମାନଙ୍କର ରକ୍ଷା ।

୧୮। ଖାଦ୍ୟପଦାର୍ଥ ଓ ଅନ୍ୟ ବସ୍ତୁରେ ଅପମିଶ୍ରଣ ।

୧୯। ଅଫିମ ସଂପର୍କରେ ସୂଚୀ ୧ର ପ୍ରବିଷ୍ଟି ୫୯ର ବଶବର୍ତ୍ତୀ ରହି ଔଷଧ ଓ ବିଷ ।

୨୦। ଅର୍ଥନୈତିକ ଓ ସାମାଜିକ ଯୋଜନା ।

୨୦ କ। ଜନସଂଖ୍ୟା ନିୟନ୍ତ୍ରଣ ଓ ପରିବାର ନିୟୋଜନ ।

୨୧। ବାଣିଜ୍ୟ ଓ ଉଦ୍ୟୋଗ ସମ୍ବନ୍ଧୀୟ ଏକାଧିପତ୍ୟ, ସଂଯୋଗ ଓ ନ୍ୟାସ ।

୨୨। ଶ୍ରମିକସଂଘ; ଉଦ୍ୟୋଗ ଓ ଶ୍ରମିକ ବିବାଦ ।

୨୩। ସାମାଜିକ ସୁରକ୍ଷା ଓ ସାମାଜିକ ବୀମା; ନିୟୋଜନ ଓ ବେକାରୀ ।

୨୪। କାର୍ଯ୍ୟର ସର୍ତ୍ତ, ଭବିଷ୍ୟନିଧି, ନିୟୋଜକଙ୍କର ଦାୟିତ୍ୱ, ଶ୍ରମିକ କ୍ଷତିପୂରଣ, ଅସାମର୍ଥ୍ୟ ଓ ବାର୍ଦ୍ଧକ୍ୟ ପେନ୍‌ସନ ଏବଂ ପ୍ରସୂତି ସୁବିଧା ସମେତ ଶ୍ରମିକ କଲ୍ୟାଣ ।

୨୫। ସୂଚୀ ୧ର ପ୍ରବିଷ୍ଟି ୬୩, ୬୪, ୬୫ ଓ ୬୬ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି, ଶିକ୍ଷା (ବୈଷୟିକ ଶିକ୍ଷା, ଆୟୁର୍ବିଜ୍ଞାନ ଶିକ୍ଷା ଓ ବିଶ୍ୱବିଦ୍ୟାଳୟ ସମେତ); ଶ୍ରମିକମାନଙ୍କର ବ୍ୟାବସାୟିକ ଓ ବୈଷୟିକ ପ୍ରଶିକ୍ଷଣ ।

୨୬। ବିଧି ବୃତ୍ତି, ବୈଦ୍ୟବୃତ୍ତି ଓ ଅନ୍ୟ ବୃତ୍ତିମାନ ।

୨୭। ଭାରତ ଓ ପାକିସ୍ଥାନ ଡୋମିନିୟନମାନ ସ୍ଥାପିତ ହେବା କାରଣରୁ ନିଜର ମୂଳ ନିବାସ ସ୍ଥାନରୁ ବିସ୍ଥାପିତ ହୋଇଥିବା ବ୍ୟକ୍ତିମାନଙ୍କୁ ସାହାଯ୍ୟ ଓ ପୁନର୍ବସତି ।

୨୮। ଦାତବ୍ୟ ଓ ଦାତବ୍ୟ ସଂସ୍ଥାମାନ, ଦାତବ୍ୟ ଓ ଧାର୍ମିକ ବିନ୍ୟାସ ଏବଂ ଧର୍ମ ସଂସ୍ଥାମାନ ।

୨୯। ମନୁଷ୍ୟ, ଜୀବଜନ୍ତୁ ଓ ଉଦ୍ଭିଦ ଉପରେ ପ୍ରଭାବ ପକାଇବା ସଂକ୍ରାମକ ଓ ସଂସର୍ଗକ୍ ରୋଗମାନଙ୍କର ଓ ମାରକ୍ କୀଟମାନଙ୍କର ଏକ ରାଜ୍ୟରୁ ଅନ୍ୟ ରାଜ୍ୟକୁ ବିସ୍ତାରର ନିବାରଣ ।

୩୦। ଜନ୍ମ ଓ ମୃତ୍ୟୁ ରେଜେଷ୍ଟ୍ରୀକରଣ ସମେତ ଜୀବନ ସମ୍ବନ୍ଧୀୟ ସାଂଖ୍ୟିକୀ ।

୩୧। ସଂସଦ ପ୍ରଣୀତ ବିଧି ବା ବିଦ୍ୟମାନ ବିଧି ଦ୍ୱାରା ବା ଅଧୀନରେ ବୃହତ ପୋତାଶ୍ରୟ ରୂପେ ଘୋଷିତ ପୋତାଶ୍ରୟ ଭିନ୍ନ ଅନ୍ୟ ପୋତାଶ୍ରୟମାନ ।

**୩୨।** ରାଷ୍ଟ୍ରୀୟ ଜଳପଥ ସମ୍ବନ୍ଧରେ ସୂଚୀ ୧ର ଉପବନ୍ଧମାନଙ୍କର ବଶବର୍ତ୍ତୀ ରହି ଅନ୍ତର୍ଦେଶୀୟ ଜଳପଥରେ ଯନ୍ତ୍ରଚାଳିତ ଜଳଯାନ ଦ୍ୱାରା ନୌବହନ ଓ ନୌପରିବହନ ଏବଂ ଏପରି ଜଳପଥର ପଥନିୟମ ଏବଂ ଅନ୍ତର୍ଦେଶୀୟ ଜଳପଥରେ ଯାତ୍ରୀ ଓ ମାଲ ପରିବହନ ।

୩୩ । ନିମ୍ନୋକ୍ତ ଦ୍ରବ୍ୟମାନଙ୍କର ବ୍ୟାପାର ଓ ବାଣିଜ୍ୟ ଏବଂ ଉତ୍ପାଦନ, ଯୋଗାଣ ଓ ବିତରଣ ଯଥା,—

(କ) ଯେବେ ସଂଘ ଦ୍ୱାରା କୌଣସି ଉଦ୍ୟୋଗର ନିୟନ୍ତ୍ରଣ ଲୋକହିତ ନିମିତ୍ତ ସମୀଚୀନ ବୋଲି ସଂସଦ କର୍ତ୍ତୃକ ବିଧି ଦ୍ୱାରା ଘୋଷିତ କରାଯାଇଥାଏ ତେବେ ସେପରି ଉଦ୍ୟୋଗରେ ଉତ୍ପାଦିତ ଦ୍ରବ୍ୟ ଏବଂ ସେପରି ଉତ୍ପାଦିତ ଦ୍ରବ୍ୟ ସଙ୍ଗେ ସମାନ ପ୍ରକାରର ହୋଇଥିବା ଆମଦାନୀ ଦ୍ରବ୍ୟ;

(ଖ) ଖାଦ୍ୟୋପଯୋଗୀ ତୈଳବୀଜ ଓ ତୈଳ ସମେତ ଖାଦ୍ୟ ଦ୍ରବ୍ୟ;

(ଗ) ପିଡ଼ିଆ ଓ ଅନ୍ୟାନ୍ୟ ଘନୀଭୂତ ପିଡ଼ିଆ ସମେତ ଘାସ ତୃଣାଦି ପଶୁଖାଦ୍ୟ ।

(ଘ) ଭିଣା ବା ଅଭିଣା କଞ୍ଚାତୁଳା ଏବଂ କପା ମଞ୍ଜି; ଏବଂ

(ଙ) କଞ୍ଚା ଝୋଟ ।

୩୩ କ । ମାନକର ସ୍ଥାପନା ବ୍ୟତିରେକେ ଓଜନ ଓ ମାପ ।

୩୪ । ମୂଲ୍ୟ ନିୟନ୍ତ୍ରଣ ।

୩୫ । ଯେଉଁ ନୀତି ଅନୁସାରେ ଯନ୍ତ୍ର ଚାଳିତ ଯାନମାନଙ୍କ ଉପରେ କର ଧାର୍ଯ୍ୟ କରାଯିବ ସେହି ନୀତିମାନଙ୍କ ସମେତ ଯନ୍ତ୍ରଚାଳିତ ଯାନମାନ ।

୩୬ । କାରଖାନା ।

୩୭ । ବଏଲର ।

୩୮ । ବିଦ୍ୟୁତ୍ ।

୩୯ । ସମ୍ବାଦପତ୍ର, ପୁସ୍ତକ ଓ ମୁଦ୍ରଣାଳୟ ।

୪୦ । ସଂସଦ ପ୍ରଣୀତ ବିଧି ଦ୍ୱାରା ରାଷ୍ଟ୍ରୀୟ ମହତ୍ତ୍ୱପୂର୍ଣ୍ଣ ବୋଲି ଘୋଷିତ ହୋଇଥିବା ପ୍ରତ୍ନତତ୍ତ୍ୱ ସମ୍ବନ୍ଧୀୟ ସ୍ଥାନ ଓ ଅବଶେଷ ଭିନ୍ନ ଅନ୍ୟ ପ୍ରତ୍ନତତ୍ତ୍ୱ ସମ୍ବନ୍ଧୀୟ ସ୍ଥାନ ଓ ଅବଶେଷ ।

୪୧ । ବିଧି ଦ୍ୱାରା ନିଷ୍କ୍ରାମ୍ୟ ସଂପତ୍ତି ବୋଲି ଘୋଷିତ ହୋଇଥିବା (କୃଷି ଭୂମି ସମେତ) ସଂପତ୍ତିର ଅଭିରକ୍ଷା, ପରିଚାଳନା ଓ ବ୍ୟୟନ ।

୪୨ । ସଂପତ୍ତିର ଅର୍ଜନ ଓ ଅଧିଗ୍ରହଣ ।

୪୩ । କୌଣସି ରାଜ୍ୟର ବାହାରେ ଉପୁଜୁଥିବା ଭୂରାଜସ୍ୱର ବକେୟା ଓ ସେପରି ବକେୟା ରୂପେ ଅସୁଲଯୋଗ୍ୟ ରାଶି ସମେତ କର ତଥା ଅନ୍ୟ ସରକାରୀ ଅଭିଯାଚନା ସଂପର୍କରେ ଦାବୀ ବାବଦ ସେହି ରାଜ୍ୟରେ ଅସୁଲୀ ।

୪୪ । ନ୍ୟାୟିକ ଷ୍ଟାଂପ ଦ୍ୱାରା ସଂଗ୍ରହ କରାଯାଇଥିବା ଶୁଳ୍କ ଓ ଫିସ୍ ଭିନ୍ନ ଅନ୍ୟ ଷ୍ଟାଂପ ଶୁଳ୍କ, କିନ୍ତୁ ଷ୍ଟାଂପ ଶୁଳ୍କର ହାର ଏଥିର ଅନ୍ତର୍ଗତ ନୁହେଁ ।

୪୫ । ସୂଚୀ ୨ ବା ସୂଚୀ ୩ରେ ବିନିର୍ଦ୍ଦିଷ୍ଟ ବିଷୟମାନଙ୍କ ମଧ୍ୟରୁ କାହାରି ପ୍ରୟୋଜନ ନିମିତ୍ତ ଯାଞ୍ଚ ଓ ସଂଖ୍ୟିକୀ ।

୪୬ । ଏହି ସୂଚୀରେ ଥିବା ବିଷୟମାନଙ୍କ ମଧ୍ୟରୁ କାହାରି ସଂପର୍କରେ ଉଚ୍ଚତମ ନ୍ୟାୟାଳୟ ବ୍ୟତିରେକେ ଅନ୍ୟ ନ୍ୟାୟାଳୟମାନଙ୍କର ଅଧିକାରିତା ଓ କ୍ଷମତା ।

୪୭ । ଏହି ସୂଚୀର ବିଷୟମାନଙ୍କ ମଧ୍ୟରୁ କାହାରି ସମ୍ବନ୍ଧରେ ଫିସ, କିନ୍ତୁ କୌଣସି ନ୍ୟାୟାଳୟରେ ଦିଆଯିବା ଫିସ ଏଥିରେ ଅନ୍ତର୍ଗତ ନୁହେଁ ।

# ଅଷ୍ଟମ ଅନୁସୂଚୀ

[ ଅନୁଚ୍ଛେଦ ୩୪୪ (୧) ଏବଂ ୩୫୧ ]

## ଭାଷା

୧। ଅସମିୟା ।

୨। ବଙ୍ଗଳା ।

୩। ଗୁଜୁରାଟୀ ।

୪। ହିନ୍ଦୀ ।

୫। କନ୍ନଡ ।

୬। କାଶ୍ମୀରୀ ।

୭। ମାଲୟାଲୀ ।

୮। ମରାଠୀ ।

୯। ଓଡ଼ିଆ ।

୧୦। ପଞ୍ଜାବୀ ।

୧୧। ସଂସ୍କୃତ ।

୧୨। ସିନ୍ଧୀ ।

୧୩। ତାମିଲ ।

୧୪। ତେଲଗୁ ।

୧୫। ଉର୍ଦ୍ଦୁ ।

# ନବମ ଅନୁସୂଚୀ

[ଅନୁଚ୍ଛେଦ ୩୧ ଖ]

୧। ଦି ବିହାର ଲ୍ୟାଣ୍ଡ ରିଫର୍ମସ୍ ଆକ୍ଟ, ୧୯୫୦ (୧୯୫୦ର ବିହାର ଅଧିନିୟମ ସଂ ୩୦) ।

୨। ଦି ବମ୍ବେ ଟେନାନ୍‌ସି ଆଣ୍ଡ ଏଗ୍ରିକଲଚରାଲ ଲ୍ୟାଣ୍ଡସ୍ ଆକ୍ଟ, ୧୯୪୮ (୧୯୪୮ର ବମ୍ବେ ଅଧିନିୟମ ସଂ ୬୭) ।

୩। ଦି ବମ୍ବେ ମାଲେକି ଟେନ୍ୟୋର ଆବଲିସନ ଆକ୍ଟ, ୧୯୪୯ (୧୯୪୯ର ବମ୍ବେ ଅଧିନିୟମ ସଂ ୬୧) ।

୪। ଦି ବମ୍ବେ ତାଲୁକ୍‌ଦାରୀ ଟେନ୍ୟୋର ଆବଲିସନ ଆକ୍ଟ, ୧୯୪୯ (୧୯୪୯ର ବମ୍ବେ ଅଧିନିୟମ ସଂ ୬୨) ।

୫। ଦି ପଞ୍ଚମହଲ ମେହ୍ୱାସ୍‌ସୀ ଟେନ୍ୟୋର ଆବଲିସନ ଆକ୍ଟ, ୧୯୪୯ (୧୯୪୯ର ବମ୍ବେ ଅଧିନିୟମ ସଂ ୬୩) ।

୬। ଦି ବମ୍ବେ ଖୋଟି ଆବଲିସନ ଆକ୍ଟ, ୧୯୫୦ (୧୯୫୦ର ବମ୍ବେ ଅଧିନିୟମ ସଂ ୬) ।

୭। ଦି ବମ୍ବେ ପରଗଣା ଆଣ୍ଡ କୁଲକର୍ଣ୍ଣି ଓ୍ୱତନ ଆବଲିସନ ଆକ୍ଟ, ୧୯୫୦ (୧୯୫୦ର ବମ୍ବେ ଅଧିନିୟମ ସଂ ୬୦)

୮। ଦି ମଧ୍ୟ ପ୍ରଦେଶ ଆବଲିସନ ଅଫ ପ୍ରୋପ୍ରାଇଟରି ରାଇଟସ୍ (ଇଷ୍ଟେଟ୍‌ସ, ମାହାଲସ୍, ଆଲିଏନେଟେଡ୍ ଲ୍ୟାଣ୍ଡସ୍) ଆକ୍ଟ, ୧୯୫୦ (୧୯୫୧ର ମଧ୍ୟ ପ୍ରଦେଶ ଅଧିନିୟମ ସଂ ୧) ।

୯। ଦି ମାଡ୍ରାସ ଇଷ୍ଟେଟସ୍ (ଆବଲିସନ ଆଣ୍ଡ କନ୍‌ଭରସନ ଇନଟୁ ରୟେତଓଆରି) ଆକ୍ଟ, ୧୯୪୮ (୧୯୪୮ର ମାଡ୍ରାଜ ଅଧିନିୟମ ସଂ ୨୬) ।

୧୦। ଦି ମାଡ୍ରାସ ଇଷ୍ଟେଟସ୍ (ଆବଲିସନ ଆଣ୍ଡ କନଭରସନ ଇନ୍‌ଟୁ ରୟେତଓଆରୀ ଆମେଣ୍ଡମେଣ୍ଟ ଆକ୍ଟ, ୧୯୫୦ (୧୯୫୦ର ମାଡ୍ରାଜ ଅଧିନିୟମ ସଂ ୧) ।

୧୧। ଦି ଉତ୍ତର ପ୍ରଦେଶ ଜମିଦାରୀ ଆବଲିସନ ଆଣ୍ଡ ଲ୍ୟାଣ୍ଡ ରିଫର୍ମସ୍ ଆକ୍ଟ, ୧୯୫୦ (୧୯୫୧ର ଉତ୍ତର ପ୍ରଦେଶ ଅଧିନିୟମ ସଂ ୧) ।

୧୨। ଦି ହାଇଦ୍ରାବାଦ (ଆବଲିସନ ଅଫ ଜାଗିରସ) ରେଗୁଲେସନ, ୧୩୫୮ ଏଫ (ଫସଲୀ, ୧୩୫୮ର ସଂ ୬୯)

୧୩। ଦି ହାଇଦ୍ରାବାଦ ଜାଗିରସ୍ (କମ୍ୟୁଟେସନ) ରେଗୁଲେସନ, ୧୩୫୯ ଏଫ. (ଫସଲୀ, ୧୩୫୯ର ସଂ ୨୫) ।

୧୪। ଦି ବିହାର ଡିସ୍‌ପ୍ଲେସ୍‌ଡ୍ ପରସନସ୍ ରିହାବିଲିଟେସନ୍ (ଆକ୍ୱିଜିସନ ଅଫ ଲାଣ୍ଡ) ଆକ୍ଟ, ୧୯୫୦ (୧୯୫୦ର ବିହାର ଅଧିନିୟମ ସଂ ୩୮) ।

୧୫। ଦି ଇଉନାଇଟେଡ୍ ପ୍ରୋଭିନ୍‌ସେସ ଲ୍ୟାଣ୍ଡ ଆକ୍ୟୁଜିସନ (ରିହାବିଲିଟେସନ୍ ଅଫ ରିଫ୍ୟୁଜି) ଆକଟ, ୧୯୪୮ (୧୯୪୮ର ଉତ୍ତର ପ୍ରଦେଶ ଅଧିନିୟମ ସଂ ୨୬) ।

୧୬। ଦି ରିସେଟେଲମେଣ୍ଟ ଅଫ ଡିସ୍‌ପ୍ଲେସଡ୍ ପରସନସ୍ (ଲାଣ୍ଡ ଆକ୍ୟୁଜିସନ) ଆକ୍ଟ, ୧୯୪୮ (୧୯୪୮ର ଅଧିନିୟମ ସଂ ୬୦) ।

୧୭। ଦି ଇନ୍‌ସୁରାନସ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୫୦ (୧୯୫୦ର ଅଧିନିୟମ ସଂ ୪୭)ର ଧାରା ୪୨ ଦ୍ୱାରା ଯଥା ଅର୍ନ୍ତଃସ୍ଥାପିତ ଦି ଇନ୍‌ସୁରାନସ୍ ଆକ୍ଟ, ୧୯୩୮ (୧୯୩୮ର ଅଧିନିୟମ ସଂ ୪)ର ଧାରା ୫୨ କ ଠାରୁ ୫୨ ଛ ପର୍ଯ୍ୟନ୍ତ ।

୧୮। ଦି ରେଲଓ୍ୱେ କମ୍ପାନିଜ୍ (ଇମରଜେନ୍ସି ପ୍ରୋଭିଜନସ୍) ଆକ୍ଟ, ୧୯୫୧ (୧୯୫୧ର ଅଧିନିୟମ ସଂ ୫୧) ।

୧୯। ଦି ଇଣ୍ଡଷ୍ଟ୍ରିଜ୍ (ଡ଼େଭଲପ୍‌ମେଣ୍ଟ ଆଣ୍ଡ ରେଗୁଲେସନ) ଆମେଣ୍ଡମେଣ୍ଟ ଆକ୍ଟ, ୧୯୫୩ (୧୯୫୩ର ଅଧିନିୟମ ସଂ ୨୬)ର ଧାରା ୧୩ ଦ୍ୱାରା ଯଥା ଅନ୍ତଃସ୍ଥାପିତ ଦି ଇଣ୍ଡଷ୍ଟ୍ରିଜ୍ (ଡ଼େଭଲପ୍‌ମେଣ୍ଟ ଆଣ୍ଡ ରେଗୁଲେସନ) ଆକ୍ଟ, ୧୯୫୧ର ଅଧ୍ୟାୟ ୩ କ ।

୨୦। ୧୯୫୧ର ଉଏଷ୍ଟ ବେଙ୍ଗଲ ଆକ୍ଟ, ୨୯ ଦ୍ୱାରା ଯଥା ସଂଶୋଧିତ ଦି ଉଏଷ୍ଟ ବେଙ୍ଗଲ ଲାଣ୍ଡ ଡ଼େଭଲପ୍‌ମେଣ୍ଟ ଆଣ୍ଡ ପ୍ଲାନିଙ୍ଗ୍ ଆକ୍ଟ, ୧୯୪୮ (୧୯୪୮ର ଉଏଷ୍ଟ ବେଙ୍ଗଲ ଅଧିନିୟମ ସଂ ୨୧) ।

୨୧। ଦି ଆନ୍ଧ୍ର ପ୍ରଦେଶ ସିଲିଂ ଅନ୍ ଏଗ୍ରିକଲଚରାଲ ହୋଲଡିଙ୍ଗସ୍ ଆକ୍ଟ, ୧୯୬୧ (୧୯୬୧ର ଆନ୍ଧ୍ର ପ୍ରଦେଶ ଅଧିନିୟମ ସଂ ୧୦) ।

୨୨। ଦି ଆନ୍ଧ୍ର ପ୍ରଦେଶ (ତେଲେଙ୍ଗାନା ଏରିଆ) ଟେନାନସି ଆଣ୍ଡ ଏଗ୍ରିକଲଚରାଲ ଲାଣ୍ଡସ୍ (ଭାଲିଡ଼େସନ) ଆକ୍ଟ, ୧୯୬୧ (୧୯୬୧ର ଆନ୍ଧ୍ର ପ୍ରଦେଶ ଅଧିନିୟମ ସଂ ୨୧) ।

୨୩। ଦି ଆନ୍ଧ୍ର ପ୍ରଦେଶ (ତେଲେଙ୍ଗାନା ଏରିଆ) ଇଜରା ଆଣ୍ଡ କୋଓ୍ୱାଲିଲାଣ୍ଡ କ୍ୟାନ୍‌ସେଲେସନ ଅଫ ଇରେଗୁଲ୍ଲର ପଟ୍ଟାଜ୍ ଆଣ୍ଡ ଆବଲିସନ ଅଫ କନସେସନାଲ ଆସେସ୍‌ମେଣ୍ଟ ଆକ୍ଟ, ୧୯୬୧ (୧୯୬୧ର ଆନ୍ଧ୍ର ପ୍ରଦେଶ ଅଧିନିୟମ ସଂ ୩୬) ।

୨୪। ଦି ଆସାମ ଷ୍ଟେଟ୍‌ସ ଆକ୍ୱିଜିସନ ଅଫ ଲାଣ୍ଡସ୍ ବିଲଂଗିଙ୍ଗ ଟୁ ରିଲିଜିଅସ୍ ଅର ଚ଼ରିଟେବଲ ଇନ୍‌ଷ୍ଟିଚ୍ୟୁସନ ଅଫ ପବ୍ଲିକ୍ ନେଚର ଆକ୍ଟ , ୧୯୫୯ (୧୯୬୨)ର ଆସାମ ଅଧିନିୟମ ସଂ ୯) ।

୨୫। ଦି ବିହାର ଲାଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୫୩ (୧୯୫୪ର ବିହାର ଅଧିନିୟମ ସଂ ୨୦) ।

୨୬। ଦି ବିହାର ଲ୍ୟାଣ୍ଡ ରିଫର୍ମସ୍ (ଫିକ୍‌ସେସନ ଅଫ ସିଲିଂ ଏରିଆ ଆଣ୍ଡ ଆକ୍ୟୁଜିସନ ଅଫ ସରପ୍ଲସ ଲାଣ୍ଡ) ଆକ୍ଟ, ୧୯୬୧ (୧୯୬୨ର ବିହାର ଅଧିନିୟମ ସଂ ୧୨), (ଏହି ଅଧିନିୟମର ଧାରା ୨୮ ବ୍ୟତିରେକେ) ।

୨୭। ଦି ବମ୍ବେ ତାଲୁକ୍‌ଦାରୀ ଟେନ୍ୟୋର ଆବଲିସନ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୫୪ (୧୯୫୫ର ବମ୍ବେ ଅଧିନିୟମ ସଂ ୧) ।

୨୮। ଦି ବମ୍ବେ ତାଲୁକ୍‌ଦାରୀ ଟେନ୍ୟୋର ଆବଲିସନ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୫୭ (୧୯୫୮ର ବମ୍ବେ ଅଧିନିୟମ ସଂ ୧୮) ।

୨୯। ଦି ବମ୍ବେ ଇନାମ୍‌ସ (କଚ ଏରିଆ) ଆବଲିସନ ଆକ୍ଟ, ୧୯୫୮ (୧୯୫୮ର ବମ୍ବେ ଅଧିନିୟମ ସଂ ୯୮) ।

୩୦। ଦି ବମ୍ବେ ଟେନାନ୍‌ସି ଆଣ୍ଡ ଏଗ୍ରିକଲଚରାଲ ଲାଣ୍ଡସ୍ (ଗୁଜରାଟ ଆମେଣ୍ଡମେଣ୍ଟ) ଆକ୍ଟ, ୧୯୬୦ (୧୯୬୦ର ଗୁଜୁରାଟ ଅଧିନିୟମ ସଂଖ୍ୟା ୧୬) ।

୩୧। ଦି ଗୁଜୁରାଟ ଏଗ୍ରିକଲଚରାଲ ଲାଣ୍ଡସ ସିଲିଂ ଆକ୍ଟ, ୧୯୬୦ (୧୯୬୧ର ଗୁଜୁରାଟ ଅଧିନିୟମ ସଂ ୨୭) ।

୩୨। ଦି ସାଗବାରା ଆଣ୍ଡ ମେହ୍ୱାସୀ ଇଷ୍ଟେଟସ୍ (ପ୍ରୋପ୍ରାଇଟରୀ ରାଇଟସ୍ ଆବଲିସନ ଏଟସେଟରା) ରେଗୁଲେସନ, ୧୯୬୨ (୧୯୬୨ର ଗୁଜୁରାଟ ରେଗୁଲେସନ ସଂ ୧) ।

୩୩ । ଦି ଗୁଜୁରାଟ ସରଭାଲଭିଙ୍ଗ୍ ଆଲିଏନେସନସ୍ ଆବଲିସନ ଆକ୍ଟ, ୧୯୬୩ (୧୯୬୩ର ଗୁଜୁରାଟ ଅଧିନିୟମ ସଂ ୩୩)ରୁ ସେଇଁ ପର୍ଯ୍ୟନ୍ତ ଏହି ଅଧିନିୟମ ତହିଁର ଧାରା ୨ର ଖଣ୍ଡ (୩)ର ଉପଖଣ୍ଡ (ଘ) ରେ ବିନିର୍ଦ୍ଦିଷ୍ଟ କୌଣସି ଅନ୍ୟ ସଂକ୍ରାମଣ ସମ୍ବନ୍ଧରେ ରହିଥାଏ ତାହା ବ୍ୟତିରେକେ ।

୩୪ । ଦି ମହାରାଷ୍ଟ୍ର ଏଗ୍ରିକଲଚରାଲ ଲାଣ୍ଡସ୍ (ସିଲିଂ ଅନ ହୋଲଡିଙ୍ଗସ୍) ଆକ୍ଟ, ୧୯୬୧ (୧୯୬୧ର ମହାରାଷ୍ଟ୍ର ଅଧିନିୟମ ସଂ ୨୭) ।

୩୫ । ଦି ହାଇଦ୍ରାବାଦ ଟେନାନ୍ସି ଆଣ୍ଡ ଏଗ୍ରିକଲଚରାଲ ଲାଣ୍ଡସ୍ (ରିଏନାକ୍ଟମେଣ୍ଟ ଭାଲିଡ଼େସନ ଆଣ୍ଡ ଫର୍ଦର ଆମେଣ୍ଡମେଣ୍ଟ) ଆକ୍ଟ, ୧୯୬୧ (୧୯୬୧ର ମହାରାଷ୍ଟ୍ର ଅଧିନିୟମ ସଂ ୪୫) ।

୩୬ । ଦି ହାଇଦ୍ରାବାଦ ଟେନାନସି ଆଣ୍ଡ ଏଗ୍ରିକଲଚରାଲ ଲାଣ୍ଡସ୍ ଆକ୍ଟ, ୧୯୫୦ (୧୯୫୦ର ହାଇଦ୍ରାବାଦ ଅଧି-ନିୟମ ସଂ ୨୧) ।

୩୭ । ଦି ଜେନ୍ମିକରମ ପେମେଣ୍ଟ (ଆବଲିସନ) ଆକ୍ଟ, ୧୯୬୦ (୧୯୬୧ର କେରଳ ଅଧିନିୟମ ସଂ ୩) ।

୩୮ । ଦି କେରଳ ଲାଣ୍ଡ ଟାକ୍ସ ଆକ୍ଟ, ୧୯୬୧ (୧୯୬୧ର କେରଳ ଅଧିନିୟମ ସଂ ୧୩) ।

୩୯ । ଦି କେରଳ ଲାଣ୍ଡ ରିଫାର୍ମସ୍ ଆକ୍ଟ, ୧୯୬୩ (୧୯୬୪ର କେରଳ ଅଧିନିୟମ ସଂ ୧) ।

୪୦ । ଦି ମଧ୍ୟ ପ୍ରଦେଶ ଲାଣ୍ଡ ରେଭିନ୍ୟୁ କୋର୍ଡ, ୧୯୫୯ (୧୯୫୯ର ମଧ୍ୟ ପ୍ରଦେଶ ଅଧିନିୟମ ସଂ ୨୦) ।

୪୧ । ଦି ମଧ୍ୟ ପ୍ରଦେଶ ସିଲିଂ ଅନ ଏଗ୍ରିକଲଚରାଲ ହୋଲଡିଙ୍ଗସ୍ ଆକ୍ଟ, ୧୯୬୦ (୧୯୬୦ର ମଧ୍ୟ ପ୍ରଦେଶ ଅଧିନିୟମ ସଂ ୨୦) ।

୪୨ । ଦି ମାଡ୍ରାସ କଲଟିଭେଟିଙ୍ଗ୍ ଟେନାଣ୍ଟସ୍ ପ୍ରୋଟେକ୍ସନ ଆକ୍ଟ, ୧୯୫୫ (୧୯୫୫ର ଅଧିନିୟମ ସଂ ୨୫) ।

୪୩ । ଦି ମାଡ୍ରାସ କଲଟିଭେଟିଙ୍ଗ୍ ଟେନାଣ୍ଟସ୍ (ପେମେଣ୍ଟ ଅଫ ଫେୟାର ରେଣ୍ଟ) ଆକ୍ଟ, ୧୯୫୬ (୧୯୫୬ର ମାନ୍ଦ୍ରାଜ ଅଧିନିୟମ ସଂ ୨୪) ।

୪୪ । ଦି ମାଡ୍ରାସ ଅକ୍ୟୁପାଣ୍ଟସ୍ ଅଫ କୁଡ଼ିଇରୁପ୍ପୁ (ପ୍ରୋଟେକ୍ସନ ଫ୍ରମ ଏଭିକ୍ସନ) ଆକ୍ଟ , ୧୯୬୧ (୧୯୬୧ର ମାନ୍ଦ୍ରାଜ ଅଧିନିୟମ ସଂ ୩୮) ।

୪୫ । ଦି ମାଡ୍ରାସ ପବ୍ଲିକ୍ ଟ୍ରଷ୍ଟ (ରେଗୁଲେସନ ଅଫ ଆଡ୍‌ମିନିଷ୍ଟ୍ରେସନ ଅଫ ଏଗ୍ରିକଲଚରାଲ ଲାଣ୍ଡସ୍) ଆକ୍ଟ, ୧୯୬୧ (୧୯୬୧ର ମାନ୍ଦ୍ରାଜ ଅଧିନିୟମ ସଂ ୫୭) ।

୪୬ । ଦି ମାଡ୍ରାସ ଲାଣ୍ଡ ରିଫର୍ମସ (ଫିକ୍ସେସନ୍ ଅଫ ସିଲିଂ ଅନ ଲାଣ୍ଡ) ଆକ୍ଟ, ୧୯୬୧ (୧୯୬୧ର ମାନ୍ଦ୍ରାଜ ଅଧିନିୟମ ସଂ ୫୮) ।

୪୭ । ଦି ମହୀଶୂର ଟେନାନ୍ସି ଆକ୍ଟ, ୧୯୫୨ (୧୯୫୨ର ମହୀଶୂର ଅଧିନିୟମ ସଂ ୧୩) ।

୪୮ । ଦି କୁର୍ଗ ଟେନାଣ୍ଟସ୍ ଆକ୍ଟ, ୧୯୫୭ (୧୯୫୭ର ମହୀଶୂର ଅଧିନିୟମ ସଂ ୧୪) ।

୪୯ । ଦି ମହୀଶୂର ଭିଲେଜ୍ ଅଫିସେସ୍ ଆବଲିସନ ଆକ୍ଟ, ୧୯୬୧ (୧୯୬୧ର ମହୀଶୂର ଅଧିନିୟମ ସଂ ୧୪) ।

୫୦ । ଦି ହାଇଦ୍ରାବାଦ ଟେନାନସି ଆଣ୍ଡ ଏଗ୍ରିକଲଚରାଲ ଲ୍ୟାଣ୍ଡସ୍ (ଭାଲିଡ଼େସନ) ଆକ୍ଟ, ୧୯୬୧ (୧୯୬୧ର ମହୀଶୂର ଅଧିନିୟମ ସଂ ୩୬) ।

୫୧ । ଦି ମହୀଶୂର ଲ୍ୟାଣ୍ଡ ରିଫର୍ମସ୍ ଆକ୍ଟ, ୧୯୬୧ (୧୯୬୨ର ମହୀଶୂର ଅଧିନିୟମ ସଂ ୧୦) ।

୫୨ । ଦି ଓଡିଶା ଲ୍ୟାଣ୍ଡ ରିଫର୍ମସ୍ ଆକ୍ଟ, ୧୯୬୦ (୧୯୬୦ର ଓଡ଼ିଶା ଅଧିନିୟମ ସଂ ୧୬) ।

୫୩ । ଦି ଓଡିଶା ମର୍ଜ୍ଜଡ଼ ଟେରିଟୋରିଜ୍ (ଭିଲେଜ୍ ଅଫିସେସ୍ ଆବଲିସନ) ଆକ୍ଟ, ୧୯୬୩ (୧୯୬୩ର ଓଡ଼ିଶା ଅଧିନିୟମ ସଂ ୧୦) ।

୫୪ । ଦି ପଞ୍ଜାବ୍ ସିକ୍ୟୁରିଟି ଅଫ ଲ୍ୟାଣ୍ଡ ଟେନ୍ୟୋରସ୍ ଆକ୍ଟ, ୧୯୫୩ (୧୯୫୩ର ପଞ୍ଜାବ ଅଧିନିୟମ ସଂ ୧୦) ।

୫୫ । ଦି ରାଜସ୍ଥାନ ଟେନାନ୍ସି ଆକ୍ଟ, ୧୯୫୫ (୧୯୫୫ର ରାଜସ୍ଥାନ ଅଧିନିୟମ ସଂ ୩) ।

୫୬ । ଦି ରାଜସ୍ଥାନ ଜମିଦାରୀ ଆଣ୍ଡ ବିସ୍ୱେଦାରୀ ଆବଲିସନ ଆକ୍ଟ, ୧୯୫୯, (୧୯୫୯ର ରାଜସ୍ଥାନ ଅଧିନିୟମ ସଂ ୮) ।

୫୭ । ଦି କୁମାୟୁନ ଆଣ୍ଡ ଉତ୍ତର ଖଣ୍ଡ ଜମିଦାରୀ ଆବଲିସନ ଆଣ୍ଡ ଲ୍ୟାଣ୍ଡ ରିଫର୍ମସ୍ ଆକ୍ଟ, ୧୯୬୦ (୧୯୬୦ର ଉତ୍ତର ପ୍ରଦେଶ ଅଧିନିୟମ ସଂ ୧୭) ।

୫୮ । ଦି ଉତ୍ତର ପ୍ରଦେଶ ଇମ୍ପୋଜିସନ ଅଫ ସିଲିଂ ଅନ ଲାଣ୍ଡ ହୋଲଡିଂସ୍ ଆକ୍ଟ, ୧୯୬୦ (୧୯୬୧ର ଉତ୍ତର ପ୍ରଦେଶ ଅଧିନିୟମ ସଂ ୧) ।

୫୯ । ଦି ଉଏଷ୍ଟ ବେଙ୍ଗଲ ଇଷ୍ଟେଟସ୍ ଆକ୍ୱିଜିସନ ଆକ୍ଟ, ୧୯୫୩ (୧୯୫୪ର ପଶ୍ଚିମ ବଙ୍ଗ ଅଧିନିୟମ ସଂ ୧)

୬୦ । ଦି ଉଏଷ୍ଟ ବେଙ୍ଗଲ ଲାଣ୍ଡ ରିଫର୍ମସ୍ ଆକ୍ଟ, ୧୯୫୫ (୧୯୫୬ର ପଶ୍ଚିମ ବଙ୍ଗ ଅଧିନିୟମ ସଂ ୧୦) ।

୬୧ । ଦି ଦିଲ୍ଲୀ ଲ୍ୟାଣ୍ଡ ରିଫର୍ମସ୍ ଆକ୍ଟ, ୧୯୫୪ (୧୯୫୪ର ଦିଲ୍ଲୀ ଅଧିନିୟମ ସଂ ୮) ।

୬୨ । ଦି ଦିଲ୍ଲୀ ଲ୍ୟାଣ୍ଡ ହୋଲଡିଂସ (ସିଲିଂ) ଆକ୍ଟ, ୧୯୬୦ (୧୯୬୦ର କେନ୍ଦ୍ରୀୟ ଅଧିନିୟମ ସଂଖ୍ୟା ୨୪) ।

୬୩ । ଦି ମଣିପୁର ଲ୍ୟାଣ୍ଡ ରେଭିନ୍ୟୁ ଆଣ୍ଡ ଲ୍ୟାଣ୍ଡ ରିଫର୍ମସ୍ ଆକ୍ଟ, ୧୯୬୦ (୧୯୬୦ର କେନ୍ଦ୍ରୀୟ ଅଧିନିୟମ ସଂ ୩୩) ।

୬୪ । ଦି ତ୍ରିପୁରା ଲ୍ୟାଣ୍ଡ ରେଭିନ୍ୟୁ ଆଣ୍ଡ ଲ୍ୟାଣ୍ଡ ରିଫର୍ମସ ଆକ୍ଟ, ୧୯୬୦ (କେନ୍ଦ୍ରୀୟ ଅଧିନିୟମ ସଂ ୪୩) ।

୬୫ । ଦି କେରଳ ଲ୍ୟାଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୬୯ (୧୯୬୯ର କେରଳ ଅଧିନିୟମ ସଂ ୩୫) ।

୬୬ । ଦି କେରଳ ଲ୍ୟାଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୧ (୧୯୭୧ର କେରଳ ଅଧିନିୟମ ସଂ ୨୫) ।

୬୭ । ଦି ଆନ୍ଧ୍ର ପ୍ରଦେଶ ଲାଣ୍ଡ ରିଫର୍ମସ୍ (ସିଲିଂ ଅନ ଏଗ୍ରିକଲଚରାଲ ହୋଲଡିଙ୍ଗସ୍) ଆକ୍ଟ, ୧୯୭୩ (୧୯୭୩ର ଆନ୍ଧ୍ର ପ୍ରଦେଶ ଅଧିନିୟମ ସଂ ୧) ।

୬୮ । ଦି ବିହାର ଲ୍ୟାଣ୍ଡ ରିଫର୍ମସ୍ (ଫିକ୍ସେସନ ଅଫ ସିଲିଂ ଏରିୟା ଆଣ୍ଡ ଆକ୍ୟୁଜିସନ ଅଫ ସରପ୍ଲସ ଲ୍ୟାଣ୍ଡ) (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୨ (୧୯୭୩ର ବିହାର ଅଧିନିୟମ ସଂ ୧) ।

୬୯। ଦି ବିହାର ଲଣ୍ଡ ରିଫର୍ମସ୍ (ଫିକ୍ସେସନ ଅଫ ସିଲିଂ ଏରିଆ ଆଣ୍ଡ ଆକ୍ୟୁଜିସନ ଅଫ ସରପ୍ଲସ ଲଣ୍ଡ) (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୩ (୧୯୭୩ର ବିହାର ଅଧିନିୟମ ସଂ ୯)।

୭୦। ଦି ବିହାର ଲଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୨ (୧୯୭୨ର ବିହାର ଅଧିନିୟମ ସଂ ୫)।

୭୧। ଦି ଗୁଜୁରାଟ ଏଗ୍ରିକଲଚରାଲ ଲଣ୍ଡ ସିଲିଂ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୨ (୧୯୭୪ର ଗୁଜୁରାଟ ଅଧିନିୟମ ସଂ ୨)।

୭୨। ଦି ହରିୟାନା ସିଲିଂ ଅନ ଲଣ୍ଡ ହୋଲଡିଙ୍ଗସ୍ ଆକ୍ଟ, ୧୯୭୨ (୧୯୭୨ର ହରିୟାନା ଅଧିନିୟମ ସଂ ୨୬)।

୭୩। ଦି ହିମାଚଳ ପ୍ରଦେଶ ସିଲିଂ ଅନ ଲଣ୍ଡ ହୋଲଡିଙ୍ଗସ୍ ଆକ୍ଟ ୧୯୭୨ (୧୯୭୩ର ହିମାଚଳ ପ୍ରଦେଶ ଅଧିନିୟମ ସଂ ୧୯)।

୭୪। ଦି କେରଳ ଲଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୨ (୧୯୭୨ର କେରଳ ଅଧିନିୟମ ସଂ ୧୭)।

୭୫। ଦି ମଧ୍ୟ ପ୍ରଦେଶ ସିଲିଂ ଅନ ଏଗ୍ରିକଲଚରାଲ ହୋଲଡିଙ୍ଗସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୨ (୧୯୭୪ର ମଧ୍ୟ ପ୍ରଦେଶ ଅଧିନିୟମ ସଂ ୧୨)।

୭୬। ଦି ମଧ୍ୟ ପ୍ରଦେଶ ସିଲିଂ ଅନ ଏଗ୍ରିକଲଚରାଲ ହୋଲଡିଙ୍ଗସ୍ (ଦ୍ୱିତୀୟ ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୨ (୧୯୭୪ର ମଧ୍ୟ ପ୍ରଦେଶ ଅଧିନିୟମ ସଂ ୧୩)।

୭୭। ଦି ମହୀଶୂର ଲଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୩ (୧୯୭୪ର କର୍ଣ୍ଣାଟକ ଅଧିନିୟମ ସଂ ୧)

୭୮। ଦି ପଞ୍ଜାବ ଲଣ୍ଡ ରିଫର୍ମସ୍ ଆକ୍ଟ, ୧୯୭୨ (୧୯୭୩ର ପଞ୍ଜାବ ଅଧିନିୟମ ସଂ ୧୦)।

୭୯। ଦି ରାଜସ୍ଥାନ ଇମ୍ପୋଜିସନ ଅଫ ସିଲିଂ ଅନ ଏଗ୍ରିକଲଚରାଲ ହୋଲଡିଙ୍ଗସ୍ ଆକ୍ଟ, ୧୯୭୩ (୧୯୭୩ର ରାଜସ୍ଥାନ ଅଧିନିୟମ ସଂ ୧୧)।

୮୦। ଦି ଗୁଡ୍ଡାଲୁର ଜନ୍ମାମ୍ ଏଷ୍ଟେଟ୍ସ (ଆବୋଲିସନ ଆଣ୍ଡ କନ୍‌ଭରସନ ଇନ୍‌ଟୁ ରୟତୱାରି) ଆକ୍ଟ, ୧୯୬୯ (୧୯୬୯ର ତାମିଲନାଡୁ ଅଧିନିୟମ ସଂ ୨୪)।

୮୧। ଦି ୱେଷ୍ଟ ବେଙ୍ଗଲ ଲାଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୨ (୧୯୭୨ର ୱେଷ୍ଟ ବେଙ୍ଗଲ ଅଧିନିୟମ ସଂ ୧୨)।

୮୨। ଦି ୱେଷ୍ଟ ବେଙ୍ଗଲ ଇଷ୍ଟେଟ୍ସ ଆକ୍ୟୁଜିସନ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୬୪ (୧୯୬୪ର ପଶ୍ଚିମ ବଙ୍ଗ ଅଧିନିୟମ ସଂ ୨୨)।

୮୩। ଦି ୱେଷ୍ଟ ବେଙ୍ଗଲ ଇଷ୍ଟେଟସ୍ ଆକ୍ୟୁଜିସନ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୩ (୧୯୭୩ର ପଶ୍ଚିମ ବଙ୍ଗ ଅଧିନିୟମ ସଂ ୩୩)।

୮୪। ଦି ବମ୍ବେ ଟେନାନ୍‌ସି ଆଣ୍ଡ ଏଗ୍ରିକଲଚରାଲ ଲାଣ୍ଡସ୍ (ଗୁଜୁରାଟ ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୨ (୧୯୭୩ର ଗୁଜୁରାଟ ଅଧିନିୟମ ସଂ ୫)।

୮୫। ଦି ଓଡ଼ିଶା ଲଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୪ (୧୯୭୪ର ଓଡ଼ିଶା ଅଧିନିୟମ ସଂ ୯)।

୮୬। ଦି ତ୍ରିପୁରା ଲଣ୍ଡ ରେଭିନ୍ୟୁ ଆଣ୍ଡ ଲଣ୍ଡ ରିଫର୍ମସ୍ (ଦ୍ୱିତୀୟ ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୪ (୧୯୭୪ର ତ୍ରିପୁରା ଅଧିନିୟମ ସଂ ୭)।

୮୭। * * * * * *

୮୮ । ଦି ଇଣ୍ଡଷ୍ଟ୍ରିଜ୍ (ଡେଭଲପମେଣ୍ଟ ଆଣ୍ଡ ରେଗୁଲେସନ) ଆକ୍ଟ, ୧୯୫୧ (୧୯୫୧ ର କେନ୍ଦ୍ରୀୟ ଅଧିନିୟମ ସଂ ୬୫) ।

୮୯ । ଦି ରିକ୍ୟୁଜିସିନିଂଗ୍ ଆଣ୍ଡ ଆକ୍ୟୁଜିସନ୍ ଅଫ୍ ଇମ୍‌ମୁଭେବୁଲ ପ୍ରପର୍ଟି ଆକ୍ଟ, ୧୯୫୨ (୧୯୫୨ ର କେନ୍ଦ୍ରୀୟ ଅଧିନିୟମ, ସଂ ୩୦) ।

୯୦ । ଦି ମାଇନ୍‌ସ୍ ଆଣ୍ଡ ମିନରାଲ୍‌ସ୍ (ରେଗୁଲେସନ୍ ଆଣ୍ଡ ଡେଭେଲପ୍‌ମେଣ୍ଟ) ଆକ୍ଟ, ୧୯୫୭ (୧୯୫୭ ର କେନ୍ଦ୍ରୀୟ ଅଧିନିୟମ ସଂ ୬୭) ।

୯୧ । ଦି ମନୋପୋଲିଜ୍ ଆଣ୍ଡ ରେଷ୍ଟ୍ରିକ୍‌ଟିଭ ଟ୍ରେଡ୍ ପ୍ରାକ୍‌ଟିସେସ୍ ଆକ୍ଟ, ୧୯୬୯ (୧୯୬୯ ର କେନ୍ଦ୍ରୀୟ ଅଧିନିୟମ ସଂ ୫୪) ।

୯୨ । * * * *

୯୩ । ଦି କୋକିଂଗ୍ କୋଲ ମାଇନ୍‌ସ (ଇମରଜେନ୍‌ସୀ ପ୍ରୋଭିଜନ) ଆକ୍ଟ, ୧୯୭୧ (୧୯୭୧ ର କେନ୍ଦ୍ରୀୟ ଅଧିନିୟମ ସଂ ୬୪) ।

୯୪ । ଦି କୋକିଂଗ୍ କୋଲ ମାଇନସ୍ (ନ୍ୟାସନାଲାଇଜେସନ୍) ଆକ୍ଟ, ୧୯୭୨ (୧୯୭୨ ର କେନ୍ଦ୍ରୀୟ ଅଧିନିୟମ ସଂ ୩୬) ।

୯୫ । ଦି ଜେନେରାଲ୍ ଇନ୍‌ସ୍ୟୁରେନ୍‌ସ ବିଜିନେସ୍ (ନ୍ୟାସନାଲାଇଜେସନ) ଆକ୍ଟ, ୧୯୭୨ (୧୯୭୨ ର କେନ୍ଦ୍ରୀୟ ଅଧିନିୟମ ସଂ ୫୭) ।

୯୬ । ଦି ଇଣ୍ଡିଆନ୍ କପ୍ପର କର୍ପୋରେସନ୍ (ଆକ୍ୟୁଜିସନ୍ ଅଫ୍ ଲ ଅଣ୍ଡରଟେକିଂଗ୍) ଆକ୍ଟ, ୧୯୭୨ (୧୯୭୨ ର କେନ୍ଦ୍ରୀୟ ଅଧିନିୟମ, ସଂ ୫୮) ।

୯୭ । ଦି ସିକ୍ ଟେକ୍‌ସଟାଇଲ୍ ଅଣ୍ଡରଟେକିଂଗ୍‌ସ (ଟେକିଂଗ୍ ଓଭର ଅଫ୍ ମ୍ୟାନେଜ୍‌ମେଣ୍ଟ) ଆକ୍ଟ, ୧୯୭୨(୧୯୭୨ ର କେନ୍ଦ୍ରୀୟ ଅଧିନିୟମ ସଂ ୭୨) ।

୯୮ । ଦି କୋଲ୍ ମାଇନ୍‌ସ୍ (ଟେକିଙ୍ଗ୍ ଓଭର ଅଫ୍ ମ୍ୟାନେଜ୍‌ମେଣ୍ଟ) ଆକ୍ଟ, ୧୯୭୩ (୧୯୭୩ର କେନ୍ଦ୍ରୀୟ ଅଧିନିୟମ ସଂ ୧୫) ।

୯୯ । ଦି କୋଲ୍ ମାଇନ୍‌ସ୍ ନ୍ୟାସନାଲାଇଜେସନ୍ ଆକ୍ଟ, ୧୯୭୩ (୧୯୭୩ର କେନ୍ଦ୍ରୀୟ ଅଧିନିୟମ ସଂ ୨୬) ।

୧୦୦ । ଦି ଫରେନ ଏକ୍‌ସ୍‌ଚେଞ୍ଜ ରେଗୁଲେସନ୍ ଆକ୍ଟ, ୧୯୭୩ (୧୯୭୩ର କେନ୍ଦ୍ରୀୟ ଅଧିନିୟମ ସଂ ୪୬) ।

୧୦୧ । ଦି ଆଲକକ ଅଶଡୋଅନ କଂପାନୀ ଲିମିଟେଡ (ଆକ୍ୟୁଜିସନ ଅଫ୍ ଅଣ୍ଡରଟେକିଙ୍ଗ୍‌ସ) ଆକ୍ଟ, ୧୯୭୩ (୧୯୭୩ର କେନ୍ଦ୍ରୀୟ ଅଧିନିୟମ ସଂ ୫୬) ।

୧୦୨ । ଦି କୋଲ ମାଇନସ୍ (କଞ୍ଜରଭେସନ ଆଣ୍ଡ ଡେଭଲପ୍‌ମେଣ୍ଟ) ଆକ୍ଟ, ୧୯୭୪ (୧୯୭୪ର କେନ୍ଦ୍ରୀୟ ଅଧିନିୟମ ସଂ ୨୮) ।

୧୦୩ । ଦି ଆଡିସନାଲ ଇମଲ୍ୟୁମେଣ୍ଟସ୍ (କଂପଲସରୀ ଡିପୋଜିଟ୍) ଆକ୍ଟ, ୧୯୭୪ (୧୯୭୪ର କେନ୍ଦ୍ରୀୟ ଅଧିନିୟମ ସଂ ୩୪) ।

୧୦୪ । ଦି କଞ୍ଜରଭେସନ ଅଫ୍ ଫରେନ୍ ଏକ୍‌ସଚେଞ୍ଜ ଆଣ୍ଡ ପ୍ରିଭେନ୍‌ସନ ଅଫ୍ ସ୍ମଗଲିଂ ଆକ୍‌ଟିଭିଟିଜ୍ ଆକ୍ଟ, ୧୯୭୪ (୧୯୭୪ର କେନ୍ଦ୍ରୀୟ ଅଧିନିୟମ ସଂ ୫୨) ।

୧୦୫ । ଦି ସିଲ୍କ ଟେକ୍‌ଟାଇଲ ଅଣ୍ଡରଟେକିଙ୍ଗସ୍ (ନ୍ୟାସନାଲାଇଜେସନ) ଆକ୍ଟ, ୧୯୭୪ (୧୯୭୪ର କେନ୍ଦ୍ରୀୟ ଅଧିନିୟମ ସଂ ୫୭) ।

୧୦୬ । ଦି ମହାରାଷ୍ଟ୍ର ଏଗ୍ରିକଲଚରାଲ ଲ୍ୟାଣ୍ଡସ (ସିଲିଙ୍ଗ ଅନ ହୋଲଡିଙ୍ଗସ୍) (ଆମେଣ୍ଡମେଣ୍ଟ) ଆକ୍ଟ , ୧୯୬୪ (୧୯୬୫ର ମହାରାଷ୍ଟ୍ର ଅଧିନିୟମ ସଂ ୧୬) ।

୧୦୭ । ଦି ମହାରାଷ୍ଟ୍ର ଏଗ୍ରିକଲଚରାଲ ଲ୍ୟାଣ୍ଡସ (ସିଲିଙ୍ଗ ଅନ ହୋଲଡିଂସ) (ଆମେଣ୍ଡମେଣ୍ଟ) ଆକଟ, ୧୯୬୫ (୧୯୬୫ର ମହାରାଷ୍ଟ୍ର ଅଧିନିୟମ ସଂ ୩୨) ।

୧୦୮ । ଦି ମହାରାଷ୍ଟ୍ର ଏଗ୍ରିକଲଚରାଲ ଲ୍ୟାଣ୍ଡସ (ସିଲିଙ୍ଗ ଅନ ହୋଲଡିଙ୍ଗସ) (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୬୮ (୧୯୬୮ର ମହାରାଷ୍ଟ୍ର ଅଧିନିୟମ ସଂ ୧୬) ।

୧୦୯ । ଦି ମହାରାଷ୍ଟ୍ର ଏଗ୍ରିକଲଚରାଲ ଲ୍ୟାଣ୍ଡସ (ସିଲିଙ୍ଗ ଅନ୍ ହୋଲଡିଙ୍ଗସ୍) (ସେକେଣ୍ଡ ଆମେଣ୍ଡମେଣ୍ଟ) ଆକ୍ଟ, ୧୯୬୮ (୧୯୬୮ର ମହାରାଷ୍ଟ୍ର ଅଧିନିୟମ ସଂ ୩୩) ।

୧୧୦ । ଦି ମହାରାଷ୍ଟ୍ର ଏଗ୍ରିକଲଚରାଲ ଲ୍ୟାଣ୍ଡସ (ସିଲିଙ୍ଗ ଅନ ହୋଲଡିଙ୍ଗସ) (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୬୯ (୧୯୬୯ ର ମହାରାଷ୍ଟ୍ର ଅଧିନିୟମ ସଂ ୩୭) ।

୧୧୧ । ଦି ମହାରାଷ୍ଟ୍ର ଏଗ୍ରିକଲଚରାଲ ଲ୍ୟାଣ୍ଡସ (ସିଲିଙ୍ଗସ ଅନ ହୋଲଡିଂଙ୍ଗସ୍) (ସେକେଣ୍ଡ ଆମେଣ୍ଡମେଣ୍ଟ) ଆକ୍ଟ, ୧୯୬୯ (୧୯୬୯ର ମହାରାଷ୍ଟ୍ର ଅଧିନିୟମ ସଂ ୩୮) ।

୧୧୨ । ଦି ମହାରାଷ୍ଟ୍ର ଏଗ୍ରିକଲଚରାଲ ଲ୍ୟାଣ୍ଡସ (ସିଲିଙ୍ଗ ଅନ ହୋଲଡିଙ୍ଗସ) ([illegible]ମେଣ୍ଡମେଣ୍ଟ) ଆକ୍ଟ, ୧୯୭୦ (୧୯୭୦ର ମହାରାଷ୍ଟ୍ର ଅଧିନିୟମ ସଂ ୨୭) ।

୧୧୩ । ଦି ମହାରାଷ୍ଟ୍ର ଏଗ୍ରିକଲଚରାଲ ଲ୍ୟାଣ୍ଡସ (ସିଲିଙ୍ଗ ଅନ ହୋଲଡିଙ୍ଗସ) (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୨ (୧୯୭୨ର ମହାରାଷ୍ଟ୍ର ଅଧିନିୟମ ସଂ ୧୩) ।

୧୧୪ । ଦି ମହାରାଷ୍ଟ୍ର ଏଗ୍ରିକଲଚରାଲ ଲ୍ୟାଣ୍ଡସ (ସିଲିଙ୍ଗ ଅନ ହୋଲଡିଙ୍ଗସ) (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୩ (୧୯୭୩ର ମହାରାଷ୍ଟ୍ର ଅଧିନିୟମ ସଂ ୫୦) ।

୧୧୫ । ଦି ଓଡ଼ିଶା ଲ୍ୟାଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୬୫ (୧୯୬୫ର ଓଡ଼ିଶା ଅଧିନିୟମ ସଂ ୧୩) ।

୧୧୬ । ଦି ଓଡ଼ିଶା ଲ୍ୟାଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୬୬ (୧୯୬୭ର ଓଡ଼ିଶା ଅଧିନୟମ ସଂ ୮) ।

୧୧୭ । ଦି ଓଡ଼ିଶା ଲ୍ୟାଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକଟ, ୧୯୬୭ (୧୯୬୭ର ଓଡ଼ିଶା ଅଧିନିୟମ ସଂ ୧୩) ।

୧୧୮ । ଦି ଓଡ଼ିଶା ଲ୍ୟାଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୬୯ (୧୯୬୯ର ଓଡ଼ିଶା ଅଧିନିୟମ ସଂ ୧୩) ।

୧୧୯ । ଦି ଓଡ଼ିଶା ଲ୍ୟାଣ୍ଡ ରିଫର୍ମସ୍ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୦ (୧୯୭୦ର ଓଡ଼ିଶା ଅଧିନିୟମ ସଂ ୧୮) ।

୧୨୦ । ଦି ଉତ୍ତର ପ୍ରଦେଶ ଇଂପୋଜିସନ ଅଫ୍ ସିଲିଙ୍ଗ ଅନ ଲ୍ୟାଣ୍ଡ ହୋଲଡିଙ୍ଗସ (ଆମେଣ୍ଡମେଣ୍ଟ) ଆକଟ, ୧୯୭୨ (୧୯୭୩ର ଉତ୍ତରପ୍ରଦେଶ ଅଧିନିୟମ ସଂ ୧୮) ।

୧୨୧ । ଦି ଉତ୍ତର ପ୍ରଦେଶ ଇଂପୋଜିସନ ଅଫ୍ ସିଲିଙ୍ଗ ଅନ ଲ୍ୟାଣ୍ଡ ହୋଲଡିଙ୍ଗସ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୪ (୧୯୭୫ର ଉତ୍ତର ପ୍ରଦେଶ ଅଧିନିୟମ ସଂ ୨) ।

୧୨୨ । ଦି ତ୍ରିପୁରା ଲ୍ୟାଣ୍ଡ ରେଭିନ୍ୟୁ ଆଣ୍ଡ ଲ୍ୟାଣ୍ଡ ରିଫର୍ମସ (ଥାର୍ଡ ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୫ (୧୯୭୫ ର ତ୍ରିପୁରା ଅଧିନିୟମ ସଂ ୩) ।

୧୨୩ । ଦି ଦାଦରା ଆଣ୍ଡ ନଗର ହାବେଳୀ ଲ୍ୟାଣ୍ଡ ରିଫର୍ମସ ରେଗୁଲେସନ, ୧୯୭୧ (୧୯୭୧ର ସଂ ୩) ।

୧୨୪ । ଦି ଦାଦରା ଆଣ୍ଡ ନଗର ହାବେଳୀ ଲ୍ୟାଣ୍ଡ ରିଫର୍ମସ (ଆମେଣ୍ଡମେଣ୍ଟ) ରେଗୁଲେସନ ୧୯୭୩, (୧୯୭୩ର ସଂ ୫) ।

୧୨୫ । ଦି ମଟର ଭିକିଲ୍ସ ଆକ୍ଟ, ୧୯୩୯ (୧୯୩୯ର କେନ୍ଦ୍ରୀୟ ଅଧିନିୟମ ସଂ ୪) ର ଧାରା ୬୬କ ଓ ଅଧ୍ୟାୟ ୪କ ।

୧୨୬ । ଦି ଏସେନ୍‌ସିଆଲ କମୋଡିଟିଜ ଆକ୍ଟ, ୧୯୫୫ (୧୯୫୫ର କେନ୍ଦ୍ରୀୟ ଅଧିନିୟମ ସଂ ୧୦) ।

୧୨୭ । ଦି ସ୍ମଗଲରର୍ସ ଆଣ୍ଡ ଫରେନ ଏକ୍ସଚେଞ୍ଜ ମାନିପୁଲେଟର୍ସ (ଫରଫିଚର ଅଫ୍ ପ୍ରପର୍ଟି) ଆକ୍ଟ, ୧୯୭୬ (୧୯୭୬ର କେନ୍ଦ୍ରୀୟ ଅଧିନିୟମ ସଂ ୧୩) ।

୧୨୮ । ଦି ବଣ୍ଡେଡ ଲେବର ସିଷ୍ଟମ (ଆବୋଲିସନ) ଆକ୍ଟ, ୧୯୭୬, (୧୯୭୬ର କେନ୍ଦ୍ରୀୟ ଅଧିନିୟମ ସଂ ୧୯) ।

୧୨୯ । ଦି କଞ୍ଜରଭେସନ ଅଫ୍ ଫରେନ ଏକ୍ସଚେଞ୍ଜ ଆଣ୍ଡ ପ୍ରିଭେନସନ ଅଫ ସ୍ମଗଲିଙ୍ଗ ଆକଟିଭିଟିଜ (ଆମେଣ୍ଡ-ମେଣ୍ଟ) ଆକ୍ଟ, ୧୯୭୬ (୧୯୭୬ର କେନ୍ଦ୍ରୀୟ ଅଧିନିୟମ ସଂ ୨୦) ।

* * * *

୧୩୧ । ଦି ଲେଭି ସୁଗାର ପ୍ରାଇସ ଇକୁଆଲଇଜେସନ ଫଣ୍ଡ ଆକ୍ଟ, ୧୯୭୬ (୧୯୭୬ର କେନ୍ଦ୍ରୀୟ ଅଧିନିୟମ ସଂ ୩୧) ।

୧୩୨ । ଦି ଅର୍ବାନ ଲ୍ୟାଣ୍ଡ (ସିଲିଙ୍ଗ ଆଣ୍ଡ ରେଗୁଲେସନ) ଆକ୍ଟ, ୧୯୭୬ (୧୯୭୬ର କେନ୍ଦ୍ରୀୟ ଅଧିନିୟମ ସଂ ୩୩) ।

୧୩୩ । ଦି ଡିପାର୍ଟମେଣ୍ଟାଲାଇଜେସନ ଅଫ୍ ୟୁନିଅନ ଆକାଉଣ୍ଟସ (ଟ୍ରାନସ୍‌ଫର ଅଫ୍ ପର୍ସନେଲ) ଆକ୍ଟ, ୧୯୭୬ (୧୯୭୬ର କେନ୍ଦ୍ରୀୟ ଅଧିନିୟମ ସଂ ୫୯) ।

୧୩୪ । ଦି ଆସାମ ଫିକ୍ସେସନ ଅଫ୍ ସିଲିଙ୍ଗ ଅନ ଲ୍ୟାଣ୍ଡ ହୋଲଡିଂସ ଆକ୍ଟ, ୧୯୫୬ (୧୯୫୭ର ଆସାମ ଅଧିନିୟମ ସଂ ୧) ।

୧୩୫ । ଦି ବମ୍ବେ ଟେନାନ୍‌ସି ଆଣ୍ଡ ଏଗ୍ରିକଲଚରାଲ ଲ୍ୟାଣ୍ଡସ (ବିଦର୍ଭରିଜିଅନ) ଆକ୍ଟ, ୧୯୫୮ (୧୯୫୮ର ବମ୍ବେ ଅଧିନିୟମ ସଂ ୯୯) ।

୧୩୬ । ଦି ଗୁଜୁରାଟ ପ୍ରାଇଭେଟ ଫରେଷ୍ଟସ୍ (ଆକ୍ୟୁଜିସନ) ଆକ୍ଟ, ୧୯୭୨ (୧୯୭୩ର ଗୁଜରାଟ ଅଧିନିୟମ ସଂ ୧୪) ।

୧୩୭ । ଦି ହରିୟାନା ସିଲିଙ୍ଗ ଅନ ଲାଣ୍ଡ ହୋଲଡ଼ିଙ୍ଗସ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୬ (୧୯୭୬ର ହରିୟାନା ଅଧିନିୟମ ସଂ ୧୭) ।

୧୩୮ । ଦି ହିମାଚଳ ପ୍ରଦେଶ ଟେନାନ୍ସି ଆଣ୍ଡ ଲାଣ୍ଡ ରିଫର୍ମସ ଆକ୍ଟ, ୧୯୭୨ (୧୯୭୪ର ହିମାଚଳ ପ୍ରଦେଶ ଅଧିନିୟମ ସଂ ୮) ।

୧୩୯ । ଦି ହିମାଚଳ ପ୍ରଦେଶ ଭିଲେଜ କମନ ଲାଣ୍ଡସ ଭେଷ୍ଟିଙ୍ଗ ଆଣ୍ଡ ୟୁଟିଲାଇଜେସନ ଆକ୍ଟ, ୧୯୭୪ (୧୯୭୪ର ହିମାଚଳ ପ୍ରଦେଶ ଅଧିନିୟମ ସଂ ୧୮) ।

୧୪୦ । ଦି କର୍ଣ୍ଣାଟକ ଲାଣ୍ଡ ରିଫର୍ମସ (ସେକେଣ୍ଡ ଆମେଣ୍ଡମେଣ୍ଟ ଆଣ୍ଡ ମିଶେଲାନିୟସ୍ ପ୍ରୋଭିଜନ୍ସ) ଆକ୍ଟ, ୧୯୭୪ (୧୯୭୪ର କର୍ଣ୍ଣାଟକ ଅଧିନିୟମ ସଂ ୩୧) ।

୧୪୧ । ଦି କର୍ଣ୍ଣାଟକ ଲାଣ୍ଡ ରିଫର୍ମସ (ସେକେଣ୍ଡ ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୬ (୧୯୭୬ର କର୍ଣ୍ଣାଟକ ଅଧିନିୟମ ସଂ ୨୭) ।

୧୪୨ । ଦି କେରଳ ପ୍ରିଭେନ୍ସନ ଅଫ ଏଭିକ୍ସନ ଆକ୍ଟ, ୧୯୬୬ (୧୯୬୬ର କେରଳ ଅଧିନିୟମ ସଂ ୧୨) ।

୧୪୩ । ଦି ତିରୁମୁଭାରମ ପେମେଣ୍ଟ (ଆବୋଲିସନ) ଆକଟ, ୧୯୬୯ (୧୯୬୯ର କେରଳ ଅଧିନିୟମ ସଂ ୧୯) ।

୧୪୪ । ଦି ଶ୍ରୀପଦମ୍ ଲାଣ୍ଡସ ଏନଫ୍ରାନ୍‌ଗ୍ରଇଜମେଣ୍ଟ ଆକ୍ଟ, ୧୯୬୯ (୧୯୬୯ର କେରଳ ଅଧିନିୟମ ସଂ ୨୦) ।

୧୪୫ । ଦି ଶ୍ରୀ ପାଣ୍ଡରବାକ ଲାଣ୍ଡସ (ଭେଷ୍ଟିଙ୍ଗ ଆଣ୍ଡ ଏନଫ୍ରାନ୍‌ଗ୍ରଇଜମେଣ୍ଟ) ଆକ୍ଟ, ୧୯୭୧ (୧୯୭୧ର କେରଳ ଅଧିନିୟମ ସଂ ୨୦) ।

୧୪୬ । ଦି କେରଳ ପ୍ରାଇଭେଟ ଫରେଷ୍ଟସ୍ (ଭେଷ୍ଟିଙ୍ଗ ଆଣ୍ଡ ଆସାଇନମେଣ୍ଟ) ଆକ୍ଟ, ୧୯୭୧ (୧୯୭୧ର କେରଳ ଅଧିନିୟମ ସଂ ୨୬) ।

୧୪୭ । ଦି କେରଳ ଏଗ୍ରିକଲଚରାଲ ଓ୍ୱାର୍କସ ଆକ୍ଟ, ୧୯୭୪ (୧୯୭୪ର କେରଳ ଅଧିନିୟମ ସଂ ୧୮) ।

୧୪୮ । ଦି କେରଳ କାଶ୍ୟୁଫାକ୍ଟରୀଜ (ଆକ୍ୟୁଜିସନ) ଆକଟ, ୧୯୭୪ (୧୯୭୪ର କେରଳ ଅଧିନିୟମ ସଂ ୨୯) ।

୧୪୯ । ଦି କେରଳ ଚିଟ୍‌ଟିକ୍ ଆକ୍ଟ, ୧୯୭୫ (୧୯୭୫ର କେରଳ ଅଧିନିୟମ ସଂ ୨୩) ।

୧୫୦ । ଦି କେରଳ ସିଡ୍ୟୁଲ୍‌ଡ଼ ଟ୍ରାଇବ୍‌ସ (ରେଷ୍ଟ୍ରିକ୍ସନ ଅନ ଟ୍ରାନସ୍‌ଫର ଅଫ ଲାଣ୍ଡସ ଆଣ୍ଡ ରେଷ୍ଟୋ-ରେସନ ଅଫ୍ ଆଲିନେଟେଡ଼ ଲାଣ୍ଡସ) ଆକ୍ଟ, ୧୯୭୫ (୧୯୭୫ର କେରଳ ଅଧିନିୟମ ସଂ ୩୧) ।

୧୫୧ । ଦି କେରଳ ଲାଣ୍ଡ ରିଫର୍ମସ (ଆମେଣ୍ଡମେଣ୍ଟ) ଆକ୍ଟ, ୧୯୭୬ (୧୯୭୬ର କେରଳ ଅଧିନିୟମ ସଂ ୧୫) ।

୧୫୨ । ଦି କାନମ୍‌ଟେନାନ୍ସି ଆବୋଲିସନ ଆକ୍ଟ, ୧୯୭୬ (୧୯୭୬ର କେରଳ ଅଧିନିୟମ ସଂ ୧୬) ।

